# ସମସାମୟିକ ଓଡ଼ିଆ ଗଳ୍ପମାଳା

ସଂପାଦକ

ବିଭୂତି ପଟ୍ଟନାୟକ



ଆଦାନ ପ୍ରଦାନ

# ସମସାମୟିକ ଓଡ଼ିଆ ଗଳ୍ପମାଳା

ସଂପାଦକ

ବିଭୂତି ପଟ୍ଟନାୟକ



ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

# ସୂଚୀପତ୍ର

# ଭୂମିକା

1898 ମସିହା ଅକ୍ଟୋବର ସଂଖ୍ୟା 'ଉତ୍କଳ ସାହିତ୍ୟ' ପୃଷ୍ଠାରେ ପ୍ରକାଶିତ ଫକୀର ମୋହନ ସେନାପତିଙ୍କ ରଚିତ 'ରେବତୀ' ଓଡିଆ ସାହିତ୍ୟରେ ପ୍ରଥମ ଆଧୁନିକ କ୍ଷୁଦ୍ର ଗଳ୍ପ ଭାବରେ ଚିହ୍ନିତ ହୋଇଛି । ଓଡିଆ ଭାଷାର ଏହି ପ୍ରଥମ ଗଳ୍ପ ମଧ୍ୟରେ ହିଁ ନିହିତ ଥିଲା ଓଡିଆ କ୍ଷୁଦ୍ରଗଳ୍ପର ଭବିଷ୍ୟତ ରୂପରେଖ । ସାମାଜିକ କୁସଂସ୍କାର, ଅନ୍ଧବିଶ୍ୱାସ ବିରୁଦ୍ଧରେ ସ୍ୱର ଉତ୍ତୋଳନ, ଯୁବକ ଯୁବତୀମାନଙ୍କ ମଧ୍ୟରେ ପୂର୍ବରାଗ ; ବାସ୍ତବତାବୋଧ ଏବଂ ବିଶେଷତଃ ସାମାଜିକ ଅଙ୍ଗୀକାର - ଯାହା ଥିଲା ଫକୀର ମୋହନଙ୍କ ପରବର୍ତ୍ତୀ ଓଡିଆ ଗଳ୍ପର ପ୍ରଧାନ ଭାବବସ୍ତୁ - ତାର ସାର୍ଥକ ଅଭିବ୍ୟକ୍ତି ଏହି 'ରେବତୀ' ଗଳ୍ପରେ ହିଁ ରୂପାୟିତ ହୋଇଥିଲା । ଭାଷା, ଶୈଳୀ ଦୃଷ୍ଟିରୁ ମଧ୍ୟ 'ରେବତୀ' ଏକ ସଫଳ ସୃଷ୍ଟି । ପ୍ରାଚୀନ ଓଡିଆ କାହାଣୀର ପରଂପରା ଅନୁସରଣ କରି ଫକୀର ମୋହନ 'ରେବତୀ' ଗଳ୍ପ ଆରମ୍ଭ କରିଛନ୍ତି - ''କଟକ ଜିଲ୍ଲା ହରିପୁର ପ୍ରଗନା ମଧ୍ୟରେ ଗୋଟିଏ ମଫସଲି ଗ୍ରାମ, ନାମ ପାଟପୁର । ଗ୍ରାମ ମୁଣ୍ଡରେ ଗୋଟିଏ ଘର । ଆଗିଲି ପିଛିଲି ଚାରି ବଖରା, ଖଂଜା ପାଚିରି ଚାଳିଆରେ ଢିଙ୍କିଶାଳ, ଅଗଣା ମଧ୍ୟରେ କୂଅ, ଆଗକୁ ଦାଣ୍ଡ ଦୁଆର, ପଛକୁ ବାରିଦୁଆର ..........'' ଇତ୍ୟାଦି, କିନ୍ତୁ ଗଳ୍ପର ପରିସମାପ୍ତି ଘଟାଇଛନ୍ତି ଆଧୁନିକ ଗଳ୍ପର ସାଂକେତିକ ଶୈଳୀରେ - ''ଲୋ ରେବତୀ, ଲୋ ରେବି, ଲୋ ନିଆଁ, ଲୋ ଚୁଲି !''

ପାରଂପରିକ ବର୍ଣ୍ଣନାତ୍ମକ ଶୈଳୀରେ 'ରେବତୀ' ଗଳ୍ପର ଆରମ୍ଭ ଓ ଆଧୁନିକ ଇଙ୍ଗିତଧର୍ମୀ ଶୈଳୀରେ ସମାପ୍ତି ଘଟାଇ ଫକୀର ମୋହନ ପ୍ରମାଣିତ କରିଥିଲେ ଯେ ପରଂପରାହୀନତା ଆଧୁନିକତା ନୁହେଁ, କ୍ଷୁଦ୍ରଗଳ୍ପର ସାର୍ଥକତା ତାର ବ୍ୟାପ୍ତିରେ ନୁହେଁ, ନିହିତ ଥାଏ ଗଳ୍ପର ଗଭୀରତାରେ ।

ଓଡିଆ ଉପନ୍ୟାସ ଭଳି ଫକୀରମୋହନଙ୍କ ହାତରେ ଓଡିଆ କ୍ଷୁଦ୍ରଗଳ୍ପ ଶୈଳ୍ପିକ ସାର୍ଥକତା ଲାଭ କରିଥିଲା ବୋଲି ତାଙ୍କର ଉତ୍ତରାଧିକାରୀମାନେ ଆଦର୍ଶ ବା ପ୍ରେରଣା ପାଇଁ ବିଦେଶୀ କିମ୍ବା ଅନ୍ୟ ଆଞ୍ଚଳିକ ଭାଷାର କଥା ସାହିତ୍ୟ ଆଡକୁ ସତୃଷ୍ଣ ଦୃଷ୍ଟିରେ ଚାହିଁ ରହିବା ଆବଶ୍ୟକ ହୋଇନଥିଲା ।

ଶିଳ୍ପ ବିପ୍ଳବ ଓ ବ୍ୟକ୍ତି ସ୍ୱାତନ୍ତ୍ର୍ୟର ଆବଶ୍ୟକତା ଓ ଉପଲବ୍ଧି ମଧ୍ୟରୁ ଯେପରି ଅଷ୍ଟାଦଶ ଶତାବ୍ଦୀରେ ଉପନ୍ୟାସର ଜନ୍ମ ହୋଇଥିଲା, ବାସ୍ତବବାଦ ଓ ସ୍ୱଭାବବାଦର କଳ ମନ୍ଦ୍ରିତ କାଳରେ କର୍ମବ୍ୟସ୍ତ ପାଠକକୁ ବିନ୍ଦୁ ମଧ୍ୟରେ ସିନ୍ଧୁର ସ୍ୱାଦ ଦେବା ମଧ୍ୟରେ ସେହିପରି ନବଜନ୍ମ ଲାଭ କରିଥିଲା କ୍ଷୁଦ୍ରଗଳ୍ପ । କାବ୍ୟ କବିତା ପରେ ଯେପରି ଖଣ୍ଡ କବିତା ଓ ଗୀତି କବିତାର ସୃଷ୍ଟି, ଉପନ୍ୟାସ ପରେ ସେହିପରି କ୍ଷୁଦ୍ରଗଳ୍ପର ଜନ୍ମ । ତେଣୁ କ୍ଷୁଦ୍ରଗଳ୍ପ ହେଉଛି ପରିଣତ ଭାବନା, ସୂକ୍ଷ୍ମ କାରୁକାର୍ଯ୍ୟ ମଣ୍ଡିତ ସର୍ବାଧୁନିକ କଳାରୂପ । ଊନବିଂଶ ଶତାବ୍ଦୀର ରୋମାଣ୍ଟିକ୍ ଭାବ ପ୍ରବଣତା ବିରୁଦ୍ଧରେ ବାସ୍ତବତାବାଦ ଓ ସ୍ୱଭାବବାଦର ମହା ପ୍ରବାହ ୟୁରୋପୀୟ ସାହିତ୍ୟକୁ

ଉଦ୍‌ବେଳିତ କରୁଥିବା ବେଳେ, କ୍ଷୁଦ୍ରଗଳ୍ପ ଏକ ନୂତନ ସାହିତ୍ୟ ଶିଳ୍ପ ଭାବରେ ଆବିର୍ଭୂତ ହୋଇଥିଲା । ତେଣୁ କଳ୍ପନା ପ୍ରବଣତା ଅପେକ୍ଷା ସାମାଜିକ ବାସ୍ତବତା ପାଖରେ ସେ ମୂଳରୁ ଥିଲା ଅଙ୍ଗୀକାରବଦ୍ଧ ଏବଂ ତାର ଏହି ବିଶିଷ୍ଟ ଗୁଣ ହିଁ ତାକୁ ପ୍ରାଚୀନ ଲୋକକଥା, ରୂପକଥା ଏବଂ ଉପକଥାଠାରୁ ଅଲଗା କରି ଚିହ୍ନାଇ ଦେଇଥିଲା । ଆକାରରେ କ୍ଷୁଦ୍ର କିନ୍ତୁ ଆବେଦନରେ ଗଭୀର, ଏଇ ଭଳି ରଚନା - ଯାହାକୁ I.M Reid ତାଙ୍କର"The Short Story" ଗ୍ରନ୍ଥରେ-- "Fictitious prose narrative briefer than a novel" ବୋଲି କହିଛନ୍ତି - ତାକୁ ହିଁ କୁହାଗଲା ଆଧୁନିକ କ୍ଷୁଦ୍ରଗଳ୍ପ ।

କାବ୍ୟ, କବିତା ଅପେକ୍ଷା କ୍ଷୁଦ୍ରଗଳ୍ପ ହିଁ ଥିଲା ସମାଜ ବାସ୍ତବତାର ଅଧିକ ନିକଟବର୍ତ୍ତୀ । ଫକୀର ମୋହନଙ୍କ ସାହିତ୍ୟାଦର୍ଶକୁ ଅନୁସରଣ କରି ପରବର୍ତ୍ତୀ କାଳର ଓଡ଼ିଆ କଥାଶିଳ୍ପୀଗଣ ସମସ୍ୟା କଣ୍ଟକିତ ଓଡ଼ିଶାର ଜନ ଜୀବନର ଚିତ୍ର ନିଜ ଗଳ୍ପରେ ଆନ୍ତରିକତାର ସହ ଅଙ୍କନ କରିବାକୁ ଚେଷ୍ଟା କରିଥିଲେ । ବାଲ୍ୟ ବିବାହ, କନ୍ୟାସୁନା ପ୍ରଥା ବିପକ୍ଷରେ, ବିଧବା ବିବାହ ସପକ୍ଷରେ ସେମାନେ ଯେପରି ନିଜ ନିଜ ଗଳ୍ପରେ ସ୍ୱର ଉତ୍ତୋଳନ କରିଥିଲେ, ପାଶ୍ଚାତ୍ୟ ସଭ୍ୟତା ଓ ସଂସ୍କୃତିର ସଂସ୍ପର୍ଶରେ ଆସି ଆମ ସାମାଜିକ ଜୀବନ ଏବଂ ବ୍ୟକ୍ତି ଚରିତ୍ରରେ ଯେଉଁ ବିପର୍ଯ୍ୟୟ ଓ ଅଧୋପତନ ଦେଖା ଦେଇଥିଲା, ତା'ର କଠୋର ସମାଲୋଚନା କରିବାକୁ ମଧ୍ୟ ସେମାନେ କୁଣ୍ଠିତ ହୋଇ ନଥିଲେ । ସ୍ୱୟଂ ଫକୀର ମୋହନ ତାଙ୍କ ''ମାଧ ମହାନ୍ତିଙ୍କ କନ୍ୟା ସୁନା'', ''ପେଟେଣ୍ଟ ମେଡିସିନ୍'', '' ଡାକ ମୁନ୍‌ସି'' ଗଳ୍ପରେ କନ୍ୟାସୁନା ପ୍ରଥା, ମଦ୍ୟପାନ ଓ ବାରଙ୍ଗନା ଗୃହ-ଗମନ ଏବଂ ଇଂରେଜି ଶିକ୍ଷିତ ପୁତ୍ରର ସରଳ-ହୃଦୟ ମଫସଲି ପିତା ପ୍ରତି ଅଶୋଭନୀୟ ଆଚରଣର ଜୀବନ୍ତ ଛବି ଆଙ୍କି ଯାଇଥିଲେ । ପରବର୍ତ୍ତୀ କାଳରେ ଗୋଦାବରୀଶ ମିଶ୍ର, ଉପେନ୍ଦ୍ର ପ୍ରସାଦ ମହାନ୍ତି, ବୈଷ୍ଣବ ଚରଣ ଦାସ, ଚନ୍ଦ୍ର ଶେଖର ନନ୍ଦ, ବାଙ୍କନିଧି ପଟ୍ଟନାୟକ, ଲକ୍ଷ୍ମୀକାନ୍ତ ମହାପାତ୍ର ଓ ଗୋଦାବରୀଶ ମହାପାତ୍ର ପ୍ରମୁଖ କଥାକାରମାନେ ନିଜର ଅଲଗା ନିଜସ୍ୱ ଭାଷା ଓ ଭିନ୍ନ ଶୈଳୀରେ ଏହି ବିଷୟବସ୍ତୁ ଅବଲମ୍ବନରେ ଅନେକ ପ୍ରଭାବଶାଳୀ ଗଳ୍ପ ରଚନା କରିଥିଲେ । କେବଳ ସମାଜ ସଂସ୍କାର ନୁହେଁ, ଅର୍ଥନୈତିକ ବିପର୍ଯ୍ୟୟର ଚିତ୍ର ମଧ୍ୟ ଏହି ସମୟର ଓଡ଼ିଆ ଗଳ୍ପର ପ୍ରଧାନ ଉପଜୀବ୍ୟ ବସ୍ତୁ ହୋଇଥିଲା । ବନ୍ୟା, ମରୁଡ଼ିର କରାଳ ଦନ୍ତାଘାତରେ କୃଷି ଅର୍ଥନୀତି ବିପର୍ଯ୍ୟସ୍ତ ହୋଇ ଯିବା ଫଳରେ ଜୀବିକା ଅର୍ଜ୍ଜନ ପାଇଁ ଯେଉଁ ଗ୍ରାମାଞ୍ଚଳର ଓଡ଼ିଆ ଲୋକେ ଅନ୍ୟ ପ୍ରଦେଶର ସହର, ଶିଳ୍ପାଞ୍ଚଳକୁ ଯାଉଥିଲେ ସେଇ ପ୍ରବାସୀ ଶ୍ରମିକମାନଙ୍କ କରୁଣ ଜୀବନ କାହାଣୀ ଗୋଦାବରୀଶ ମିଶ୍ରଙ୍କ ''ଅନ୍ନଛତ୍ର'' ଓ ''ରେଙ୍ଗୁନ୍ ଯାତ୍ରୀ'' ଗଳ୍ପରେ ଯେପରି ପ୍ରକଟିତ ହୋଇଥିଲା, ସେହିପରି ଯନ୍ତ୍ରଶିଳ୍ପର ପ୍ରସାର ଫଳରେ ଓଡ଼ିଶାର କୁଟୀର ଶିଳ୍ପର ଶୋଚନୀୟ ପରିଣତିର ଚିତ୍ର ଗୋଦାବରୀଶ ମହାପାତ୍ରଙ୍କ ''ମାଗୁଣିର ଶଗଡ'' ଗଳ୍ପରେ ରୂପାୟିତ ହୋଇଥିଲା ।

ପତ୍ର ପତ୍ରିକାମାନେ ହିଁ ଥିଲେ ଓଡ଼ିଆ ପୁସ୍ତକ ପ୍ରକାଶନ ସଂସ୍ଥାର ବିକାଶ ପୂର୍ବରୁ ଓଡ଼ିଆ କ୍ଷୁଦ୍ରଗଳ୍ପର ଅନୁଡିଶାଳ । ଏକା ଓଡ଼ିଆ ସାହିତ୍ୟ ନୁହେଁ, ବିଶ୍ୱ ସାହିତ୍ୟରେ ମଧ୍ୟ ମୋପାଁସା, ହେନ୍‌ରି ଜେମସ୍, ଏଲେନ୍ ପୋ ପ୍ରମୁଖ ବିଶିଷ୍ଟ କଥାଶିଳ୍ପୀ ପତ୍ର ପତ୍ରିକାର ପ୍ରୟୋଜନ ପୂରଣ ପାଇଁ ଗଳ୍ପ ରଚନାରେ ହାତ ଦେଇଥିଲେ । ଏଡ୍‌ଗାର୍ ଏଲେନ୍ ପୋ'ତ ସଗର୍ବରେ ଘୋଷଣା କରିଥିଲେ ଯେ ସେ ହେଉଛନ୍ତି, ..."essentially a magazinist" । 'ଉତ୍କଳ ସାହିତ୍ୟ',

'ନବଭାରତ' ଠାରୁ ଆରମ୍ଭ କରି 'ମୁକୁର', 'ସହକାର' ପ୍ରଭୃତି ବିଶିଷ୍ଟ ସାହିତ୍ୟ ପତ୍ରିକା ଓଡିଆ କ୍ଷୁଦ୍ରଗଳ୍ପର ଜନ୍ମ ଓ ବିକାଶରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ସତ୍ୟବାଦୀ ଯୁଗରେ ମୌଳିକ ଗଳ୍ପ ସହିତ ବିଦେଶୀ ଭାଷାର ଅନୂଦିତ ଗଳ୍ପ ପ୍ରକାଶ କରିବା ଉପରେ ଓଡିଆ ପତ୍ର ପତ୍ରିକା ଅଧିକ ଗୁରୁତ୍ୱ ଆରୋପ କରିଥିଲେ । ଏହି ସମୟରେ ଗୋଦାବରୀଶ ମିଶ୍ର, ଗୋଦାବରୀଶ ମହାପାତ୍ର ପ୍ରମୁଖ ମୌଳିକ ସ୍ରଷ୍ଟା ଏବଂ ନର୍ମଦା କର, ସୁପ୍ରଭା କର ପ୍ରମୁଖ କୁଶଳୀ ଅନୁବାଦକମାନେ ବିଦେଶୀ ଗଳ୍ପର ଅନୁବାଦ 'ଉତ୍କଳ ସାହିତ୍ୟ', 'ସହକାର', 'ନବଭାରତ', 'ବାରୁଣୀ' ପ୍ରଭୃତି ପତ୍ର ପତ୍ରିକାରେ ପ୍ରକାଶ କରୁଥିଲେ । ଟଲଷ୍ଟୟ, ଚେକଭ୍, ମୋପାଁସା ପ୍ରମୁଖଙ୍କ ଅନୂଦିତ ଗଳ୍ପ ଓଡିଆ ଭାଷାରେ ପ୍ରକାଶିତ ହେଲା ପରେ ପାଶ୍ଚାତ୍ୟ ରୀତିର ଗଳ୍ପ ପ୍ରତି ପାଠକମାନଙ୍କ ଦୃଷ୍ଟି ଆକର୍ଷିତ ହୋଇଥିଲା । ଫଳରେ ବିଂଶ ଶତାବ୍ଦୀର ତୃତୀୟ ଦଶକ ବେଳକୁ ପାଶ୍ଚାତ୍ୟ ଦେଶର ଗାଳ୍ପିକମାନଙ୍କ ଗଳ୍ପର ଭାବ ଓ ଆଙ୍ଗିକ ଅନୁସରଣରେ ଓଡିଆ ଭାଷାରେ ଭିନ୍ନ ରୀତିର ଗଳ୍ପ ରଚନା ପାଇଁ କ୍ଷେତ୍ର ପ୍ରସ୍ତୁତ ହୋଇ ଯାଇଥିଲା ।

ଓଡିଆ ଗଳ୍ପର ଦ୍ୱିତୀୟ ପର୍ଯ୍ୟାୟରେ 'ସହକାର', 'ନବଭାରତ' ସହିତ 'ଯୁଗବୀଣା', 'ଶଙ୍ଖ', 'ଆଧୁନିକ', 'ଡଗର' ପ୍ରଭୃତି ସାହିତ୍ୟ ପତ୍ରରେ ଯେଉଁମାନେ ପାଶ୍ଚାତ୍ୟ ଭାବଧାରା ଦ୍ୱାରା ଅନୁପ୍ରାଣିତ ହୋଇ କ୍ଷୁଦ୍ର ଗଳ୍ପର ଆଙ୍ଗିକ ଓ ଭାବବସ୍ତୁରେ ନୂତନ ବୈଚିତ୍ର୍ୟ ଆଣିଥିଲେ ସେମାନଙ୍କ ମଧ୍ୟରେ କାଳିନ୍ଦୀ ଚରଣ ପାଣିଗ୍ରାହୀ, ଗୋପୀନାଥ ମହାନ୍ତି, ରାଜ କିଶୋର ରାୟ, ନିତ୍ୟାନନ୍ଦ ମହାପାତ୍ର, ସଚ୍ଚିଦାନନ୍ଦ ରାଉତରାୟ, ରାଜ କିଶୋର ପଟ୍ଟନାୟକ, ଅନନ୍ତ ପ୍ରସାଦ ପଣ୍ଡା ପ୍ରମୁଖ ପ୍ରଧାନ । ଏମାନଙ୍କ ଗଳ୍ପର ଭାଷା, ଭାବ, ପ୍ରକାଶ ଭଙ୍ଗୀ ଓ ଶୈଳୀ ଥିଲା ପରସ୍ପରଠାରୁ ପୃଥକ । ଏମାନେ ପାଶ୍ଚାତ୍ୟ ଶୈଳୀ ଏବଂ ନିଜସ୍ୱ ସାମାଜିକ ଚେତନାର ସମନ୍ୱୟରେ ଓଡିଆ କ୍ଷୁଦ୍ରଗଳ୍ପକୁ ଏକ ସୁଦୃଢ଼ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ କରିଥିଲେ ।

ବାସ୍ତବରେ ବିଂଶ ଶତାବ୍ଦୀର ଚତୁର୍ଥ ଓ ପଞ୍ଚମ ଦଶକ ଥିଲା ଓଡିଆ କ୍ଷୁଦ୍ରଗଳ୍ପର କ୍ରାନ୍ତିକାଳ । ପ୍ରଥମ ମହାଯୁଦ୍ଧର ପ୍ରତିକ୍ରିୟା, ସ୍ୱାଧୀନତା ଆନ୍ଦୋଳନର ଆଗ୍ନେୟ ଉତ୍ତାପ, ମାର୍କ୍ସବାଦୀ ଚିନ୍ତାଧାରାର ବୈପ୍ଳବିକ ଚେତନା, ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ, ଅସ୍ପୃଶ୍ୟତା ନିବାରଣ, ନାରୀ ଜାଗରଣ ଆମର ଶୀତଳ, ନିଶ୍ଚଳ ସାମାଜିକ ଜୀବନ ଏବଂ ବ୍ୟକ୍ତି ଚେତନାକୁ ଦୋହଲାଇ ଦେଇଥିଲା । ସାମାଜିକ ସ୍ଥିତାବସ୍ଥା ବିରୁଦ୍ଧରେ ସମାଜର ତଳସ୍ତରରୁ ଏକ ଦୃଢ ପ୍ରତିବାଦର ଶବ୍ଦ ଶୁଣା ଯାଉଥିଲା । ଓଡିଆ କଥାଶିଳ୍ପୀମାନଙ୍କ ସୃଷ୍ଟି ମଧ୍ୟରେ ପ୍ରତିଧ୍ୱନିତ ହୋଇଥିଲା ସେଇ ପ୍ରତିବାଦର ସ୍ୱର । ରାଜା ଜମିଦାରମାନଙ୍କ ସାମନ୍ତବାଦୀ ଶୋଷଣ ବିରୁଦ୍ଧରେ କ୍ଷୋଭ, ଭାଗ୍ୟ ଓ ଭଗବାନଙ୍କ ଉପରେ ଅନାସ୍ଥା ଏବଂ ସ୍ୱାଧୀନତା ପାଇଁ ଆତ୍ମୋତ୍ସର୍ଗ ଭାବ କାଳିନ୍ଦୀ ଚରଣଙ୍କ 'ମାଂସର ବିଳାପ', ଭଗବତୀ ଚରଣଙ୍କ 'ଶିକାର', ସଚ୍ଚି ରାଉତରାୟଙ୍କ 'ହାତ' ଏବଂ ନିତ୍ୟାନନ୍ଦ ମହାପାତ୍ରଙ୍କ 'ଏଗାରଟା' ଗଳ୍ପରେ ଉତ୍କୀର୍ଣ୍ଣ ହୋଇଥିଲା ।

ଷଷ୍ଠ- ସପ୍ତମ ଦଶକ ଯେପରି ଥିଲା ଆମ ଜାତିର ଇତିହାସରେ ଗୋଟିଏ ଦୃଷ୍ଟିରୁ ଗୌରବମୟ ସମୟ, ଅନ୍ୟ ଦୃଷ୍ଟିରୁ ମଧ୍ୟ ସେଇଭଳି ଏହା ସ୍ୱପ୍ନ-ଭଙ୍ଗର ମୁହୂର୍ତ୍ତ । ସ୍ୱାଧୀନତା ପ୍ରାପ୍ତି, ଜମିଦାରୀ ପ୍ରଥା, ରାଜତନ୍ତ୍ରର ଉଚ୍ଛେଦ, ସାବାଳକ ଭୋଟ ଭିତ୍ତିରେ ସାଧାରଣ ନିର୍ବାଚନ, ପଞ୍ଚ ବାର୍ଷିକ ଯୋଜନା, ଗୁରୁ ଶିଳ୍ପ ପ୍ରତିଷ୍ଠା, ଶିକ୍ଷାର ବିସ୍ତାର ଏବଂ ଶିକ୍ଷା ଓ ଚାକିରି କ୍ଷେତ୍ରରେ ପୁରୁଷ ସହିତ ନାରୀର ସମାନ ଅଧିକାର ଆମର ସାମାଜିକ ଶ୍ରେଣୀ-ବିନ୍ୟାସରେ ଯେପରି

କେତେକ ମୌଳିକ ପରିବର୍ତ୍ତନ ଆଣି ଦେଇଥିଲା, ଅର୍ଥନୈତିକ ଉନ୍ନୟନ ସହିତ ଅର୍ଥନୈତିକ ବୈଷମ୍ୟର ଅଭିବୃଦ୍ଧି, ଶିକ୍ଷାର ପ୍ରସାର ସହିତ ଶିକ୍ଷିତ ବେକାର ସଂଖ୍ୟାବୃଦ୍ଧି, ରାଜନୈତିକ ଦୁର୍ନୀତି, ଜାତୀୟତା ବଦଳରେ ଜାତିଗତ ଭେଦଭାଗ ସେହିପରି ସମାଜର ଏକ ବୃହତ୍ତର ଜନ ସମାଜକୁ ବିକ୍ଷୁବ୍ଧ କରି ଦେଇଥିଲା । ଏହି ସମସ୍ୟା କଣ୍ଟକିତ ଶ୍ରେଣୀ-ବିଭକ୍ତ ସାମାଜିକ ଜୀବନର ଅନ୍ତରଙ୍ଗ ଆଲେଖ୍ୟ ସୁରେନ୍ଦ୍ର ମହାନ୍ତି, ବ୍ରହ୍ମାନନ୍ଦ ପଣ୍ଡା, ମନୋଜ ଦାସ, ଅଖିଳ ମୋହନ ପଟ୍ଟନାୟକ, କିଶୋରୀ ଚରଣ ଦାସ, ରବି ପଟ୍ଟନାୟକ, ଶାନ୍ତନୁ କୁମାର ଆଚାର୍ଯ୍ୟ, ମହାପାତ୍ର ନୀଳମଣି ସାହୁ, ଚଉଧୁରୀ ହେମକାନ୍ତ ମିଶ୍ର, ବୀଣାପାଣି ମହାନ୍ତି ପ୍ରମୁଖ ବହୁ ଲେଖକ ଲେଖିକାମାନଙ୍କ ଗଳ୍ପରେ ଚିତ୍ରାୟିତ ହୋଇଥିଲା ।

ସବୁଜ ବିପ୍ଳବ, ଶିଳ୍ପଜାତ ପଦାର୍ଥର ଉତ୍ପାଦନ ବୃଦ୍ଧି, ଗ୍ରାମାଞ୍ଚଳର ବିଦ୍ୟୁତ୍-କରଣ, ବନ୍ଧବାନ୍ଧ ନିର୍ମାଣ ସତ୍ତ୍ୱେ ଦେଶରେ ଅର୍ଥନୈତିକ ସଂକଟ ବୃଦ୍ଧି ପାଉଥିଲା । ଅଳ୍ପ ସଂଖ୍ୟକ ଲୋକ ଏହି ଉନ୍ନୟନର ସୁଫଳ ଭୋଗ କରୁଥିବା ବେଳେ ବହୁ ସଂଖ୍ୟକ ଶ୍ରମିକ, କୃଷକ, ମଧ୍ୟବିତ୍ତ ଶ୍ରେଣୀର ଲୋକେ ଦାରିଦ୍ର୍ୟର ସୀମାରେଖା ତଳେ ରହି ହନ୍ତସନ୍ତ ହେଉଥିଲେ । ରାଜନୈତିକ ଦୁର୍ନୀତି ଚରମ ସୀମାରେ ପହଞ୍ଚିଥିଲା । ଫଳରେ 'ଘେରାଓ', 'ବନ୍ଦ', 'ରାସ୍ତାରୋକୋ' ସହିତ ଶୋଷଣ ଅତ୍ୟାଚାର ବିରୁଦ୍ଧରେ ନକ୍ସାଲବାଦିର କୃଷକମାନେ ଯେଉଁ ସଶସ୍ତ୍ର ପ୍ରତିରୋଧ ଓ ପ୍ରତି ଆକ୍ରମଣ ଆରମ୍ଭ କରି ଦେଲେ ତାହା ଦେଶର ବିଭିନ୍ନ ଅଞ୍ଚଳକୁ ବ୍ୟାପୀ ଯାଇଥିଲା । ଏହି ଗଭୀର ଅର୍ଥନୈତିକ ସଂକଟ ଏବଂ ରାଜନୈତିକ ଅରାଜକତାର ଫଳ ସ୍ୱରୂପ 1975 ମସିହାରେ ଜାରି ହେଲା ଜରୁରୀକାଳୀନ ଅବସ୍ଥା । ନାଗରିକମାନଙ୍କ ମୌଳିକ ସାଂବିଧାନିକ ଅଧିକାର କାଢ଼ି ନିଆଗଲା । ବିଚାରାଳୟର କ୍ଷମତା ଖର୍ବ କରାଗଲା । ସମ୍ବାଦପତ୍ର ଉପରେ କଟକଣାମାନ ଜାରି ହେଲା । ଏହି ଅନ୍ଧକାରମୟ ଦିନଗୁଡ଼ିକରେ ନାଗରିକ ସ୍ୱାଧୀନତାର ପୁନରୁଦ୍ଧାର ଏବଂ ଆଇନର ଶାସନ ପ୍ରତିଷ୍ଠା କରିବା ପାଇଁ ଇମର୍ଜେନ୍ସି ବିରୁଦ୍ଧରେ ଯେଉଁ ଆନ୍ଦୋଳନ ଆରମ୍ଭ ହେଲା; ତାକୁ କୁହାଗଲା- ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ । ସ୍ୱାଧୀନତା ପୂର୍ବର ବିଶିଷ୍ଟ କଥାଶିଳ୍ପୀ ଗୋପୀନାଥ ମହାନ୍ତି ଏବଂ ରାଜକିଶୋର ରାୟ ପ୍ରମୁଖ ଏହି ଇମର୍ଜେନ୍ସି ବିରୁଦ୍ଧରେ କେତୋଟି ଗଳ୍ପରେ ନିଜର ଉଦାର କଣ୍ଠସ୍ୱର ଉତ୍ତୋଳନ କରିଥିଲେ ।

କ୍ଷୁଦ୍ରଗଳ୍ପ ବାସ୍ତବରେ ହେଉଛି ସମୟର ଶିଳ୍ପ ରୂପ । ଆକାରରେ କ୍ଷୁଦ୍ର, କିନ୍ତୁ ଆବେଦନରେ ଗଭୀର । ପାଠକର ମନୋରଂଜନ ପାଇଁ ଚଟୁଳ କାହାଣୀ ବିସ୍ତାର ଏହାର ଏକମାତ୍ର ଧର୍ମ ନୁହେଁ, ସାମାଜିକ ପରିବର୍ତ୍ତନର ଭାବମୂର୍ତ୍ତିକୁ ପାଠକ ମନରେ ପ୍ରତିଷ୍ଠା କରିବା ହେଉଛି ଆଧୁନିକ କ୍ଷୁଦ୍ରଗଳ୍ପର ମହତ କର୍ମ । ଏହି ସଂକଳନ ପାଇଁ ଗଳ୍ପ ନିର୍ବାଚନ କଲାବେଳେ ମୁଁ ଏହି ଦିଗ ପ୍ରତି ଅଧିକ ଧ୍ୟାନ ଦେଇଛି ।

ସ୍ୱାଧୀନତା ପ୍ରାପ୍ତି ମନରେ ଯେଉଁ ପ୍ରତ୍ୟାଶା ସୃଷ୍ଟି କରିଥିଲା, ଅର୍ଥନୈତିକ ବିପର୍ଯ୍ୟୟ ସାମାଜିକ ମୂଲ୍ୟବୋଧର ଅବକ୍ଷୟ ଏବଂ ରୋଷେଇ ଘରଠାରୁ ଆରମ୍ଭ କରି ରେସନ ଦୋକାନ ପର୍ଯ୍ୟନ୍ତ- ସର୍ବତ୍ର ରାଜନୀତିର ପ୍ରଭାବ ଆମର ମୋହଭଙ୍ଗ ଘଟାଇଛି । ସେଇ ସ୍ୱପ୍ନଭଙ୍ଗର ଗୋଟିଏ ଉଦାହରଣ ଭୁବନେଶ୍ୱର ବେହେରାଙ୍କ ରଚିତ କ୍ଷୁଦ୍ର ଗଳ୍ପ "ନାଚେ ବେହୁଆ ନାଚେ" । ଆଧୁନିକ ଓଡ଼ିଶାର ନୂତନ କୋଣାର୍କ ଭାବରେ ପ୍ରଚାରିତ ହୀରାକୁଦ ବନ୍ଧ ନିର୍ମାଣ ଅନ୍ତରାଳରେ ଯେଉଁ ଶତ ଶତ ବନ୍ଧର ବିନ୍ଧାଣୀମାନଙ୍କ ଅଶ୍ରୁଳ କାହାଣୀ ଚାପା ପଡ଼ି ଯାଇଛି - ସେମାନଙ୍କ

ମଧ୍ୟରୁ ଜଣେ କାରିଗର - ଆଦିବାସୀ ସୋମବାରୁର ଜୀବନ କାହାଣୀ ଉପରେ ଏ ଗଳ୍ପ ଆଧାରିତ । ହୀରାକୁଦ ବନ୍ଧ ନିର୍ମିତ ହେବା ଫଳରେ ବରଗଡ, ବରପାଲିର ବିସ୍ତୃତ ଅଞ୍ଚଳ ଶସ୍ୟଶ୍ୟାମଳ ହୋଇଛି । ବଡ ଚାଷୀମାନେ ଧନ କୁବେର ହୋଇଛନ୍ତି । ହୀରାକୁଦ ବନ୍ଧ ନିର୍ମାଣ ଦାୟିତ୍ୱରେ ଥିବା ଇଂଜିନିୟର, ଠିକାଦାରମାନେ ଭୁବନେଶ୍ୱରରେ ବଡ ବଡ କୋଠାଘର ତୋଳିଛନ୍ତି । କିନ୍ତୁ ହୀରାକୁଦ ଅଞ୍ଚଳର ସେଇ ଆଦିବାସୀ ଲୋକଟି ସୋମବାରୁ- ଯାହାର ଭିଟାମାଟି ହୀରାକୁଦ ଜଳଭଣ୍ଡାର ଗର୍ଭରେ ବିଲୀନ ହୋଇ ଯାଇଛି - ଯେ ଦିନେ ନିଜ ଜୀବନକୁ ବିପନ୍ନ କରି ବନ୍ୟା ଜଳ ପ୍ଲାବନରୁ ବନ୍ଧକୁ ରକ୍ଷା କରିଥିଲା - ସେ ଆଜି ମାଙ୍କଡ ନଚାଇ, ଭିକମାଗି ପେଟ ପୋଷୁଛି - ନିଜେ ନର -ବାନରରେ ରୂପାନ୍ତରିତ ହୋଇ ଯାଇଛି !!

ଆମର ନିର୍ବାଚନଭିତ୍ତିକ ଗଣତାନ୍ତ୍ରିକ ବ୍ୟବସ୍ଥାର ଅସାଧୁ, ନରଘାତକ, ଧର୍ଷଣକାରୀମାନେ କିପରି ମନ୍ତ୍ରୀ, ଏମ୍.ଏଲ୍.ଏ. ହେଉଛନ୍ତି ଏବଂ ସ୍ୱାଧୀନତା ନାମରେ ସ୍ୱେଚ୍ଛାଚାରିତା କିପରି ଆମର ସାମାଜିକ ଜୀବନକୁ କ୍ଳେଦାକ୍ତ କରି ଦେଉଛି, ତାହା ରବି ପଟ୍ଟନାୟକଙ୍କ "ବନ୍ଧ୍ୟା ଗାନ୍ଧାରୀ" ଗଳ୍ପରେ ଚମତ୍କାର ଭାବରେ ଫୁଟି ଉଠିଛି । ଗୁଣ୍ଡା ବିନା ପଣ୍ଡା ଦିନେ କୁନା ସାହୁକୁ ଦୋକାନ ଭିତରୁ ଘୋଷାରି ଆଣି ଦିନ ଏଗାରଟା ବେଳେ ବଜାର ଭିତରେ ଖୁନ୍ କଲା । ସେଦିନ ସମସ୍ତେ ସେ ଦୃଶ୍ୟ ଦେଖିଲେ । କିନ୍ତୁ ପୋଲିସ୍ ଉପରେ ଭରସା ନଥିବାରୁ ନୃଶଂସ ନରହନ୍ତା ଭୟରେ କେହି ହତ୍ୟାକାରୀର ନାମୋଚ୍ଚାରଣ କରି ନଥିଲେ । କେବଳ ନର ଘାତକର ନାମ ପୋଲିସ୍ ଆଗରେ କହି ଦେଇଥିଲା ସଂସାର-ଅନଭିଜ୍ଞା, ପ୍ରତ୍ୟକ୍ଷଦର୍ଶୀ, କିଶୋରୀ ଛାତ୍ରୀ ଭାରତୀ ମିଶ୍ର । ସତ୍ୟବାଦିତା ପାଇଁ ଭାରତୀକୁ ବହୁ ମୂଲ୍ୟ ଦେବାକୁ ପଡିଥିଲା । ନରହନ୍ତା ଗୁଣ୍ଡା ବିନା ପଣ୍ଡା ମାଂସପେଶି ବଳରେ ଦିନେ ହେଲା ସ୍ଥାନୀୟ ଏମ୍.ଏଲ୍.ଏ. । ପୋଲିସ୍ ଆଗରେ ଦିନେ ତା ନାମ କହି ଦେଇଥିବା ଝିଅ ଭାରତୀ ଉପରେ ପ୍ରତିଶୋଧ ନେବା ପାଇଁ ସେ ତାକୁ ବାହାହେବା ଆଗରୁ ତା' ସ୍କୁଲ୍-ଶିକ୍ଷକ ପିତାକୁ କଣ୍ଢ ଦେଇଥିଲା । ଏମ୍.ଏଲ୍.ଏ. ହେଲାପରେ ସତକୁ ସତ ତାକୁ ଜବରଦସ୍ତ ବାହା ହେବା ପାଇଁ ଧମକପୂର୍ଣ୍ଣ ପ୍ରସ୍ତାବ ଦେଲା । ଭୟ ଓ ପ୍ରଲୋଭନରେ ତା'ର ବାପା ଏ ପ୍ରସ୍ତାବରେ ସମ୍ମତି ଦେଲେ । ନିରୁପାୟ ଭାବରେ ନିଃସହାୟା ଭାରତୀ ଦିନେ ସ୍ଥାନୀୟ ପରିବାର ନିୟୋଜନ କେନ୍ଦ୍ରରେ ବନ୍ଧ୍ୟା-କରଣ କରୁଥିବା ଡାକ୍ତରଙ୍କ ପାଖରେ ପହଂଚି କହିଲା- "ଜଣେ ହତ୍ୟାକାରୀର ସ୍ତ୍ରୀ ହେବା ପାଇଁ ମୋର ଆପତ୍ତି ନାହିଁ କିନ୍ତୁ ମୁଁ ଚାହେଁନା ଜଣେ ଖୁନୀ ଆସାମୀର ମାଆ ହେବାକୁ- କିମ୍ବା ନପୁଂସକ ଭୀରୁ ସନ୍ତାନର ଜନନୀ ହେବାକୁ x x x ମୋତେ ବନ୍ଧ୍ୟା କରି ଦିଅନ୍ତୁ- ଚିରଦିନ ପାଇଁ ବନ୍ଧ୍ୟା କରିଦିଅନ୍ତୁ ।"

ରାଜନୀତିରେ ଅପରାଧୀମାନଙ୍କ ପ୍ରଭାବ ବୃଦ୍ଧି ଯେପରି ସ୍ୱାଧୀନତା ପରବର୍ତ୍ତୀ କାଳର ଦେଶର ଗଣତନ୍ତ୍ରକୁ ବିପନ୍ନ କରିଛି, ଧର୍ମ ନାମରେ ଭଣ୍ଡ ବାବାଜି ଓ ଗୁରୁମାନଙ୍କ ପ୍ରତିଷ୍ଠା ଓ ପ୍ରତାରଣା ଆମ ସାମାଜିକ ଜୀବନକୁ ସେହିପରି କଳଙ୍କିତ କରିଛି । ଜଗନ୍ନାଥ ପ୍ରସାଦ ଦାସଙ୍କ "ମନ୍ତ୍ର" ଗଳ୍ପରେ ଜଣେ ଲୋଭୀ, ଲମ୍ପଟ ମନ୍ତ୍ରଦାତା ସ୍ୱାମୀଜୀ ଏବଂ କଳାଧନ ଅର୍ଜନ କରିଥିବା ଅପରାଧରେ ଅଭିଯୁକ୍ତ ଜଣେ ଇଞ୍ଜିନିୟର୍ ଏବଂ ତାଙ୍କର ପତ୍ନୀଙ୍କ ମଧ୍ୟରେ ଗଢ଼ି ଉଠିଥିବା ନାଟକୀୟ ସଂପର୍କ ଏବଂ ତା'ର ପରିଣତି କଳାତ୍ମକ ଭାବରେ ଉତ୍କୀର୍ଣ୍ଣ ହୋଇଛି ।

ଦୁର୍ନୀତି ଅଭିଯୋଗରେ ଭିଜିଲାନ୍ସ ଅନୁସନ୍ଧାନର ଶରବ୍ୟ ହୋଇଥିବା ଇଞ୍ଜିନିୟର୍ ପ୍ରଭାକର ମୁକ୍ତିର ଅନ୍ୟ ଉପାୟ ନଦେଖି ଅବଶେଷରେ ଏଇ ଫାଇଭ୍ ଷ୍ଟାର୍ ସ୍ୱାମୀଜୀଙ୍କ ପାଖରୁ

ମନ୍ତ୍ର ଆଣିବାକୁ ଯାଇଛି । କାରଣ ସେ ଶୁଣିଛି, ସ୍ୱାମୀଜୀ ଅଲୌକିକ ଶକ୍ତି ବଳରେ ଚିଫ୍ ଇଞ୍ଜିନିୟର୍‌ଙ୍କ ବଦଳି ବନ୍ଦ କରିଦେଇଛନ୍ତି । ନିଜ ସ୍ତ୍ରୀ ସୁହାସିନୀକୁ ପ୍ରବର୍ତ୍ତାଇଛି ସ୍ୱାମୀଜୀଙ୍କ ପାଖକୁ ଯିବା ପାଇଁ । ସୁହାସିନୀ ତାଙ୍କ ପାଖକୁ ଯାଇ ଲକ୍ଷ୍ୟ କରିଛି, "ସ୍ୱାମୀଜୀଙ୍କ ମୁହଁରେ ସବୁଠାରୁ ଦର୍ଶନୀୟ ବସ୍ତୁ ହେଉଛି ତାଙ୍କର ଆଖି ଦୁଇଟି, ଯାହା ଥର ଥର କରି ସମସ୍ତଙ୍କ ଆଖିରେ ମିଳୁ ଥିଲା, ଅନ୍ୟ କାହାରି ହୋଇଥିଲେ ହୁଏତ ତାକୁ ଲୋଲୁପ ବା ଲମ୍ପଟ କୁହାଯାଇଥାଆନ୍ତା, କିନ୍ତୁ ଜଣେ ସ୍ୱାମୀଜୀଙ୍କ ମୁହଁରେ ଥିବାରୁ ତାକୁ ମର୍ମଭେଦୀ ବା ସମ୍ମୋହକ ବୋଲି ମାନିବାକୁ ହେଉଥିଲା ।"

ସ୍ୱାମୀଜୀଙ୍କ ସେଇ ସମ୍ମୋହନ ବଳରେ ରାଜ୍ୟର ମୁଖ୍ୟମନ୍ତ୍ରୀଙ୍କ ଠାରୁ ଆରମ୍ଭ କରି ବଡ଼ ବଡ଼ ଅଫିସର୍‌ମାନେ ତାଙ୍କ ପାଖକୁ ମନ୍ତ୍ର ନେବା ପାଇଁ ଆସୁଥିଲେ । ନିଜର ପ୍ରଭାବ ବିସ୍ତାର କରି ତାଙ୍କ ଧର୍ମସଭାକୁ ଆସୁଥିବା ନାରୀମାନଙ୍କୁ ଅନ୍ଧାରି ଘର ଭିତରକୁ ଡାକିନେଇ ସେ ମନ୍ତ୍ର ଦେଉଥିଲେ । ସୁହାସିନୀ ମଧ ଦିନେ ତାଙ୍କ ଠାରୁ ମନ୍ତ୍ର ଆଣିଲା । ନିଜ ହାତରୁ ପଟେ ସୁନାଚୁଡ଼ି ତାଙ୍କୁ ଦାନ କରିଦେଲା ଏବଂ ତା' ସହିତ ନିଜର ଶାରୀରିକ 'ସତୀତ୍ୱ' ମଧ- ତେବେ ତାହା ସମ୍ମୋହନ ଶକ୍ତି ଯୋଗୁଁ ନୁହେଁ- ସ୍ୱେଚ୍ଛାରେ । ତା'ର ସ୍ୱାମୀଙ୍କ ନାମରେ ଥିବା ଦୁର୍ନୀତି ଅଭିଯୋଗ ହଠାତ୍ ପ୍ରତ୍ୟାହୃତ ହେଲା । ପ୍ରତାରକ ସ୍ୱାମୀଜୀ ଚିଫ୍ ଇଞ୍ଜିନିୟର୍‌ଙ୍କ ଶାଳୀ ଓ ସଂଗୃହୀତ ସୁନା ଅଳଙ୍କାର ଧରି ଦିନେ ଅନ୍ତର୍ଦ୍ଧାନ ହୋଇଗଲେ । ପରେ ପୋଲିସ୍ ହାତରେ ଧରା ପଡ଼ିଲେ କିନ୍ତୁ ପ୍ରଭାକର ତାଙ୍କର ଅସଲି ସ୍ୱରୂପ ଜାଣିସାରିଲା ବେଳକୁ ତା' ସ୍ତ୍ରୀ ତାଙ୍କୁ ଯେଉଁ ସୁନାଚୁଡ଼ି ସ୍ୱେଚ୍ଛାରେ ଦାନ କରିଥିଲେ; ତାହା ଆଉ ଫେରସ୍ତ ମିଳିଲା ନାହିଁ । ସୁନାଚୁଡ଼ି ପଟକ ପାଇଁ ଅବଶୋଷ କରୁଥିବା ସ୍ୱାମୀଙ୍କୁ ସୁହାସିନୀ ସ୍ପଷ୍ଟ କହିଦେଲା- ତା'ର ଶରୀର ଭଳି ସେ ସୁନାଚୁଡ଼ି ସେ ବାପଘରୁ ଆଣିଥିଲା । ସେଥିରେ ତାଙ୍କର କଳାଧନର ଖାଦ ସୁଦ୍ଧା ମିଶି ନଥିଲା, ତେଣୁ ସେ ସବୁ କାହାକୁ ଦାନ କରିବା ନ କରିବା ଥିଲା ତା'ର ସଂପୂର୍ଣ୍ଣ ଇଚ୍ଛାଧୀନ !

ଅସତ୍ ଉପାୟରେ ସୁଖୀ ହେବାର ପ୍ରଲୋଭନ କିପରି ଆମ ସାମାଜିକ ଓ ପାରିବାରିକ ଜୀବନକୁ ଅବକ୍ଷୟମୁଖୀ କରିଦେଇଛି- 'ମନ୍ତ୍ର' ତା'ର ଉଜ୍ଜ୍ୱଳ ଉଦାହରଣ ।

ସ୍ୱାଧୀନତା ପରବର୍ତ୍ତୀ କାଳରେ ଆମର ସାମାଜିକ, ରାଜନୈତିକ, ପାରିବାରିକ ଜୀବନରେ ଏବଂ ଅର୍ଥନୈତିକ କ୍ଷେତ୍ରରେ ଯେଉଁସବୁ ପରିବର୍ତ୍ତନ ଘଟିଯାଇଛି; ବହୁ ପ୍ରବୀଣ ଓ ତରୁଣ କଥାଶିଳ୍ପୀମାନଙ୍କ ଗଳ୍ପରେ ଅଙ୍କିତ ହୋଇରହିଛି ତାର ଆଲେଖ୍ୟ । ଏହି ସଂକଳନ ପାଇଁ ଗଳ୍ପଚୟନ କଲାବେଳେ ସେହି ସମାଜ ବାସ୍ତବତା ପ୍ରତି ମୁଁ ଅଧିକ ଧ୍ୟାନ ଦେଇଛି ।

ଆଧୁନିକ ଓଡ଼ିଆ ସାହିତ୍ୟରେ କ୍ଷୁଦ୍ର ଗଳ୍ପ ଅତ୍ୟନ୍ତ ସମୃଦ୍ଧ । ଗତ ଦୁଇ ଦଶକ ମଧରେ ବହୁ ପ୍ରଚଣ୍ଡ ପ୍ରତିଭାଶାଳୀ ଲେଖକ ଲେଖିକାମାନଙ୍କର ଆବିର୍ଭାବ ଘଟିଛି; ଯେଉଁମାନେ ଓଡ଼ିଆ କ୍ଷୁଦ୍ର ଗଳ୍ପର ମୋଡ଼ ବଦଳାଇ ଦେଇଛନ୍ତି । ଖୁବ୍ ଇଚ୍ଛା ଥିଲେ ମଧ ସୀମିତ ପୃଷ୍ଠା ସଂଖ୍ୟା ମଧରେ ସେମାନଙ୍କ ମଧ୍ୟରୁ ସମସ୍ତଙ୍କୁ ଏହି ସଂକଳନରେ ସ୍ଥାନ ଦେବା ସମ୍ଭବ ହେଲା ନାହିଁ । ଆଶା କରୁଛି, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟର ପରବର୍ତ୍ତୀ ଗଳ୍ପ ସଂକଳନ ସେମାନଙ୍କ ଗଳ୍ପରେ ସୁସମୃଦ୍ଧ ହେବ ।

3 - ଏବ୍,ଲୁଇସ୍ ରୋଡ୍,
ଭୁବନେଶ୍ୱର -751 014

ବିଭୂତି ପଟ୍ଟନାୟକ

# ଚାଉଳ

**ବସନ୍ତ କୁମାର ଶତପଥୀ**

ମାତ୍ର ଆଉ ଗୋଟାଏ ହପ୍ତା, ସାତୁଟା ଦିନ; ଅତି ବେଶି ହେଲେ ଆଠଦଶ ଦିନ । ଟାଣିଓଟାରି କଷ୍ଟେମଷ୍ଟେ ଏତେଦିନ ବଞ୍ଚାଇ ଆଣିଲା; କୌଣସିମତେ ଆଉ କେତୁଟା ଦିନ ସମ୍ଭାଳି ପାରିବ ନାହିଁ ? ବଡ଼ ହୁଏତ ବଞ୍ଚିଯିବ, ତିଷ୍ଠିଯିବ; କିନ୍ତୁ ସାନ.... କେଜାଣି ? ଦୁଇଟଙ୍କା ସତୁରି ଦେଇ ବ୍ଲେକ୍‌ରେ କିଣା ପୋକା, ପୋଚରା ଅଟାପାଣି ପିଇ କେତେ ଦିନ ବଞ୍ଚିବ ? ବୃକୁଳା ବାହାରି ପଡ଼ିଲାଣି । ଗାଲ ପାଦ ଫୁଲା ଫୁଲା ଦିଶିଲାଣି ।

ଠିକ୍ ସମୟରେ ପଇସା ଯୋଗାଡ଼ କରି ପାରିଥିଲେ ଲକ୍ଷ୍ମୀପ୍ରିୟା ହୁଏତ ଲଘୁଧାନ ତଳି ପାଇଥାନ୍ତା । ଶେଷ କାର୍ତ୍ତିକ ନହେଲେ ବି ଆଦ୍ୟ ମଗୁଶିର ବେଳକୁ କାଟିଥାନ୍ତା । କିନ୍ତୁ କପାଳ ଖରାପ ପଡ଼ିଛି, ତଳି ମିଳିଲା ନାହିଁ, ଯାହା ମିଳିଲା ତାହା ବଡଣା ପଡ଼ିଗଲା । କେଣ୍ଡାର ଅଗଧାନ ଗୋଟାଏ ଦୁଇଟା ରଙ୍ଗ ହୋଇଛି ସିନା, ହେଲେ କେରାର ତଳ ବାରପଣି ବିଲ୍‌କୁଲ୍ କଞ୍ଚା, ଦାନା ବାନ୍ଧିଛି କି ନାହିଁ ସନ୍ଦେହ ।

ପୁଣି ଯାହା ଉପରେ ଆଶା ବାନ୍ଧିଚି ତାହା ବା କେତେ ? ମାଣେ ଦୁଇମାଣ ନୁହେଁ; ନିଜର ବି ନୁହେଁ । ସଡ଼କ କର ଛୋଟ ଛୋଟ ଚାରିଟା କିଆରି । ହଳପାନ ନାହିଁ । ଗୋଡ଼ରେ ମାଡ଼ି ନିଜ ହାତରେ ରୁଆ । ପିଲାମାନଙ୍କ ବାପା ଦାଦି କାହାକୁ କେତୁଟା ପାନଖିଆ ଦେଇ ପାଞ୍ଚବର୍ଷ ପୂର୍ବେ ଆବାଦ କରିଥିଲେ । ଯିଏ ବେଶୀ ଟଙ୍କା ଦେଲା ଏ ଜମି ତା'ର; ପୁଣି ଏବର୍ଷ ଅଛି ତ ଆରବର୍ଷ ଆଉ ଜଣକର । ବାପା ଦାଦି ଯିବାପରେ ବି ବର୍ଷକୁ ବର୍ଷ ଯାକୁତାକୁ ଦୁଇଟା ଗୋଟେ ଟଙ୍କା ଲାଞ୍ଚ ଦେଇ ସେ ଓ ତମିନାନୀ ଦଖଲ କରୁଛନ୍ତି ।

ବାପାଦାଦି ଥିଲାବେଳେ ଦୁଃଖକଷ୍ଟ ଜଣା ପଡୁ ନଥିଲା । କଲିକତାରେ ଦୁହେଁ କାମ କରୁଥିଲେ; ଜାହାଜରେ କି ଚଟକଲରେ କିବା ପାଣିକଳରେ । ଏକାବେଳେ ଦୁହେଁଯାକ ଅଘଟଣରେ କି ଦଙ୍ଗା ହେଙ୍ଗାମରେ ଗଲେ ଯେ କିଛି ଖବର ମିଳିଲାନି । ନିଜ ଦେଶରେ କାମଧନ୍ଦା ମିଳୁଥିଲେ ବା ବନବତାସି ଆସୁ ନଥିଲେ ସେମାନେ କ'ଣ ବାଉଦପୁର ଛାଡ଼ି ପିତଳକଣ୍ଡୀକୁ ଆସିଥାନ୍ତେ ଏଇ କାଙ୍ଗାଳ ଇଲାକାଟାକୁ ?

କି କାଳ ପଡ଼ିଲା ! ଆଈମା ଗପୁଥିଲା ନଅଙ୍କ ବେଳେ କୁଆଡ଼େ ଟଙ୍କାକୁ ଚାରିସେର ଚାଉଳ ହେଲା ଯେ ଲୋକେ କିଣି ନପାରି ଭୋକ ଉପାସରେ ମାଳ ମାଳ ହୋଇ ମଲେ । ନିଜ ମାଆ ମୁହଁରୁ ମାଳିକା ବଚନ ଶୁଣିଛି, ''ଟଙ୍କାକୁ ହୋଇବ ସେରେ ଚାଉଳ'' । ସେତେବେଳର କେଡ଼େ ଭୟାବହ ବଚନ ! ମାଳିକା କଥା ସତ ହୋଇ ଭଲା ଟଙ୍କାକୁ ସେଇ ସେରେ ଚାଉଳ ମିଳୁଥାନ୍ତା । ଚାରି ଟଙ୍କାକୁ ତ ସେରେ ମିଳୁନି । ତା' କାନ ଶୁଣିଛି, ଆଖି ବି ଦେଖିଲାଣି, ମହା ମହା ଲୋକେ ଟଙ୍କା ମୁଣ୍ଡତଳେ ଗୁଞ୍ଜି, ହାତରେ ମୁଠାଇ, ଭୋକ ଉପାସରେ ଶୋଇ ଯାଉଛନ୍ତି । ଗୋରୁଗାଈ, ଛେଳିମେଣ୍ଢା, କଂସା ପିତଳ, ଗହଣା-ଗଣ୍ଠି କଥା ଛାଡ଼, ପୋଷି ନପାରି ନିଜ ଛୁଆ ପିଲାଙ୍କୁ ବି ବିକୁଛନ୍ତି । କିଣୁଛି ବା

କିଏ ? ଅଖାଦ୍ୟ ଖାଇ ମରୁଛନ୍ତି; ଏ ବା ବିଷ ଦେଇ ଆଗ ଛୁଆପିଲାଙ୍କୁ ମାରି ନିଜେ ମରୁଛି । ତା'ରି ଭଳି ସ୍ତ୍ରୀଲୋକ ଡିହ ବିକ ହ ବିକୁଛନ୍ତି । ଖାଇବା ଚିଜ ଛଡ଼ା ଅନ୍ୟସବୁ ଦେଶରେ ମିଳୁଛି, ହୁଏତ ଶସ୍ତାରେ । ତା' କପାଳରେ କ'ଣ ଅଛି ବା କେଜାଣି । ପୁଣି ଲଞ୍ଜାତାରା କୁଆଡ଼େ ଉଠିବ ବୋଲି ଲୋକେ କୁହାକୁହି ହେଉଛନ୍ତି- ଏଇ ମାସକ ଭିତରେ ।

ଆଜି ମଙ୍ଗଳବାର । ପଅରି ଦିନକୁ ତିନିପାଳି ଗୁରୁବାର ପଡ଼ିବ । ଚାରିପାଳି ମାଣବସା । ଗୁରୁବାରକୁ ତା' ନିଜ ଧାନ ଅମଳ ହୋଇଥିବ । ନଡ଼ାଗୁଡ଼ାକ କଞ୍ଚା ଥିଲେ ସେ ଖାଲି ଶୀସାଗୁଡ଼ାକୁ କାଟି ଆଣି ମାଣ ପୂରାଇ ପୂଜା କରିବ । କିଣା ବା କରଜ ଚାଉଳରେ ଝୋଟି ଲେଖିବାକୁ ତାକୁ କିମିତି କିମିତି ଲାଗେ । ଗାଁ ସାହିରେ ବୁଲି ଆସିଲେ କଣାଟିଏ ଅରୁଆ ଚାଉଳ ମିଳିବ ନାହିଁ । ଦିନ ଥିଲା ସେ କାନ୍ଥରେ ଏତେ ସୁନ୍ଦର ପଦ୍ମଫୁଲ ଆଙ୍କୁଥିଲା ଯେ ଦାଣ୍ଡଗଲା ଲୋକ ବି ଦଣ୍ଡେ ଛିଡ଼ା ହୋଇ ଦେଖୁଥିଲା । ଅଗଣାରେ ଆଉ ଘର ଭିତରେ ଟିକି ଟିକି ଲକ୍ଷ୍ମୀ ପାଦ ଏତେ ସୁନ୍ଦର କରି ଲେଖୁଥିଲା ଯେ, ଲକ୍ଷ୍ମୀଦେବୀ ପାଦକୁ ପାଦ ମିଳାଇ ଦାଣ୍ଡପଟୁ ବାଡ଼ିପଟୁ ଅଧା ରାତିରେ ବିଜେ କରି ଆସୁଥିଲେ, ବର୍ଷଯାକ ନ ରହିଲେ ବି ତିନିଚାରି ମାସ ରହୁଥିଲେ ।

ଏ ପଟେ ସାଇପଡ଼ିଶା କେହି ମାଣବସା ଜାଣନ୍ତି ନାହିଁ । ଜାଣିଲେ ବି ମାନନ୍ତି ନାହିଁ । ତାଙ୍କର ଲକ୍ଷ୍ମୀପୂଜା କେଉଁଦିନରୁ ଗଲାଣି, ତାଙ୍କର ଝୋଟି ନାହିଁ, ଝୋଟିକି ସେମାନେ କହନ୍ତି ଆଲ୍ପନା । ତାଙ୍କର ଚିତଉ ଉଆଁସ, ଗହ୍ମାପୁନେଇ; ଖୁଦୁରୁକୁଣୀ, ରାସପୁନେଇ, ଅଗିରା ପୁନେଇ ଏସବୁ ବାରବ୍ରତ ପୂଜା ପାର୍ବଣ କିଛି ନାହିଁ । ତାଙ୍କର ସେଇ ଦୁଇଟା ପୂଜା- ମାଆର ପୂଜା ଆଉ କାଳୀପୂଜା । 'ଳ'କୁ 'ଲ' କହନ୍ତି 'ଣ'କୁ 'ନ' କହନ୍ତି ।

ତିନିଚାରି ପୁରୁଷ ଧରି ଘରେ ଜଗନ୍ନାଥ ଦାସଙ୍କ ଭାଗବତ, ବଳରାମଙ୍କ ରାମାୟଣ ଆଉ ସାରଳା ଦାସଙ୍କ ମହାଭାରତ ଗାଦି ପୂଜା ପାଉଛନ୍ତି । ଲକ୍ଷ୍ମୀପ୍ରିୟା ସେଇ ଗାଦି ଆଡ଼କୁ ଚାହିଁଲା । ସେଇ ଗାଦି ଆଉ ଲକ୍ଷ୍ମୀପେଡ଼ି ଆଉ ମାଣ ତା'ର ସବୁ ସମ୍ପତ୍ତି । ଲକ୍ଷ୍ମୀଙ୍କ ତିନି ଚାରିଘର ପିତଳ ହାତୀ ପୁରୁଷ ପୁରଷ ଧରି ସଞ୍ଚୟ ବାକ୍ସ କାମ କରୁଛନ୍ତି । ତା'ର ମନେ ପଡ଼ିଲା ଭା'ଗତ ବଚନ "ଅନ୍ନ ବିହୁନେ ହଂସ ହାନି ।" ସତକଥା । ଅନ୍ନ ନାହିଁ ତ ହଂସ ନାହିଁ । ଗହମରୁ କଣ ଅନ୍ନ ହୁଏ ? ହୁଏ ରୋଟି, ଚପାଟି, ପୁରୀ, ପରେଟା । ଏଇ ଅନ୍ନ ମୁଠିକ ପାଇଁ ଜଗା-ବଳିଆ ଦୁହେଁଯାକ କମ୍ ହଇରାଣ ହରକତ ନ ହୋଉଛନ୍ତି । ସେ ତ ଲକ୍ଷ୍ମୀପୁରାଣ କଥା, ଶେଷରେ ପରା ଦୁହେଁ ପେଟ ବିକଳରେ ଚଣ୍ଡାଳୁଣୀଟା ହାତରୁ ବି ଅନ୍ନ ଖାଇଗଲେ । ପେଟ କାନ୍ଦିଲେ ଜାତିପତି ମାନୁଛି କିଏ ? ଏଇ ଅନ୍ନର ମହତ୍ତ୍ୱ ଜାଣି ଜଗନ୍ନାଥ ଦୈନିକ ଷାଠିଏ ପଉଟି ଅନ୍ନ ଭୋଜନ କରୁଛନ୍ତି ବୋଲି ଆମ ଜାତିଭାଇ ଗର୍ବ କରନ୍ତି ।

ପ୍ରଭୁ ! ତୁମ କୁଣ୍ଡତଳେ ଲାଗିଥିବା ଅନ୍ନରୁ କଣିକାଏ କଣିକାଏ ଦେଲେ ତ- ସବୁଦିନ ନଦେଲ ନାହିଁ ସାତ ଦିନ ପାଇଁ ଦିଅ- ମୋ'କଥା ଛାଡ଼, ମୋ' କୁନା-ଟୁନା ତ ବଞ୍ଚିଯିବେ ପ୍ରଭୁ ! ଏ ତିରୋଟ ଦିନରେ କିଛି କମ୍ ଖାଅ, ଗରିବଗୁରୁବାଙ୍କୁ କିଛି ବାଣ୍ଟିଦିଅ । ଚକାଡୋଳା ! କଟିଛୁଆ ଯେ, ହାଡ଼କଣ୍ଟା ଅସ୍ଥି ଚର୍ମ ହେଲାଣି । ଏଇ କେତେବର୍ଷ ତଳେ ପ୍ରଭୋ ! ତୁମରି ପୁରୀ ଯାଜପୁର ଇଲାକାର ଲୋକେ ତୁମରି ନାଁ ଧରି 'ଜଗନ୍ନାଥେ ମଙ୍ଗଳ କରନ୍ତୁ', କହି ଥଳିକି ଥଳି ପୂରାଇ ଆମରି ଇଲାକାରୁ ଚାଉଳ ନେଇଯାଉଥିଲେ, ଏଥର ଆମେ ଥଳି ନେବୁ ? ଆମରି ଜାତିଭାଇଙ୍କ ପାଖରେ "ଜଗନ୍ନାଥେ ମଙ୍ଗଳ କରନ୍ତୁ" କହୁଛୁଁ, ମିଳୁ କିଛି । ଶ୍ରୀକ୍ଷେତ୍ର ଆଡ଼େ ଚାହିଁ ଲକ୍ଷ୍ମୀପ୍ରିୟା ନମସ୍କାର କଲା ହାତଯୋଡ଼ି ।

ସତରେ ଜଗନ୍ନାଥଙ୍କ ଦୟାର କ'ଣ ସୀମା ଅଛି ? ଚନ୍ଦନଅର୍ଗଳି ପାର ହୋଇ କିଏ ନଯାଇଛି ତାଙ୍କ ପାଖକୁ ଧଣ୍ଡା, ମହାପ୍ରସାଦ, ଚରଣୋଦକ ପାଇଁ ? କୁଷ୍ଠୀ ଦିନକୃଷ୍ଣ, ଯବନ ସାଲବେଗ. ଗରୁଡ଼ସ୍ତମ୍ଭ ପାଖରେ ଅଟକି ସୀମା ବାହାରେ ଥାଇ ବି ଯାହା ଚାହୁଁଥିଲେ ପାଇଛନ୍ତି । କିନ୍ତୁ ଗତ କେଇବର୍ଷ ହେଲା ମଣିଷ ଯେଉଁ ଅର୍ଗଳି କରିଛି ତାକୁ ପାରିହବ କିଏ ?

ପାର ହୋଇଥିଲା, ଭେଦିଥିଲା ତା' ଜାଆ ଚମ୍ପା, ଗାଁର ଚମ୍ପିନାନୀ, ଅକ୍ଲେଶରେ ସେ ଅର୍ଗଳି, ବାଡ଼ବନ୍ଧ, ଧଡ଼ା ଡେଇଁ ଗଳି ପାରିହୋଇ ଜଗାବଳିଆ ଦେଶକୁ ଯାଉଥିଲା । ଗଣ୍ଠିରି ଗଣ୍ଠିରି ଚାଉଳ ଆଣୁଥିଲା । ତାକୁ ବିକିବାଗିଁ ସମସ୍ତେ ବସୁଥିଲେ, ସେ କ'ଣ ଏକା ? ଗାଁ ସାଇର ପଲ ପଲ ସ୍ତ୍ରୀରି ଛୁଆପିଲା ବି ତା' ସାଙ୍ଗରେ ଯାଇ ଆଣୁଥିଲେ ଚାଉଳ । ସେ ଥିଲା ସମସ୍ତଙ୍କର ନେତା । ସମସ୍ତଙ୍କ ଦେଇ କ'ଣ ସବୁକଥା ହୁଏ ?

କିନ୍ତୁ ଚମ୍ପିନାନୀ ଯେ ସାତଦିନ ହେବ ଗାଁକୁ ଫେରିନି । ଶୁଣାଶୁଣିରେ ସେ ଆଉ ଫେରିବ ନାହିଁ । ବାଲେଶ୍ବର ଷ୍ଟେସନ୍‌ରେ ରହିଗଲା । କଳରୁ ପାଣି ପିଇ ଫେରୁଥିଲା, ରେଳ ଛାଡ଼ିଦେଲା । ଚଳନ୍ତା ଗାଡ଼ିରେ ଚଢୁ ଚଢୁ ଗୋଡ଼ ଖସିଗଲା, ପଡ଼ିଗଲା, ଦୁଇଖଣ୍ଡ ହୋଇ କଟିଗଲା, ତା'ର ଛେଉଣ୍ଡ ଦୁଇପୁଅ ସାଙ୍ଗକୁ ନିଜର ଦୁଇ, ଟୁନା ଆଉ କୁନା, କାନ୍ଦି କାନ୍ଦି ଭୋକ ଉପାସରେ ଲହୁଲୁହ, ଶୁଖିଗଲାଣି- ତହଲବିକଳ ଦେଖିଲେ ମାଆ ଛାତି କ'ଣ ପଥର ବି ତରଳି ଯିବ । ତିନିମାସ ଧରି ଜାଆ ନିଜ ଛୁଆଙ୍କ ସାଥିରେ ତା' ଛୁଆଙ୍କୁ, ତାକୁ ବି ପୋଷିଥିଲା, ଗୋଟାଏ ଗୋଟାଏ ଦିନ ତାକୁ ଯୁଗ ପରି ଲାଗୁଛି ।

ତାକୁ ବି କ'ଣ ଜାଆର ରାହା ଧରିବାକୁ ପଡ଼ିବ ? ଆଉ ଅନ୍ୟ ଉପାୟ କ'ଣ ବା ଅଛି ? କି ଦୁଃଖ ! କି ବିଡ଼ମ୍ବନା ! ଦେଶକୁ ଭାଗ ଭାଗ କଲା କିଏ ? ଦୁଇଦେଶ ମଝିରେ ଗାର ଟାଣିଲା କେଉଁ ଲକ୍ଷ୍ମଣ ? ତିନିଗାର ନୁହେଁ, ମାତ୍ର ଗୋଟାଏ । ଏଇ ଯେ, ଗାଁର ଖଣ୍ଡେ ଦୂରରେ ସେଇ ଗାରଟା ! ଗାର ଉପରେ ସାକ୍ଷାତ୍ ଜଗନ୍ନାଥ ପରି ଖୁମ୍ବଟାଏ ରହିଛି । ସମିତି ଖଣ୍ଡେ ଦୂର ଛାଡ଼ି ଛାଡ଼ି ରହିଛନ୍ତି ବଳଭଦ୍ର, ସୁଭଦ୍ରା, ସୁଦର୍ଶନ । ଗାଁର ସୀମାସରହଦ୍ ଚିହ୍ନାଇ ଦେଉଛନ୍ତି ଦୁଇ ଦେଶର ଲୋକଙ୍କୁ । ସୀତା ଠାକୁରାଣୀ ସୁନା ହରିଣର ମାଂସର ଚମଡ଼ା ଲୋଭରେ ସ୍ୱାମୀଙ୍କି ବଣକୁ ପଠାଇ ନିଜେ ସବାଶେଷରେ ଏକା-ନିଃଶ୍ୱାସକେ ତିନିତିନିଟା ଗାର ଡେଇଁଗଲେ ! ତା'ର ତ ମାଂସ ଚମଡ଼ାକୁ ଲୋଭ ନାହିଁ । ମୁଠାଏ ଅନ୍ନ ପାଇଁ, ଛୁଆଙ୍କ ଜୀବନ ବଞ୍ଚାଇବା ପାଇଁ ସେ କଣ ଗୋଟିଏ ଗାର ଡେଇଁ ପାରିବ ନାହିଁ ?

ଗାଁର ଆରପାଖେ ଖଣ୍ଡେ ଦୂରରେ ଟଙ୍କାଏ ସତୁରି କି, ଏଠି ଚାରି ଟଙ୍କା ସତୁରି । ପିତଳକଣ୍ଠା ଗାଁର ପର୍ଣ୍ଣକୁଡ଼ିଆରୁ ବାହାରି ସେ ଯେବେ ଡାକେ- ବାଟରେ ପଡ଼ିଥିବା ଗାର ଡେଇଁଯାଏ ତେବେ, କେଉଁ ରାକ୍ଷସ ରାବଣ ମାୟାବୀ ତପସ୍ୱୀ ବେଶ ଧରି ତାକୁ ଶୂନ୍ୟ ମାର୍ଗରେ ଉଡ଼ାଇ ନବ ନାହିଁତ ! କିନ୍ତୁ ସେ କ'ଣ ନିଜ ପାଇଁ ସୁଖ ଲୋଡୁଛି ? ନିଜେ ମରୁ ପଛକେ ଛୁଆମାନଙ୍କୁ ବଞ୍ଚାଇବାକୁ ହେବ । ସେଇ ଛୁଆମାନଙ୍କ ପାଇଁ ତ ଜାଆ ମଲା- କମ୍ ଲାଞ୍ଛନା; କଦର୍ଥନା ସେ ସହିଛି ! ତା ଛୁଆଙ୍କୁ ମୋ ଛୁଆଙ୍କୁ ବଞ୍ଚାଇବାକୁ ଯାଇ ଦିହ ବି ବିକିଲା, ଶେଷରେ ମଲା ବି ।

ଯେଡ଼େ ବିପତ୍ତି ପଡୁନା କାହିଁକି ଲକ୍ଷ୍ମୀପ୍ରିୟା ଯିବ, ଘରୁ ଗୋଡ଼ କାଢ଼ି ତା ଚମ୍ପିନାନୀ ଯେଉଁ ରାସ୍ତାରେ ଯାଇଥିଲା, ଅଗମ୍ୟକୁ ଦୁର୍ଗମକୁ ସହଜଗମ୍ୟ କରିଥିଲା । ସେ କ'ଣ ବିଦେଶକୁ ଯାଇଛି କି ? ସେଇ ଜଗନ୍ନାଥ ରାସ୍ତା ଏଇଠୁ ତ ଡୋରି ପରି ଲମ୍ବିଯାଇଛି ପୁରୀ ଧାମଯାକେ । ସେଇଠି ଭଦ୍ରକ ଆରପାରି ବାଉଦପୁରରେ ତା ଜ୍ଞାତିକୁଟୁମ୍ବ ଏବେ ବି କ'ଣ ନାହାନ୍ତି ? ଜଗନ୍ନାଥଙ୍କ ମହାପ୍ରସାଦ ହାଣ୍ଡିରୁ ମାତ୍ର କେଇବର୍ଷ ପୂର୍ବେ ସମସ୍ତେ ତ ଏକାଠି ବସି ଖାଇଥିଲେ କାମରୂପରୁ କାଞ୍ଚି ପର୍ଯ୍ୟନ୍ତ । ସେତେବେଳେ

କଣ ଗାର ନଥିଲା ? ଏ ନୂଆ ଗାର ଟାଣି ନିଜକୁ ପର, ନିଜ ଦେଶକୁ ପରଦେଶ କଲା କିଏ ? ସେ ଯିବ, ଯିବ, ଯିବ ।

କିନ୍ତୁ ଏ ପ୍ରାନ୍ତରେ ଜନମତ ହିଂସ୍ର ଭାବରେ ଜାଗ୍ରତ । ଜନତା ଯେକୌଣସି ଦୁଷ୍କର୍ମ କରିବାକୁ ଉଦ୍ୟତ । ଭାରତର ଭାତହାଣ୍ଡି ନ ହେଲା ଓଡ଼ିଶାର ଭାତ ହାଣ୍ଡିଟି ଶୂନ୍ୟ ହେବା ଉପରେ । ପିମ୍ପୁଡ଼ି ଚାପୁଡ଼ା ଧାଡ଼ି ଧରିଲେ ଗୁଡ଼କୁନ୍ଦା ବି ଏକା ରାତିକେ ଶେଷ । ପୁଣି ସେଇ ଭାତହାଣ୍ଡି ବଙ୍ଗୋପସାଗରକୁ ଭାସିଯିବା ବିଚିତ୍ର ନୁହେଁ । ଯେଉଁ କେତୁଟା ଅନ୍ନ ତଳରେ ଲାଗିଛି, ତାକୁ ବି ଏଣୁତେଣୁ କୁଆକୁକୁର ଉଡ଼ିଆସି ଖାଇବାକୁ ଲାଗି ପଡ଼ିଲେଣି । ସେଗୁଡ଼ାକୁ ମାରି, ଘଉଡ଼ାଅ- ବାଟୁଳି, ଧନୁଶର, ବନ୍ଧୁକ ମୁନ ଏମିତି କି ଗୁଳିରେ । ଜାତି ଓ ଜାତୀୟତା ଆଜି ଜାଗ୍ରତ ଅଭାବନୀୟ ଉଗ୍ରତାରେ ।

ସରକାର, ନେତା, ଜନତା, ଛାତ୍ର, ରେଡ଼ିଓ, ଖବରକାଗଜ ସମସ୍ତେ ସର୍ବତ୍ର ଆଜି ସଚେତ, ସକ୍ରିୟ । ଯାହା ହେଲା ହେଲା, ଆଉ ବରଦାସ୍ତ କରାଯିବ ନାହିଁ, ଆମେ ମରିଯିବା ଯେ ପରକୁ ବଞ୍ଚାଇବାକୁ ଯାଇ । ଟ୍ରେନ୍, ବାସ୍, ଟେକ୍ସି, ବୋଟ୍, ଡଙ୍ଗା, ବଳଦଗାଡ଼ି କାହିଁରେ କାହାକୁ ମୁଠାଏ ଚାଉଳ ଗାଁର ଏପାରିରୁ ସେପାରିକି ନବାକୁ ଦିଆଯିବ ନାହିଁ, ଚୁଡ଼ା, ମୁଢ଼ି, ଖଇ, ଏପରିକି ଛତୁ ଆକାରରେ । ସର୍ବତ୍ର ଧର ଧର ମାର ମାର ଡାକ, ଏଁ ଏଁ ମେଁ ମେଁ ଆର୍ତ୍ତନାଦ, କରୁଣ ଚିତ୍କାର । କିନ୍ତୁ ଚାଉଳ ଚାଲିଯାଉଛି । କେଉଁଠି କେତେ ଶହ ବସ୍ତା କିଏ ଧରିଛି ବାରମ୍ବାର ରେଡ଼ିଓ କହିଚାଲିଛି, ସ୍କୁଲ୍-କଲେଜ ପିଲାଏ ପାଠଛାଡ଼ି ଚାଉଳ ଧରୁଛନ୍ତି; ଚୋରି ଡକାୟତି ନଧରି ଚୋରାଚାଲାଣ ଧରୁଛନ୍ତି ଧାନସଂଗ୍ରହ କାମ ଛାଡ଼ି ଏଫ୍.ସି.ଆଇ. ସିଭିଲ୍ ସପ୍ଲାଇବାଲା ଚାଉଳ ଧରୁଛନ୍ତି । ଲୋକଙ୍କ ପେଟକୁ ଚାଉଳ ନପଶି ମୁଣ୍ଡକୁ ପଶିଛି । କିଏ ଯେ କିପାଇଁ ଧରୁଛି ସେ କଥା କିଏ କହିବ ?

ଯାହା ହେଉ, ଜିଲ୍ଲା ଜିଲ୍ଲାକୁ ଅର୍ଗଳି, ଥାନା ଥାନାକୁ ଚେକ୍‌ପୋଷ୍ଟ, ରାସ୍ତା ରାସ୍ତାକୁ ଅକଟ୍ରାଇ ଧଡ଼ା । ହେଲେ ବୁଭୁକ୍ଷ ଜନତା ସମୁଦ୍ରକୁ ବାଡବତା ଦବ କିଏ ? କେଉଁ ବନ୍ଧବାଡ ବଳଙ୍ଗ ସୁବର୍ଣ୍ଣରେଖା ବନ୍ୟାକୁ ରୋକି ପାରିଲା ? ଇଆଡେ ବନ୍ଧ ବାନ୍ଧିଲେ ସିଆଡେ ବନ୍ଧ ଭାଙ୍ଗିଲା । ଦାପ ପୁଅ ରାତିଯାକ ଉଜାଗର, ମୁଗୁରା ମୁହଁ ଡେଣେ.. ।

ଧାନ ଚାଉଳର ସରକାରୀ କିଣା ଦର ଯେତେ ବୃଦ୍ଧି କଲେ ବି ଚୋରା ଚାଲାଣ ରୋକିବା ମୂଢ ପ୍ରୟାସ । ଜନମତ ତଥା ସରକାରୀ ପ୍ରଚେଷ୍ଟା ଯେତେ ଟାଣୁଆ, ଚୋରାଚାଲଣକାରୀଙ୍କ ମେଣ୍ଢ ଓ ବୁଦ୍ଧି କଉଶଳର ଉଦ୍ଭାବନ ଓ ପ୍ରୟୋଗ ସେତେ ବିଚକ୍ଷଣ ଓ ଚମତ୍କାର । ଏ ଚକ୍ରବ୍ୟୂହ ଅଭିମନ୍ୟୁ ଅବା ଭେଦ କରି ପାରନ୍ତା, ସୁଭଦ୍ରା କଣ ପାରିବ ?

ଚର୍ମିନାନୀ ଭେଦ କରିଥିଲା, ବାରମ୍ବାର ଫେରୁଥିଲା ବିଜୟିନୀ ବେଶରେ ସପ୍ତରଥୀ (ସୁପ୍ତରଥୀ) ଙ୍କି ପରାଭୂତ କରି । ସେ ଦିନେ ଦିନେ ତାର ରୋମାଞ୍ଚକର ଅଭିଜ୍ଞତା ବର୍ଣ୍ଣନା କରେ । ଭାରି ଗପୁଡୀ । କୁହେ, କିମିତି ଭୋର ସକାଳୁ ବାହାରି ଦୁଇକୋଶ ଗଲେ ନେକୁରୁଣୁଣୀ ବୋଲି ଗୋଟାଏ ଟେସନ ପଡେ । ହେଇଠି ରେଲ, ବିନା ଟିକେଟରେ ଚଢ଼ି ହୁଏ । ଆମରି ସରକାର, ଆମରି ରେଳ ଟିକେଟ କି ଦରକାର ? କେହି ଟିକଟ କାଟଚି ନାହିଁ । ଭାରି ବଢ଼ିଆ ରେଳ, ସେଇଥିପାଇଁ ଖୁବ୍ ବେଶୀ ଭିଡ । ସବୁ ଚିଜ ମିଳେ, ଭିତରେ ଦୋକାନ ବଜାର ସବୁ ଅଛି । ଘୋଳ ସରବତ ମିଳେ, କଳଚୂଲି ରଖି ଲୋକ ଚା ବିକନ୍ତି । ମୁଢି, ବରା, ଘୁଘୁନି, ଫଳମୂଳ, ପାନବିଡ଼ି ଯାହା ଖୋଜିବ ପାଇବ । ନାଚ କୀର୍ତ୍ତନ ବି ହୁଏ । ଦାସକାଠିଆ, ବାଇନାଚ, ନାନା ମଉଜ ମଜଲିସ୍‌ର ଗାଡିଟା । ଛୋଟା ଅନ୍ଧ କୁଷ୍ଠ ରୋଗୀ ସମସ୍ତେ ଖୁସିରେ ନାଚିକୁଦି ଯାଉପାରନ୍ତି । ସମସ୍ତେ ସମାନ, କେହି କାହାର ମାଲିକ ନାହିଁ । ଦେଶଯାକର ଲୋକ ଚାଲିଛନ୍ତି ଯିମିତି ସେ ଗାଡିଟାରେ । ସମସ୍ତେ ସ୍ୱାଧୀନ । ଯେଉଁଠି ଇଚ୍ଛା

ଛିଡା କରାଅ । କାମ ସାରି ଫେର୍ ଚଲାଅ । ଏସବୁ ବର୍ଣ୍ଣନା ଦେଇ ଚମ୍ପିନାନୀ କୁହେ, 'ଦେଖ, ରେଳ ସମସ୍ତଙ୍କର, ଏ ପାଖ ରେଳ ସେ ପାଖକୁ, ସେ ପାଖ ରେଳ ଏ ପାଖକୁ ଯା ଆସ କରୁଛି, ହେଲେ ସେ ପାଖ ଚାଉଳ ଏ ପାଖକୁ ଆସି ପାରିବ ନାହିଁ ।

''ଚମ୍ପିନାନୀର କି ବୁଦ୍ଧି ! କେତେ ଗିଆନ ! କେତେ ଉଆଜିବ୍ କଥା, ଖାଣ୍ଟି କଥା କହେ ।'' କିଏ ଜଣେ ଶ୍ରୋତା ମନ୍ତବ୍ୟ କରେ ।

ଗପର ଖିଅ ଧରି ଚମ୍ପିନାନୀ କୁହେ ''ଚାରି ଛଅ ଘଡିବେଳକୁ ବାଲେଶ୍ୱର । ଏଡେବଡ ଟେସନ ପୃଥିବୀରେ ନ ଥିବ, କଲିକତା ପରି ବଡ ସହର କେଜାଣି । ଇଞ୍ଜିନ ଏଇଠି ପାଣିପିଏ । ଟେସନ ପହୁଞ୍ଚିବା ପୂର୍ବରୁ କିନ୍ତୁ ରେଳ ବଜାର ପାଖରେ ଠିଆ ହୁଏ । କୋର୍ଟ କଚେରୀ ପାଖରେ । ଲୋକେ ଧାଁ ଦଉଡ କରି ମାଲି ମୋକଦ୍ଦମା କରନ୍ତି । ବଡ ବଡ ଇସ୍କୁଲ ବି ସେଇଠି । ଥରେ ମୁଁ ଦୁଇଜଣ ପିଲାଙ୍କୁ ଦେଖିଥିଲି । ଝିଅଙ୍କ ପରି ଚୁଳ । କୁରାଡି ପରି କଲି ଆଉ ଫୁଲ ପକା ଶାର୍ଟ । ଲୋକେ କୁହାକୁହି ହେଉଥିଲେ, ସେମାନେ କୁଆଡେ ଯାତ୍ରୀଙ୍କ ଡରାଇ ହଲାଇ ପଇସା ନିଅନ୍ତି । ସେଇ ପଇସାରେ ପାଖ ବଜାରରୁ ଚାଉଳ କିଣି ଆମରି ଗାଡିରେ ଜଳେଶ୍ୱର ପାଖ ଷ୍ଟେସନକୁ ଆସନ୍ତି, ଚାଉଳ ଚଢା ଦରରେ ବିକି ଫେରି ଯାଆନ୍ତି । ଥରକୁ ପଚାଶ ଶହେ ପାଇଯାନ୍ତି ।''

''ଲାଭ କ'ଣ ପା'ନ୍ତି ?''

''ଲାଭ ! ଯାହା ମିଳିଲା, ଖାଆନ୍ତି, ପିଅନ୍ତି, ଦେଖନ୍ତି । ତାଙ୍କର ଦଳ ଅଛି । ଥରେ ମୁଁ ଦୁଇଜଣ ବଜାରୁଣୀ ଝିଅଙ୍କ ସାଙ୍ଗରେ ସେ ଦୁଇଜଣଙ୍କୁ ଯିବାର ଦେଖିଛି ।''

''କ'ଣ ଯେ କୁହେ ନାନୀ !'' ଲକ୍ଷ୍ମୀ କୁହେ ।

''ଏଇ ବାଲେଶ୍ୱର ଟେସନ ଅସଲ ଟେସନ । ଏଇଠି ଅସଲ ଚିଜ ମିଳେ । ବଡ ପାଣିଟାଙ୍କି ପାଖରେ ଯେଉଁ ଭଙ୍ଗା ରେଳଡବା ଅଛି ତାରି ଭିତରେ ଗୁଡାଏ ଭିଖାରି, କୁଷ୍ଠରୋଗୀ ଥାଆନ୍ତି । ସେମାନେ ବୁଲାବିକାଳି ବି, ଚୋର ବି । ରେଳ ଠିଆ ହେଲେ ଲୋକେ ତାଙ୍କ ପାଖକୁ ଦଉଡନ୍ତି । ନାନା ସାଇଜର ଛିଣ୍ଡା କନା, ଅଖାପଟର ଥଳି । ଅଧକିଲିଆରୁ ପାଞ୍ଚକିଲିଆ ପର୍ଯ୍ୟନ୍ତ । ମୁଁ ମୋ ପେଟ ପାଇଁ ପାଞ୍ଚ-କିଲିଆ ଓ ଛାତିପାଇଁ ଦୁଇଟା କିଲିକିଆ ଥଳି କିଣିଲି ଟଙ୍କାକରେ ।''

''ନାଜ ନାଇଁ ଚମ୍ପି ନାନୀର'' କୃତ୍ତିବାସ ମାଇତିର ସ୍ତ୍ରୀ ମନ୍ତବ୍ୟ ଦେଲା ।

ଚମ୍ପି ନାନୀର ସମଧର୍ମୀ ପ୍ରୌଢା଼ଟିଏ ତା କଥାର ଜବାବରେ କହିଲା, ''ଆଲୋ, ଅଭାବରେ ସ୍ୱଭାବ ନଷ୍ଟ । ପଡିକାର୍ଡରେ ତିନି ଜାଗରେ ତେର ଲେଖାଇ ଥଳିକି ଥଳି ଚାଉଳ ଶନିବାରକୁ ଶନିବାର କୃତିଆ କଣ୍ଟାଇରୁ ଆଣୁଛି ବୋଲି ତୋର ନାଜସରମ ବେଶୀ ହେଉଛି ।''

''ତା କଥାକୁ କାହିଁକି କାନ ଦଉଛ ? ଆଛା ନାନୀ ! ତୁମେ ତେବେ ସେଇ ବାଲେଶ୍ୱରରୁ ଚାଉଳ ଆଣ ?''

''ନା, ବାଲେଶ୍ୱରବାଲାଏଁ ଶହ ଶହ ସାଇକେଲ ପଠାଇ ଯେଉଁଠୁ ଆଣନ୍ତି ଆମେ ସେଇଠୁଁ ଆଣୁ । ସେଠି ଚାଳିଶ ପଚାଶ ପଇସା ଶସ୍ତାରେ ମିଳେ । ଆମେ ଆଣୁ ଗୋଟାଏ ସାନ ସହରଭଳି ଜାଗାରୁ । ସେଠି ପୂର୍ବେ ବୀରମାନେ ଥିଲେ-କୁଆଡେ ମୋଗଲ ବର୍ଗୀମାନଙ୍କ ସହିତ ଯୁଝୁଥିଲେ । ଏବକୁ ଖଣ୍ଡା ଖଡଗ ଛାଡି ଲଙ୍ଗଳ ଧରି ବହୁତ ଧାନ ଅମଳ କରୁଛନ୍ତି । ଫେର୍ ତାଙ୍କ ହାଟକୁ ପାହାଡପାଖ ମଫସଲ ଗାଁରୁ ଶଗଡ ଶଗଡ ଚାଉଳ ଆସେ । ପାଟଣି ବୋଲି ଗୋଟାଏ ଚାଉଳ ମିଳେ-ଯବେ ଲମ୍ବା, ମାଛକଣ୍ଟା ବୋଲି ଆଉ ଗୋଟାଏ ଚାଉଳ ଏତେ ସରୁ ଯେ ଆଖିକି ଦିଶିବ ନାହିଁ । ଆମେ

କ୍ଷେପା ନ ହେଲେ ଲୁଡିଆ ଧାନର ଚାଉଳ ଆଣୁ, ମୋଟା ବଗଡା ।''

''ଷ୍ଟେସନ୍‌ରେ ଚାଉଳ ମିଳେ ?''

'ଟେସନ ପାଖରୁ ଖଣ୍ଡେଦୁର ଗଲେ ମହାଜନ ଅଛନ୍ତି, ଭାରି ଭଲ ଜାଗା, ଭାରି ଲୋକ । ଟେସନରୁ ଓହ୍ଲାଇଲାବେଳକୁ ଲୋକ ଆସି ବାଟ କଢାଇ ନେଇଯିବେ ଠିକଣା ଜାଗାକୁ, ଯେତେ ନବ ନିଅ, ଦଶଘଡି ବେଳକୁ ଟେସନରେ ପହଞ୍ଚିଲ, ତିନିପହର ବେଳକୁ ସେଇ ରେଳ ଫେରି ଆସିବ । ଚାଉଳ କିଣିବାକୁ ବେଳ ଢେର । ଚାଉଳ ଧରି ଷ୍ଟେସନକୁ ପୁଣି ଫେରିଲ, ସେଇଠି ପାଣିକଳରେ ଗାଧୁଆ ପାଧୁଆ କଲ, ରେଳଷ୍ଟେସନ ବାଡରେ ଲୁଗା ଶୁଖାଇଲ, ଏଥର ରୋଷେଇ କର । କାଲି ଯେଉଁମାନେ ରାନ୍ଧିଥିଲେ ତାଙ୍କରି ତିଆରି ଅଧାପୋଡା ଚୁଲି ଆଉ ଦରଜଳା ଅମରୀକାଠ ପଡିଛି । ମୁଠେ ଫୁଟାଅ, ଖାଇସାରିଲା ବେଳକୁ ଶୁଭିବ କୁଉଉଉଉ । ମାଛ ବି ବହୁତ ଶସ୍ତା, ଟିକିଏ ପଚିଥିବା ଇଲିସି କିଲ ଦୁଇଟଙ୍କା । ଚମ୍ପି ନାନୀର ପଦ ପଦ କଥା ଲକ୍ଷ୍ମୀପ୍ରିୟା ଶୁଣୁଥାଏ । ସେଇ ନାନୀ ତା'ର ଅନ୍ନଦାତ୍ରୀ । ନାନୀର ପ୍ରଗଳ୍‌ଭତା, ରସିକତା, ଫୁଟାଣି ସବୁଦୋଷ ସେ ମାର୍ଜନା କରେ । ଗପ ମଝିରେ ମଝିରେ ଉଠିଯାଇ ଘରକାମ କରେ । ନାନୀକି ଘରକାମ କରିବାକୁ ଦିଏନାହିଁ ।

ଫେରିବା ବେଳର ନାନା ଘଟଣା ଉପାଖ୍ୟାନ କହୁ କହୁ ସେ କୁହେ, କେତେ କ'ଣ କାହାକୁ ଦବାକୁ ପଡେ । ବଡ ବଡ ପଢୁଆ ପିଲାଏ ନାଚତାମସା, ଯାତ୍ରା ସୁଆଙ୍ଗ କରିବେ ବୋଲି ଚାନ୍ଦା ମାଗନ୍ତି । ବଜାରର ଟୋକାଏ ବି ଦଳବାନ୍ଧି କାଳୀପୂଜା, ଜଗଦ୍ଧାତ୍ରୀ ପୂଜା କରିବେ ବୋଲି ଚାନ୍ଦା ନିଅନ୍ତି । ଓଡିଆ ଦେଶରେ ଅନେକ ଠାକୁର, ଜଣକର ପୂଜା ଉଣା ହେଲେ ଚାଉଳ ଉଭେଇଯିବ । ଏ ପ୍ରସଙ୍ଗରେ ସେ କୁହେ ଜଣେ ବୁଢା ପଏଣ୍ଟମେନ୍ କଥା । ଦିନେ ସେ ବୁଢା ଅଥର୍ବ ଦେଖିଲା ଯେ ସମସ୍ତେ କିଛି ପାଇଲେ । ସେ ଆସି ଚମ୍ପି ପାଖରେ କହିଲା, ''ଦେ, ଦେ, ଚାନ୍ଦା ଦେ'' । ଚମ୍ପି ପଚାରିଲା 'କି ଚାନ୍ଦା' ସେ କହିଲା 'ଗଣେଶ ପୂଜା' ''ଗଣେଶପୂଜା ତ କେତେ ଦିନୁ ଗଲାଣି ।'' ବୁଢା କହିଲା, ''ନାଇଁମ, ଭୁଲ କହିଲି, ରଥ ଚାନ୍ଦା'', ଯାହାକୁ ଦଣ୍ଡେ ଆଗରୁ ଚାନ୍ଦା ଦେଇଥିଲା ସେଇ ପଏଣ୍ଟମେନ୍‌କୁ ଚମ୍ପି ପଚାରିଲା 'ଏ କି ଜାତିର ଲୋକ ?' ଉତ୍ତର ଆସିଲା ''ସେ ବୁଢା ମୁସଲମାନ କି ଖ୍ରୀଷ୍ଟାନ୍ ଅଛି '' ।

ଟ୍ରେନ ଭିତରେ ବି କେତେକଥା ଘଟେ । ବାଟରେ ଗୋଟାଏ ଟେସନ ଅଛି ଯାହାର ନାଆଁ ଶୁଣିଲେ ହସିବ - ବାହାନଗାବଜାର । ସେଠିକାର ଦଳେ ଟୋକା ଦିନେ ଆସି ଟ୍ରେନରେ ପଶିଲେ ଆଉ ଯେତେ ପାରିଲେ ଚାଉଳ ଓହ୍ଲାଇନେଲେ । ଭାରି ସଢୋଚ ପିଲା, କହୁଥାନ୍ତି ''ଆମେ ବାହାରକୁ ଚାଉଳ ଛାଡିବୁ ନାହିଁ, ଆମେ କ'ଣ ମରିବୁ ନ ଖାଇ ଭୋକଉପାସରେ । କାଳେ ମୋ ବୁକୁଚାଥଳି ଓହ୍ଲାଇ ନେବେ ବୋଲି ଭୟକରି ମୁଁ ଯିମିତି ହାତ ଟେକିଛି, ପାଖରେ ଚଷମା ପିନ୍ଧି ବସିଥିବା ଦରବୁଢାଟା ଦୁଇଅର୍ଥ ରଖି କହିଲା, 'ନାନୀ, ସବୁ ଦିଶୁଛି ଯେ ' । ମୁଁ ତ ପେଟରେ ଛାତିରେ ଚାଉଳ ପୁଡିଆଁ ବାନ୍ଧିଥାଏ । ମୋତେ ବି ହସ ମାଡିଲା । ମୁରୁକି ହସି ଦେଲି, ଆଖିକି ଥରେ ମାରିଦେଲି । ସେ ବଜାରୀକୁ ମୁଁ ବଜାରୁଣୀ । ଏତେଲୋକରେ ଦିନ ଦି'ପହରେ ସେ ମୋର କ'ଣ କରନ୍ତା ।''

''ନାନୀ ! ତୁମେ ଟିକେ ଅତି ହୋଇ ଯାଉଛ'' କହି ଲକ୍ଷ୍ମୀପ୍ରିୟା ଉଠି ଚାଲିଗଲା । ନାନୀ ଫେରିବା ବେଳର ଦୁଃଖଦୁର୍ଦ୍ଦଶା ବା ବୁଦ୍ଧି କୌଶଳ ପ୍ରୟୋଗ ସେ ଶୁଣି ପାରିଲା ନାହିଁ । ଚକ୍ରବ୍ୟୁହ ଭେଦ କରିବା ଉପାୟ ସେ ଜାଣିଲା ସିନା, ଫେରିବା କଥା ଅଭିମନ୍ୟୁ ପରି ସେ ବି ଜାଣିପାରିଲା ନାହିଁ, ନାନୀ ତ ଆଉ ନାହିଁ, କାହା ପାଖରୁ ବୁଦ୍ଧି ନବ ? ଲକ୍ଷ୍ମୀପ୍ରିୟା କିନ୍ତୁ ଯିବ ଚାରିଜୁଆଙ୍କୁ ଧରି,

ଫେରିବା ନ ଫେରିବା ସେଇ ଢଗା ହାତରେ ।

ରାତିରେ ବସି ବସି କେତେବେଳ ଜହ୍ନ ଆଲୁଅରେ କେତେ ବେଳେ ଡିବିରି ଆଲୁଅରେ ପୁରୁଣା ଛିଣ୍ଡା ଫଟା କନାରେ ଛୋଟବଡ କେତୁଟା ଥଳି ସିଇଁଲା । ବୁଧବାର ବଡି ଭୋରୁ ଉଠି ଗାଧୁଆପାଧୁଆ ସାରି ମଠା ଲୁଗା ପିନ୍ଧି ଲକ୍ଷ୍ମୀଙ୍କ ପେଡି ଖୋଲିଲା । ଲକ୍ଷ୍ମୀହାଡୀ ପେଟ ଖୋଳି ନୂଆ ପୁରୁଣା ସୁକି, ଅଧୁଲି ବାହାର କରି ଅଚଳକୁ ରଖି ବାକୀତକ ଗଣାଗୁନ୍ଥା କରି ଦେଖିଲା ସର୍ବମୋଟ ସତେଇଶି ବାରଣା ହେଲା, ଯେଉଁ ଲୁଗା ପିନ୍ଧିକରି ଯିବ ତା'ରି କାନିରେ କିଛି ବାନ୍ଧି ବାକୀତକ ଅଣ୍ଟା ପାଇଁ ଗୁଞ୍ଜିଲା । ବିନା ଗୁଡରେ ଛୁଆଙ୍କ ପାଇଁ କେତୁଟା ଚକୁଳି କଲା । ଘରେ କୋଇପ ପକାଇ ରେଲଟେସନକୁ ବାହାରିଲାବେଳେ ଭା'ଗତ ଗାଦି ପାଖରେ ଜୁହାର ହେଲା, ଲକ୍ଷ୍ମୀପେଡି ଆଡକୁ ଚାହିଁ କହିଲା, ''ମାଆ ! ମୁଁ ଚଣ୍ଡାଳୁଣୀ, ଘରେ କେବେ କେହି ଯାହା କରି ନ ଥିଲେ ତାହା ମୁଁ ଅଲକ୍ଷଣୀ କଲି, ତୋ' ପେଟରୁ ଧନ ନେଲି । ଛୁଆଗୁଡାକୁ ଥରେ ବଞ୍ଚାଇ ଦେ ମା । ମୁଁ ତୋର ଦୋରେହା ହେବିନି । ଧାନ ବିକି ତୋ ଟଙ୍କା ତୋତେ ଦେଇଦେବି ।''

ଚମ୍ପିନାନୀକି ସୁମରଣା କରି ତା'ରି ବର୍ଣ୍ଣନା ଓ ବିବରଣୀ ଅନୁସରଣରେ ଲକ୍ଷ୍ମୀପ୍ରିୟା ଗନ୍ତବ୍ୟ ସ୍ଥାନରେ ପହଞ୍ଚିଲା ଏବଂ ସୁରୁଖୁରୁରେ ସବୁ କାମ କରି ଚାଉଳ ଧରି ଫେରନ୍ତା ରେଳରେ ଚଢିଲା । ଝୋଟି, ଭୋଗପାଇଁ ପିଠାପଣା ଲାଗି କିଲେ ଅରୁଆ ଚାଉଳ ବି କିଣିଥିଲା । ପାଞ୍ଚ ଛଅଟି ଟଙ୍କା ଦାନ ଖଇରାତିରେ ଯାଇଥାଏ । ନିଜେ ସେ ଖୁବ୍ ମୋଟାସୋଟା ଦିଶୁଥାଏ, ଛୁଆମାନେ ଜାଉଁଳି ଯେତେ ଲୁଚାଇବାର ଚେଷ୍ଟା କରୁଥିଲେ ବି ପାରୁ ନ ଥାନ୍ତି । ଚାଉଳିଆ ହେଲେ ବି କେତେଦିନ ପରେ ଭାତ ମୁଠାଏ ମୁଠାଏ ଖାଇ ସେମାନେ ଟିକିଏ ସତେଜ ଦିଶୁଥାନ୍ତି । ଏପାଖ ସେପାଖର ନାନା ଦୃଶ୍ୟ ଦେଖି ଚଳନ୍ତା ରେଳରେ ଯିବାର ଆନନ୍ଦ ଟିକକ ପାଉଥିଲେ ବି ସେମାନେ ଯେ ନ କରିବା କାମ କରୁଛନ୍ତି, ତା'ରି ସଜ୍ଞାନତା ତାଙ୍କୁ ଆତଙ୍କିତ କରୁଥାଏ । ପାଇଖାନା ପାଖ କଣଟିରେ ସମସ୍ତେ ଏକାଠି ଜାକିଜୁକି ହୋଇ ଛିଡା ହୋଇଥାନ୍ତି, ଥଣ୍ଡା ବାଧୁ ନ ଥାଏ ପରସ୍ପର ଦିହର ଉଷୁମରେ, ହେଲେ ସାନ ପିଲାଟି ଘୁମେଇବା ଆରମ୍ଭ କଲାଣି, ଘୁମା ରୋଗ ଧଇଲେ କୁକୁଡା ଚିଆଁ ଆଖି ବୁଜି ଯିମିତି ନଣ୍ଡେଷ୍ଟ ହୁଏ ଠିକ୍ ସିମିତି ତା'ର ରୂପ, ଆଚରଣ । ରେଳର ସମସ୍ତ ଯାତ୍ରୀ ଗୋଦର, କୁଷ୍ଠ, ଫୁଲା ରୋଗରେ ଆକ୍ରାନ୍ତ ପରି କିମିତି ଅସ୍ୱାଭାବିକ ଦିଶୁଥାନ୍ତି । ବିଚାରା ରେଳଟି ବି ଉପର, ତଳ, ଭିତର, ସର୍ବତ୍ର ପୁଡିଆ ଥଳି, ବୋରାରେ ଅତି ଭାରାକ୍ରାନ୍ତ ହୋଇ ଥଙ୍ଗେଇ ଥଙ୍ଗେଇ ଚାଲୁଥାଏ । ପ୍ରତି ଚାରିପାଞ୍ଚ କିଲୋମିଟରରେ ନିଃଶ୍ୱାସ କୁଳାଏ ନାହିଁ, ଠିଆହୁଏ, ନିଃଶ୍ୱାସ ଫେରିଲେ ଦମ ଆସେ, ପୁଣି ଚାଲେ ।

ଜଳେଶ୍ୱର । ଏଇ ହେଲା ଚକ୍ରବ୍ୟୂହର ପ୍ରବେଶ ଓ ପ୍ରସ୍ଥାନ ପଥ । ପ୍ରବେଶ କାଳରେ ବ୍ୟୂହର କୌଣସି ପଥରେ ରଥୀ ବା ସୈନିକ କାହାରି ଦେଖା ନ ଥିଲା । ବାଲେଶ୍ୱରରେ ଯାତ୍ରୀମାନେ ଆତଙ୍କିତ ହୋଇଥିଲେ, କାରଣ ଚାରିଆଡେ ଶୁଣାଗଲା ପ୍ରସ୍ଥାନ ପଥ ଅବରୁଦ୍ଧ । ଜମାନା କୁଆଡେ ବଦଳ ହୋଇ ଯାଇଛି ଏଇ ଭିତରେ । ସତକୁ ସତ ଗାଡି ଯିମିତି ଷ୍ଟେସନରେ ଛିଡା ହୋଇଛି ମୁହୂର୍ତ୍ତକେ ଜଣାଗଲା ବ୍ୟୂହର ସମସ୍ତ ରଥୀ, ମହାରଥୀ, ପଦାତି,ଅଶ୍ୱାରୋହୀଙ୍କ ଏଇ ଗୋଟିଏ ଦ୍ୱାରରେ ସମାବେଶ । ଯେଉଁଆଡେ ଚାହିଁବ ଲୌହ ଶିରସ୍ତ୍ରାଣ, ଲାଠି, ବନ୍ଧୁକ । ପରିଚାଳନା ଭାର ନିଷ୍ଠୁରତା ଓ ନିର୍ମମତାରେ ଶ୍ରେଷ୍ଠସ୍ଥାନର ଯୁଗ୍ମ ଅଧିକାରୀ ଦୁର୍ଯୋଧନ ସ୍ୱାଇଁ ଆଉ ଦୁଃଶାସନ ମହାନ୍ତି ।

ଟ୍ରେନ ସେଇଠି ରହିଲା, ଆଉ ଆଗକୁ ଯିବନାହିଁ ଯେ ପର୍ଯ୍ୟନ୍ତ ଫଉଜ ତନଖି କରି ଟ୍ରେନର ସମସ୍ତ ଚାଉଳ ଉଦ୍ଧାର ନ କରିଛନ୍ତି । ଅଧଘଣ୍ଟାଏ ମଧ୍ୟରେ ରେଳବାଇ ଥାନା ଆଗରେ ଜମା ହେଲା

ଶହ ଶହ ପୁଡିଆ, ଥଳି, ବୋରା, ଡୁଙ୍ଗୁରି ପ୍ରମାଣରେ । ରେଳର ଏମିତି କେଉଁ ଲୁଚାଚୋରା ସ୍ଥାନ ନାହିଁ ଯେଉଁଠି ଚାଉଳ ନ ଥିଲା । ସମସ୍ତ ଚାଉଳ ବାଜ୍ୟାପ୍ତି ବୋଲି ଘୋଷଣା କରାଗଲା । ଏଥର ହୁକୁମ ହେଲା ଯାତ୍ରୀ ମାନଙ୍କ ଦିହ ସର୍ଚ୍ଚ କର । ସ୍ତ୍ରୀ ପୁରୁଷ ପିଲାଝିଲା ସମସ୍ତଙ୍କୁ ପ୍ଲାଟଫର୍ମକୁ ନିଆଗଲା । ଲଙ୍ଗଳା ମୁକୁଳା କରି କେଉଁଠି ବା ସ୍ତ୍ରୀ ଲୋକ ସାହାଯ୍ୟରେ ଆଉ କେଉଁଠି ବା ଖୋଦ ରଥୀମାନଙ୍କ ଦ୍ୱାରା ଖାନତଲାସୀ ଚାଲିଲା । ଚୋର ଚୋରଣୀଙ୍କି ଦୟାମାୟା ଦେଖାଇବ କିଏ ? ଦେଶ ଜାତି ରାଷ୍ଟ୍ର ପ୍ରତି କର୍ତ୍ତବ୍ୟର ଅବହେଳା କେଉଁ ସରକାର ସହ୍ୟ କରିବ ?

ଲକ୍ଷ୍ମୀ ଓ ତା'ର ଚାରି ପିଲା ଧାଡିରେ ହୋଇଥାନ୍ତି ଥରି ଥରି । ରାତି ଦୁଇଘଡି ହେଲାଣି । ସୁରୁସୁରିଆ ଉତ୍ତରା ବହିବାକୁ ଆରମ୍ଭ କରିଛି । ଖାଲି ପେଟକୁ ଶୀତ ବେଶୀ । ସାନ ପିଲାଟି ଠିଆ ହେବାକୁ ପ୍ରାୟ ଅସମର୍ଥ । ଲକ୍ଷ୍ମୀ ତାକୁ ଦିହର ଅନ୍ୟାନ୍ୟ ବୋଝ ସାଙ୍ଗରେ କାଖ କରି ରେଳରୁ ଆଣିଛି ଚାହୁଁ ଚାହୁଁ ଅକ୍ଳେଶରେ ପିଲାମାନଙ୍କ ପେଟରେ ଓ କାନ୍ଧରେ ଥିବା ବୁଜୁଲା ଓ ଥଳି ଖସାଇ ନେଇ ଗଦା ଉପରେ ମିଶାଇ ଦିଆଗଲା । ନାନା ବିଦ୍ରୂପ ବାକ୍ୟ ଓ ଅଶ୍ଳୀଳ ମନ୍ତବ୍ୟ ଭିତରେ ଲକ୍ଷ୍ମୀର ସାତ କିଲୋ ଚାଉଳ ତା ଦିହରୁ ଓହ୍ଲାଇ ନିଆଗଲା ।

ଦୁର୍ଯ୍ୟୋଧନଙ୍କ ଏକ୍ସରେ ଆଖି, କାନ୍ଥ, ପଥର, ଲୁହା, କାଠ ଭିତର ଦେଇ ଚାଉଳ ଦେଖିପାରେ, ଗୋଟାଏ ଦରମଲା ବୁଢା କନେଷ୍ଟବଳର ପଛପଟେ ବେଟନ ବାଡିଟା ଖୁଞ୍ଚି ଦେଇ ସେ ଗର୍ଜନ କଲେ '' ଏ ବୁଢା ! ତୋ ଆଖିକି ଦିଶୁନି ଏ ସାନ ପିଲାର ପେଟରେ କ'ଣ ଅଛି ? ଏ ପଦକ କଥା ସହିତ ଲକ୍ଷ୍ମୀର ସାନ ପୁଅର ବୁଜୁଲା ବାହାରିଥିବା ପେଟରେ ଚାଉଳ ପୁଡିଆ ବନ୍ଧା ହୋଇଛି ଭାବି ବେଟନରେ ଜୋର୍‌ରେ ଖୁଞ୍ଚି ଦେଲେ । ''ମା...ଆ... କହୁଁ କହୁଁ ପିଲାଟି ତଳେ ପଡି ଛଟପଟ ହେଲା । ଲକ୍ଷ୍ମୀ ତତ୍କ୍ଷଣେ ତାକୁ ଉଠାଇ କିଂକର୍ତ୍ତବ୍ୟବିମୂଢ ଚକ୍ଷୁରେ କାନ୍ଧରେ ଆଉଜାଇ କାଠଟି ପରି ଛିଡା ହୋଇ ରହିଲା । ସର୍ବତ୍ର କରୁଣ ରୋଦନ ଧ୍ୱନି ସାଙ୍ଗକୁ ଇଞ୍ଜିନର କ୍ରନ୍ଦନ ପ୍ଲାଟଫର୍ମକୁ ଗୋଟାଏ ବିରାଟ ଶ୍ମଶାନରେ ପରିଣତ କରିଥାଏ ।

ଚାଉଳ ଗଲା, ମାନ ମହତ ବି । ଯାହାକୁ ବଞ୍ଚାଇବ ବୋଲି ଏତେ କଥା ସେ ଜୀବନରେ ରହିବ କି ନାହିଁ ସେ ଚିନ୍ତା ତାକୁ ଶଙ୍କାକୁଳ କଲା । ଏଥର ଭଲା ଗାଡି ଚାଲନ୍ତା । ଘରେ ଶୀଘ୍ର ପହଞ୍ଚିଲେ ବା ଯଦି କିଛି... । କିନ୍ତୁ ରେଳ ଚାଲିବାକୁ ନାହିଁ ସିମିତି ସିଂ ସିଂ ।

ଛଅଟି ବୋରା ଚାଉଳ ଯିବ ନ ଯିବ ତାରି ନିଷ୍ପତ୍ତି ଉପରେ କୁଆଡେ ରେଳ ଚାଲିବ । ସମସ୍ତେ ଅପେକ୍ଷା କରିଛନ୍ତି ସେଇ ନିଷ୍ପତ୍ତିକୁ, ଆଉ ଶୁଣୁଛନ୍ତି ବଚସା, ଦୁର୍ଯ୍ୟୋଧନ ଆଉ ଜନୈକ ଦୀର୍ଘ-କାୟ ଚାଉଳ ମାଲିକଙ୍କ ଭିତରେ । ଡ୍ରାଇଭର, ଗାର୍ଡ, ଷ୍ଟେସନ ମାଷ୍ଟର ସମସ୍ତେ ମୂକ ଦ୍ରଷ୍ଟା ।

ଏ ଚାଉଳ ଯାଇ ପାରିବ ନାହିଁ ।

ଅଲବତ୍ ଯିବ । ଚାଉଳ ଅଟକାଇବାର ଆପଣମାନଙ୍କର ଅଧିକାର ନାହିଁ ।

ଆଇନ ନିୟମ ଅଛି ।

ଆପଣ ନିୟମ କାନୁନ ବିଲ୍‌କୁଲ ଜାଣନ୍ତି ନାହିଁ । ମୋ ଚାଉଳ ପୁଣି ଗାଡିକି ଉଠାନ୍ତୁ, ଗାଡି ଛାଡିବାକୁ କୁହନ୍ତୁ ।

ରାଜ୍ୟ ଭିତରେ ଦଶ କୁଇଣ୍ଟାଲ ଚାଉଳ ଯାଇ ପାରିବ ।

ଆପଣ ରାଉରକେଲା ନେଉଛନ୍ତି ।

ରାଉରକେଲା କ'ଣ ପଶ୍ଚିମ ବଙ୍ଗଳାରେ ନା ବିହାରରେ ? ଆପଣ ଭଲ ଭୂଗୋଳ ପଢିଛନ୍ତି ।

ଚାଉଳ ମୁଁ ବୁକ୍ କରିଛି । ଖାଲି ଖାଲି ନେଉନାହିଁ ।

ଆପଣଙ୍କର ପରମିଟ୍ ନାହିଁ ।

ପରମିଟ୍ ଦରକାର ନାହିଁ । କଟକରେ ଚାଷଜମି, ଚାଉଳ ରାଉରକେଲାରେ ମୋ ଛୁଆପିଲାଏ ଖାଇବେ ନାହିଁ ?

ନା ଖାଇପାରିବେ ନାହିଁ, ପରମିଟ୍ ଦେଖାନ୍ତୁ ଅଥରିଟିର ।

ଆପଣ ପରମିଟ୍ ଅଥରଟି ପାଖରୁ ଆଣନ୍ତୁ । ଫୋନ କରନ୍ତୁ ଆପଣଙ୍କ ଅଥରିଟିକି । ଡେରି ହୋଇ ଯାଉଛି, ପାସେଞ୍ଜରମାନେ କ'ଣ ରାତିଯାକ ଏଇଠି ଅପେକ୍ଷା କରିବେ ? ମୋ ଚାଉଳ, ମୁଁ ବୁକ୍ କରିଛି, ନିଶ୍ଚୟ ନେବି ଏବଂ ରାଉରକେଲାକୁ ନେବି ।

ଆମେ କହୁଛୁ ନେଇ ପାରିବେ ନାହିଁ, ମୁଁ ବି ଫୋନ୍ କରୁଛି । ହୁକୁମ୍ ନପାଇଲା ଯାକେ ରାତିଏ କ'ଣ ତିନିଦିନ ଗାଡି ଛିଡା ହେବ ।

କାହାକୁ ଦୁର୍ଯ୍ୟୋଧନ ଏଣ୍ଡ କୋ ଫୋନ୍ କଲେ ଜଣା ପଡିଲା ନାହିଁ । ସେପଟୁ କ'ଣ ଜବାବ ଆସୁଥାଏ ତାହା ସ୍ୱାଇଁ, ମହାନ୍ତି ବା ଷ୍ଟେସନମାଷ୍ଟର ଛଡା ଆଉ କେହି ଶୁଣି ପାରିଲେ ନାହିଁ । କିନ୍ତୁ କିଛି ସମୟ ପରେ ସେ ଫୋନ୍ ଚାଉଳର ମାଲିକକୁ ଧରାଇଦେଲେ । ଏପଟୁ ବଡ ପାଟିରେ ଯାହା କୁହାଯାଉଥାଏ ତାହା ସମସ୍ତଙ୍କୁ ଶୁଭୁଥାଏ ।

'ଓ ! ଆପଣ ! ଇଭିନିଂ, ମୁଁ - ସିଂହ, ଜଲେଶ୍ୱରରୁ କହୁଛି ।''

''କ'ଣ ଆଉ କହିବ ? ଆପଣମାନେ ତ ଗୋଟାଏ ପାଲା, ଫାର୍ଶ, ତାମସା ଲଗାଇଛନ୍ତି ।''

'' ହଁ ହଁ ଫାର୍ଶ ନୁହେଁ ତ କ'ଣ ? ଆପଣ ଆଗ ଏ ଦୁଇଜଣଙ୍କୁ କୁହନ୍ତୁ ମୋ ଚାଉଳ ଛାଡି ଦିଅନ୍ତୁ । ଏଠି ଯେଉଁ କାଣ୍ଡକାରଖାନା ଚାଲିଛି ଆସି ଦେଖିଯାଆନ୍ତୁ ଦିନେ ।''

''ହଁ, ମୁଁ ରାଉରକେଲା ନଉଛି । କ'ଣ ଅପରାଧ ହେଲା ? ଓଡିଶାର ଚାଉଳ ଓଡିଶାକୁ ଯିବ ।''

''କି ଆଶ୍ଚର୍ଯ୍ୟ ! ବିହାର ବଙ୍ଗଳା ଦେଇ ଗଲା ବୋଲି ରାଉରକେଲା ଯିବ ନାହଁ, ଆପଣ ସିଧାସଳଖ ରେଳ ଲାଇନଟା କଟକରୁ ରାଉରକେଲା, ସମ୍ବଲପୁର ଟାଣି ଦେଲେନି ? ଛାଡନ୍ତୁ, ଯୁକ୍ତି କରନ୍ତୁ ନାହିଁ ।''

''ଆପଣ କ'ଣ ଏତିକି ବୁଝି ପାରୁନାହାନ୍ତି ଗୋଟାଏ ରାଜନୈତିକ ସୀମାସରହଦ ଟାଣି ଦେଶଟାକୁ ଚୋର କରି ସାରିଲେଣି । ମୋ ନିଜ ଚାଉଳ ମୁଁ ନେବି ନିଜଦେଶକୁ ଅଥଚ ଚୋର ହେବି ମୁଁ ।''

''ହଁ ବଡିଆ କଥା କହିଲେ । ଟଙ୍କାଏ ଷାଠିଏରେ କଟକରେ ଚାଷ ଚାଉଳ ବିକି ରାଉରକେଲାରେ ତିନି କୋଡିଏରେ କିଣିବି ।''

''ଡେର ହେଲା । ଏଥର କୁହନ୍ତୁ ଦୟାକରି - ମନ୍ତ୍ରୀ ସାର୍କିଟ୍ ହାଉସ୍‌କୁ ଫେରିଲେଣି କି ନାହିଁ । ମୁଁ ଟିକିଏ ତାଙ୍କୁ ପଚାରି ଦିଏ । ସେ କେମିତି ମୋତେ କହିଲେ ନବା ପାଇଁ ।''

''ମୁଁ ତାଙ୍କର ଶଳା । ଏଥର ହୁକୁମ ଦିଅନ୍ତୁ ।'' ଦୁର୍ଯ୍ୟୋଧନ ବାବୁ ହୁକୁମ ଶୁଣିସାରି ଯିମିତି ଫୋନ୍ ରଖିଛନ୍ତି, ଚାଉଳର ମାଲିକ ତାଙ୍କର ପଦେ ମିଠାକଥାର ଉତ୍ତରରେ କହିଲେ - ଓହୋଃ ! ଖଡ୍‌ଗପୁର କଥା ଛାଡନ୍ତୁ । ଆଠଣା ପଇସା ଦେଇ ମୁଁ ବାର୍ଥ ରିଜର୍ଭ କରିଛି । ଚାଉଳ ଛଅ ବୋରାକୁ ଷାଠିଏ ପଇସା ଲାଗିବ । ଆପଣ କନେଷ୍ଟବଲଙ୍କୁ କୁହନ୍ତୁ ମୋ ବୋରା ସ୍ଲିପରକୋଚ୍‌କୁ ଉଠାନ୍ତୁ । ଶୀଘ୍ର, ଶୀଘ୍ର, ବହୁତ ଡେରି ହେଲା । ଗୁଡାଏ ଭୂତ ଏ ଦେଶକୁ ସାଇଲେ ।

ଗାଡି ଚାଲିଲା ଖଡଗପୁର ଅଭିମୁଖେ ଛଅ ବୋରା ଚାଉଳ ନେଇ । ଡୁଙ୍ଗୁରି ପ୍ରମାଣ ଛୋଟ ଛୋଟ ଥଳି ପୁଡିଆଗୁଡିକ ବୁହାହୋଇ ଗଲା ରେଳବାଇ ପୋଲିସ ହାଜତଖାନାକୁ । ଭାଗ୍ୟ ଭଲ ବିନା ଟିକଟ ଯାତ୍ରୀଗୁଡାକୁ ହାଜତରେ ନ ପୂରାଇ ଯେଝା ଗନ୍ତବ୍ୟ ସ୍ଥାନକୁ ଯିବାକୁ ଅନୁମତି ଦିଆଗଲା ।

ରେଳ ନେକୁଡଶ୍ରେଣୀ ଷ୍ଟେସନ ପହୁଞ୍ଚିଲା ବେଳକୁ ରାତି ପ୍ରାୟ ନଅଟା । ନବମୀ ଜହ୍ନ ଆଲୁଅ ବେଶ୍ ଫୁଟିଆରା ଥାଏ । ଲକ୍ଷ୍ମୀ ସାନ ଛୁଆଟିକୁ କାଖେଇ ରିକ୍ତ ହସ୍ତରେ ଗାଡିରୁ ଓହ୍ଲାଇଲା ସପ୍ତରଥୀଙ୍କ ହାବୁଡରୁ ସେ ବର୍ତ୍ତିପାରିଲା ନାହିଁ । ବାଟଯାକ ଭାବୁଥାଏ ତାର ଭୁଲ ହୋଇଯାଇଛି । ସୀତା ଠାକୁରାଣୀ ତିନିଗାର ଡେଇଁ ରାବଣ ହାବୁଡରେ ପଡିଥିଲେ ହେଁ ଅବଶେଷରେ ରାମ ଲକ୍ଷ୍ମଣ ତାଙ୍କୁ ଉଦ୍ଧାର କରିଥିଲେ । ମାତ୍ର ତାର ରାମ ଲକ୍ଷ୍ମଣ ତ କଲିକତାରେ ନିପାତ ହୋଇଛନ୍ତି ।

ସର୍ବତୋଭାବେ ଅସମାନ ଏକତରଫା ଯୁଦ୍ଧ ଚଳାଇ ଲକ୍ଷ୍ମୀପ୍ରିୟା ହାଲିଆ ହୋଇ ପଡିଥିଲା । ଯମରାଜ ସହିତ ସାନପୁଅଟିର ଜୀବନ ବଞ୍ଚାଇବାର ପାଇଁ ଲଢିବା ଲାଗି ସତୀ ସାବିତ୍ରୀର ବଳସମ୍ବଳ କିଛି ନଥିଲା ତା'ର । ରାତିଯାକ ଏକୁଟିଆ କାଠପରି ବସି ଦିହମୁଣ୍ଡ ଆଉଁଷିବା, ସେକାସେକି କରିବା ଛଡା ଆଉ ସେବାଶୁଶ୍ରୂଷା କଣ କରିପାରନ୍ତା ।

ରାତି ପାହିଲେ ଗୁରୁବାର, ଦଶମୀ । ସୁଦଶାବ୍ରତ । ମଗୁଶିର ମାସ ଭୋରୁ ଉଠି ଗାଧୁଆପାଧୁଆ ସାରି ଯେତେବେଳ ସେ ଝୋଟି ଲେଖୁଥିଲା ଠିକ୍ ସେତିକିବେଳେ ଚାଉଁକିନା ତାର ନିଦ ଭାଙ୍ଗି ଗଲା । ଯାହା ଆଶଙ୍କା କରୁଥିଲା ଦେଖିଲା ଠିକ୍ ତାହାହିଁ ଘଟି ଯାଇଛି । ପୋଡାଆଖି ଦୁଇଟାକୁ ଉପାଡି ଆଣିବାକୁ ଇଚ୍ଛା କଲା । ଯେଉଁ ଝିମିଟିଏ ମୁଦି ହୋଇଗଲା ସେଇ ଝିମିଟିକେ ସବୁ ଶେଷ ।

କାହାକୁ ଡାକିଲା ନାହିଁ । କ'ଣ କେତୁଟା ଚିଜ ଏଣୁ ତେଣୁ ଗୋଟାଇ ଗୋଟାଏ ବୁକୁଚା କଲା । ତାକୁ ଆଉ ଥୁଣ୍ଟା ଖଣ୍ଡିଆ କୋଦାଳଟାକୁ କାନ୍ଧରେ ଧଇଲା । ନିଦେଇଲା ଛୁଆକୁ ବେକତଳେ ଗୋଡତଳେ ଦୁଇ ହାତରେ ଖୁବ୍ ସତର୍କରେ ସରାଗରେ ଧରି ମାଆମାନେ ଯିମିତି ଏ ଖଟରୁ ସେ ଖଟକୁ ନିଅନ୍ତି ସେଇ ଭଙ୍ଗୀରେ ସାନକୁ ଧଇଲା । ମାଛି ଅନ୍ଧାରରେ ଚାଲିଲା ସେ ସୀମାଳି ପଥର ଗୋଟାକ ପାଖକୁ, ଅଗଭୀର ଗାତଟିଏ ଖୋଳି ଇଶାନ୍ୟ ଉତ୍ତରକୁ ମୁଣ୍ଡ କରି ଏମିତି ଶୁଆଇ ଦେଲା ଯେମିତି ଦିହରେ ଅଧେ ଏ ରାଜ୍ୟରେ ଆଉ ଅଧକ ଅନ୍ୟ ରାଜ୍ୟରେ ରହିବ । ରୋହିତ ର ସତ୍କାର କରିବାକୁ ଶୈବ୍ୟା ସହିତ ହରିଶ୍ଚନ୍ଦ୍ର ଶ୍ମଶାନରେ ଥିଲେ । ଏଠି ଲକ୍ଷ୍ମୀପ୍ରିୟା ଏକାକିନୀ । ମାଟି ଘୋଡାଇବା ଆଗରୁ ଲକ୍ଷ୍ମୀପ୍ରିୟା ଛୋଟ ଶିଲଟଟି, ଛିଣ୍ଡା ଜାମାପଟାକୁ ଏକାଠି କରି ଗୋଟାଏ ରକମ ତକିଆ କରି ମୁଣ୍ଡ ତଳେ ରଖିଲା । ଯେଉଁ ଛୋଟ ରବର ବଲଟିରେ ସେ ଖେଳୁଥିଲା ତାକୁ ହାତ ପାଖରେ ଥୋଇଦେଲା, ତାକୁରୁ ତଳିପା ଯାଏଁ ଥରେ ଆଉଁଷି ଦେଲାବେଳେ ଦେଖିଲା, ପେଟରେ ବେଟନ ବାଜିଥିବା ଜାଗାଟା ଫୁଲି ରହିଛି । ଗୋଟାଏ ଆଖି ସାମାନ୍ୟ ଫିଟାଇ ଦେଖି ଭୋ କରି କାନ୍ଦି ଉଠିଲା ଏବଂ ବାଷ୍ପଭରା କଣ୍ଠରେ କହିଲା, ''କିରେ ବାପା ! ଚାଲିଗଲୁ ।''

କାମ ସାରି କୋଦାଳଟି ଧରି ଉଠିଲା ବେଳକୁ ଦେଖିଲା ପ୍ରଥର ଖଡିଟି ଦେବାକୁ ଭୁଲି ଯାଇଛି । ଏଇ ଖଡିଟିରେ ଗଣେଶ ପୂଜାରେ 'ସିଦ୍ଧିରସ୍ତୁ' ଚାରିଅକ୍ଷର ପୁଅ ମଡାଇଥିଲା । ଆଉ ଖୋଳିବାକୁ ମନ ହେଲା ନାହିଁ । କଇଁ କଇଁ ହୋଇ ପାଗଳୀ ପରି ସେଇ ସୀମାଳି ପାହିଆ ପଥର ଉପରେ ଖଡିକି ଧରି ଛବି ଆଙ୍କିବାକୁ ଲାଗିଲା । ଚାଉଳ ନାହିଁ, ଝୋଟି ଆଙ୍କିବ କିମିତି ଏଇ ସୁଦଶା

ଦିନରେ ? କେତେ ସମୟ ସେ ଆଙ୍କିଲା କେଜାଣି । ଛିଡା ହୋଇ ନଜର କଲା ସେଇ କାଳିଆ ପଥର ଦିହରେ ଅବିକଳ ଚକାଡୋଳାକୁ ଆଙ୍କି ପାରିଛି କି ନାହିଁ । ଦେଖିଲା ବଡ ବଡ ଦୁଇ ଆଖି, ପାଟି, ଆଉ ନାକ, ସୂର୍ଯ୍ୟ, ଚନ୍ଦ୍ର, ରାହୁ ଆଉ କେତୁ ସମସ୍ତେ ସେଇ ଏକ ମୁହଁରେ । ଅନନ୍ତବାହୁ, ଶଶିସୂର୍ଯ୍ୟ-ନେତ୍ର, ଅନନ୍ତ ରୂପ । ସେଇ ମୂର୍ତ୍ତି ଯେ କି ଅସୀମ, ସୀମାହୀନ । ସେଇ ସୀମାସୂଚକ ପଥରଟାକୁ ଅସୀମ କରିଦେଇ ମୁଣ୍ଡ ଭୂଇଁରେ ଲଗାଇ ଲକ୍ଷ୍ମୀପ୍ରିୟା ସୁଦଶାବ୍ରତ ଉଦ୍‌ଯାପନ କଲା ।

# ନାଚେ ବେଙ୍ଗୁଆଁ ନାଚେ

**ଭୁବନେଶ୍ୱର ବେହେରା**

ଦୂର ପାହାଡରେ ଯେତେବେଳେ ନିଆଁ ଲାଗେ ଆଉ ରାତିରେ ସେ ନିଆଁ ଗୋଟିଏ ବିରାଟ ସୁନାହାରର ରୂପ ନିଏ, ମାଙ୍କଡ ବାହାଘରର ରୋଶଣି କଥା ମନେପଡିଯାଏ-ଆଉ ତା' ସାଙ୍ଗରେ ମନେପଡେ ପିଲାଦିନର କେତେ ଅଭୁଲା ସ୍ମୃତି ।

ସେ ଦିନର ସ୍କୁଲଜୀବନ । ଛାଟ ବିନା ପାଠର କଳ୍ପନା ମଧ୍ୟ କେହି କରନ୍ତିନି । ମାଷ୍ଟରମାନଙ୍କୁ ତେଣୁ ବାପାଙ୍କ ଅନୁରୋଧ, ସେମାନେ ମନଇଚ୍ଛା ଯେତେ ମାଡ ଦେବେ ଦିଅନ୍ତୁ, ପୁଅକୁ କୌଣସିମତେ ମଣିଷ କରନ୍ତୁ । ସେକାଳର କର୍ତ୍ତବ୍ୟପରାୟଣ ଶିକ୍ଷକମାନେ ଏପରି ଅନୁରୋଧ ଏଡିଦେବେ ବା କେମିତି ? ଆମପରି ମାଙ୍କଡମାନଙ୍କୁ ମଣିଷ କରିବାକୁ ଯାଇ ପିଠିରେ ଗୋଟା ଗୋଟା କନିଅର ଛାଟ ଛିଣ୍ଡାଇଦିଅନ୍ତି-କିଛି ଗୋଟାଏ ବାହାନା ମିଳିଗଲେ ହେଲା । କିଏ କ୍ଲାସରେ କାହାକୁ ଦେଖି ହସୁଛି, କିଏ କାହାକୁ ଖତେଇ ହେଉଛି, କିଏ ତେନ୍ତୁଳି ଖାଉଛି, କିଏ କାହାର ଟାଙ୍ଗରା ମୁଣ୍ଡରେ ଥରେ ଦି'ଥର ଠଣା ମାରିଛି, କିଏ ଅବା କାହାର ଚୁଟି ଟାଣିଛି-ବାସ୍ ! ତଥାପି ସେଦିନ କାହା ବାଡିରେ ଗୋଟାଏ ଦି'ଟା କାକୁଡି ନିର୍ଲଜ୍ଜଭାବରେ ଝୁଲୁଥିବା ଦେଖିଲେ ଅଥବା କାହା ଗଛର ପିଜୁଳି କିମ୍ବା ଆମ୍ବ ଆମକୁ ଦେଖି ସାମାନ୍ୟ ଟିକିଏ ପବନରେ ବି ଅଣ୍ଟା ହଲାଇ ମୁଣ୍ଡ ଟୁଙ୍ଗାରିଲେ ଲୋଭ ସମ୍ଭାଳି ହୁଏନି, କାନ୍ଥ ବାଡ ଡେଇଁ ହୋଇଯାଏ । ଏପରି ଘଟିଲେ 'ଚୋରି କରିବା ମହାପାପ' ବୋଲି କହି କୌଣସି କୌଣସି ଶିକ୍ଷକ ଆମ ପିଠିର ଛାଲ ଉତାରିବାକୁ ଚେଷ୍ଟା କରନ୍ତି । ଆଉ ସେପରି ଦୋଷ କରିଥିବା ଯୋଗୁ ଦଣ୍ଡ ଯେ ଆମର ପ୍ରାପ୍ୟ ସେକଥା ବୁଝିହୁଏ । କିନ୍ତୁ ଏକଥା ବୁଝିହୁଏନି ଯେ, ପଞ୍ଚମ ଷଷ୍ଠ ଶ୍ରେଣୀ ପଢିଲାବେଳେ ଆମର କି ଅବା ବୟସ ! ସେଥିରେ ଆମେ କାହିଁକି ଯେ 'ନିଦ୍ରା ପରିହରି, ଚିନ୍ତାର ଲୋଚନ ଫେଡି ନିଃଶବ୍ଦେ ଜୀବନସ୍ରୋତ ଧାଉଁଛି କିପରି, ଭେଟିବାକୁ ମୃତ୍ୟୁସିନ୍ଧୁ କରାଳ ଲହରୀ' ବୋଲି ଜୀବନ ସମ୍ବନ୍ଧରେ ଚିନ୍ତାକରି ବସିବୁ, ଆଉ ଡୁଡୁ, ବୋହୂଚୋରି, ଫୁଟବଲ ନଖେଳି 'କି ବେଗରେ ଯାଉଅଛି ଚାଲି, ସେହି ସ୍ରୋତ ସଙ୍ଗେ ଭାସି ଜୀବନର ସୁଖରାଶି' ବୋଲି ଶୋକୋଚ୍ଛ୍ୱାସ ଢାଳିବୁ ! ଏସବୁର ଅର୍ଥ ବୁଝି ନପାରିଲେ ଅଥବା କିଛି ନ ବୁଝି ମୁଖସ୍ଥ କରି ଓଗାଳିଲାବେଳେ ଭୁଲଭଟକା ହେଲେ ଯେଉଁ ମାଡ ହୁଏ ସେତିକିବେଳେ ବିନା ଦୋଷରେ ମାଡ ହେଉଛି ବୋଲି ଦେହରେ ନିଆଁ ଜଳେ, କିନ୍ତୁ କିଛି କରି ହୁଏନି । ହଷ୍ଟେଲ ଛାଡି ଅନ୍ୟ କେତେ ଜଣଙ୍କ ପରି ଘରକୁ ପଳାଇଗଲେ ବା ରକ୍ଷା- କିନ୍ତୁ ତେଣେ ବାପା ବସିଛନ୍ତି, ଜବରଦସ୍ତି ପୁଣି ସ୍କୁଲକୁ ନେଇ ଆସିବେ । ମାଆଙ୍କର ତ ଆପତ୍ତି କରିବାର କିଛି ଅଧିକାର ନାହିଁ-ଏସବୁ ବିଷୟରେ କୁଆଡେ ତାଙ୍କର ମୁଣ୍ଡ ନଖେଳାଇବା କଥା -ଘରକୁ ପଳାଇଗଲେ ମାଡ ଖାଲି ଦ୍ୱିଗୁଣିତ ହେବ ଯାହା । ତେଣୁ ଛାତ୍ରଙ୍କର ଏକମାତ୍ର ପରମବନ୍ଧୁ ଖରାଛୁଟି ପାଇଁ ଆମେ ଦିନ ଗଣି ବସୁ । ସେହି ପ୍ରିୟ ଖରାଛୁଟି ପାଖେଇ ଆସିଲା ବେଳକୁ ହିଁ ଏମିତି ପାହାଡମାନଙ୍କରେ ମାଙ୍କଡ ବାହାଘରର ରୋଶଣି ଦପ୍ ଦପ୍ କରି ଜଳିଉଠେ ।

ରୋଶଣି ଆଲୁଅ ଦେଖି ମୋର ପ୍ରବଳ ଇଚ୍ଛାହୁଏ କେମିତି ଏ ବାହାଘର ଥରେ ଦେଖନ୍ତି ! ଏତିକି ଟିକିଏ ଟିକିଏ ମାଙ୍କଡ-ଆଉ ସେମାନଙ୍କର କି ବିରାଟ ରୋଶଣି ! ଆଶ୍ଚର୍ଯ୍ୟ ଲାଗେ । ଆମ ସବ୍-ଜାନ୍ତା ଉପର କ୍ଲାସର ପିଲାମାନେ କିନ୍ତୁ 'ଟିକିଏ ଟିକିଏ ମାଙ୍କଡ' ବୋଲି କହିଲେ ବିରକ୍ତ ହୁଅନ୍ତି, ଆଉ ହନୁମାନ-ଅଙ୍ଗଦ-ସୁଗ୍ରୀବଙ୍କ ସାଙ୍ଗରେ ମର୍କଟସୁନ୍ଦରୀମାନଙ୍କ କଥା କହିବସନ୍ତି । ଆମର ବିଶ୍ୱାସ ହୋଇଯାଏ ଯେ, ଯୁବରାଜ ଅଙ୍ଗଦଙ୍କ ବାହାଘରର ଏ ରୋଶଣି ।

ତେବେ ଯୁବରାଜ ଅଙ୍ଗଦ ଏମିତି ପ୍ରତିବର୍ଷ ଖରାଛୁଟି ପାଖେଇ ଆସିଲାବେଳକୁ କାହିଁକି ଯେ ବାହାହୁଅନ୍ତି ଆଉ ସବୁ ରାତିରେ କାହିଁକି ଏ ବାହାଘରରର ପ୍ରଶେସନ୍ ପାହାଡରୁ ପାହାଡ ଡେଇଁ ଚାଲିଥାଏ, ଆଉ ବେଳେ ବେଳେ ପୁଣି ସେହି ପୁରୁଣା ପାହାଡରେ ଉଙ୍କିମାରେ, ସେ କଥା ବୁଝିହୁଏନି । ସେଇ ବୁଦ୍ଧିଆ ସବ୍‌ଜାନ୍ତାମାନେ ସେକଥା ମଧ୍ୟ ବୁଝାଇଦିଅନ୍ତି । କେତେ ରୋଶଣିଆ ମାଙ୍କଡ କୁଆଡେ ଏତେ ବାଟ ଚାଲି ଚାଲି ଥକିଗଲା ପରେ ତାଙ୍କ ଯୂଥପତି ଆଉ ପ୍ରହରୀଙ୍କ ମାଡଭୟରେ ସେମାନଙ୍କ ଅଜାଣତରେ କେଉଁ ଗଛମୂଳେ ଲୁଚିରହନ୍ତି, ଆଉ ସମସ୍ତେ ଚାଲିଗଲା ପରେ ସୁବିଧା ଦେଖି ପୁଣି ତାଙ୍କର ରୋଶଣି ଧରି ବାହାରନ୍ତି ସେଇ କିଷ୍କିନ୍ଧ୍ୟା ଅଭିମୁଖରେ । ଗୋଟିଏ ଜଟିଳ ସମସ୍ୟାର ଏପରି ଏକ ସରଳ ସମାଧାନ ହୋଇଯାଏ ।

ବିରାଟ ବିରାଟ ମାଙ୍କଡଙ୍କ କଥା ଶୁଣିଲା ପରେ ରାତିରେ ଲୁଚି ଛପି ସେ ବାହାଘର ଦେଖିଯିବାକୁ ଆଉ ସାହସ ହୁଏନି-ଇଚ୍ଛା ଇଚ୍ଛାରେ ହିଁ ରହିଯାଏ । ତଥାପି ସେ ମାଙ୍କଡ ବାହାଘରର ରୋଶଣି ମନରେ ପୁଲକ ଦିଏ-ଖରାଛୁଟି ପାଖେଇ ଆସିଲା ବୋଲି ଜାଣି ହୋଇଯାଏ-ଏବଂ ଘରକଥା ବାରମ୍ବାର ମନେପଡେ । ହଷ୍ଟେଲର ଅସିଝା ଡାଲି ଆହୁରି ପାଣିଆ ଲାଗେ, ବଗଡା ଭାତ ତଣ୍ଟିକୁ ଗଳେନି, ତରକାରି ରାଗରେ ପାଟି ଜଳାଏ । ସତରେ ମା' ଯେମିତି ରାନ୍ଧନ୍ତି ! ଆଉ ଏ ଲୁଖୁଣ୍ଡା ଝାଳୁଆ ରାନ୍ଧୁଣିଆଗୁଡାକ । କିଏ ଖାଇଲେ କି ନଖାଇଲେ ତାଙ୍କର ଯାଏ ଆସେ କେତେ ? ଏ ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟମାନେ କାହିଁକି ଯେ ଏଗୁଡାକୁ ରଖନ୍ତି ?

ଛୁଟିରେ ଡାଳମାଙ୍କୁଡି ଖେଳ କଥା ମନେପଡେ । ବାପା କ'ଣ ସନ୍‌ଷ୍ଟ୍ରୋକ୍ ପ୍ରୋକ୍ କଥା କହି ଦିନ ଦି'ପହରବେଳେ ଏଇ ଡାଳମାଙ୍କୁଡି ଖେଳିବା ପାଇଁ ଆମ୍ବତୋଟାକୁ କିମ୍ବା ପହଁରିବା ପାଇଁ ପୋଖରୀକୁ ନ ଯିବାକୁ ତାଗିଦ କରି ଦେଇଥାଆନ୍ତି-କିନ୍ତୁ ଖରାବେଳେ ସେ ଯେତେବେଳେ ଶୋଇପଡି ଘୁଙ୍ଗୁଡି ମାରନ୍ତି, ସୁଯୋଗ ମିଳିଯାଏ ।

ଆଉ ମନେପଡେ ବେନୁଆଁ ନାଚ ।

ଆମ ଗାଁମାନଙ୍କରେ ମାଙ୍କଡ ନାଚକୁ କାହିଁକି ଯେ ବେନୁଆଁ ନାଚ କହନ୍ତି ଠିକ୍ ବୁଝିହୁଏନି । ବୋଧହୁଏ ସେ ମାଙ୍କଡନଚାଳିଙ୍କ ନିଜ ଭାଷା । ମାଙ୍କଡକୁ ସେମାନେ ତାଙ୍କ ଛତିଶଗଡୀ ଭାଷାରେ ବେନୁଆଁ କହୁଥିବେ । 'ନାଚେ ବେନୁଆଁ ନାଚେ' ମନେପଡିଲାକ୍ଷଣି ମନ ଆନନ୍ଦରେ ଭରିଯାଏ ।

ବେନୁଆଁ ନାନା ଢଙ୍ଗରେ ଅଣ୍ଟା ହଲାଇ ହଲାଇ ନାଚେ । ଫ୍ରକ୍ ଖଣ୍ଡିଏ ପିନ୍ଧି ବୋହୂ ସାଜି ଯେତେବେଳେ ପାଣି ଆଣେ, ଟିକି ମୁଣ୍ଡରେ ଛୋଟ ଆଲୁମୋନିୟମ୍‌ର ଗିନାକୁ ଦି'ହାତରେ ଜାବୁଡି ଧରିଥାଏ । ଲାଞ୍ଜ ତଳେ ଘୋଷାଡି ହୁଏ, ଠିକ୍ ପଣତ କାନି ପରି । ନଚାଳି ନାଚ ମଝିରେ ଚିତ୍କାର କରେ-'ବେନୁଆଁ, ତୋର ଶଶୁର ଆସିଛନ୍ତି...', ଟିକି ଗୋଲ ମୁଣ୍ଡକୁ ଭୂଇଁରେ ଥାପି ବେନୁଆଁ ଆମ ଭିତରର କାହା ପାଦତଳେ ମୁଣ୍ଡିଆ ମାରେ । କେବେ ଆଖି ବୁଜିଦେଇଥାଏ ତ କେବେ ଆଖି ଲୁଚୁଲୁଚୁ କରୁଥାଏ । ସେ ଯାହା ପାଦତଳେ ମୁଣ୍ଡିଆ ମାରେ ତାକୁ ଆମେ 'ବେନୁଆଁ ଶଶୁର, ବେନୁଆଁ ଶଶୁର' କହି ତାଳି ମାରି ନାଚିଉଠୁ ।

ବେଳେ ବେଳେ ନଚାଚିର ଦିଓଟି ବେନୁଆଁ ରହୁଥିଲେ । ଗୋଟିଏ ପ୍ରକୃ ପିନ୍ଧି କନିଆ ବନେ, ଆଉ ଆରଟି ଟୋପି ପିନ୍ଧି ବର ସାଜେ । କନିଆ ମୁଣ୍ଡରେ ଛିଟ କନା ଖଣ୍ଡିଏ ପକାଇ ନଚାଚି ଯେତେବେଳେ ବରକୁ କହେ-''ଆରେ ବେନୁଆଁ, ଯା ଦେଖି ଆସିବୁ ତୋର କନିଆଁ ଦେଖିବାକୁ କେମିତି'', ସେତେବେଳେ ବର ଗମ୍ଭୀର ହୋଇ କନିଆଁ ପାଖକୁ ଯାଏ ଆଉ ଓଢଣା ଟେକି ତା'ମୁହଁ ବୁଲାଇଦିଏ, ଆମ ଭିତରେ ହସର ରୋଳ ଖେଳିଯାଏ । କେବେ କେବେ ବେନୁଆଁ ବର-ପିତା ହୁଏ- କାଖରେ ଛତା ଜାକି, ବାଡି ଧରି, ଠୁକୁରୁ ଠୁକୁରୁ କରି ବୋହୂ ଅନ୍ୱେଷଣରେ ବାହାରେ । ବେନୁଆଁ ଯେତେବେଳେ ସମୁଦ୍ର ଡେଇଁ ଲଙ୍କାକୁ ଯାଏ ଆଉ ନଚାଚିର ବାଡିଉଠାରେ କୁଦାମାରି ସେମିତି ଲଙ୍କାରୁ ଫେରିଆସେ, ଖେଳ ଶେଷ ହେଲା ବୋଲି ଆମେ ସବୁ ଜାଣିନେଉଁ । ବେନୁଆଁ ଶେଷରେ ମା'ଙ୍କ ପାଖରେ ମୁଣ୍ଡିଆ ମାରେ, ଆଉ ଆମେ ଖୁସିରେ ଘର ଭିତରକୁ ଦଉଡିଯାଇ ଚଣା, ମୁଗ, ବିରି, ଯାହା ମିଳିଲା ମୁଠିଏ ନେଇ ଆସି ତା' ଆଗରେ ବିଛେଇଦେଉଁ । କାଳେ କିଏ ସେହି ଅମୂଲ୍ୟ ସମ୍ପଦ ତା ହାତରୁ ଛଡାଇନେଇଯିବ, ସେଇ ଭୟରେ ବେନୁଆଁ ଦି'ହାତରେ ଚଣା ଗୋଟାଇ ଟପାଟପ୍ ପାଟି ଭିତରେ ଭର୍ତ୍ତି କରେ, ଆଉ ଗାଲର ଥଳି ଭରପୂର କରି ସମସ୍ତଙ୍କୁ ମିଟିମିଟି କରି ଚାହେଁ ବେଶ୍ ହସିଲା ହସିଲା ମୁହଁରେ, ସତେ ଯେମିତି 'ହାଓ ଡୁ ୟୁ ଡୁ' କହିବାକୁ ଚାହୁଁଛି ।

ଗୋଟାଏ ଘରୁ ବେନୁଆଁ ଯେତେବେଳେ ଆଉ ଗୋଟିଏ ଘରକୁ ତା'ର ନାଚ ଦେଖେଇବାକୁ ଯାଏ, ଆମେ ଗାଁର ସବୁ ପିଲା ତା' ପଛରେ ଗୋଡାଇ ଯାଉଁ । ସେଇ ଖେଳ-ଆଉ ଆମର ପୁଣି ସେଇ ଆନନ୍ଦ ।

ଏଇ ପିଲାଦିନର ସ୍ମୃତି ଯୋଗୁଁ ବୋଧହୁଏ ମାଙ୍କଡନାଚ ପାଇଁ ଆଜି ମଧ ମନରେ ଦୁର୍ବଳତା ରହିଯାଇଛି ।

ସେଦିନ ଘର ବାହାରେ 'ଡାକ୍ ଡାକ୍ ଘିଡି ଡାକ୍ ଡାକ୍' ଶୁଣି ନିଜ ଅଜାଣତରେ ହିଁ ଘରୁ ବାହାରିଆସିଲି । ବୁଢା ଡଲେ ବାଡି ପିଟି ପିଟି ଗୋଟାଏ ସ୍ୱରରେ ସେଇ ଏକା ତାଳ ହିଁ ଧରିଥାଏ । ଡାକ୍ ଡାକ୍ ସଙ୍ଗରେ ତାଳ ମିଳାଇ ମାଙ୍କଡଟି ହଲି ହଲି ନାଚୁଥାଏ-ଛୋଟ ଛୁଆଙ୍କ ଥେଇ ଥେଇ ନାଚ ପରି । ଛଅଫୁଟିଆ ମସ୍ତବଡ ସେ ବୁଢା ପାଖରେ ଟିକି ମାଙ୍କଡଟି କେମିତି ଅଖାଡୁଆ ଦିଶୁଥାଏ- ସମ୍ପୂର୍ଣ୍ଣ ଖାପଛଡା । ମାଙ୍କଡଟି ବୋଧହୁଏ ନିହାତି ସାନ ଆଉ ଅନୁଭୂତିବିହୀନ-ଅଣ୍ଟାକୁ ଉପର ତଳ କରି ହଲାଇବା ଛଡା ଆଉ କିଛି ଜାଣେନି । ମଝିରେ ମଝିରେ ଯେତେବେଳେ ନାଚ ବନ୍ଦକରି ହାଲିଆ ମୁହଁରେ ଚାରିଆଡକୁ ଅନାଏ-ବୁଢା ଗଳାର ଶିକୁଳିକୁ ଜୋର୍‌ରେ ଟାଣି ଗାଳିଦିଏ ଆଉ ବାଡି ଉଠାଏ । ବିଚରା ମାଙ୍କଡ ସ୍ପ୍ରିଂରେ ଚାବି ସରିଆସିଥିବା ଗୋଟିଏ ଖେଳନା ପରି ଥମି ଥମି ଅଣ୍ଟାକୁ ଉପର ତଳ କରେ-ନିହାତ୍ ଅନିଚ୍ଛାରେ-ମାଡ ଡରରେ ।

ବଡ ବୋରିଂ । ଘର ଭିତରକୁ ଚାଲିଆସିବା ଆଗରୁ କିନ୍ତୁ ମନେହେଲା ମୁଁ ବୁଢାକୁ କେଉଁଠି ଦେଖିଛି-ବେଶ୍ ଚିହ୍ନା ଚିହ୍ନା ମୁହଁ ।

ତା'ପରେ ବୁଢା ଯେତେ ଥର ଆସିଛି, ମୁଁ ଆଉ ବାହାରକୁ ଯାଇନି । ବରଂ ବୁଢାକୁ ସବୁଦିନ ପଖାଳ ଦେଇ ଘରକୁ ଆସିବାକୁ ଉତ୍ସାହିତ କରାଯାଉଛି ବୋଲି ବିରକ୍ତ ହୋଇଛି ।

ସେଦିନ ଟିକେ ଅନ୍ଧାରୁଆ ହୋଇଆସିଲାଣି । ମୁଁ କ'ଣ ଗୋଟିଏ ଗୁରୁତର ବିଷୟରେ ମନ ଦେଇଛି, ହଠାତ୍ 'ଡାକ୍ ଡାକ୍ ଘିଡି ଡାକ୍ ଡାକ୍' ସାଙ୍ଗକୁ ବାଡିର ଆବାଜ ଆସିଲା । ଅବିରାମ ସେଇ 'ଡାକ ଡାକ' ଆଉ ବାଡି ପିଟା ଶବ୍ଦ ! ସନ୍ଧ୍ୟାରେ ମଧ ଏଥର ବିରକ୍ତ କଲାଣି ବୋଲି ବୁଢାକୁ ପାନେ

ଦେବା ଇଚ୍ଛାରେ ମୋର ଚୌକି ଛାଡି ବାହାରିଛି, ଭିତର ବାରନ୍ଦା ପାଖରେ ଥମି ଠିଆହୋଇଗଲି । ବୁଢା ନୁହେଁ, ଏଗୁଡାକ ପାଳା ଲଗେଇଛନ୍ତି ।

ଟିକୁ-ମୋର ସାନପୁଅ ବାଡିଟିଏ ଧରି ଡାଇନିଂ ଟେବୁଲରେ ବାଡେଇ 'ଡାକ୍ ଡାକ୍' କରୁଛି ଆଉ ସାନ ଗଣଜା ଟୁନା ଟେବୁଲ ଉପରେ ଗୋଡ ବଙ୍କେଇ ଠିଆହୋଇଛି ଓ ହାତ ଦି'ଟାକୁ ଦଉଡି ପରି ସିଧା ତଳକୁ ଝୁଲାଇ ଦେଇ ଥୋଇ ନାଚୁଛି- ଠିକ୍ ବୁଢାର ସେଇ ମାଙ୍କଡ ପରି ।

ମୁଁ ଚୁପ୍ ଚାପ ଠିଆହେଲି । ମଝିରେ ମଝିରେ ବାଡିର ଠୋଡ ଟିକିଏ ବଢିଗଲେ ଟୁନା ଟେବୁଲ ଉପରେ ଆହୁରି ଜୋର୍‌ରେ ଡିଆଁ ମାରୁଥାଏ ।

ଟିକୁ ଆଦେଶ ଦେଲା-କାନ ଧର୍ । ଟୁନା ଦି'ହାତରେ ନିଜ ଦୁଇ କାନ ଧରିଲା । ତା'ପରେ ପୁଣି ସେଇ ଡାକ୍ ଡାକ୍ । ଟୁନା କାନ ଧରି ଏଥର ଚାରିଆଡିକି ଘୂରି ଘୂରି ନାଚିବସିଲା । ତା'ଆଖି ଯେମିତି ମୋ ଉପରେ ପଡିଛି, ଟେବୁଲରୁ ସେ ଏକା ଡିଆଁକେ ତଳେ ହାଜର ହୋଇ ତୀର ପରି ଘର ପଛଆଡେ ଅଦୃଶ୍ୟ ହୋଇଗଲା । 'ରାସ୍କେଲ, ଏତିକି ବେଳୁ ଲଙ୍କା ଡେଇଁଲାଣି' କହି ଟୁନାକୁ ଧରି ଠିକ୍ କରିଦେବା ଉଦ୍ଦେଶ୍ୟରେ ଟିକୁ ଯେମିତି ବୁଲିପଡିଛି ତା ଆଖି ମଧ ମୋ' ଉପରେ ପଡିଗଲା । ଗୋଟିଏ ମୁହୂର୍ତ୍ତର ଇତସ୍ତତଃତା- ଆଖିପିଛୁଳାକେ ସେ ବି କେଉଁଠି ମିଳେଇଗଲା ।

ସେ ଦିନ ବୁଝିଲି ପିଲାଙ୍କ ପାଇଁ ମାଙ୍କଡନାଚ ହିଁ ମାଙ୍କଡନାଚ । ତାଙ୍କ ପାଇଁ ନାଚର ମାନ କିମ୍ବା ଗୀତର ତାନ ଅର୍ଥହୀନ । ମାଙ୍କଡ ଦି' ଗୋଡରେ ଠିଆ ହୋଇ ଅଣ୍ଟା ହଲେଇଲେ ହିଁ ହେଲା । ସେଥିରେ ହିଁ ସେମାନଙ୍କର ପରମ ଆନନ୍ଦ । ବୋଧହୁଏ ମାଙ୍କଡତ୍ୱର ପାରସ୍ପରିକ ଆକର୍ଷଣ । ଏଥର ବୁଢ଼ା ଯେତେବେଳେ ଆସିଲା ମୋ ସ୍ତ୍ରୀ ଓ ପିଲାଙ୍କ ସଙ୍ଗରେ ମୁଁ ବି ବାରନ୍ଦାରେ ଯାଇ ବସିଲି ।

ସେଇ ପୁରୁଣା ନାଚ । ମାଙ୍କଡର ହାଡୁଆ ମୁହଁରେ ଦୁର୍ବଳତାର ଚିହ୍ନ ସ୍ପଷ୍ଟ । ଛୋଟ ହେଲେ ବି ବୁଢାଙ୍କ ମୁହଁପରି ଶୁଷ୍କପୂର୍ଣ୍ଣ ସେ ମୁହଁ । ନାଚିବା ପାଇଁ ଆଗ୍ରହର କୌଣସି ଚିହ୍ନ ତା'ପାଖରେ ନଥାଏ । ବେଳେବେଳେ ଗୋଡ ବଙ୍କେଇ ସେମିତି ଠିଆହୋଇରହିଯାଏ ଆଉ ଅଣ୍ଟା ପାଖରେ କୁଣ୍ଡାଇହୋଇ ଏ ପାଖ ସେ ପାଖ ଅନାଇ ଆମକୁ ଚାହେଁ । ମୁହଁରେ କେମିତି ଗୋଟାଏ ବିକଳିଆ ଭାବ । କଅଁଳ ଉଦାସ ଆଖିରୁ ମୋର କାହିଁକି ମନେହେଲା ସତେ ଯେମିତି ସେ କହିବାକୁ ଚାହୁଁଛି-'ହେ ମଉସା, ହେ ମାଉସୀ-ସେଇଠି ବସି କି ତାମସା ଦେଖୁଛ ! ତମର କ'ଣ କିଛି ଦୟା ମାୟା ନାହିଁ ? ତମେ ମଣିଷମାନେ ପରା ନିଜକୁ ସୃଷ୍ଟିର ଶ୍ରେଷ୍ଠ ଜୀବ ବୋଲି କହି ନିଜର ଡିଣ୍ଡିମ ପିଟ ? ନିଜର ବାନା ନିଜେ ଉଡାଅ ? ଆମ ପରି ଲାଙ୍ଗୁଡଧାରୀ ତମର ପୂର୍ବପୁରୁଷଙ୍କୁ ନଚାଇ କି ଯଶ ଅର୍ଜୁଛ ? ହେ ବାଳପ୍ରେମୀ, ମାଙ୍କଡପ୍ରେମୀ ମାଉସୀ ! ମଉସାଙ୍କୁ ଯଦି କେହି ଜଣେ ବିରାଟକାୟ ଦାନବ ତୋଟିରେ ଦଉଡିବାନ୍ଧି ଦ୍ୱାରକୁଦ୍ୱାର ଭିଡିନେଇ ଭୋକ ଉପାସରେ ଥିଲାବେଳେ ବି ନାଚିବାକୁ ବାଧ କରୁଥାଆନ୍ତା ଏବଂ ତମର ଟିକୁ, ତମର ମିନିକୁ ଯଦି....' ମୁଁ ମୁହଁ ବୁଲାଇ ନେଇ ପାଟିକଲି : ''ଥାଉ ଥାଉ, ଯଥେଷ୍ଟ ହେଲା ବୁଢା, ନାଚ ବନ୍ଦକର ।'' ମୋର ହାତ ହଲାଇବା ଦେଖି ବୁଢା ତା'ର 'ଧିଡ୍ ଡାକ୍ ଡାକ୍' ବନ୍ଦକଲା । ମାଙ୍କଡ ଆଡକୁ ଆଉ ଥରେ ଯେତେବେଳେ ଅନାଇଲି, ଦେଖିଲି ପୁଣି ସେ ମୋ ଆଡିକି ଚାହିଁଛି । ଅତି କରୁଣ ସେ ଦୃଷ୍ଟି । ଏଥର ପୁଣି ମନେହେଲା, ସେ ଯେମିତି କହୁଛି-''ହେ ଶିକ୍ଷକ, ଅଧ୍ୟାପକ, ମାଷ୍ଟର, ଗୁରୁ ! ତମେ ପରା ମାଙ୍କଡମାନଙ୍କୁ ମଣିଷ କର ! ତମ ପିଲାଦିନ କଥା ଥରେ ମନେପକାଅ । ସେ ଦିନ ତମେ ମାଙ୍କଡ ଥିଲାବେଳେ ତମର ଶିକ୍ଷକ କ'ଣ ତମକୁ ଏମିତି ପ୍ରକ୍ ପିନ୍ଧାଇ, ତୋଟିରେ ଦଉଡି ବାନ୍ଧି, ବାଡି ପିଟି ପିଟି, ନଚାଇ ମଣିଷ କରିଥିଲେ ? ସେତିକିବେଳେ

ପରା 'ଜୀବନ-ଚିନ୍ତା' ପଢ଼ାଉ ପଢ଼ାଉ ମୃତ୍ୟୁ-ସିନ୍ଧୁର କରାଳ ଲହରୀ ଆଡ଼ିକି ବିନା ଶବ୍ଦରେ ଜୀବନସ୍ରୋତ ଧାଇଁଛି, ଆଉ ସେଇ ସ୍ରୋତ ସାଙ୍ଗରେ ଜୀବନର ସବୁ ସୁଖରାଶି ଭାସିଯାଉଛି ବୋଲି ଦରଦଭରା ସ୍ୱରରେ ଶିକ୍ଷକ କହିଲାବେଳେ ତମେ ଖେଳ କଥା ସବୁ ଭାବି ନାନା ରକମର ଟିପ୍ପଣୀ କାଟୁଥିଲ ? ଏବେ ହେଲେ ଟିକିଏ ଚିନ୍ତାର ଲୋଚନ ଫେଡ, ଆଉ ଆମ ଅବସ୍ଥା ନିରୀକ୍ଷଣ କର ! କହ, ଶୋକୋଚ୍ଛ୍ୱାସ ଢାଳିବାରେ ଯଥାର୍ଥତା ଅଛି ନା ନାହିଁ ? ବିନା ଦୋଷରେ ମାଡ ହେଲେ ପରା ତମ ଦେହରେ ନିଆଁ ଜଳୁଥିଲା ? ମା' କୋଳରୁ ଆମ୍ବଗଛକୁ ଆଉ ଆମ୍ବ ଗଛରୁ ପଣସ ଗଛକୁ ଖୁସିରେ ଡେଇଁ ବୁଲୁଥିବା ବାଳ ମାଙ୍କଡକୁ ତମର ଜଣେ ଜାତିଭାଇ ଜବରଦସ୍ତ ଧରିଆଣି ତମ ଆଗରେ ଯେଉଁସବୁ ଅତ୍ୟାଚାର କରିଚାଲିଛି ସେଇଟା କ'ଣ ନ୍ୟାୟ ? ତମର ମାପକାଠି କ'ଣ ତେବେ..''

ମୋ' ମୁଣ୍ଡ ଝାଇଁମାରିଲାଭଳି ଲାଗିଲା । ଅଜାଣତରେ ହିଁ ମୁଁ ମୋ' ଦୁଇ କାନ ଢାଙ୍କିଦେଲି । ମାଙ୍କଡକୁ ଆଉ ଚାହିଁପାରିଲିନି । ଟିକୁକୁ କହିଲି-'ଆରେ ଟିକୁ ଦଉଡିଗଲୁ-ଘରେ ଚଣା, ବିରି, ମୁଗ ଯାହା କିଛି ଥିଲେ ମୁଠିଏ ନେଇ ଆସିବୁ, ଆଉ ମୋ' ପାଇଁ ଗିଲାସେ ପାଣି ଆଣିବୁ ।'

ମାଙ୍କଡ ଟିକୁ ହାତରୁ ଚଣାତକ ପ୍ରାୟ ଝାମ୍ପିନେଇ ପାଟି ଭିତରେ ଭର୍ତ୍ତିକରିବାକୁ ଲାଗିଲା । ଟିକୁ ବିରକ୍ତିଭରା ଛିଣ୍ଡତା ସ୍ୱରରେ ମନ୍ତବ୍ୟ ଦେଲା -'ରାସ୍କେଲ, କେତେ ଅଭଦ୍ର-ଥେଙ୍କ ୟୁ ବି କହୁନି ।'

ମିନି ଟିପ୍ପଣୀ ଛାଡିଲା-'ନାନୀ, ଚିଡାନା କହିଦେଉଛି ।'

ଦେଲା ଚାଉଳତକ ଝୁଲାମୁଣିରେ ଭର୍ତ୍ତି କରୁଁ କରୁଁ ବୁଢା ନେହୁରାହୋଇ କହିଲା, 'ପଖାଳ ଗଣ୍ଡିଏ ଦିଅ ମା', ଭୋକରେ ପେଟ ଜଳୁଛି । କାଲି ଜର ହେଇଥିଲା ଯେ କେଉଁଠିକି ଯାଇ ପାରିଲାନି । ଘରର ସମସ୍ତେ କାଲିଠୁଁ ଉପାସରେ ରହିଛୁଁ ।

କିଛି ଭାତ ଆଉ ଡାଲି ଆସିବା ଆଗରୁ ମୋ' ସ୍ତ୍ରୀ ପଚାରିଲେ-'ବୁଢା, ତମର ଘର କେଉଁଠି ?'

ବୁଢା ଜବାବ୍ ଦେଲା, 'କୋଡିଏ ଟଙ୍କା ମା !' ସମସ୍ତଙ୍କ ଉଚ୍ଛୁଳା ହସ ମଝିରେ ବୁଢା କହିଚାଲିଲା, 'ବରଗଡ ପାଖରେ ମୋର ପୁତୁରାଟିଏ ଅଛି ଯେ ସେ କିଣିଦେଲା, ନଇଲେ ମୁଁ କୋଉଠୁ ଏତେ ଟଙ୍କା ପାଆନ୍ତି ? ଆଗରୁ ଗୋଟିଏ ଭଲ ମାଙ୍କଡ ଥିଲା ଯେ ସେ ବହୁତ ଶିଖିଥିଲା - କ'ଣ ହେଲା କେଜାଣି, ହଠାତ୍ ମରିଗଲା । ଏଇଟା ଅଶିକ୍ଷିତଟିଏ ।'

ଟିକୁ ମିନି ଏକା ସାଙ୍ଗରେ ରଡିଛାଡିଲେ-'ତମର ଘର କେଉଁଠି ପଚାରୁଛନ୍ତି ।'

ବୁଢା ଅପ୍ରସ୍ତୁତ ହସ ଟିକିଏ ହସି କହିଲା, 'ଭଲକରି ଶୁଣିପାରେନି ମା' - ମାଙ୍କଡର ଦାମ ପଚାରିଲ ବୋଲି ଭାବୁଥିଲି । ମୋର ଘର ଆଉ କେଉଁଠି - ସେଇ ହୀରାକୁଦ ବନ୍ଧ ତଳେ । ଅନ୍ୟ ସମସ୍ତଙ୍କ ସାଙ୍ଗରେ ମୁଁ ବି ଝୁପୁଡି କରି ରହିଛି ।'

ମୋ' ସ୍ତ୍ରୀ ପୁଣି ବଡପାଟିରେ ପଚାରିଲେ-'ତମର ଗାଁ' ? ବୁଢା ଏଥର ଠିକ୍ ଜବାବ ଦେଲା-'ଗାଁ ତ ବୁଡି ଅଞ୍ଚଳରେ ଥିଲା-ବୁଡିଗଲା ମା । ଆମେ ଆସି ବନ୍ଧତଳେ ଝୁପୁଡି କରି ରହିଲୁ-ଏବେ ଆଉ କେଉଁଠିକି ଯିବୁ !'

-କାହିଁ କି ତମର ପୁଅ ?

-ପୁଅ କାହିଁ ମା'-ଗୋଟିଏ ଅଛି ଯେ ପିଲାଦିନୁ ଅନ୍ଧ । ଆଉ ବୁଢୀ ଅନେକ ଦିନ ହେଲା ଖଟରେ ପଡିଛି । ଚାଉଳ କିଛି ମିଳିଲେ ମୁଁ ଯାଇ ଫୁଟାଇଦିଏଁ ।

-ତୁମେ କ'ଣ ସବୁଦିନେ ଏମିତି ଭିକ ମାଗୁଛ ?

ବୁଢା ମୁହଁରେ ବିରକ୍ତିର ଆଭାସ ଦେଖାଦେଲା । ଟିକିଏ ଚଢା ଗଳାରେ କହିଲା -'ଛୀବନ ପଛକେ ଯିବ, ଭିକ ମାଗିବି ମା ? ବଳ ବୟସ ଥିବାଯାଏ କାମ କରୁଥିଲି, ଏବେ ଆଉ କାମକୁ ପାରୁନି । ଏଇ ମାଙ୍କଡନାଚ ଦେଖାଇ ଯିଏ ଯାହା ଦିଏ ନିଏ । ଆଗରୁ ଯେଉଁ ମାଙ୍କଡ ଥିଲା ସେଇଟା ମରିଗଲା ପରେ ଏଇ ମାଙ୍କଡ ଆଣିବା ପର୍ଯ୍ୟନ୍ତ ଭୋକ ଉପାସରେ ରହିଲୁ ସିନା - ମୁଁ କାହା ଦୁଆରକୁ ଭିକ ମାଗିବାକୁ ଯାଇନି ।'

-ଆଗ କେଉଁଠି କାମ କରୁଥିଲ ?

ବୁଢାର ମୁହଁ ଏଥର ଉଜ୍ଜ୍ୱଳ ହୋଇଗଲା । କହିଲା, 'ହୀରାକୁଦ ଡେମ୍‌ରେ ମା - ମୁଁ ଥିଲି ମେଟ୍ ଆଉ କୁଲି ସର୍ଦ୍ଦାର । ଏ ଯେଉଁ ମାଟିବନ୍ଧ ଦେଖୁଛ, ଆମେ ତାକୁ ବାନ୍ଧିଛୁ ।'

ଇଏ ମୋ ଆଡିକି ଚାହିଲେ । ମୁଁ ବୁଢାକୁ ଭଲକରି ଅନାଇଥାଏଁ । ପଚାରିଲେ - କା ପାଖରେ କାମ କରୁଥିଲ ?

ବୁଢା ଉତ୍ତର ଦେଲା - ତମେ ଜାଣିବ ନି ମା'-ସେମାନେ କୋଉ କାଳରୁ ମରି ହଜି ଗଲେଣି ।

-କ'ଣ କହିଲ ? ମରି ହଜି ଗଲେଣି ?

-ହଁ ମା, କାହିଁ କେବର କଥା-ଆଜିଯାଏ କ'ଣ ଆଉ ଥିବେ ? ଭଲ ଭଲ ଲୋକଙ୍କୁ ତ ଯମ ବାଛି ବାଛି ନେଇଯାଏ । ଖାଲି ଆମପରି ଲୋକଙ୍କୁ ଏମିତି ଦୁଃଖ କଷ୍ଟରେ ଘାଣ୍ଟି ହେବାକୁ ଛାଡିଦିଏ । ସ୍ୱଗତୋକ୍ତି କଲାପରି କହିଲା-'ସେ ସାହେବ ବଞ୍ଚିଥିଲେ କ'ଣ ଆମେ ଏମିତି ଭୋକ ଉପାସରେ ମରନ୍ତୁ !'

-ତମେ ଯା' ପାଖରେ କାମ କରୁଥିଲ-ତାଙ୍କୁ ଦେଖିଲେ ଚିହ୍ନିପାରନ୍ତ ?

-ଚିହ୍ନିପାରନ୍ତିନି ମା ? ମୁଁ ଯା' ପାଖରେ କାମ କରୁଥିଲି ସେ ଜଣେ ଇଞ୍ଜିନିୟର-ହେଲେ କ'ଣ ହେଲା ଠିକ୍ ଆମପରି ଥିଲେ, ଆମରି କଥା କହୁଥିଲେ, ଆମକୁ ଭାରି ଭଲପାଉଥିଲେ । ମୁଁ ତାଙ୍କ ସାଙ୍ଗରେ ହାତ ଧରାଧରି ହୋଇ ପାଣି ପହଁରିଛି ମା' । ସେ ଗଣ୍ଡ ଭିତରେ ମାଟିବନ୍ଧ ତିଆରି ହେଉଥାଏ-ହଠାତ୍ ବଢି ଆସିଲା- ଆମେ ନଥିଲେ...

ବୁଢା ଆଉ କ'ଣ ସବୁ କହୁଥିଲା, ମୁଁ ଶୁଣିବା ଅବସ୍ଥାରେ ନଥିଲି । ମନ ମୋର ଚାଲିଯାଇଥିଲା ଚବିଶ ବର୍ଷ ତଳର ଦୂର ଅତୀତକୁ । ସେଦିନର ସ୍ମୃତି ସବୁ ଆଖିଆଗକୁ ଚାଲିଆସିଥିଲା ଗୋଟିଏ ଚଳଚିତ୍ରର ଚିତ୍ରପଟ ପରି ।

କଂକ୍ରିଟ ବନ୍ଧ ତିଆରି ଆରମ୍ଭ ହୋଇ ନ ଥାଏ । ନଈ ଗଣ୍ଡ ଭିତରୁ ସେଇ ବର୍ଷ ମାଟିବନ୍ଧ ତିଆରି ଆରମ୍ଭ ହେଲା । ଜୁନ୍ ଦୁଇ ତାରିଖରେ ଆସିଲା ବଢି । ବାଁ ପାଖର ନଈସୁଅକୁ ଡାହାଣ ପାଖକୁ ବଦଳାଇ ଦେଇଥିବା କଫର୍ ଡେମ୍ ଓ ମାଟି ବୁହା ହେବା ପାଇଁ ନଈ ଭିତରେ ତିଆରି ହୋଇଥିବା ହଲ୍ ରୋଡ୍ କେତେ ଘଣ୍ଟା ଭିତରେ ହିଁ ଧୋଇହୋଇଗଲା-ଆଉ ତା' ସାଙ୍ଗରେ ଗଣ୍ଡରେ ତିଆରି ହେଉଥିବା ଅସ୍ଥାୟୀ ପୋଲ ।

ଏତେ ଶୀଘ୍ର ଏମିତି ଗୋଟାଏ ବଢି ଆସିବ ବୋଲି ଆମେ କେହି କଳ୍ପନା ମଧ କରିନଥିଲୁ । ଆମ ଓଡିଆ ପାଞ୍ଜି ଅନୁସାରେ ମିଥୁନ ସଂକ୍ରାନ୍ତି ପଡୁଥିଲା ଜୁନ୍ ୧୪ ତାରିଖରେ । କୋଚିନ୍ ଉପକୂଳରେ ମନସୁନ୍ ଦେଖା ମଧ ଦେଇନଥିଲା । ହାତରେ ଅନ୍ତତଃ ୭/୮ ଦିନ ରହିଛି ଭାବି ମାନସିକ ସାନ୍ତ୍ୱନା ନେଇ ଆମେ କାମରେ ଆଗେଇ ଚାଲିଥିଲୁ । ମାଟିବନ୍ଧର ସାମନା ପାଖ ବଢି ଉପର ଲେଭେଲ୍‌କୁ ଉଠିସାରିଥିଲା, କିନ୍ତୁ ପଛପାଖ ଥିଲା ବଡ ବଢିର ବେଶ୍ ତଳ ଲେଭେଲ୍‌ରେ ।

ପଥର କାମ ଆରମ୍ଭ ହୋଇ ନଥିବା ଫଳରେ ପଲ୍ଲପାଖର ମାଟି ପୂରାପୂରି ଖୋଲା ରହିଯାଇଥିଲା । ହୀରାକୁଦ ଟାପୁରେ ସୋଭେଲ୍ ଓ ଡମ୍ପର୍ ପ୍ରଭୃତି କେତେକ ଯନ୍ତ୍ରପାତି ରଖି ବର୍ଷା ମାସଯାକ ଧୀରେ ଧୀରେ ଏ ପଲ୍ଲ ପାଖର କାମ କରିବୁ ବୋଲି ଆମ ମନସ୍ଥ କରିଥିଲୁ । ଅଧିକାଂଶ ଯନ୍ତ୍ରପାତି ଏବେ ସେ କୂଳରେ ରହିଗଲା । ଆମର ସବୁ ପ୍ରୋଗ୍ରାମ୍ ଏଇ ବଢ଼ି ଓଲଟପାଲଟ କରିଦେଲା ।

ରାତି ଅଧରେ ଖବର ଆସିଲା-ବଢ଼ି ପାଣି ବନ୍ଧ ତଳକୁ ଉଜାଣି ବହୁଛି, ଆଉ ପଲ୍ଲପଟରେ ମାଟି ଖାଉଯାଉଚି । ଛାତିରେ କେମିତି ପବନ ଅଟକି ଗଲାପରି ମନେହେଲା । ବର୍ଷାଋତୁଯାକ ତ ବଢ଼ି ପରେ ବଢ଼ି ଆସିବ । ବନ୍ଧର ପଲ୍ଲପଟ ଖୋଲା, ମାଟି ଅତଡା ଖସିଲେ ବନ୍ଧ ରହିବନି । ଆଉ ବନ୍ଧ ଯଦି ଭାସିଯାଏ !

ଚିଫ୍ ଇଞ୍ଜିନିୟର ସେଦିନ ବ୍ୟଙ୍ଗ କରିବା ଢଙ୍ଗରେ ହସି ହସି ଚେତାବନୀ ଦେଇଥିଲେ-ବନ୍ଧ ଭାସିଗଲେ ତମକୁ ବି ନଈରେ ଭାସିଯିବାକୁ ପଡିବ । ଉତ୍ତର ଛଳରେ ମୁଁ ବି ଟିକିଏ ହସିଦେଇଥିଲି । ସେ ହସ ପଛରେ ଯେଉଁ ଦୃଢତା ଆତ୍ମପ୍ରକାଶ କରିଥିଲା ତାହା ଥିଲା କାରିଗରିବିଦ୍ୟାରେ ଧରମା-ବିଶୁ-ବାଉମୁଣ୍ଡିଙ୍କ ଜଣେ ଦାୟାଦର ଉଦ୍‌ବେଗହୀନ ଆତ୍ମବିଶ୍ୱାସର ଆତ୍ମପ୍ରକାଶ ମାତ୍ର । ସତକୁ ସତ ବନ୍ଧ ଯଦି ଏବେ ଭାସିଯାଏ !

ରାତିରେ ନଈ ପାରିହୋଇ ହୀରାକୁଦ ଆଇଲେଣ୍ଡକୁ ଯିବାର ସମ୍ଭାବନା ନ ଥିଲା । ରାତିସାରା ନିଦ ହେଲାନି, ମାତ୍ର ଯେଉଁ କେତେ ମୁହୂର୍ତ୍ତ ଘୁମାଇ ପଡିଥିଲି ସେ ଟିକକ ସମୟର ଦୁଃସ୍ୱପ୍ନରେ ମଧ ଭାସିଯାଉଥିବା ଗୋଟାଏ ଗଛର ଗଣ୍ଡିରେ ଆଶ୍ରୟ ନେଇ ମହାନଦୀ ବଢ଼ିରେ ଭାସିଚାଲିଥିଲି ନରାଜ ଅଭିମୁଖରେ ।

ସିନ୍ଦୂରା ଫାଟିଲାବେଳକୁ ଡଙ୍ଗାରେ ନଈ ପାରିହୋଇ ମୁଁ ବନ୍ଧପାଖରେ ପହଞ୍ଚି ସାରିଥିଲି । ଯାହା ଦେଖିଲି ବିଶ୍ୱାସ ବି କରିପାରିଲିନି । ପୂର୍ବକୁ ବୋହି ଯାଉଥିବା ବଢ଼ିପାଣି ବନ୍ଧ ପାଖରେ ଦିଗ ବଦଳାଇ ପଶ୍ଚିମକୁ ବୋହିଚାଲିଛି, ଆଉ ବନ୍ଧ ପଲ୍ଲପଟେ ପିଟିହୋଇ ଭଅଁର ଖେଳୁଛି । ମନେହେଲା ବନ୍ଧକୁ ଆଉ ରକ୍ଷାକରି ହେବନି । ବନ୍ଧର ତଳପଟେ ପଥରର ମୋଟା କାନ୍ଥ ବାଡ ଦେଇ ଉଜାଣି ସୁଅକୁ ରୋକିବା ହିଁ ଏକମାତ୍ର ପ୍ରତିକାରର ଉପାୟ । ପଥରଖଣ୍ଡ ସବୁ ତ ଭାସିଯିବ ! କାଠବଲ୍ଲିରେ ଲୁହାଛଡ ଗୁନ୍ଥି ବଡ ବଡ ବାକ୍ସ କରି ସେସବୁ ପଥର ବୋଝେଇ ବାକ୍ସକୁ ଗୋଟିଏ ଧାଡିରେ ପାଣି ସୁଅରେ ବୁଡ଼ାଇ ଦେଇ ପାରିଲେ ସୁଅର ଗତିବେଗକୁ ରୋକି ଦେଇ ହୁଅନ୍ତା । ଚିଫ୍ ଇଞ୍ଜିନିୟରଙ୍କୁ ଏ କଥା ଯେତେବେଳେ କହିଲି ସେ ଶେଷ ନିଷ୍ପତ୍ତି ନେବାର ସ୍ୱାଧୀନତା ମୋ ହାତରେ ହିଁ ଛାଡିଦେଲେ । ସନ୍ଧ୍ୟା ହେବାର ଯଥେଷ୍ଟ ପୂର୍ବରୁ ଏପରି କେତୋଟି କ୍ରେଟ୍ ବାକ୍ସ ତିଆରି ହୋଇଗଲା । ଯଥେଷ୍ଟ ପଥର ଜମା ହେବା ସଙ୍ଗେ ସଙ୍ଗେ ଚାରିଟି ଡିଜେଲ୍ ଡ୍ରମ-ବନ୍ଧା ଭେଳା ମଧ ପ୍ରସ୍ତୁତ ହୋଇ ସାରିଥିଲା । କିନ୍ତୁ ବିଲେଇ ବେକରେ ମୂଷାମାନେ ଘଣ୍ଟି ବାନ୍ଧିଲା ପରି ସେଇ ନଈ ସୁଅରେ କିଏ କ୍ରେଟ୍ ଆଉ ପଥର ବୋଝେଇ ଭେଳା ନେଇ ଯଥା ସ୍ଥାନରେ କ୍ରେଟ୍‌କୁ ବୁଡାଇଦେବ ? କେହି ବାହାରିଲେନି ।

ଅଗତ୍ୟା ମୁଁ ଯେତେବେଳେ ପାଣି ଭିତରକୁ ପଶିଗଲି, ଜଣେ ହୃଷ୍ଟପୁଷ୍ଟ ଛଅଫୁଟିଆ ମଜଦୁର ଅନ୍ୟମାନଙ୍କୁ ତିରସ୍କାର କରି ପାଣି ଭିତରକୁ ଡେଇଁପଡିଲା । ତା'ପରେ ପହଁରି ପହଁରି କ୍ରେଟ୍ ଓ ପଥର ବୋଝାଇ ଭେଳାକୁ ଯଥାସ୍ଥାନକୁ ନେଇଯିବାପାଇଁ ଲୋକର ଅଭାବ ହେଲାନି । ଭେଳାରେ ବନ୍ଧାହୋଇଥିବା ଦୁଇଟି ଲମ୍ବ ଦଉଡି ସାହାଯ୍ୟରେ କୂଳରୁ ଆକଟ କରି ଭେଳା ଯେପରି ଭାସି ନ ଯାଏ ତା'ର ଦାୟିତ୍ୱ ନେଇଥିବା ଲୋକଙ୍କ ସିଧାସଳଖ ନେତୃତ୍ୱ ନେବା ପାଇଁ ମୁଁ ସେଇ ଛଅଫୁଟିଆ

ମଜଦୂରଙ୍କୁ ଆଦେଶ ଦେଇଥିଲି । ବିଶେଷ ବାଧାବିଘ୍ନ ବିନା ଗୋଟିକ ପରେ ଗୋଟିଏ କରି ଦିଓଟି କ୍ରେଟ ଯଥାସ୍ଥାନରେ ଡୁବାଇ ଦେଲା ପରେ ତା'ର ଫଳାଫଳ ଦେଖି ଆମର ଉତ୍ସାହ ଦ୍ୱିଗୁଣିତ ହୋଇଗଲା । ତୃତୀୟ କ୍ରେଟ ବେଳକୁ ହିଁ ଭେଳାର ଗୋଟିଏ ବନ୍ଧା ଦଉଡି ଛିଣ୍ଡିଗଲା । ଆସନ୍ନ ବିପଦର ସମ୍ମୁଖରେ ଆମେ ସମସ୍ତେ ଏକାସାଙ୍ଗରେ ଚିତ୍କାର କର୍ଲୁ - 'ସୋମବାରୁ !

ଅଜାଣତରେ ଆଜି ମଧ୍ୟ ଭୟ ଓ ଉତ୍କଣ୍ଠାରେ ମୁଁ ଚିତ୍କାର କରିଉଠିଲି, 'ସୋମବାରୁ !'

ବୁଢା ଚମକିପଡିଲା । ତା' ପେଚୁଆ ଆଖି କ୍ଷଣକ ମଧ୍ୟରେ ଜଳିଉଠିଲା-ସତେ ଯେମିତି ଲିଭିଯାଇଥିବା ଦିଓଟି ମହବତିକୁ କିଏ ହଠାତ୍ ଡିଆସିଲି ମାରି ଜଳାଇଦେଇଛି । ମନେହେଲା ପଲକବିହୀନ ତୀକ୍ଷ୍ଣ ଆଖି ନେଇ ବୁଢା ମୋ ମୁହଁରେ କିଛି ଗୋଟାଏ ଖୋଜୁଛି । ଆଖି ଦିଓଟି ଯେମିତି ଜଳିଉଠିଥିଲା, କିଛି ସମୟ ପରେ, ସେମିତି ସଳିତା ସରିଯାଇଥିବା ତରଳିଲା ମହମବତି ପରି ଆପେ ଆପେ ଲିଭିଗଲା ।

ଗୋଟିଏ କୌଣସି ଦୁଃସ୍ୱପ୍ନ ଭାଙ୍ଗିଲା ପରେ ମଣିଷ ଯେମିତି ତ୍ରସ୍ତ ହୋଇ ଉଠେ ବୁଢା ସେମିତି ସେଠାରୁ ଉଠିଲା । ପାଟି ମେଲା-ମୁଣ୍ଡ ଝୁଣି ସତେ ଯେମିତି ଆଖିର ଦୃଷ୍ଟି ସାହାଯ୍ୟରେ ଭୂଇଁରୁ କିଛି ଚିରି ବାହାର କରିବାକୁ ଚେଷ୍ଟା କରୁଥାଏ । ମନେହେଲା ବୁଢାର ଅଣ୍ଟା ଯେମିତି ଟିକିଏ ବଙ୍କେଇ ଯାଇଛି । ବୁଢାଠାରୁ କି ଇଙ୍ଗିତ ପାଇଲା କେଜାଣି-ମାଙ୍କଡଟି ବୁଢାର କାନ୍ଧ ଉପରକୁ ଉଠିଯାଇ ଦି'ହାତରେ ତା'ମୁଣ୍ଡକୁ ଜାବୁଡି ଧରିଲା ।

ବୁଢା ଫେରିଯାଉଥିଲା ମନ୍ତ୍ରମୁଗ୍ଧ ପରି । ଟିକୁ ମିନିର 'ବୁଢା, ପଖାଳ' ଡାକ ସେ ଆଉ ଶୁଣିନି । ମାଙ୍କଡ ବୋଧହୁଏ ଶୁଣିପାରିଲା-ମିଟି ମିଟି କରି ସେ ଆମ ଆଡକୁ ଚାହିଁଲା, ତା'ପରେ ମୁହଁ ବୁଲାଇନେଲା ।

ପିଲାମାନେ ଘର ଭିତରକୁ ଫେରି ଯାଇ ସାରିଥିଲେ । ଛାତି ଭିତରେ ଗୋଟିଏ ଅଜ୍ଞାତ ବେଦନା ନେଇ ମୁଁ ସେଠାରେ ବସିରହିଲି । ବନ୍ଧ ଉଦ୍‌ଘାଟନ ବେଳର ନେହୁରୁଜୀଙ୍କ ବାଣୀ କାନରେ ଝଙ୍କାରି ଉଠୁଥିଲା । ସେ କହୁଥିଲେ-'ଗରିବ ଜନତାର ଲହୁରେ-ଗରିବ ଜନତାର ଲୁହରେ ତିଆରି ସ୍ୱାଧୀନ ଭାରତର ଏଇ ପ୍ରଥମ ମନ୍ଦିର ମୁଁ ମୋର ଦେଶବାସୀ ସେହି ଅଗଣିତ ଗରିବ ଭାଇଭଉଣୀଙ୍କ ହାତରେ ଅର୍ପଣ କରୁଛି । ତାଙ୍କରି କଲ୍ୟାଣପାଇଁ ଏ ପବିତ୍ର ମନ୍ଦିର ଆଜି ଉତ୍ସର୍ଗୀକୃତ ହେଲା ।'

ମୋ ମାନସପଟରେ ଦୃଶ୍ୟମାନ ଚଳଚ୍ଚିତ୍ରର ଏକ ଦିଗରେ ଯେତେବେଳେ ନରବାନର ସମନ୍ୱିତ ଏକ ଶୀର୍ଣ୍ଣକାୟାର ଛାୟା ଅପସରି ଯାଉଥିଲା, ସେତିକିବେଳେ ଅନ୍ୟ ଦିଗରୁ ପରଦା ଉପରକୁ ଉଠିଆସୁଥିଲା ଭୁବନେଶ୍ୱରରେ ମୁଣ୍ଡ ଟେକି ଉଠିଥିବା ଅଫିସର, ଇଞ୍ଜିନିୟର ଓ ଠିକାଦାରମାନଙ୍କ ଅଗଣିତ ବିରାଟ ବିରାଟ କୋଠାର ଚିତ୍ରାବଳୀ । ପୃଷ୍ଠଭୂମିରେ ଦିଶୁଥିଲା ବରଗଡ-ବରପାଲି ଜଳସେଚିତ ଅଞ୍ଚଳର ଧନ-କୁବେରମାନଙ୍କ ଶସ୍ୟଶ୍ୟାମଳା ସବୁଜ ଧରଣୀ ।

ମୁଁ ବସିଥିଲି ଏକ 'ସ୍ନୋସେମ୍' ସ୍ନାତ୍ ସରକାରୀ ସୌଧର ସାମନା ବାରଣ୍ଡାରେ- ମାଙ୍କଡନଚାଳି ବୁଢାର କଙ୍କାଳର ଜଣେ ଦେବତା-ମାଟିର ହସ୍ତପଦ ନେଇ ।

# ଭୋଳି କକା

ବ୍ରହ୍ମାନନ୍ଦ ପଣ୍ଡା

(୧)

ଜୀବନଟା ଗୋଟାଏ ଘଟଣାର ବନ୍ୟା । ତା'ର ସ୍ରୋତରେ ସବୁ କିଛି ଭାସି ଯାଏ ସମୟର ଅନନ୍ତ ଗର୍ଭ ଭିତରକୁ । କିନ୍ତୁ, ସେଥିରୁ ଇମିତି ଗୋଟିଏ ଗୋଟିଏ ଘଟଣାର ପ୍ରଭାବ ମଣିଷର ଚିନ୍ତା ଭିତରେ ବେଳେ ବେଳେ ଅଟକି ଯାଏ, ଯାହାକୁ ଇତିହାସ ବା କାଳ ଭସେଇ ନେଇ ପାରେନି । ମୋର ଇ'ୀ ଛୋଟିଆ ଜୀବନରେ ଭୋଳି କକା ସିମିତ ଗୋଟାଏ ପ୍ରଭାବ ଯାହା ମୋର ଚିନ୍ତାକୁ ପାରମ୍ପରିକ ଆତ୍ମ ପ୍ରତାରଣା ଭିତରୁ ମୁକ୍ତ କରି ଗୋଟାଏ ନୂଆ ଦିଗନ୍ତରେ ଆଣି ଉତୁରେଇ ଦେଲା । ସେଥିଲାଗି ଭୋଳି କକା ମୋ ମନରୁ ପାଶୋର ଯାଇନି ।

ଗୋଟିଏ ଖଣ୍ଡିଆ ପାହାଡ ତଳେ, ପ୍ରାୟ ଶହେ ଘରର ଛୋଟ ବସତି, ଆମ ଗାଁର ଅବସ୍ଥିତି । କୌଣସି ଭୌଗୋଳିକ ଅବା ଉଦ୍‌ବର୍ତ୍ତନ ସମ୍ବନ୍ଧୀୟ କାରଣରୁ ହୁଏତ ପର୍ବତ ଶ୍ରେଣୀର ପ୍ରସାର ହଠାତ୍ ଆମ ଗାଁ ନିକଟରେ ବାଧା ପ୍ରାପ୍ତ ହୋଇ ଯାଇଛି । କାରଣ ଆମ ଗାଁର ପଶ୍ଚିମ ଦିଗରେ, ପ୍ରାୟ ଦେଢ ମାଇଲ୍ ପରେ, କ୍ରମବିସ୍ତୃତ ବନାନୀର ଶ୍ରୀ ଓ ସମୃଦ୍ଧି ଭଲଭାବେ ଦେଖି ହୁଏ । ଆମ ଗାଁ ପରେ ବଡ ପଥର ଖଣ୍ଡେ ବି ଆଖିରେ ପଡିବା ସୁଲଭ ନୁହେ । କଳା ଚିକିଟା ମାଟିର କିଆରୀ ମାଳ, ସେଥି ଭିତରେ ଗାଉଁଲି ଜୀବନ ଉପଯୋଗୀ ନାନା ଜାତି ଗଛ ଗହଳି ଭିତରେ ଖଣ୍ଡିଏ ଲେଖା ଉଦାସ, ନିରାଡମ୍ବର ଗାଁ' ବସି ଯାଇଚି କେଉଁ ପୁରାତନ କାଳରୁ । ଦୂରରୁ ମନେ ହୁଏ, କେଉଁ ଯୋଗୀ ଯେପରି ନିର୍ବିକଳ୍ପ ସମାଧି ଘେନିଚି ।

ପୋଖରୀ ହିଡ ଉପରେ ବସି ମୁଁ ବହୁବାର କିଆରୀ ମାଳରେ ସମୂହ ବେଙ୍ଗ ରଡି ଶୁଣିଚି, ସୁନାର ଲହଡି ଦେଖିଚି, ଦୂର ମଣ୍ଡାଣିର ରଙ୍ଗ ନିଆଁକୁ ଅପଲକ ଆଖିରେ ଚାହିଁଚି । ବଣ ପାଣି ଗଡି ଆସିଲେ ଗାଁର ବାକୁତ ସଂସାର ଉତ୍ସବମୟ ହେଇ ଉଠେ । ଦଳ ଦଳ ହେଇ ଆମେ ଝପଟି ଯାଉଁ ସେଇ ଅପୂର୍ବ ଗଙ୍ଗା ସ୍ରୋତରେ ଦେହ ବୁଡାଇବା ପାଇଁ । ପାଣିର ଗୁପତ ଡାକରା ସମଝିବା ଜ୍ଞାନ ଆମ ତୁଲେ ସହଜାତ । ଧାନ କିଆରୀ ଭିତରେ ନୂଆ ଆଉ ପୁରୁଣା ପାଣିର ଭେଟ ହୁଏ । ମାଛ ଉଠି ଆସନ୍ତି କଟା ହିଡ ମୁହଁକୁ । ସେଇଠି ବେନ୍ଦାରେ ଧରା ପଡନ୍ତି । ଗଡିସ, ଫଳି, ଚିଙ୍ଗୁଡି, କେରାଣ୍ଡି- ନାନା ଜାତିର ମାଛ । ଜିରା, ଧନିଆ, ହଳଦି ଦିଆ ମୋ ବୋଉ ହାତର ରନ୍ଧା ବିଲ ମାଛ ଓ ମୋ ବୋଉର ପାକ ଭିତରେ ଥିଲା ସ୍ନେହର ସ୍ୱାଦୁ; ଭୋଜନାଳୟର ଗଙ୍ଗା ଇଲିସି ବା ଚିଲିକା ଭେକ୍‌ଟି ଭିତରେ ରହିଚି ବ୍ୟବସାୟର ବିଷ, ପ୍ରତିଯୋଗୀ ଅର୍ଥର ଅନର୍ଥ ।

ସେ ବୟସରେ ପଲ୍ଲୀର ଶ୍ରୀ ବୋଧ ମତେ ସ୍ୱତନ୍ତ୍ର ଭାବରେ ଆନନ୍ଦ ଦେଉ ନଥିଲା । ସେଠା ମାଟି, ପାଣି, ପବନ, ଧାନ, ମାଛ, ଗଛ ଭିତରୁ ମୁଁ ନିଜକୁ କେବେହେଲେ ଅଲଗା କରି ରଖି ପାରି ନଥାନ୍ତି । ମୋର ଆଜିର ଏ ସଂସ୍କୃତି ସେଇ କାଳିଆ ମାଟି ପେଟରୁ ଗଢା ହେଇଥିଲା ! ନଗର ସଂସ୍କୃତି

ଓ ସଭ୍ୟତାର ଟେକ୍ନିକ୍ ବର୍ଣ୍ଣସଙ୍କର ପ୍ରଣାଳୀରେ ତାକୁ ମାଣ୍ଡଣାର ଫୁଲ ଗଛ କରି ପାରିନି । ଭୋଳି କକା ମୋର ନାକ ଭିତରେ ଚେତନା ଫୁଙ୍କି ଦେଇଥିଲା ।

(୨)

ମୋର ବୟସ ଯେତେବେଳେ ସାତବର୍ଷ । ବୁଝି ପାରିଲି, ଭୋଳି କକା, ମୋର କେବଳ ନୁହେ, ଗାଁ ଯାକର କକା । ଗୁଡ଼ିଆ ଘରୁ ଚଣା, ଖଜା, ସାକର ସେ ମୋପାଇଁ କେବଳ ଆଣେନି, ଆଣେ ଅନ୍ୟ ପିଲାଙ୍କ ପାଇଁ ମଧ । ବେଳେବେଳେ ମୋର ରାଗ ହୁଏ ଭୋଳି କକାର ଏ ଆଚରଣ ଦେଖି । ମୋର ଭୋଳି କକା ଗାଁ ଯାକର କକା କାହିଁକି ହୁଅନ୍ତି ! ସେଇ ଭୋବନା, ମୁକୁନ୍ଦା, ସୋଲି, ରାଧି, ପଦି ତା' ଉପରେ କାହିଁକି ଏତେ ଆବଦାର କରିବେ ? କହିବି ବୋଲି ଭୋଳି କକାକୁ କହିପାରେନି । କିନ୍ତୁ ଏଇ ଗୁମର ମନରେ ରଖି ବୋଉବୋଉକା ଖେଳିଲା ବେଳେ ପଦିକି ଥରେ କସି କରି ବିଧାଏ ମାଇଲି । ଢେଲା ଢେଲା ଆଖିରେ ମତେ ଥରେ ବିକଳରେ ଅନେଇ ଦେଇ ସେ ଘରକୁ ପଳେଇ ଯାଇଥିଲା । ଭୋଳି କକା ଭଳି ପଦିର ସେ ଚାହାଣୀ ଏବେ ସୁଦ୍ଧା ମୋ ମନରେ ଟଟକା ରହିଚି ।

ଇଂରେଜି ପାଠଶାଳାରେ ଭରତି ହେବା ପାଇଁ ମୁଁ ପାଖ ସହରକୁ ସ୍ଥାନାନ୍ତରିତ ହେଲି । ଶଗଡରେ ଗଲାବେଳେ ଦଣ୍ଡା ତଡ ଜାମୁ କୋଳି ଗଛ ମୂଳରୁ ଦୁଇଟି ନିରୀହ, ଅବୁଝା କଳା ଆଖି ମତେ ବଡ ସନ୍ତର୍ପଣରେ ଚାହିଁ ରହିଥିଲା । ରାଗରେ ମୁଁ ମୁହଁ ବୁଲେଇ ନେଇଥିଲି । ମୋର ଅନୁପସ୍ଥିତିରେ ଭୋଳି କକା ପାଖରୁ ସାକର, ମିଠେଇ ଏମାନେ ତ ଖୁବ୍ ମଜାରେ ଖାଇବେ ! ପଦି ଆଖିର ଭାଷା ବୁଝିବା ବେଳକୁ ମୁଁ ତା'ର ଦୁନିଆରୁ ଅଲଗା ହେଇ ସାରିଲିଣି । ମୋର ଏଇ ଶରଣପଞ୍ଜର ଦୁନିଆରେ ଥିଲା ପାଉଡର୍ ଘଷା ଗାଲ, ବାସନାଓଦା ଆଖି, ଜଟିଳ କଥାର ଛଳ ଭାବପ୍ରବଣତା, ବରାଦକରା ଅନୁରାଗ । ପଛରେ ରହିଗଲେ କାଳିଆ ମାଟିର ଆମ ଗାଁ, ଭୋଳି କକା ଆଉ ପଦି, ମୁଁ ଆଗେଇ ଗଲି ନାଲି ଧୂଳିର ସଡକ ଉପରେ ପାଦ ଛାଟି ଛାଟି କେଉଁ ସୁଦୂର ଲକ୍ଷ୍ୟ ଉଦ୍ଦେଶ୍ୟରେ ।

ଖରାଦିନ ଛୁଟିରେ ଆସି ପ୍ରାୟ ଅଢେଇ ମାସ ମୁଁ ଗାଁରେ କଟେଇ ଥାଏ । କିନ୍ତୁ ଭୋଳି କକା ସଙ୍ଗେ ମଣିବାର ପ୍ରୟୋଜନୀୟତା କେବେ ବିଶେଷ ଭାବେ ଅନୁଭବ କରିନି । ତୋଟା ମାଳରେ ଘୂରି ଆମ୍ବ ପାରିବା, ଅଠାକାଣ୍ଡିଆ ପକେଇ ଚଢେଇ ଧରିବା, ପାହାଡ ଚଢି କୋଳି ତୋଳିବା, ପିଲାଦିନର ଖେଳ ସାଥୀ କେଉଁ କିଶୋରୀର ବଲବଲ ଚାହାଣୀ ଆଗରେ ସରମି ଭରମି ଠିଆ ହେବା, ମଣ୍ଡପ ଉପରେ ରାତି ପୁରାଣ ଶୁଣିବା ଅବା ଆଖଡା ଘରେ ଛାନ୍ଦ, ଚୌପଦୀ ଗାଇ ଶିଖିବା ଭିତରେ ଛୁଟି ଦିନ ତକ ବଡ ଜଲ୍‌ଦି ସରି ଯାଏ । ମୁଁ ପୁଣି ଫେରି ଯାଏ ସହରକୁ ନୂଆ ପାଠ ଆୟତ୍ତ କରିବା ପାଇଁ, ଗୋଟାଏ ଅଜ୍ଞାତ, ସଂପୂର୍ଣ୍ଣ ବିପରୀତ ସଂସାର ଭିତରେ ରହି ଶିଖିବା ପାଇଁ । କିଶୋର ମନର ନିଥର, ନିର୍ମଳ, ସ୍ୱପ୍ନାବିଷ୍ଟ, ମୁଖର ଚନ୍ଦ୍ରାଲୋକ ଭିତରେ ବାକୁଠ ମନର ଚଞ୍ଚଳ ଭୋଳି କକା ନୀରବ ହେଇ ଯାଇଥିଲା ।

(୩)

କଲେଜ ଛାଡିଲା ପରେ ମତେ ଗୋଟାଏ ବରଷ ରହି ଯିବାକୁ ହେଲା ଗାଁରେ । ପାରିବାରିକ କାରଣରୁ ଘରେ ରହିବା ମୋର ପ୍ରୟୋଜନ ଥିଲା । ଅଧିକନ୍ତୁ, ଜୀବିକା ସମ୍ବନ୍ଧେ ମୁଁ କିଛି ନିଶ୍ଚୟ କରି ପାରି ନଥିଲି । ଏଇ ବର୍ଷକ ଭିତରେ, ପିଲା ଦିନର ପରିଚିତି ଉପରେ, ଭୋଳି କକାକୁ ଜାଣିବାର ସୁଯୋଗ ମୁଁ ଏଥି ଭିତରେ ପାଇଲି । ବିଶ୍ୱବିଦ୍ୟାଳୟର ଶିକ୍ଷା ଅପେକ୍ଷା ଭୋଳି କକାର ସାହଚର୍ଯ୍ୟ ମତେ ଅଧିକ

ବିଶ୍ୱସ୍ତ ଭାବରେ ଜୀବନ ଦର୍ଶନର ଦିଗ ଦେଖେଇ ପାରି ଥିଲା ।

ସଦା ହସ ହସ ମୁହଁ ପଞ୍ଚାବନରବର୍ଷର ବୁଢ଼ା ଏ ଭୋଳି କକା ଗାଁରେ ସବୁ ଠାରୁ ଗରୀବ । ପାଞ୍ଚ ବର୍ଷର ପୁଅ ଓ ତିନି ବର୍ଷର ଝିଅଟିଏ କକା କୋଳରେ ଦେଇ ସ୍ତ୍ରୀ ପଚିଶି ବର୍ଷ ତଳେ ଆଖି ମୁଦିଚନ୍ତି । ପିଲା ଦୁଇଟିକୁ ମାଆର ସ୍ନେହ ଓ ବାପାର ଦାୟିତ୍ୱ ଦେଇ କକା ମଣିଷ କଲେ । ପାଖ ଗାଁରେ ଝିଅ ତା'ର ଘର ସଂସାର କଲାଣି । ବେଳେ ବେଳେ ବୁଢ଼ାକୁ ଦେଖି-ଚାହିଁ ଯାଏ । ପୁଅ ଯାଇଚି ବର୍ମା । ଗତ ମହାଯୁଦ୍ଧ ବେଳେ ଜାପାନ ବର୍ମା ଆକ୍ରମଣ କଲାରୁ ଆମ ଲୋକ ସବୁ ଭାଗି ପଳେଇ ଆସିଥିଲେ । ବର୍ମା ତାଙ୍କୁ ହାତରେ କାହାର ପ୍ରାଣ ଯାଇଚି, କିଏ ବାଟ କଡରେ ମରିଚି, କିଏବା ଦର ମରା ଅବସ୍ଥାରେ ଘରେ ଆସି ପହୁଞ୍ଚିଚି । କିନ୍ତୁ କକାର ପୁଅ ଆଉ ଫେରିନି । କିଏ କହେ, ବର୍ମୀ ସ୍ତ୍ରୀ ଧରି ସେ କେଉଁ ପଲ୍ଲୀ ଗାଁରେ ଘର କରିଚି । କିଏ ଅବା କହେ, ରେଙ୍ଗୁନ୍‌ରେ ପ୍ରଥମ ବୋମା ପଡିବା ଦିନ ଯେଉଁ ଲୁଟି, କଟା କଟି ହେଲା ସେଥିରେ ସେ ମରିଚି । କିନ୍ତୁ କକା କେବେ ହେଲେ ପୁଅ କଥା ଉଠେଇବା ମୁଁ ଶୁଣିନି । ତେବେ, ହସ ହସ ମୁହଁ ତଳେ, ମୁକ୍ତ ପ୍ରାଣର କେଉଁ ନିରଭିବ୍ୟକ୍ତ ତନ୍ତ୍ରୀ ଭିତରେ, ପୁତ୍ର ହୀନତାର ଗୋପନ ବେଦନା ଅବା ନିର୍ଲିପ୍ତ ସାନ୍ତ୍ୱନା ଜମାଟ ହେଇ ଯାଇଥିବା ହୁଏତ ଅସାଧାରଣ ନୁହେଁ, କାରଣ କୌଣସି ପ୍ରସଙ୍ଗରେ କକା ଥରେ ମନ୍ତବ୍ୟ କରିବା ମୋର ମନେ ଅଛି-

''ବାପ, ଜନ୍ମ ମାଟିରୁ ଯିଏ ଉପୁଡି ଯାଏ, ମଶାଣି ମାଟି କେବଳ ତା'ର ଗତି ହୁଏ । ମାଆର ପଣତ ତଳୁ ଛଡେଇ ନେଲେ ପିଲା ଉଛୁଡ଼ି ପାରେନି, କି ମଣିଷ ହୁଏନି ।''

## (୪)

ସେ ଦିନ ଗାଁରେ ଗୋଟାଏ ବଡ ରକମର ହଇଚଇ ହେଇ ଗଲା । ସବୁ ଦିନ ପରି ଦି'ପହର ବେଳେ ଆଖଡା ଘରେ ଦଳେ ଭେଣ୍ଡଆ ଆଠ ପଞ୍ଚ (ଏକ ରକମ କଉଡିର ଖେଳ) ପାଲି ଲଗେଇ ଥିଲେ । ଖେଳ ଖୁବ୍ ଜମିଥିଲା । ଖେଳାଳୀଙ୍କ ଅପେକ୍ଷା ଉଭୟ ପକ୍ଷର ସମର୍ଥକ ଓ ଦେଖାଳୀଙ୍କ ଆଗ୍ରହ, ଉଦ୍‌ବେଗ, ଉତ୍ତେଜନା ବିଶେଷ ଜଣା ପଡୁଥିଲା । ପାଟି-ତୁଣ୍ଡ, ହସ ଗମାତରେ ଘରର ଛାତ ଉଠିଯିବା ପରି ବୋଧହେଉଥିଲା । ଖେଳ ଆରମ୍ଭରୁ ମଦନର 'ଯୋଡି'କୁ କଇବଲର ଯୋଡି ଗୋଡେଇଚି । ଠିକ୍ ପାଚିବା ମୁହଁରେ ମଦନର ଯୋଡି ମଲା । କଇବଲର ଦଳକୁ ଆଉ ସମ୍ଭାଳେ କିଏ । ସିଟି ବଜେଇ, ତାଳି ମାରି, ଗାମୁଛା ଉଡେଇ ବିଜୟ ଉଲ୍ଲାସ ପ୍ରକାଶ କଲେ । ଯିଏ ଯାହାର ବିଲ ବାଡିକୁ ଯିବେ ଏଥର, ଖେଳ ଭାଙ୍ଗି ଆସିବା ବେଳ ହେଲାଣି । ଯୋଡି ଜୀଆଁଇ ପଚେଇବା ଆଉ ମଦନର ସାଧ ନୁହେ । ଦାନ ବାନ୍ଧିବାରେ ହଡପ କଲେ ବୋଲି ମଦନର ଦଳ ଆପତ୍ତି ଉଠେଇଲେ । ଟାପରା ଟିକଲରୁ ଚଦା ଚଦି, ଧରା ଧରି ଚାଲିଲା । ସେଇ ଘୁ'ଘା, ଭିଡାଭିଡି ଭିତରେ ମଦନର ପଇତା ଛିଣ୍ଡିଗଲା । କାନ୍ଦି କାନ୍ଦି ମଦନ ଘରକୁ ଗଲା ।

ଏ ଭଳି ଘଟଣା ଆଠ ପଞ୍ଚ ଖେଳରେ କିଛି ନୂଆ ନୁହେ । ତେବେ, ସେ ଦିନର ଏ ଝିମିଟିରୁ ବାହାରିବ ବୋଲି ମହାଭାରତ ଯେପରି ଅନେକ ଦିନରୁ ପାଞ୍ଚୁଥିଲା । ମଦନ ବାପା ବରଜ ପାଣିଗ୍ରାହୀ ଗାଁର ଧନୀ, ମହାଜନ । ତାଙ୍କ ପୁଅ ଦେହରେ ହାତ ଦେବ, ଇମିତି ଲୋକ କ'ଣ ଗାଁରେ ଜନମ ହେଲାଣି । ରାଣ୍ଡିପୁଅ କଇବଲିଆର ଏତେ ଉଦିଆ । କାଠ ପଥର ଭଳି ଗାଁ ଲୋକ ଠିଆ ହେଇଛନ୍ତି, ପୁରାଣ ମଣ୍ଡପ ଉପରେ ପାଣିଗ୍ରାହୀ କଇବଲିଆକୁ ବିବିଧ ମାଡ ମାଇଲେ । କଇବଲିଆର ନାକ ଭିତରୁ ରକତ ଗଡି ପାଟିରେ ଜାବ ଉଠିଲାଣି, ତଥାପି ପାଣିଗ୍ରାହୀଙ୍କ ରାଗ ଶାନ୍ତ ହେଇନି । ଏତିକି ବେଳେ ଭୋଳି କକାଙ୍କର ଆବିର୍ଭାବ ହେଲା । ଦରମରା କଇବଲିଆକୁ ତଳୁ ଗୋଟେଇ ଧରି ଆଣ୍ଟା

କରି ପାଣିଗ୍ରାହୀଙ୍କୁ କେତେ ପଦ ସେ ଶୁଣେଇ ଦେଲେ । ଦୁଇ ଜଣ ଭିତରେ ବଚନିକା ବି ଚାଲିଲା କିଛି ସମୟ । ଶେଷରେ, କଚେରୀରେ ଦେଖା ହେବ କହି ପାଣିଗ୍ରାହୀ, ତମ୍ପ ସାପ ଭଳି ଫୁଲି ଫୁଲି, ଘରକୁ ଫେରିଗଲେ । ଭୋଳି କକା କଇବଲିଆକୁ ତା'ର ଅଣ୍ଟୁଣି, ବିଧବା ମାଆ ପାଖକୁ ନେଇ ଦେଲେ । ଭୁଟୁ ଭାଟ ହେଇ ଗାଁ ଲୋକ ଭାଙ୍ଗି ଗଲେ ।

ଏଇ ଘଟଣା । ଦିନ ମୁଁ ଥିଲିନି ଗାଁରେ । ପରଦିନ ଫେରି ସବୁ ଶୁଣିଲି । ଭୋଳି କକାଙ୍କ ସତ୍ ସାହସକୁ ଖୁବ୍ ପ୍ରଶଂସା କଲି ମନେ ମନେ । କିନ୍ତୁ, ଆଶଂକା ବି ହେଲା କାରଣ ଏଭଳି ଦାମ୍ଭିକତାକୁ ପାଣିଗ୍ରାହୀ ସହଜରେ ଭୁଲିଯିବା ଲୋକ ନୁହନ୍ତି । ଉପର ବେଳା ପାହାଡ ତଳ ବାଇଗଣ ପଦରରେ କକା ସଙ୍ଗେ ଦେଖା ହେଲା । କହିଲି,

"ତମେ ଇମିତିରେ କାହିଁକି ଚିହ୍ନା ପଡିଲ କକା । ପାଣିଗ୍ରାହୀର କଳ, ବଳ ତ ଜାଣିଚ । କୋଉ ଅମଡାରେ ନେଇ ଫେରେ ଭରତି କରିବ ।"

କକା ବାଇଗଣ ତଳିର ମାଟି ଖୋସୁ ଥିଲେ । ଖଣତିଟା ଥୋଇ ଦେଇ ହାତ ଦୁଇଟାକୁ ଆଣ୍ଠୁ ଆଉଜା କରି ବସିଲେ । କପାଳର ଟୋପି ଟୋପି ଝାଳ ଭୂରୁ ଛେଦ ଡେଇଁ ରୁଚିଆ ଗାଲକୁ ଗଡି ଆସୁଥିଲା ।

"ମଣିଷର କଳ ବଳ ଯଦି ସବୁ, ବାପ, ଦଇବ କାହିଁକି ଅଛିରେ । ମଣିଷର ବଡିଆ କେତେ କାଳ ? ଯିମିତି ବଢ଼ିଚି ସିମିତି ଛିଡିବ ।"

ମୋର ମନେ ହେଉଥିଲା, କକା ଯେପରି ନୀତି ପାଠ ଆବୃତ୍ତି କରି ଦୁନିଆର ଗତି ବୁଝିବାରେ ବେନିୟମ କରୁଚନ୍ତି । କହିଲି, "ଦଇବକୁ ତ ଆଉ କଚେରୀ ସୀମାର ଦହଗଞ୍ଜ ଭୋଗିବାକୁ ପଡିବନି ।"

"ତୁ ଭୁଲ୍ କରୁଚୁ, ସେ ବୁଝେଇବାକୁ ଚେଷ୍ଟା କଲେ, ଦଇବ ସବୁ ଦେଖୁଚି, ସବୁ ଭୋଗୁଚି । ସେ ପରା 'କରି କରାଉଥାଏ -ମୁହିଁ !' ପାଣିଗ୍ରାହୀ ମାରିବା, କଇବଲିଆ ଦରମରା ହେବା, ପେଟ ଭିତରେ କୋହ ଚିପି ଗାଁ' ଲୋକେ ଜଡା, କାଲା ଭଳି ଠିଆ ହେବା-ସବୁ ସେ ଦେଖିଚି । ସେଇଟାଇ ଅସଲ ଦେଖା । କଚେରୀ ଯାହା ଦେଖୁଚି ଦେଖୁ ।"

"କିନ୍ତୁ, କଚେରୀର ଦେଖା ତୁମକୁ ମାନିବାକୁ ପଡିବ ।"

ସେ ସହଜ ହେଇ ବସିଲେ । ମୁଁ ବି ଗୋଟାଏ ପଥର ଉପରେ ବସି ଗଲି । କକା ମୁହଁରେ ଗଭୀର ଆତ୍ମବିଶ୍ୱାସ ପ୍ରକାଶ ପାଉଥିଲା,

"ମାନି ନେବା ଓ ମନେ ନେବା ଭିତରେ ଅନ୍ତର ଅଛି ରେ ବାୟା । ମନେ ନେବା ଭିତରୁ ଜାତହୁଏ; ମାନି ନେବାଟା ବାହାରର ଲଦନ । ପାଣିଗ୍ରାହୀ ମତେ ପୁଲିସ ହାତରେ ବନ୍ଧେଇବତ, ହଉ, ସେ ଯଦି ସେତକ କରେ, ଗାଁ ଯାକର ଲୋକ ବନ୍ଧନରୁ ମୁକୁଳି ଯିବେ ।"

ଏକ ରକମ ହତାଶ ଭାବେ କହିଲି,

"ତମେ କ'ଣ ଭାବୁଚ କକା, ଏଇ ମୂର୍ଖଲୋକ କେବେହେଲେ ମୁହଁ ଖୋଲି ପାରିବେ ? ମଣିଷ ଭଳି ବଞ୍ଚି ଜାଣିବେ ?

ଏମାନଙ୍କ ଉପରେ ମୋର ମୋଟେ ଆସ୍ଥା ନାହିଁ ?

କକାର ମୁହଁରେ ମ୍ଳାନ ହସ ଉକୁଟିଲା । ସ୍ୱରରେ ବେଦନାର ସ୍ପର୍ଶ ଲାଗିଲା ଭଳି ବୋଧ ହେଉଥିଲା ମଧ ।

" ତୁ ଏମାନଙ୍କ ପାଖରୁ ଦୂରେଇ ଯାଉଚୁ । ତୋ ମନରେ ବିଶ୍ୱାସ ଆସିବ କିମିତି ? ମୁଁ ଯେହେତୁ ଏମାନଙ୍କ ମେଳରେ ରହିଚି, ଜାଣେ ଏମାନେ କ'ଣ ।"

କକାର ମୁହଁକୁ ଚାହିଁ ରହିଛି । ସେଇ 'କ'ଣ' ପଦଟିର ବିଶ୍ଳେଷଣ ଶୁଣିବା ପୂର୍ବରୁ ମୁଁ ଯୁକ୍ତି ବଢେଇ ପାରୁ ନଥିଲି ।

ସୂର୍ଯ୍ୟର ଝଳି ମଉଳି ଯାଉଥିଲା । ଦୂରରେ କେଉଁ ଗାଇଆଳର ଲମ୍ବା ବଇଁଶୀରେ 'କଳା-ମାଣିକ' ଧ୍ୱନିତ ହେଉଥିଲା । ଖଣ୍ଡିଏ ଟା ଗହଳି ଭିତରୁ କେଉଁ ଘର ବାହୁଡା ଗାଈର ଉଦ୍‌ବିଗ୍ନ ହମ୍ବାଳି ଶୁଭୁଥିଲା ରହି ରହି । ପଶୁ ଓ ମଣିଷ ଉଭୟ ପ୍ରାଣରେ ଯେପରି ଆଶଂକିତ ମାତୃତ୍ୟ ଆକୁଳ ହେଇ ଉଠିଚି । କକା କହିଲେ,

"ଏମାନେ ଗରୀବ, ଅନାଥ । ପେଟ ପୂରାଇ ଅବା ରୁଚି କରି ଖାଇବା ଦିନେ ଜାଣନ୍ତିନି । ଉପର ମଣିଷର ଲଦନ ସବୁ ପ୍ରକାର ବାଧା, ବିପଦକୁ କରମ କହି ମୁଣ୍ଡ ପୋତି ସହି ଯାଆନ୍ତି,-"

ମୁଁ ବାଧା ଦେଲି,

"କିନ୍ତୁ ଏହା ଧର୍ମ ଭୀରୁତା ନୁହେ । ଏହା କୁସଂସ୍କାର, ମାନସିକ ବିକୃତି ।"

"ସତ, କିନ୍ତୁ ଏଥିରେ ଏମାନଙ୍କର ଦୋଷ କ'ଣ ? ଯୁଗ ଯୁଗ ଧରି ସବୁ ପ୍ରକାର ସୁବିଧା ଓ ସୁଯୋଗରୁ ତଡା ଖାଇ ଏଇ ଲୋକେ ଏକ ରକମ ଗମାର ପାଇଟି ଯାଇଚନ୍ତି । ଧର୍ମ, ଜାତିଆଣ, ନ୍ୟାୟ, ଶାସନ-ସବୁ ବିଷୟରେ ଉପର ଲୋକେ ଏମାନଙ୍କୁ କୂଟ କରଚନ୍ତି, ଠକିଚନ୍ତି । କେଉଁ ବଳରେ ଏମାନେ ମୁହଁ ଖୋଲନ୍ତେ ? ମଣିଷ ଭଳି ବଞ୍ଚି ଜାଣନ୍ତେ କେମିତି ? ଏମାନେ ମୁହଁ ଖୋଲିବେ କେବଳ ସ୍ନେହ ପାଇଲେ । କଣ୍ଠରେ ଆକୁଳତା ଭରି ଠିକ୍ ଏଇ ଗାଇଟି ଭଳି ଏମାନଙ୍କୁ ସ୍ନେହ ଦେଇ ଡାକିବାକୁ ହେବ, ଆପଣାର କରିବାକୁ ହେବ ।"

ସନ୍ଧ୍ୟା ନଇଁ ଆସିଥିଲା । ଏକାଠି ଘରକୁ ଫେରିଲୁ । ମନ ମୋର ଭାରି ହେଇ ଯାଉଥିଲା । କଇବଲିଆ ଲାଗି ପାଣିଗ୍ରାହୀର ସାମନା କରିବା ପଛରେ କକା ପ୍ରାଣର ଆବେଗ ମୁଁ ସମ୍ୟକ୍ ବୁଝି ପାରିଥିଲି । ତଥାପି ନାନା ରକମର ପ୍ରଶ୍ନ ଉଠୁଥିଲା ମନରେ । କକା କ'ଣ ସ୍ନେହ ଦେଇ ଏଇ ଲୋକଙ୍କ ମୁହଁରେ ସତରେ କଥା ଫୁଟେଇ ପାରିବେ ?

(୪)

ପାଣିଗ୍ରାହୀ ବହୁତ ଉପାୟ କଲେ । ଧମକ ଦେଲେ, ପଇସା ଲୋଭ ଦେଖେଇଲେ, ତଥାପି ଲୋକି କକା ବିରୁଦ୍ଧରେ କହିବା ଲାଗି ଗାଁରେ ଜଣେ ହେଲେ କିଏ ରାଜି ହେଲେନି । ଅଗତ୍ୟା ପାଣିଗ୍ରାହୀଙ୍କୁ ଉଠେଇବା ହାତ ନିଜ ଧାଇରେ ବସେଇ ଚୁନି ଯିବାକୁ ହେଲା । ଘରୁ ଘରୁ ପୁରୁଣା ଚାଉଳ, ଜାଇ, ଘିଅ, ଆମ୍ବୁଲ, ପନି ପରିବା ମାଗି ଆଣି କକା ପଥ୍ୟ ପାଚନରେ କଇବଲିଆକୁ ସୁସ୍ଥ କରି ଦେଲେ । ଆଖଡା ଘରେ ପୂର୍ବପରି ଖେଳ ଚାଲିଲା । ଗାଁର କିଶୋର ସଂସାର ନିର୍ଦ୍ଦୋଷ ଆମୋଦ, ଆନନ୍ଦରେ ପୁଣି ସହଜ ସରସ ହେଇ ଉଠିଲା । ଏଇ ଜୀବନରୁ ବଞ୍ଚିତ ହେଲା କେବଳ ମଦନ । ଆଖଡା ଘରକୁ ଆସିବା ଲାଗି ତା'ର ମୁହଁ ନଥିଲା ।

ଅଭିନନ୍ଦିତ କରି ଦିନେ କହିଲି,

"ମୋର ବିଶ୍ୱାସ ନଥିଲା, କକା, ଗାଁ'ଲୋକ ଇମିତି ଏକ ମନ ହେବେ ବୋଲି । ବାସ୍ତବିକ ତମେ ଏମାନଙ୍କ ଭିତରେ ବଳ ଆଣି ଦେଇଚ ।"

କକା ହସି ହସି ଉତ୍ତର କଲେ,

"ଏହା କିଛି ପଶୁବଳ ନୁହେ । ସ୍ନେହ ଓ ବିବେକର ଦାବୀ ମାତ୍ର । ପଇସାକୁ ଯିଏ ବଡ କରି ଜାଣିଚି, ପଇସା ଲାଗି ସେ ସବୁ ଦେଇ ପାରେ । ମାନ, ମହତ ଜ୍ଞାନ ତାର ରହେନି । କିନ୍ତୁ ଏ ଲୋକେ

ପଇସାର ମୋହରେ ପଡି ନାହାନ୍ତି । କାରଣ ଚିର ଦରିଦ୍ରତା ଏମାନଙ୍କୁ ସବୁବେଳେ ପଇସାର ସଂସାରରୁ ଦୂରରେ ରଖିଚି ।''

ମୁଁ ସନ୍ଦେହ ତୁଟେଇବାକୁ ଚାହିଁଲି,

''ଏମାନେ ସବୁ ଦିନେ ପଇସାର ସଂସାରରୁ ଦୂରରେ ରହିବା ପ'ଣ ତମେ ପସନ୍ଦ କରୁଚ ?''

''ନା, ପଇସା ଦିନେ ଏମାନଙ୍କ ପାଖରେ ଶରଣ ପଶିବ । ସେ ଦିନ ପାଇଁ ଏମାନଙ୍କୁ ପ୍ରସ୍ତୁତ କରି ରଖିବାକୁ ହେବ ।''

ମୁଁ ବୁଝି ପାରି ନଥିଲି । ପଚାରିଲି,

''ବ୍ୟବସାୟ, ବଣିଜ, କଳ କାରଖାନା, ଜମିଦାରୀ ସବୁ ତ ରହିଚି ଉପର ଲୋକଙ୍କ ହାତରେ । ପଇସା ଏମାନଙ୍କ ହାତକୁ ଆସିବ କିମିତି ?''

କକା କହିଲେ,

''ଆଜିର ପଇସା ଅର୍ଥ କେବଳ ଧନ ନୁହେ, ଧର୍ମ, ନ୍ୟାୟ, ଜ୍ଞାନ, ଶାସନ ମଧ୍ୟ । ଏ ସବୁ ପଇସାର-,''

ସେ ଗୋଟିଏ ଅର୍ଥ-ପ୍ରକାଶକ ପଦ ପାଇଁ ଖୋଜି ହେଲେ ।

ମୁଁ ବଳେଇ ଦେଲି,

''ପଇସାର ବିନିମୟ ମାଧ୍ୟମ ।''

ସେ ଆନନ୍ଦିତ ହେଲେ,

''ହଁ ପଇସା ଦେଇ ଯାହା ଅଦଳ ବଦଳ ହୁଏ । ପଇସାର ଏ ପ୍ରାଧାନ୍ୟ ରହିବନି ।''

ମୋର ବିଶ୍ୱାସ ବଳୁ ନଥିଲା । ପଚାରିଲି, 'କିମିତି ?' ''ଆଜି ଯେଉଁମାନେ ପଇସାର ମୂଲ୍ୟ ନିରୂପଣ କରୁଚନ୍ତି, ପଇସାର ଭାଉ ଜାଣନ୍ତିନି । ପଇସା ଗୋଟାଏ ଅନାବଶ୍ୟକ ସୃଷ୍ଟି ମାତ୍ର କେତେଟା ଲୋକର ଗୋଟାଏ ବଜାର ସଉକି । ଉପଜ ସଙ୍ଗେ ଏହାର ସହଜ ସଂପର୍କ ନାହିଁ । ବଜାରର ଅନିଶ୍ଚିତ ଗତି ଦିନେ ଏ ସଉକିକୁ ଅଚଳ କରି ଦେବ । ତା' ସଙ୍ଗେ ଅଚଳ ହେଇ ଯିବ ଏ ସଉକିର ସଂସାର ।''

ବୁଝି ପାରିଲି, କକା ପୁଞ୍ଜିବାଦୀ ବିଶ୍ୱରେ ଆର୍ଥିକ ସଙ୍କଟ ସଙ୍ଗେ ଶାସନ ବ୍ୟବସ୍ଥା ଅଚଳ ହେଇ ଯିବା ଗଣନା କରୁଚନ୍ତି । ମତେ ଆଶ୍ଚର୍ଯ୍ୟ ଲାଗୁଥିଲା, ଗାଁ'ର ଅଶିକ୍ଷିତ ଏ ବୃଦ୍ଧ ଏ ଯୁଗର ଅର୍ଥନୀତିର ଜଟିଳ, ଅସାର ତତ୍ତ୍ୱ ବୁଝି ପାରିଚନ୍ତି କିମିତି ? ହୁଏତ ଏହା ପଛରେ ଥିଲା ସୃଜନୀ ଶକ୍ତିର ସହଜ ଅନ୍ତରଜ୍ଞାନ । ସନ୍ତାନର ବିବିଧ କ୍ରିୟାନୁଷ୍ଠାନର ଅର୍ଥ ଜନନୀ ଯଦିଓ ସଂପୂର୍ଣ୍ଣ ହୃଦ୍‌ବୋଧ କରି ପାରେନି, ତଥାପି, ସନ୍ତାନ ଉପରେ ଏହାର ପରିଣତି କି ଭଳି ରୂପ ନେଇ ପାରେ, ତା'ର କଳ୍ପନାପ୍ରବଣ ମାତୃପ୍ରାଣ ଅବ୍ୟକ୍ତ ଭାବରେ ଅନୁଭବ କରି ପାରିଥାଏ । କକା ବୁଝି ପାରି ଥିଲେ, ପୁଞ୍ଜି ଶାସନତନ୍ତ୍ର ଭାଙ୍ଗି ପଡିବା ଫଳରେ କ୍ଷମତା ଆସିଯିବ ଶ୍ରମଜୀବୀ ହାତକୁ । ପଚାରିଲି,

''ଲୋକେ କିଭଳି ପ୍ରସ୍ତୁତ ହେବେ ?''

କକା ଉତ୍ତର କଲେ,

''ଲୋକଙ୍କ ମନରେ ବିଶ୍ୱାସ ଆଣିବାକୁ ହେବ । ସେ ବିଶ୍ୱାସ ଆଣି ହେବ ସେମାନଙ୍କ ସଙ୍ଗେ ନିଜକୁ ଏକ କରି ଦେବାରେ; ସେମାନଙ୍କ ସୁଖ, ଦୁଃଖରେ ଭାଗୀ ହେବାରେ, ଗଭୀର ସ୍ନେହ ଓ

ସମ୍ମାନ ଅର୍ପଣ କରିବାରେ । ତମ ବର୍ଗର ଲୋକ, ଯେଉଁ ମାନେ ଯୁଗଯୁଗ ଧରି ଏଇ ତଳିଆ ଲୋକଙ୍କୁ ଗରୀବ କରିବାରେ ସାହାଯ୍ୟ କରି ନିଜେ କୌଣସି ସୁବିଧା ପାଇ ପାରିନାହାନ୍ତି, ଏଣିକି ଏମାନଙ୍କ ସଙ୍ଗେ ମିଶି ଯିବାକୁ ହେବ । କାରଣ ଉପର ଲୋକ ତୁମକୁ ମଧ୍ୟ ତଳରେ ରଖି ଦେବେନି ।''

ଭୋଳି କକାର ଗଭୀର ଅନ୍ତରଦୃଷ୍ଟି ମତେ ସେଦିନ ଅବାକ୍ କରି ଦେଇଥିଲା । ପୁଞ୍ଜି-ସମାଜରେ ନିମ୍ନ ମଧ୍ୟ ବର୍ଗ ଧୀରେ ଧୀରେ ଦେଉଳିଆ ହେବା ସେ ଜାଣି ପାରିଥିଲେ ।

(୬)

ମୋର ଦୃଷ୍ଟି ଲାଭ ହେଉଥିଲା । ମୁଁ ବୁଝି ପାରିଥିଲି, ମୋର ଭାଗ୍ୟ ମୋର ଭବିଷ୍ୟତ ଗୁଣ୍ଡା ଗାଁର ଏଇ ଢଡା କାଳାଙ୍କ ସଙ୍ଗେ, ନଗରୀର ବେଙ୍କ୍ ଅବା କାରଖାନା ମାଲିକ ସଙ୍ଗେ ନୁହେ । ଉପର ବର୍ଗର ଅନ୍ୟାୟ, ଅବିଚାର ଓ ଶୋଷଣ ବରୁଦ୍ଧର ଭୋଳି କକାର ଏଇ ଲୋକଙ୍କ ସଙ୍ଗେ କାନ୍ଧ ମଶେଇ ଠିଆ ହେବାପାଇଁ ମୋର ଅନ୍ତର ଭିତରେ ଗୋଟାଏ ବାଣୀ କି ଏକ ନୂତନ ଶକ୍ତି ଜାତ କରୁଥିଲା । ମୁଁ ଯେତେ ଦୂରେଇ ଯାଉଥିଲି, ଫେରି ଆସିବା ଲାଗି ସେତେ ବ୍ୟାକୁଳ ହେଉଥିଲି ।

ଭୋଳି କକାର ମନରେ ଶିକ୍ଷାର ଅହମିକା ନଥିଲା, କିନ୍ତୁ ସତ୍ ଶିକ୍ଷାର ଶ୍ରେଷ୍ଠ ମହତ୍ୱ, ଅନ୍ଧକାର ଭିତରେ ଆଲୋକର ସନ୍ଧାନ ନେବା, ସେ ଭଲ ଭାବେ ବୁଝିଥିଲେ । ଆଭିଜାତ୍ୟର ବାହ୍ୟାଡମ୍ବର ଭଳି ତାଙ୍କର ଲୋକପ୍ରିୟ ନାଁକୁ ମିଥ୍ୟା ସମ୍ମାନ ଦେବା ଲାଗି ଆଗ ପଛରେ ବିଶ୍ୱବିଦ୍ୟାଳୟର ଶସ୍ତା ଉପାଧି ନଥିଲା, କିନ୍ତୁ, ସେ ନିଜେ ଥିଲେ ଗୋଟାଏ ଶିକ୍ଷାନୁଷ୍ଠାନ ଯେଉଁଥିରେ ମଣିଷର ଜୀବନଯାତ୍ରାକୁ ସରଳ, ସହଜ ଓ ସୁନ୍ଦର କରିବା ପାଇଁ ବିବିଧ ତତ୍ୱ ଓ ସତ୍ୟ ଆବିଷ୍କୃତ ହେଉଥିଲା । ସେ ଅଷ୍ଟବର୍ଗର ସାଧକ ନଥିଲେ, କିନ୍ତୁ ତାଙ୍କର ଧର୍ମ ଥିଲା ସ୍ନେହର ଧର୍ମ, ମୈତ୍ରୀର ଧର୍ମ । ଶିଶୁଭଳି ସରଳ ଓ ମାତୃହୃଦୟ ଭଳି ଉଦାର ସେ ଥିଲେ ମାନବତାର ପ୍ରତୀକ । ସେ ରାଜନୀତି ବୁଝି ନଥିଲେ, 'ବାଦ' ବୁଝି ନଥିଲେ, କିନ୍ତୁ ତାଙ୍କର ନୀତି ଥିଲା ମଣିଷକୁ ଦାସତ୍ୱରୁ ମୁକ୍ତ କରିବା । ଦୁଃଖ ଗଢ଼ା ଜୀବନକୁ ଧରି କାନ୍ଦି କରି ସେ ଦାର୍ଶନିକ ହେଇ ନଥିଲେ, ମଣିଷର ସୁଖ ଦୁଃଖକୁ ଆପଣାର କରି ସେ ପାଇଥିଲେ ସତ୍ୟକାର ପ୍ରାଣର ଦର୍ଶନ, ଯେଉଁ ପ୍ରାଣ ସ୍ପନ୍ଦିତ ହେଉଚି କୋଟି ଶୋଷିତର ପଞ୍ଜରା ଭିତରେ ।

ଭୋଳି କକା ମଲେଣି କେତେ ବର୍ଷ ହେଲା, କିନ୍ତୁ ଗାଁର ଦୀନ, ଦୁଃଖୀ ଭିତରେ ସେ ବଞ୍ଚି ରହିଚନ୍ତି ଚିର ଦିନ ପାଇଁ । ପାଣିଗ୍ରାହୀ ଏବେ ବି ବଞ୍ଚିଚି, କିନ୍ତୁ ସେ ମରିଚି ଚିର ଦିନ ପାଇଁ । ତା'ର ମନଗଢ଼ା ଆଭିଜାତ୍ୟର ଦୁନିଆ ଖଣ୍ଡ ଖଣ୍ଡ ହେଇ ଭୁଷୁଡ଼ି ପଡ଼ୁଚି ପ୍ରତିଦିନ ।

# ଚନ୍ଦରାଭୋଇର ଚନ୍ଦ୍ରକଳା

**ଅଚ୍ୟୁତାନନ୍ଦ ପତି**

ଚନ୍ଦରା ।

ଆଉ ଚନ୍ଦରୀ ।

ପିଲାଏ ଗୀତ ଯୋଡନ୍ତି-

ଚନ୍ଦରାକୁ ଚନ୍ଦିରୀ

ଧୃତରାଷ୍ଟ୍ରକୁ ଗାନ୍ଧାରୀ ।

ବଡମାନେ ପିଲାଙ୍କୁ ଏ ଗୀତ ବୋଲିବା ପାଇଁ ଉସୁକାନ୍ତି । ଚନ୍ଦରା ବା ଚନ୍ଦିରୀ ଯାହାକୁ ଦାଣ୍ଡରେ ଦେଖିଲେ ଏ ଗୀତର କୀର୍ତ୍ତନ ଚାଲେ । ହସର ସର୍ଜନ ପଡେ । ସମସ୍ତେ ହସନ୍ତି । ସମସ୍ତେ ହସୁଛନ୍ତି ବୋଲି ଚନ୍ଦରା ଓ ଚନ୍ଦିରୀ ରାସ୍ତାରେ ମୁହଁ ମାଡି ଆପଣା ଦୁଃଖରେ ଯାଉଁ ଯାଉଁ ଅଳ୍ପ ହସି ପକାନ୍ତି । ଏ ସମବେତ ହସର ସଂକୀର୍ତ୍ତନ ତଳେ କିଛିଟା ଆଘାତ ଅଛି ବୋଲି ସେମାନେ ବୁଝନ୍ତିନି । ସେପରି ବୁଝିବାକୁ ସେମାନଙ୍କର ଅନୁଭବ ନଥାଏ । ସେମିତିକା ବୁଝିବା ପାଇଁ ତାଙ୍କର ତନ୍ତ୍ରୁ ଭିତରେ କିଛିଟା ଉତ୍ତାପ ଦେବାକୁ ସେମାନଙ୍କର ବି ଫୁରୁସତ୍ ନଥାଏ । ଦିନ ମାନ ସେମାନେ ଦେହରେ ଦେହ ବଢାଇ ମୁଠାଏ ଭାତ ପାଇଁ ମାଟି ପଥର ସାଙ୍ଗରେ ଯୁଦ୍ଧ କରନ୍ତି । ରାତିସାରା ଦେହରେ ଦେହ ଭେଦାଇ ତାକୁ କାବୁ କରିଥିବା ସେ ଯୁଦ୍ଧର ଭୂତକୁ ଗାୟତ୍ରୀର ପଦ ଶୁଣାଇ ତାଙ୍କ ମନର ଚାରିକଡରେ ଲୁହାର କଣ୍ଟା ପୋତନ୍ତି ।

କେଇଦିନ ହେଲା ଜାତୀୟ ରାଜପଥକୁ ଚଉଡା କରିବା ପାଇଁ କତ ଆହୁ ମାଟି ପଡୁଛି । ଶହ ଶହ କୁଲି ରେଜା ମାଟି ତାଡି ତାଡି ରାସ୍ତା କଡରୁ ତଳକୁ ତଳକୁ କୁଡେଇ ଚାଲିଛନ୍ତି । ମାଟିର ପାହାଡ ଉଠୁଛି । ମାଟିର କାରିଗରମାନେ ନିଜକୁ ମାଟି ସାଙ୍ଗରେ ସାମିଲ କରି ଏ ପାହାଡ ତୋଳୁଛନ୍ତି । ମାଟିର କେଳା ଏମାନେ । ମାଟିର ଗୁମର ବୁଝିଛନ୍ତି । ମାଟିର ପଦ୍ମତୋଳା ଜାଣନ୍ତି । ମାଟିକୁ ଖେଳାନ୍ତି । ମାଟିକୁ ବେଉସା କରି ଏମାନେ କେବଳ ବଞ୍ଚନ୍ତିନି, ବଞ୍ଚିବାର ଆନନ୍ଦ ପାଆନ୍ତି ।

ମାଟି ତଡା ଚାଲିଛି । ଶହ ଶହ କୋଦାଳ ଚୋଟରେ ମାଟିର ଗଣ୍ଡି ହୁଗୁଳି ହୁଗୁଳି ତଳକୁ ଟେକା ହେଇ ଯାଉଛି । ଟେକା ଟେକା ମାଟି ଖଣ୍ଡରେ ଶହ ଶହ ସିଇରା ଭର୍ତ୍ତି ହେଇ ଯାଉଛି । ସିଇରା ମୁଣ୍ଡକୁ ଉଠୁଛି । ମୁଣ୍ଡରୁ ତଳକୁ ଖସୁଛି । ପୁଣି ଉଠୁଛି । ପୁଣି ପଡୁଛି । କୁଲି ରେଜା ମୁଣ୍ଡରେ ଅଟକା ହେଇଥିବା ପୁଆଳର ମଳା ଉପରକୁ ଓଜନିଆ ସିଇରାକୁ ଆସ୍ତେ ନେଇ ଚପାଇ ଦେଉଛି । ପୁରୁଷର ସାମର୍ଥ୍ୟକୁ ନାରୀ ବୋହି ନେଇ ଯାଉଛି । ପୁରୁଷର ଶକ୍ତିକୁ ନାରୀ ସବୁ ବେଳେ ସମାଳି ନେଇଛି । ସଫଳ କରିଛି । ସମ୍ଭବ କରିଛି । ସୃଷ୍ଟି କରିଛି ।

ଏସନ ମୁଲକରେ ମରୁଡି ପଡିଛି । ପାଣି ଅଭାବରୁ କିଆରୀ ସବୁ ଚଉଳା ଚଉଳା ଫାଟି ଯାର୍ଚ୍ଚ ଆଁ କରି ସରଗକୁ ଚାହିଁଛି । ଇନ୍ଦ୍ରରଜା କୋପ କରିଛନ୍ତି । ମଣିଷ ଆଉ ଦିଅଁ ଦେବତା ମାନୁନି । ଚାରିଆଡେ ଅନ୍ୟାଚାର । ଭଲମନ୍ଦ ବାଛ ବିଚାର ନାହିଁ । ଘୋର କଳି ରାଜୁତି କରୁଛି । ଦେବତାମାନେ

କୁଟ କରିଛନ୍ତି । ବାଙ୍କ ମୁହଁ ଲକ୍ଷ୍ମୀ ଠାକୁରାଣୀ ମୁହଁ ମୋଡି ଦେଇ ବଡ ଦେଉଳର ଗମ୍ଭୀର ଭିତରକୁ ବାହୁଡି ଯାଇଛନ୍ତି । ବିଲ ବାଡିରେ କାମ ନାହିଁ । ମୂଲିଆ, ମଜୁରିଆ ହାତ ଯୋଡି ବସିଛନ୍ତି । ହାତ ନଚଳିଲେ ଭାତ କାହିଁ ?

ଚାରିଆଡେ ଉଆଁଳା ହୋଇଗଲା ସରକାରୀ ରାସ୍ତାରେ ମାଟି କାମ ହେଉଛି । ଯେତେ ଲୋକ ଯିବେ ସେତେ କାମ କରିବେ । ଗାଁରେ ସମସ୍ତେ ଛୁଆପିଲା ଧରି ବାହାରି ପଡିଲେ । ଗାଁରୁ ଷିରୀ ତୁଟି ଯାଇଛି । ପେଟକୁ ଦାନା ନାହିଁ । ଗାଁର ଇଜ୍ଜତ ଫୁଟି କଣା ହୋଇ ଯାଇଛି । ଘରକୁ ଘର ଛୁଆ ପିଲା, ହାଣ୍ଡି ଆଟିକା ଧରି ସରକାରୀ ବଡ ରାସ୍ତା ଆଡକୁ ମୁହାଁଇ ଯାଉଛନ୍ତି । ଚନ୍ଦରା ରାସ୍ତା କଡର ଥୁଆ ହୋଇଥିବା ଗୋଟେ ଶଗଡ ଉପରେ ବସି ସବୁ ଠଅର କରୁଥିଲା । ସତୁରା ତାର ଯୁଆନ ଭାରିଜା କାଖକୁ କଳା ମଚମଚ ଛୁଆଟାକୁ ଟେକି ଦେଇ ତା ଉଟୁଳି ପୁଟୁଳି ଦିଖଣ୍ଡ ମୁଣ୍ଡକୁ ଉଠାଇଲା । ଅଝଟିଆ ଛୁଆଟା ତା ବୋଉର ବହଳିଆ ଛାତି ଉପରୁ ମସିଆ ମୋଟା ଶାଢୀର କଡଟାକୁ ଆଡେଇ ମୁହଁ ପୁରାଉଛି । ଗାଁର ପାକଲା ବୁଢୀ ଚେମା ବୋଉ ତା ଚିରା ମଠା କନାରେ ବନ୍ଧା ପୁରାଣ ବସ୍ତାନିଟାକୁ କାଖରେ ଜାକି ପୁଅ କାନ୍ଧରେ ହାତ ଥୋଇ ଗୋଟିଏ ଗୋଟିଏ ଗୋଡ ପକାଉଥିଲା । ପାଟି ପାକୁ ପାକୁ କରି ଭଗବାନଙ୍କୁ ସୁମରଣା କରୁଥିଲା ବୋଧହୁଏ । ଚଇତନିଆ ତା ଦରବୁଢୀ ଭାରିଯା ଉପରେ ତୋଡ ମୋଡ ହେଉଛି । ସେ ତା ଗୁଣ୍ଡଦାନୀ ଭୁଡି ଆସିଛି ବୋଲି ବାଟରୁ ଫେରି ଯାଉଥିଲା । ଥରେ ଅନୁକୂଳ ଭାଙ୍ଗିଲେ ନବରେ କଣ ଅଛି କେଜାଣି ? ଏକତ ଜନମଥାନକୁ ଛାଡ଼ି ଯିବାକୁ ପଡୁଛି । ପୁଣି କେବେ ଗାଁକୁ ଫେରିବେ ଜଗନ୍ନାଥଙ୍କୁ ଜଣା । ଶୁକୁଟା, ଶାମା, ଚକରା, ଚଢେଇ ହଗୁରା, ହରିଆ, ସମସ୍ତେ ପେଟ କଷ୍ଟ ସହି ନ ପାରି ସରକାରୀ ବଡ ରାସ୍ତା ଆଡେ ବାହାରି ଗଲେ । ଚନ୍ଦରା ଅଣ୍ଟାରେ ଚୋରିଆ ଗାମୁଛା ଖଣ୍ଡକ ଭିଡି ଦେଇ ଉଠି ପଡିଲା । ତାର ଘର ନା ଦ୍ଵାର ? ପୁଅ ନା ମାଇପ ? ବାପ ନା ମାଆ ? ଏଠି ପର ଦୁଆରେ ପେଟ ଚାଖଣ୍ଡକ ପାଇଁ ବିଲରେ ଆଣ୍ଠୋଉଥିଲା । ସେଠି ସରକାରୀ ରାସ୍ତାରେ ମାଟି ତାଡିବ । ଏକା କଥା ।

ଚନ୍ଦରା ସରକାରୀ ରାସ୍ତା କଡ ଜାମୁ ଗଛକୁ ଆଉଜି ଅନିସା କରୁଥିଲା । ଶହ ଶହ ଫାଉଡା, ଗଇଁତି, କୋଦାଳ ମୁଣ୍ଡ ଉପରକୁ ଉଠିଛି । ବାହାମୂଳର ମାଂସ ଥୋଳାକୁ ଦୁଲୁକାଇ ଦେଇ ମାଟି ଉପରେ ଗର୍ଜିକି କଡାଡି ହେଇ ପଡୁଛି । ମାଟି ହୁଙ୍କୁନି । ମାଟି ଜବାବ୍ ଦେଉନି । ମାଟିର ଏ ଗୁମାନକୁ ଖାତିର ନ କରି କୋଦାଳ ଗଇଁତିର ଡୁହା ଡୁହା ନାଦ ଭିତରକୁ ଭିତରକୁ ଧସେଇ ଧସେଇ ପଶି ପଶି ଯାଉଛି । ମାଟି ହାରି ଯାଉଛି । ଏମାନେ ମାଟିକୁ ଏମିତି ଜୀବନତମାମ ହରାଇ ଆସିଛନ୍ତି । ତାକୁ ବୋଲ ମନାଇଛନ୍ତି । ଚନ୍ଦରାର ବାହାମୂଳ ଫରକି ଉଠିଲା । ସେ ମାଟି ସାଙ୍ଗରେ ନଢେଇ କରିବ । ଏ ଜିଦ୍‌ଖୋର ମାଟିକୁ ଜବଦ୍ କରିବ । କାନତରାଟି ବାବୁଙ୍କ ଗୁମାସ୍ତା ତାକୁ ବୁଝେଇ ଦେଲା ଯେ ଏକାଟିଆ କାମ କଲେ ତାକୁ ପୋଷଇବନି । କୁଲି ରେଜା ମିଶିକି ସମସ୍ତେ କାମ କରୁଛନ୍ତି । କୁଲି ହାଣିବ, ରେଜା ବୋହିବ । ସେ ଏକାଟିଆ କେତେ ତାଡିବ ଆଉ କେତେ ବା ବୋହିବ ? ସବୁତ କୁତରେ କାମ ହେଉଛି । ଚନ୍ଦରା ଆଗକୁ ଚାହିଁଲା । ଶୁକୁଟା ତ ଝାଳ ଗମ ଗମ କପାଳରୁ ଆଙ୍ଗୁଳିରେ ଝାଳ ଛିଂଚାଡି ତ ଭାରିଯା ମୁଣ୍ଡକୁ ମାଟି ପାଛିଆ ଟେକି ଦେଲା । ଶୁକୁଟାର କନିଆ । ଏବେ ହାଲି ପୁଆଣି ଧର ହେଇଥିଲା । ବିଲ ବାଡିକୁ ଗୋଡ କାଡି ନଥିଲା । ମାଟି ବୋଝକୁ ମୁଣ୍ଡେଇ ଟଳ ଟଳ ଗୋଡକୁ ଦାବି ଦାବି ଆଗେଇ

ଯାଉଛି । କଙ୍କାଳ ଏ ପାଖ ସେପାଖ ହେଇ ଲହକି ପଡୁଛି । ଫେରି ଆସିଲା ବେଳକୁ ତା ଗୋଲ ଗୋଲ କସି ମୁହଁଟା ଝାଳ ବଳ ବଳ ହେଇ ନାସନା ଦିଶୁଛି । ଶୁକ୍ରୁଟା ତା ଗାମୁଛାରେ ତା ମୁହଁକୁ ଥାପି ଥାପି ସୁତୁରା କରି ଦେଲା । ମାଟି ଭର୍ତି ପାଛିଆରୁ ଅଧା ଅଧ୍ କାଢି ପକାଇ ତାକୁ ହାଲକା କରି ତା ମୁଣ୍ଡରେ ଆସ୍ତେ କରି ସଜାଡି ରଖିଲା । ତା ଭାରିଯାର ହାଲିଆ ମୁହଁରେ ଅଳ୍ପ ହସ ଗାଲଯାଏଁ ଚରି ଚରି ଆସୁଛି । ଶୁକ୍ରୁଟା ସେ ହସର ଜବାବ୍ ଦେଲାନି । ଶୁକ୍ରୁଟାର ଆଖି ଦିଟା ପାଣେଇ ଉଠିଛି ବୋଧହୁଏ । ଚନ୍ଦରା ନାକସିଟକା ମାରି ମୁହଁ ବୁଲାଇଲା । ଶଳା ମାଇଆ, ମାଇପ କାମ କଲାରୁ ସକଉଛି ।

ଆଜିକି ଦିଦିନ ହେଲା ! ଚନ୍ଦରା କାମ କରିନି । ଜାମୁଗଛ ମୂଳରେ ବସି ଧୂଳି ଗଦେଇ ସେଥିରେ ରାସ୍ତା ତିଆରି କରୁଛି । ରାସ୍ତାକୁ ଚଉଡା କରିବାକୁ ତା କଡରେ ଧୂଳି କୁଢେଇ କୁଢେଇ ଉଞ୍ଚ କରୁଛି । ତା ତିଆରି କଲା ରାସ୍ତାକୁ ଫାଙ୍କା ଆଖିରେ ଅନେଇ ଅନେଇ ସେ ଏଣୁ ତେଣୁ କେତେ କଣ ଭାବି ଯାଉଥିଲା । ତା ଉମର କେତେ ହେବ ସେ ହିସାବ ରଖିନି । ତେବେ ସେ ପାକଳ ହୋଇଗଲାଣି । ତା ମୁହଁର ଦାଢି କେବେଠୁଁ କରଡା ଧରି ଗଲାଣି । ମାସେ ପକ୍ଷେରେ କେବେ କେମିତି ଛଅର ହେଲା ବେଳେ ଏଠି ସେଠି ଫାଟିଗଲେ ଦୀନା ବାରିକ କୁଣ୍ଢେଇ କୁଣ୍ଢେଇ ବରବର ହୁଏ । କାନ ମୂଳର ବାଳ ଦି ଚାରି ପୁଞ୍ଜ ଧୋବ ଫିଟି ଗଲାଣି ବୋଲି ନବୀନା ତାକୁ ହେଜେଇ ଦେଇ ଦରଦ ଦେଖାଉଁ ଦେଖାଉଁ ସେଦିନ କହି ପକାଇଥିଲା । -ଆବେ ଚନ୍ଦରା, ତୁ ତ ବୁଢା ହେବାକୁ ବସିଲୁଣି, ତୋ ହାତରେ କେବେ ଆଉ କୁଶ ନାଗିବ ବେ ? ସେ ତା ମୁଦି ଆଙ୍ଗୁଳିକୁ ଟିକିଏ ଘଷିକି ଦେଖିଲା । ନା, ଆଙ୍ଗୁଳିଟା ତାର ଗଣ୍ଠିଆ ହୋଇଗଲାଣି । ସେଠି କୁଶବଟକୁ ଭିଡି ଦେଲେ ଆପେ ଆପେ ଛିଡି ଯିବ । ସେ ଗଛ ଉପରକୁ ଆଖି ଫେରେଇଲା । ଘୁକାଳିକା ଚଢେଇ ଦିଟା ବସା ବାନ୍ଧୁଛନ୍ତି । ଅଣ୍ଡରାଟା ଥଣ୍ଟରେ ଘାସ ଖଣ୍ଡେ ଆଣିଲେ ମାଇଟା ତା ଥଣ୍ଟରୁ କାଢି ନେଇ ବସା ଉପରେ ପାରି ଦେଉଛି । ଧେତେରି ! ସବୁ କାମରେ ମାଇକିନା ଦରକାର । ଶଳା ମାଇକିନା ନ ହେଲେ ଘର ହେବନି, ରାସ୍ତା ହେବନି । ଶଳା କିଛି ହେବନି ।

ଚନ୍ଦରା ତା ଧୂଳି ରାସ୍ତକୁ ଗୋଇଠାଏ ପକାଇ ସରକାରୀ ରାସ୍ତା ଉପରକୁ ଉଠିଯାଇ ଟହଲ ମାରିଲା । ନା, ଏଠି ତାକୁ କାମ ମିଳିବନି । ଏଇ ରାସ୍ତେ ରାସ୍ତେ ଯାଉଁ ଯାଉଁ ଯେଉଁଠି ପହଞ୍ଚିବ, ସେଠି ବିନମାଇକିନାରେ କାମ ପାଇଁ ତଲାଶ କରିବ । ସେ ଆଗକୁ ଗୋଡ ଉଠାଇଲା । ପଛରୁ ପାଟି ଗୋଳ ତାକୁ ଯେମିତି ଗୋଡେଇ ଡାକୁଛି । ମରଦଙ୍କର ମାଟି ହାଣିଲା ବେଳେ ମାଟିକୁ ଜବଦ କରିବାକୁ ହାଁ...ହାଁ....., ହୁଁ.......ହୁଁ......ଦମାପେଲା ଲଢେଇ ଡାକରା । ଆଉ ମାଇକିନାଙ୍କ ବୋଝ ଖଲାସ ପରେ ଦୌଡୁ ଦୌଡୁ ମାଟିକୁ ଥଟା କରି କିରି କିରି ହସ । ଶଳା, ଏ ଯୋଡି ନଗରାରର ମିଶା ମିଶି ବାଇଦ ତାକୁ ପୋଷେଇବନି । ସେ ଏକାଟିଆ ଢୋଲ ପରି ଡାଏଁ ଡାଏଁ ବାଜୁଛି । ଫାଟିଲା ଯାଏଁ ସେଇମିତି ଏକାଟିଆ ଶବ୍ଦ କରୁଥିବ ।

ଚନ୍ଦରା ଅଟକି ଗଲା । ଆଗରେ କେନ୍ଦୁ ଗଛରେ କିଏ ଖଣ୍ଡେ ଚିତିରା ମିତିରା ଶାଢୀ ବେଢେଇ ଦେଇଛି । ସେ ରାସ୍ତାରୁ ଓହ୍ଲାଇ ପଡି ଗଛଆଡକୁ ଗତିଲା । ଏତ ଗଛ ନୁହେଁ । ପଟେ ମାଇକିନା ସେଠି ବସିଛି । ଦେହର ରଙ୍ଗ କେନ୍ଦୁ ଗଛ ସାଙ୍ଗରେ ବିଲକୁଲ ମିଶି ଯାଉଛି । ଏଠି ବି ମାଇକିନା ଧନ୍ଦା । ଶଳା, ମଣିଷ, ଚଢେଇ, ଗଛ ସବୁଠିଁ ମାଇକିନି ଗୁଡେଇ ହେଇ ରହିଛନ୍ତି । ! ଚନ୍ଦରା ମୁହଁ ଫେରାଇ ରାସ୍ତା ଉପରକୁ ଉଠୁ ଉଠୁ କାହିଁକି କେଜାଣି ଅଟକି ଗଲା । ସେ ବୁଲିକି ଚାହିଁଲା । କାନି ପାରି ମୁଡି

ମୁଠେ ହେବ ଧରି ମାଇକିନାଟା ପାଟିକି ପକାଉଛି, ଆଉ ଚନ୍ଦରାକୁ ଲୁଚୁ ଲୁଚୁ କରି ଚାହୁଁଛି । ଚନ୍ଦରା ଥରେ ମାଇକିନା ବୋଲି ଦେଖି ନେଲା ପରେ ଆଉ ତାକୁ ବିଶେଷ କରି ଦେଖି ନଥିଲା । ସେଟା ତାର ସେଇମିତାକା ଅଭ୍ୟାସ । ସବୁ କୁଆ ଗୁଡାକ ସମାନ ଦିଶିଲା ପରି ସବୁ ମାଇକନା ତାକୁ ଏକାରକମ ଦେଖାଯାନ୍ତି ।

ଚନ୍ଦରା ଫୋପାଡିଲା ଫୋପାଡିଲା କଥାରେ ପଚାରିଲା- ଏଠି କାହିଁକି ବସିଛୁ ?

ଆଉ କଣ କରିମି ? ରାସ୍ତାରେ କାମ କରିବାକୁ ଆଇଥେନି । ଗୁମାସ୍ତା ନାଇଁ କରିଦେଲା । ଏକାଟିଆ ଏଠି କାମ ମିଳିବନି । ମରଦ କିଏ ମାଟି ହାଣି ଦେନେ ସିନା ମୁଣ୍ଡେଇ ନିଅନ୍ତି ।

ମୁଡି ଦିଟା ଚାକୁଳାଉ ଚାକୁଳାଉ ଲାକୁଆ ଲାକୁଆ ଗଳାରେ ସେ ଏତକ କହି ପକାଇ ତା ଛିଣ୍ଡା କାନିରେ ମୁହଁ ପୋଛିଲା ।

ଚନ୍ଦରା କେନ୍ଦୁଗଛର ଡାଳକୁ ଚୁପଚାପ ଘଡିଏ ଚାହିଁଲା । ଦିଟା ଗୁଣ୍ଡଚିମୁଣ୍ଡା ସେଠି ଗୋଡା ଗୋଡି ଲାଗିଛନ୍ତି । ମାଇ ଅଣ୍ଡିରା ଯୋଡି ହେବେ ପରା ?

ସେ ସିଧା ସିଧା ପଚାରି ଦେଲା- ଆଚ୍ଛା, ମୁଁ ମାଟି ହାଣି ଦେଲେ ତୁ ମୁଣ୍ଡେଇ ନେବୁ ?

ସେ ଟିକିଏ ଚନ୍ଦରା ମୁହଁକୁ ଚାହିଁ ମୁହଁ ଫେରାଇ ନେଇ ଥଙ୍ଗ ଥଙ୍ଗ ହେଇ 'ହଁ' ମାରିଲା । ଚନ୍ଦରା ସେଇମିତି ଠୋ ଠୋ କରି ପୁଣି ପଚାରିଲା- ଆଚ୍ଛା, କୁତରେତ କାମ ହେଉଛି । ଯାହା ପଇସା ମିଳିବ ତୁ ସେଥିରୁ ଟଙ୍କାରେ କେତେ ଅଣା ନେବୁ ? ସେ ସେହିପରି ମୁହଁ ସେପାଖ କରି ଗଣ ଗଣ ଗଳାରେ ଅଳ୍ପ ଶୁଣେଇ ଶୁଣେଇ କହିଲା- ସମତେ ଯା ନେଉଛନ୍ତି ।

ଚନ୍ଦରା ପୁଣି ଟାଏଁ ଟାଏଁ ପାଟିରେ ବୁଝାଇ ଦେଲା-ସେଠି ମରଦମାନେ ଯେଯା ମାଇକିନାଙ୍କୁ ଧରି କାମ କରୁଛନ୍ତି । ଯାହା ପଇସା ହେଉଛି, ଏକା ହାଣ୍ଡିରେ ପଡୁଛି । ପଇସାତ ଆଉ ଭାଗ ହେଉନି ।

ଏଥର ସେ କେନ୍ଦୁଗଛରେ ମୁହଁକୁ ପୂରାପୂରି ଘୋଡେଇ ହେଇ ଡୋକ ଗିଳୁ ଗିଳୁ କହିଲା ତେମେ ଯାହା ବିଚାର କରିବ । ନିଆଣ୍ଡ୍ରୀ ନୋକ । ଚନ୍ଦରା ତା ସ୍ୱାଭାବିକ ଚଡାଗଳାକୁ ଅଳ୍ପ ସାଉଁଳାଇ ଉତ୍ତର ଦେଲା-ଆଚ୍ଛା, ଯାହା ମିଳିବ ଅଧା ଅଧା । ହଁ, ତୋ ନାଆଁ କଣ ?

ସେପଟରୁ ଗଛ ଦିହରେ ବାଜି ଉତ୍ତର ଆସିଲା - ଚନ୍ଦିରୀ ।

ଚନ୍ଦରା ହୋ ହୋ ହେଇ ବେହୋସିଆ ହସ ହସୁ ହସୁ ମଝିରେ ଟିକିଏ ଦମ୍ ନେଇ କହି ପକାଇଥିଲା ତା ନାଆଁ ବି ଚନ୍ଦରା । ଚନ୍ଦରା, ଚନ୍ଦିରୀ । କହୁଁ କହୁଁ ସେ ଖାଲି ହସିଲା, ହସିଲା । ଚନ୍ଦିରୀ ଗଛଆଡୁ ମୁହଁ ବୁଲାଇ ଚନ୍ଦରାକୁ ଚାହିଁଲା । ଚନ୍ଦରା କାହାକୁ ନ ଚାହିଁ ହସର ମୁଣ୍ଡ ଛିଡିଗଲେ ପୁଣି ଖିଅ ଯୋଡି ହସି ହସି ଗଡି ଯାଉଛି । ଚନ୍ଦିରୀର ଆଗକୁ ଅଳ୍ପ ବହକି ଆସିଥିବା ଛତିଆ ଦାନ୍ତସନ୍ଧିରୁ ଶାମୁକାଏ ଦରଦର ହସ ଆଗକୁ ପିଚିକି ପଡିଲା ।

ପ୍ରଥମ ଦିନ କାମ ଶେଷ କରି ଚନ୍ଦରାଭୋଇ ବୋଲି ଡାକରା ପଡିବାରୁ ସେ ଟିପ ଗଡାଇ ମାଟି ମାପ ଅନୁସାରେ ଟଙ୍କା ଗଣି ଗାମୁଛାରେ ବାନ୍ଧି ପଲାକୁ ଆସିଲା । କାମରେ ଢଉନି ଦେଲା ପରେ ସମସ୍ତଙ୍କ ପରି ତାକୁ ବି ଖଣ୍ଡେ ପଲା ମିଳିଛି । ଚନ୍ଦିରୀ ତା ପଛେ ପଛେ ଚାଲିଛି । ପଲା ଆଗରେ

ଚନ୍ଦରା ବସିପଡି ଗାମୁଛାରୁ ଗଣ୍ଠି ଫିଟାଇ ପଇସାକୁ ତଳେ କୁଡାଇଲା । ଆଜି ବେଶୀ କିଛି କାମ ନେଇ ପାରିନି । କାଲିକି ସିଏ ଭିଡିଯିବ । ସାଉଘର ବଗିଚାରେ ସେ କାମ କରୁଥିଲା ଯେ ଥରେ କୋଦାଳ ଧଇଲେ ମାଟି ରାମ୍ ରାମ୍ ଡାକୁଥିଲା । ଏକ୍ ମରଡରେ ଗୁଣ୍ଡେ ଜମିକୁ ହାଣିମାରି ଦୋରସ୍ତ କରି ଦେଉଥିଲା । ଚେମା, ଚଉତିନିଆଙ୍କୁ ସେ ଫୁଙ୍କରେ ଉଡାଇଦେବ । ଅସଲ କଥା ହେଲା ମାଟି ଜଲଦି ଖଲାସ ହୋଇଯିବା ଦରକାର । ହଁ ଆଜି ମୋଟ ଆୟ ହେଲା ଛଅଟଙ୍କା ପନ୍ଦରଣା । ଦୁଇଭାଗ କିଲେ ତିନିଟଙ୍କା ସାତଣା ଲେଖା ହେଇ ଅଣାଏ ବଳୁଛି । ଛିଟିଆ ଅଣାକ ଥାଉ । କାଲି ହିସାବରେ ନଗେଇ ଦେଲେ ହେବ ।

ଚନ୍ଦରା ଚନ୍ଦିରୀର ଭାଗ ପଇସା ଅଲଗା ଥୋଇ ଦେଲାରୁ ଚନ୍ଦିରୀ ସେପଟକୁ ମୁହଁ ବୁଲାଇ ଫିସ୍ ଫିସ୍ କରି କହିଲା-ପଇସାତକ ତମ ପାଖରେ ଥାଉ । ମୁଁ ମାଇପି ନୋକ । ତାପରେ ପଲା ବାହାରେ କେଉଁଠି ଏଠି ସେଠି ପଡିମି । ମୋ ପାଇଁ ତ ପଲା ନାଇଁ । ଚୋରିଚମାରି ହେଇଯିବ । ତେମେ ହିସାବ ରଖିଥା । ଗଲା ବେଳକୁ ଏକାଠି ବୁଝାଇ ଦେବ ଯେ ନେଇଯିମି ।

ଚନ୍ଦରାର ଚେତା ପଶିଲା । ସତତ । ସେ ଶୁଣେଇ ଶୁଣେଇ ସେଇମିତି ଟାଣ ଟାଣ ଗଳାରେ କହିଲା-ତୁ କାହିଁକି ବାହାରେ ଶୋଇବୁ ? ପଲା ଭିତରେ ତୁ ରହ । ମୁଁ ମରଦ ପୁଅ । ସେ ଗଛ ମୂଳେ ରାତିଟା ଟିକିଏ ଗଡି ପଡିବି । ସିନ୍ଦୁରା ଫାଟିଲେତ ଉଠି କାମରେ ଜଇନି ଦେବାକୁ ପଡିବ । ଖରା ଟାଣ ହେଇଗଲେ ମାଟି ଟାଣେଇ ଯାଉଛି । ମୁଁ ଦମେ ହାଣି ଦେଇଥିବି । ତୁ ଗଲେ ଜଲଦି ମାଟି ଖଲାସ କରି ଦେବୁ ।

ସେ ଦିନ ରୋଷେଇ ସରଞ୍ଜାମ କିଛି ଯୋଗାଡ ହେଇ ନଥିଲା । ଚନ୍ଦରା ସରକାରୀ ଦୋକାନରୁ ଦେଢଟଙ୍କା ପକାଇ ଠୁଙ୍ଗାରେ ଚୁଡା, ଗୁଡ ଆଉ ହାତରେ ଦିଟା ମାଟି ସରା ଧରିକି ସଅଳ ସଅଳ ପଲାକୁ ଫେରି ଆସିଲା । କାନଡରାଟିଙ୍କ ତରଫରୁ କୁଲିଙ୍କ ପାଇଁ ଗୋଟାଏ ଉଠା ଦୋକାନ ଖୋଲା ହେଇଛି । ୯ ୬ ୨ ସ୍ତ ତାକୁ ସରକାରୀ ଦୋକାନ ବୋଲି କହନ୍ତି । ଗୋଟାଏ ସରାରେ ଚୁଡା ଚକଟା ଯିବ । ଆର ସରାରେ ପାଣି ପଇବା ହେବ । ଚନ୍ଦିରୀ ପାଖରେ ଖାଇବାକୁ ଅଛି ବୋଲି ସେ ଚନ୍ଦରାଠୁଁ ପଇସା ନେଲାନି ।

ଚନ୍ଦରା ଚୁଡା ଦେହରେ ପାଣି ଭିଜାଇ ଚକଟିବାକୁ ଗଛ ମୂଳରେ ଚକା ପକାଇ ବସି ପଡିଲା । ଚୁଡାକୁ ପାଣି ଅଣ୍ଟିଲାନି । ମନ୍ଦେ ପାଣି ପୁଣି ପିଇବାକୁ ରଖିବ । ପାଣି ଆଣିବାକୁ କିଏ ପୁଣି ଡାକେ ବାଟ ଯାଉଛି ? ହଅ ସେଇମିତି ଖାଇ ଦେବ । ସେ ବର ବର ହେଇ ତା ଭାବନାକୁ ପାଟି ବାଟେ କହି ପକାଇଲା ।

ଚନ୍ଦିରୀ ତା ଚେପାମେପା ଏଲମୁନିଅମ୍ ଡେକ୍‌ଚିରେ ପାଣି ଡେକ୍‌ଚିଏ ଧରି ଆସି ଗଛ ପାଖରେ ଚୁପ୍‌ଚାପ୍ ଠିଆ ହେଇ ରହିଲା । ଚନ୍ଦରାର ସେ ଆଡ଼କୁ ଫଇସି ନାହିଁ ସେ ଦରଭିଜା ଗୋଟା ଗୋଟା ଚୁଡ଼ାକୁ ଗୁଣ୍ଡା ବନ୍ଧୁ ବନ୍ଧୁ ସେଗୁଡ଼ା ଝର ଝର ହୋଇ ଖସି ପଡୁଥାଏ । ଚନ୍ଦିରୀ ଆସ୍ତେ ଆସ୍ତେ ବସି ଚନ୍ଦରାର ଚୂଡ଼ାକୁ ତା ଆଡ଼କୁ ସରକାଇ ଆଣିଲା । ଚନ୍ଦରା ମୁହଁ ଟେକିଲା । ଚନ୍ଦିରୀ ଚୂଡ଼ା ସରାରେ ତା ଡେକ୍‌ଚିରୁ ପାଣି ଢାଳି ଭଲ କରି ଚକଟି ଦେଲା । କାନିରୁ ଫିଟାଇ ଦିଟା ଧାନୁଆ ନଙ୍କା ଓ ଫୁଟାଏ ଲୁଣ ଗଛ ମୂଳର ପଡରଟେ ଗୋଟେଇ ଆଣି ଥୋଇ ଦେଇ ମୁହଁକୁ କାନିରେ ଢାଙ୍କି ଠିଆ ହେଲା ଚନ୍ଦରା ପହିଲୁ କରି ଜଣେ ମାଇକିନାକୁ ଏତେ ପାଖରେ ଏଇମିତି ଏତେ ବେଳ ଯାଏଁ ଦେଖୁଥିଲା । ଆଉ ପ୍ରଥମଥର ପାଇଁ ଆଉ ଜଣେ ତା କାମକୁ ତା ପାଇଁ କରିଦେଲା ।

ଚନ୍ଦରାର ଖିଆଲ ପଶିଲା । ଆରେ ବିଚାରୀଟାର କଣ ଅଛିକି ନାହିଁ, ସେ ଜାଣେନା । ସେ ତା ଡେକ୍‌ଚିକୁ ଟାଣି ଆଣି ସେଥିରେ ଅଧା ଚୂଡ଼ା ଚକଟା ଭର୍ତ୍ତି କରି ଚନ୍ଦିରୀ ଆଡ଼କୁ ପେଲି ଦେଲା । ଚନ୍ଦିରୀ ସେପଟକୁ ମୁହଁ ବୁଲାଇ ଛେପ ଢୋକୁ ଢୋକୁ କହିଲା - ତେମେ ଖାଅ । ମୋ ପାଖରେ ମୁଢ଼ି ଗଣ୍ଡେ ଅଛି । ମୁଁ ପାଟିରେ ପକେଇ ନେମି । ଆଜି ଦିନ ମାନ ଖଟିଛ । ପେଟକୁ ନଅଣ୍ଡ ହେଲେ ଦିହ ବସିଯିବ । କାଲିତ ପୁଣି ଖଟଣି ଅଛି ।

ଚନ୍ଦରା ହାତରେ ଚୂଡ଼ା ବାଟଲାଏ ଧରି ଚନ୍ଦିରୀ ଆଡ଼କୁ ବଲ ବଲ କରି ଚାହିଁଲା । ତାକୁ ପ୍ରଥମ କରି ଆଉ ଜଣେ ଦରଦ ଦେଉଛି । ତା ଭିତରଟା କେମିତି ଟିକିଏ ଓଦା ଓଦା ଲାଗିଲା । ସେ ଚନ୍ଦିରୀ କଥା ନ ଶୁଣି ତା ଡେକ୍‌ଚିକୁ ତା ଆଡ଼ କୁ ପୁଣି ପେଲି ଦେଲା । ଚନ୍ଦିରୀ ପଲା ଭିରକୁ ଯାଇଁ ତା ମୁଢ଼ି ପୁଟୁଳିକୁ ଆଣି ତା ଡେକ୍‌ଚିରେ ଢାଳି ଦେଲା । ତାପରେ ଚନ୍ଦରାର ସରାରୁ ତା ଅଇଁଠା ଚୁଡାକୁ ମିଶାଇ ଭଲ କରି ସବୁ ଚକଟି ଡେକ୍‌ଚିଟାକୁ ଚନ୍ଦରା ଆଗରେ ରଖି ଦେଇ ଯାଉଁ ଯାଉଁ କହିଲା - ତେମେ ଖାଅ । ବଳିଲେ ମୁଁ ଦି'ଟା ପାଟିରେ ପକାଇ ଦେବି ।

ଚନ୍ଦରା ଖାଉଥିଲା, ଆଉ ଚନ୍ଦରୀକୁ ଚାହୁଁଥିଲା । ଅନେକ ଦିନ ଧରି ଜାମ୍ ଧରି ଯାଇଥିବା ତା ମନର ଝରକା ଆସ୍ତେ ଆସ୍ତେ ମେଲା ହେଇ ଆସୁଥିଲା । ଗୋଟାଏ ନୂଆ ଅନୁଭବର ଝୁଣା ବାସନାରେ ତା ଭିତରର ସଢସଢିଆ ନାସନାଗନ୍ଧ ତା ଖୋଲା ଝରକା ବାଟ ଦେଇ ବାହାରକୁ ଖସରି ଖସରି ଯାଉଥିଲା । ତା ଅଇଁଠା ଡେକ୍‌ଚିକୁ ଧରି ଚନ୍ଦିରୀ ସେପଟକୁ ମୁହଁ ବୁଲାଇ ବଳକା ଚୁଡ଼ା ଚକଟାକୁ ଚୁପ୍‌ଚାପ ବସି ବଡ଼ ହୁସିଆରରେ ଖାଉଥିଲା । ଚନ୍ଦରା ଟିକିଏ ଦୂରରେ ଛିଡ଼ା ହୋଇ ଚନ୍ଦରୀକୁ ଗୋଟାଏ ନୂଆମନ ନେଇ ଦେଖୁଥିଲା । ଗଛକେନାର ଫାଙ୍କ ବାଟେ ହଲା ପତର ସାଙ୍ଗରେ ଦୋହଲି ଦୋହଲି ଦଶମୀ ଜହ୍ନର ଦପ୍ ଦପ୍ ଆଲୁଅ ଚନ୍ଦରୀ ମୁହଁର ଫାଳେ ଗାଲ ଉପରେ ପଡ଼ି ବେଳେ ବେଳେ ଚିକ୍ ଚିକ୍ କରୁଥିଲା ।

ଚନ୍ଦରା ଗଛ ସିଅରେ ମୁଣ୍ଡ ଦେଇ ଗାମୁଛା ଖଣ୍ଡକ ପାରି ଆକାଶକୁ ଚାହିଁ ତରା ଗଣୁଥିଲା । ଏକ, ଦୁଇ କରି, ଦଶ ଦଶ କରି, କୋଡ଼ି କୋଡ଼ି କରି ଗଣୁ ଗଣୁ ସେ ସଂଖ୍ୟା ଭୁଲି ଯାଉଥିଲା ଅସଂଖ୍ୟ ତରାକୁ ସେ ବିନା ସଂଖ୍ୟାରେ ଗଣି ଯାଉଥିଲା । ତା ଭିତରେ ଯେ କଣ ହେଉଥିଲା ସେ ଠିକ୍ ବୁଝି ପାରୁ ନଥିଲା । ତାରା ଗଣି ଗଣି ତା ଭିତରେ ଫଡ଼ ଫଡ଼ ହେଉଥିବା ପ୍ରଜାପତି ଗୁଡ଼ାକୁ ସେ ହୁରୁଡାଇବାକୁ ଚେଷ୍ଟା କରୁଥିଲା ।

ହଠାତ୍ ସେ ଚମକି ପଡ଼ି ହାଉଳି ଖାଇଲା । ତା ଗୋଡ଼ର ଆଙ୍ଗୁଳି ଗୁଡ଼ାକ ଉପରେ କଣ ଗୋଟାଏ ଉଷୁମ ଉଷୁମ ହେଇ ଚାପି ହେଇ ଯାଉଛି । ଚନ୍ଦିରୀ ତା ଆଙ୍ଗୁଳିଠାରୁ ଆରମ୍ଭ କରି ଗୋଡର ଭଣ୍ଡା ପର୍ଯ୍ୟନ୍ତ ମୋଡିବାକୁ ଆଗେଇ ଆସୁଛି । ଚଂଦରା ଗୋଡ ଘୁଞ୍ଚାଇ ଆଣି ତାର ପୁରୁଣା ଟାଉଁଟାଉଁଆ ଢଙ୍ଗରେ ହୁକୁମ ଦେଲା ଭଳି ପାଟି କରି ଉଠିଲା- ତୁ ଯାଇଁ ପଲାରେ ଶୋଉଛନା, ଦେଖିବୁ ? ଏଠି ଗୋଟେ ଢଙ୍ଗ କାଢୁଛି ? ମୁଁ ଜନମ ହେଲା ଦିନରୁ ମୋ ଗୋଡରେ କେହି କେବେ ହାତ ମାରିନି । ମୋ ଗୋଡ ବିନ୍ଧିଲେ, ସେଇ ବିନ୍ଧିବା ଔଷଧରେ ବିନ୍ଧାଟା ଭଲ ହୋଇଯାଏ ।

ଚଂଦରୀ ମୁଣ୍ଡ ଉପରୁ ଓଢଣାଟାକୁ ଆଗକୁ ଟାଣି ଦେଇ ଖୁବ୍ ଦରଦ ଢେଳିଲା ଗଳାରେ ଅଳ୍ପ ଗେହ୍ଲେଇ ଦେଇ କହିଲା- ଆଜି ଦିନ ତମାମ ପଥରମିତି ମାଟି ସାଙ୍ଗରେ ବାହା ଫଟାଇ ନଢେଇ କରିଛ । କଙ୍କାଳ ପିଠି ଉକ୍ ଉକ୍ ହେଉଥିବ । ଟିକିଏ ହାତ ମାରିଦିଏଁ ।

ଚନ୍ଦରା କଣ କହିବାକୁ ଯାଉଥିଲା କହି ପାରିଲାନି । ତା କଙ୍କାଳ ଓ ଗୋଡର ଭଣ୍ଡା ଧକ୍

ଧକ୍ ହେଇ ବିନ୍ଧିବାକୁ ଆରମ୍ଭ କରିଥିଲା । ଏଇଟା ତା' ଜୀବନର ପ୍ରଥମ ବିନ୍ଧା । ଯେଉଁ ବିନ୍ଧାକୁ କମାଇବାକୁ ମଣିଷ ଅନ୍ୟକୁ ଦରକାର କରେ ।

ଚନ୍ଦିରୀ ତା ରୁଗୁଡିଆ ହାତରେ ଚନ୍ଦରାର କଙ୍କାଳକୁ ଦବାଉଁ ଦବାଉଁ ଟିକିଏ ଅଭିମାନିଆ ଢଙ୍ଗରେ ଥିରି ଥିରି କହୁଥିଲା-ତେମେ ଏ ପଦାଟାରେ ଏମିତି କାହିଁକି ପଡିବ ? ପଲାତ ଡମର । ଖୋଲା ଜାଗାରେ ଶୋଇଲେ ଦିହ ପରାଣ ହେବ । ରାତି ପାହିଲେ ଟାଙ୍ଗରା ମାଟି ସଙ୍ଗରେ ପୁଣି ନଢିବ । ତେବେ ଉଠିଯାଥ । ପଲାରେ ଶୋଇବ । ମୁଁ ପଛକେ ଏଇଠି ଟିକିଏ ଗଡି ପଡୁଛି ।

ଚନ୍ଦରା କିଛି ଜବାବ୍ ଦେଲାନି । ତା ଭିତରେ ହାଉଜାଉ ହେଉଥିବା ପ୍ରଜାପତି ଗୁଡାଂକ ଡେଣା ଛିଡି ପଡି ସେ ଗୁଡାକ ସାବାଁଳୁଆ ହୋଇ ଯାଇଥିଲେ, ଆଉ ତାଙ୍କର ଆଁଶୁକୁ ତା ଭିତରେ ଆଙ୍କୁଶ ଭଳି ଭୁକେଇ ଭୁକେଇ ଚାଲିଥିଲେ ।

ଚନ୍ଦିରୀ ଆସ୍ତେ ଆସ୍ତେ ଚନ୍ଦରାର ହାତ ଧରି ପଲା ଭିତରକୁ ନେଇଗଲା । ଚନ୍ଦରା ଚକଲଗା କଣ୍ଢେଇ ଭଳି ତା ସାଙ୍ଗରେ ଗଡି ଗଡି ଚାଲିଲା । ଚନ୍ଦିରୀ ତା ବୁଜୁଳି ଫଟାଇ ଖଣ୍ଡେ ଚିରା ଶାଢୀ ତଳେ ପାରି ଦେଇ ଆରଖଣ୍ଡକ ଗୁଡେଇ ପୁଡେଇ ତକିଆ ଭଳି ସଜାଡି ଦେଇ ଚନ୍ଦରାକୁ ଆସ୍ତେ ଶୋଇ ଦେଇ ବାହାରକୁ ଚାଲି ଯାଉଥିଲା । ଚନ୍ଦରା ଥର ଥର ଅଶକ୍ତ ହାତରେ ଚନ୍ଦିରୀ ହାତକୁ ଧରି ଅଟକାଇବାକୁ ଚେଷ୍ଟା କରୁଁ କରୁଁ ଚନ୍ଦିରୀ ଆପେ ଆପେ ଧରା ଦେଇ ସାରିଥିଲା । ଚନ୍ଦରା ଭିତରେ ତା ବର୍ଷ ବର୍ଷର ଶୋଇଲା ମହାବଳ ହେଣ୍ଡାଳ ଉଠିଲା । ସେ ଅଣ୍ଡାଳି ଦେଖିଲା ଗୋଟାଏ ମାଂସଳ ହରିଣୀ ତା ପଞ୍ଝା ଭିତରେ ନିଜକୁ ଅର୍ପି ଦେଇ ଅପେକ୍ଷା କରିଛି । ଏ ଶିକାର ପାଇଁ ସେ ବୁଦାରେ ଲୁଚିନି । କାବୁ କରିବାକୁ କୁଦା ମାରିନି । ଥାବା ଦେହରୁ ନଖ କାଢିନି । ନିଶ ଫୁଲାଇ ରଡି ଛାଡିନି । ତା କୁମ୍ଭକର୍ଣ୍ଣର ନିଦ୍ରା ଭଙ୍ଗ ଭୋକକୁ ନେଇ ସେ ପାଗଳ ପରି ତା ଆଗରେ ବଢ଼ା ହୋଇଥିବା ମେଞ୍ଚାଏ ମଲା ମାଂସକୁ କଚ କଚ କରି ଝୁଣିବାକୁ ଲାଗିଲା ।

ସାଥାଡା ସାଥାଡା କୁଲି ବସ୍ତିର ନୁଆଁଣିଆ କୁନି କୁନି ପଲା ସବୁ ରାତ୍ରିର ଓଢନ ମୁଣ୍ଡାଇ ଚାରିଆଡେ ଘୁମେଇ ପଡିଥିଲେ । ପଲାର ଘୁଣଖିଆ ଧଡଡା କେମ୍ପାକୁଜା ତାଟି ସେପଟରେ କେଉଁଠି କୋତରା ପଚା ପୁରୁ ପୁରୁ ହେଁସ ଉପରେ, କେଉଁଠି ଚିରାମିରା, ଲୋଚା କୋଚା କୋଚଟ ଅଖାର କଡ ପାଖରେ ଚନ୍ଦରାର ଭାଇ ବିରାଦରମାନେ ତାଙ୍କ ମାଂସର ଚନ୍ଦ୍ରକଳାକୁ ଝୁଣି ଝୁଣି ଝୋଲାମରା ହେଇ ଝିମେଇ ପଡିଥିଲେ । ଦିନ ମାନ ଡହ ଡହ ଖରାର ଉହ୍ନେଇ ଭିତରେ ସିଝି ସିଝି ତାଙ୍କର ତାଇଗଲା ଶୋଷିଲା ଦେହକୁ ଶୀତେଳେଇବା ଲାଗି ଏଇ ମାଂସର ନାଗରମାନେ ତାଙ୍କ ମାଂସର ଥଣ୍ଡା ପିଣ୍ଡୁଳାମାନଙ୍କୁ କୁଣ୍ଢେଇ କୁଣ୍ଢେଇ ବେହୋସରେ ଘୁଙ୍ଗୁଡି ମାରୁଥିବେ ।

ତାଙ୍କର ଚନ୍ଦ୍ରକଳାଙ୍କ ସମଗ୍ର ପ୍ରେମ କାବ୍ୟ, ଉପୋଦ୍‌ଘାତଟାରୁ ପରିଶିଷ୍ଟ ପର୍ଯ୍ୟନ୍ତ, ଚନ୍ଦରା ଚନ୍ଦିରୀର ଅଧ୍ୟାୟ ପରି ସବୁ ସିଧା ସାଧା । ସେଠି ପୂର୍ବରାଗ ନଥାଏ । ପଶ୍ଚ ତାପ ନ ଥାଏ । କିଛି ମାଂସକୁ ନେଇ ସେମାନେ ତାଙ୍କ ପ୍ରେମର ପୂର୍ବ ପର, ଆଦି ଅନ୍ତ ସବୁ ଶେଷ କରିଯାନ୍ତି । ତା ପୂର୍ବରୁ କିଛି କବିତା ନଥାଏ । କିଛି କଳ୍ପନା ନ ଥାଏ ।

ଟିକିଏ ଦୂରରେ କଣ୍ଟ୍ରାକ୍ଟରଙ୍କ ନିଛାଟିଆ ତମ୍ବୁଟା ସୁରାସକ୍ତ ହସୋଲ୍ଲାସରେ ଉଦ୍‌ଫେଣିତ ହେଇ ଉଠୁଥିଲା । ସେ ଦିନ ସେଠାରେ ଆୟୋଜିତ ଏକ ପିକ୍‌ନିକ୍‌ରେ ସହରର ଓମେନ୍‌ସ୍ ହଷ୍ଟେଲରୁ କେତେ ଜଣ ବଛା ବଛା ବିଉଟି ଉପବର ବିଶିଷ୍ଟ ଅତିଥି ରୂପେ ଯୋଗ ଦେଇଥିଲେ । କୋକାକୋଲା. ମାଂସ ପଲାଉ, ରେକର୍ଡ ପ୍ଲେୟାର, କେମେରା ସ୍ନାପ୍, ଭୋକାଲ ମିଉଜିକ୍ ଇତ୍ୟାଦି ଇତ୍ୟାଦିର ଅଭିଜାତ

ପର୍ଯ୍ୟାୟ ଭିତରେ ଦିନର ଉତ୍ସବକୁ ଯଥାସମ୍ଭବ ସଫଳୀକୃତ କରାଯାଇଥିଲା । ରାତ୍ରିର ଅଧ୍ୟାୟରେ ନଗରର ଧନୀଶ୍ରେଷ୍ଠ ଧନ୍ୟ, ମାନ୍ୟ, ବଦାନ୍ୟ, ଖୋଦ କଣ୍ଟ୍ରାକ୍ଟର ସାହେବ ଅକାତରେ ସ୍କଚ୍ ବଟଲ୍‌ର କର୍କ ଗୋଟାକ ପରେ ଗୋଟାଏ ବୋତଲଚ୍ୟୁତ କରି, ଅତିଥିମାନଙ୍କୁ ଅତି ମାତ୍ରାରେ ଆପ୍ୟାୟିତ କରୁଁ କରୁଁ, ସହରର ଉର୍ବଶୀ ଶ୍ରେଣୀକୁ ସମ୍ପୂର୍ଣ୍ଣ ବିବସନା କରି, ନିଜେ ବାସବର୍ଜିତ ଅବସ୍ଥାରେ ସେମାନଙ୍କର ନିଷିଦ୍ଧ ଅଞ୍ଚଳ ମାନଙ୍କରେ କର ସଞ୍ଚାଳନ କରି ଭକ୍ତୀୟ ଭାବନାରେ ଗଳା ଫଟାଇ ଉତ୍‌ଫୁଲ୍ଲ ଚିତ୍‌କାର କରୁଥିଲେ - କମଳା ପସରା-ବାଲୀ କି କେବୋଲେ ତୋ କମଳା ଯୋ...ଓ....ଡି କେତେ ?

କଣ୍ଟ୍ରାକ୍ଟରଙ୍କ ତମ୍ବୁ କଡକୁ ପେଟେଇ ପଡିଥିବା ଫିଆଟ ଗାଡି ଉପରେ ଜହ୍ନ ତାର ଜରି ଗୁଣ୍ଡ ଓଟାଡି ଦେଉଥିଲା ।

ଚନ୍ଦରାର ପଲା ଆଗରେ ଢୋକାଉଥିବା ଝଙ୍କାଙ୍ଗ ଗଛର ପତରକୁ ଭେଦେଇ ଭେଦେଇ ଜହ୍ନର ପତଳା ଆଲୁଅ ଥୋପି ଥୋପି ପଡୁଥିଲା । ବସ୍ତିଯାକର ଘାମ୍ଭୁଡେଇ ଥିବା ମଲା ମଲା ସବୁ ପଲା ଉପରକୁ ପାଣିଚିଆ ଜହ୍ନ ସେଇମିତି ସବୁଠି ବୋହି ବୋହି ଆସୁଥିଲା । ଏମାନଙ୍କ ପରି ଚନ୍ଦରା ଚନ୍ଦିରୀର ଲଙ୍ଗଳା ଦେହକୁ ଚକଟି ଚକଟି ହାଲିଆ ହେଇ ଉଶ୍ୱାସର ଘୁଙ୍କୁଡି ମାରୁଥିଲା ।

କାଲି ସକାଳୁ ସୂର୍ଯ୍ୟ ଆସିଲେ କଣ୍ଟ୍ରାକ୍ଟରଙ୍କ ଚାକର ବୁଢା ତମ୍ବୁତଳେ ଗଡୁଥିବା ଠିପି ନଥିବା ଖାଲି ଖାଲି ବୋତଲ ଗୁଡାକୁ ନାକରେ ଲୁଗା ଦେଇ ରୁଣ୍ଡେଇ ପୁଣ୍ଡେଇ ଅଳିଆ ଟୋକେଇ ଭିତରକୁ ଫିଙ୍ଗି ଦେବ । ଆଉ ଡ୍ରାଇଭର ଭେଣ୍ଡିଆ ବଚାରର ନର୍ଯାସ ଚୋଷା ଫାଙ୍କା ଫାଙ୍କା ଟୋକୀପଲକୁ ସହରର ତେଛକି ରାସ୍ତାରେ ଓହ୍ଲେଇ ଦେଇ ମୁହଁ ବୁଲାଇ ଲେଣ୍ଡାଏ ଖଙ୍କାର ତଣ୍ଟି କଡିରୁ ଝିକି ଆଣି ଖୁବ୍ ଜୋର୍‌ରେ ଛାଟି ଦେଇ ଗାଡି ଫେରାଇବ ।

ଠିକ୍ ସେତିକି ବେଳେ ଚନ୍ଦିରୀର ଅଠା ଅଠା ଜଟାଳିଆ ତାଳୁ ଉପରେ ପୁଆଳର ମଚ୍ଚାକୁ ସଜାଡି ସୁକୁଡି ମଡେଇ ଦେଉଁ ଦେଉଁ ଚନ୍ଦିରୀ ଚନ୍ଦରାର ମଝିଚିରା ତୌରଥ୍ୟା ଗାମୁଚ୍ଛା ଖଣ୍ଡକୁ ଜୋର୍ ଲଗାଇ ତା ଅଣ୍ଟାରେ ଭିଡୁ ଭିଡୁ ତା ବଡ ବଡ ଦାନ୍ତକୁ ନେଫେଡି ଦେଇ ଚନ୍ଦରାକୁ ଚାହିଁଲେ ଚନ୍ଦରୀ ନିଶ୍ଚୟ ହସି ପକାଇବ ।

# ସ୍ୱରଭଙ୍ଗ

ବିଜୟକୃଷ୍ଣ ମହାନ୍ତି

ଚିତ୍ରଶିଳ୍ପୀ ସାଗର ଦାସର ଏକକ ଆର୍ଟ ଏକ୍‌ଜିବିସନ୍‌ରୁ ଊର୍ମି ଘରକୁ ଫେରିଥିଲା ଆଚ୍ଛନ୍ନ ଏକ ମନ ନେଇ । ସାଗରର ପ୍ରତ୍ୟେକଟି ଛବିରେ ସେ ଅନୁଭବ କରିଥିଲା ଶିଳ୍ପୀର ଗଭୀର ଚିନ୍ତାର ଅଦ୍ଭୁତ ପରିପ୍ରକାଶ । ସ୍ଥୂଳ ବସ୍ତୁରେ ସୂକ୍ଷ୍ମ ଦର୍ଶନ ଓ ସେଇ ଦର୍ଶନରେ ବୁଦ୍ଧି ଓ ପ୍ରାଣ ଅଦ୍ଭୁତ ସମନ୍ୱୟ । ତୂଳୀ ଓ ରଙ୍ଗ ମାଧ୍ୟମରେ ସ୍ପଷ୍ଟ କିଛି ବ୍ୟକ୍ତ ନୁହେଁ, ଅଥଚ ସେଇ ଅସ୍ପଷ୍ଟତା ମଧ୍ୟରେ ସମଝ୍‌ଦାର ଦର୍ଶକ ସ୍ପଷ୍ଟ ସବୁ ଦେଖିପାରେ ।

ସାଗର ସତେ ସାଗର, ସ୍ଥୂଳ ଦୃଷ୍ଟିରେ ତା'ର ବିସ୍ତୃତି ମାପି ହୁଏ ନା, ସ୍ତବ୍ଧ ହୋଇ ଦେଖିବାକୁ ପଡ଼େ କେବଳ ।

ଊର୍ମି ସାଗରକୁ ସ୍ତବ୍ଧ ହୋଇ ଦେଖୁଥିଲା ।

ତା'ର ଛବିରେ ମୁଗ୍ଧ ହୋଇ ତା' ସଙ୍ଗେ ଆଳାପ କରିବାକୁ ଯାଇ ସେ ଯେପରି ମୂକ ହୋଇ ଯାଇଥିଲା ।

କ'ଣ କହିବ ସେ ତାକୁ ?

କ'ଣ ପଚାରିବ ?

ସାଗରର ପ୍ରତିଭା ନିକଟରେ ଅବନତ ହେବା ପରେ ଆଉ ଅଧିକ କ'ଣ ସେ ଚାହେଁ ?

ପ୍ରତିଭାକୁ ନମସ୍କାର କରୁ କରୁ ପ୍ରୀତିର ପ୍ରକାଶ ।

ଏ ପ୍ରକାଶର ଔଚିତ୍ୟ ସଂପର୍କରେ ଚିନ୍ତା କରୁ କରୁ ଊର୍ମିର ଏକ କବିତା ପଂକ୍ତି ମନେ ପଡ଼ିଯାଇଥିଲା :

''ସଙ୍ଗୀତ, ସାହିତ୍ୟ, କଳା, ବିଜ୍ଞାନକୁ ଆଦର ଜଣାଇ
ତୁମେ ଯେବେ ଅକସ୍ମାତ ମଣିଷକୁ ଭଲପାଇ ବସ,
ତେବେ ତୁମେ ଭୁଲ୍ କର ଭୟଙ୍କର ଭୁଲକର ତୁମେ,
ନିଜର ଅଜ୍ଞାତସାରେ କର ସିନା ନିଜକୁ ନିଃଶେଷ ।''

ସାଗରର ଶିଳ୍ପ ପ୍ରତିଭାକୁ ନମସ୍କାର କରୁ କରୁ ସେ ଯେ ତାକୁ ଭଲପାଇ ବସିଛି, ଏହା କଣ ଏକ ଭୁଲ୍ ?

ସେ ତ ସାଗରକୁ ଭଲପାଇ ବସିଛି, ମାତ୍ର ସାଗର ତା'ମନର ଆଲୋଡ଼ନ ବୁଝୁଛି ତ ?

ବୁଝିଥିଲା ସାଗର ।

ବୁଝିଥିଲା ସାଗର ସେ ଶିଳ୍ପୀହୋଇ ନିଜର ଚିତ୍ରକୁ ଯେପରି ଅନୁଭବ କରିଛି, ତା'ଠାରୁ ଅଧିକ ଗଭୀର ଭାବେ ଅନୁଭବ କରିଛି ଊର୍ମି । ଊର୍ମି ତା'ର କେତୋଟି ଚିତ୍ରକୁ ଯେପରି ବିଶ୍ଳେଷଣ କରି ବୁଝାଇଥିଲା ତା' ଶୁଣି ସ୍ତବ୍ଧ ହୋଇଯାଇଥିଲା ସାଗର । ସେ କ୍ରମେ ଅନୁଭବ କରିଥିଲା ନିଜର

ସମ୍ପୂର୍ଣ୍ଣ ଅଭିବ୍ୟକ୍ତ ପାଇଁ ଊର୍ମିର ସାନିଧ ତା'ର ଏକାନ୍ତ ପ୍ରୟୋଜନ । ସେ କ୍ଳାନ୍ତ ହୋଇ ଅଟକି ଗଲେ ଊର୍ମି ତା'ର ହାତ ଧରି ତାକୁ ଆଗେଇ ନେଇଯିବ । ଚିନ୍ତା ଜଗତରେ ତା'ର ସମସ୍ୟାରେ ସମାଧାନ ଦେବ ସେ । ତାର ଦୁର୍ବୋଧ ଶ୍ଳୋକର ଟୀକା ଲେଖି ସେ ତାକୁ ପ୍ରାଞ୍ଜଳ କରିବ । ତାକୁ ଉନ୍ମୋଚନ କରିବ ଊର୍ମି ।

ଊର୍ମିର ଐକାନ୍ତିକତା ନିକଟରେ ସାଗର ଆତ୍ମସମର୍ପଣ କରିଥିଲା ।

ଊର୍ମି ଧନ୍ୟ ହେଲା ।

ଏଥର ଏକତ୍ର ହେବା କଥା ।

ବ୍ୟବଧାନ ଯେ ଦୁର୍ବିସହ ।

ଆଗ୍ରହ ବେଶି ଊର୍ମିର । ଇଂରାଜିରେ ଏମ୍.ଏ. ଆଉ କମ୍ପ୍ଲିଟ୍ କରିବା ତା'ର ପ୍ରୟୋଜନ ନାହିଁ, ସାଗରର ଚିନ୍ତା ଜଗତରେ ସେ ବୁଡ଼ ଦେବ । ତା ସୃଷ୍ଟିର ସେ ହେବ ଟୀକାକାର ।

ଦୁହେଁ ସ୍ଥାୟୀ ଭାବେ ଏକତ୍ର ନହେଲେ ଏତେବଡ଼ ସ୍ୱପ୍ନ ତା'ର ସାର୍ଥକ ହେବ କିପରି ?

ଊର୍ମି ପିତାମାତାଙ୍କ ଠାରୁ ଅନୁମତି ପାଇଯାଇଛି । ସାଗରକୁ ଦେଖି ତା' ସଙ୍ଗେ କଥା କହି ସେମାନେ ସନ୍ତୁଷ୍ଟ ହୋଇଛନ୍ତି ।

ଊର୍ମିକୁ ବୋହୂ କରିନେବାରେ ପ୍ରଚୁର ଆଗ୍ରହ ସେଠାରେ, ମିଳନର ଉଭୟ ପଟଚେ ଆଶୀର୍ବାଦର ବନ୍ଧନୀ ।

ସମୟ ଅପରାହ୍ଣ ।

ଊର୍ମି ସାଗରର କକ୍ଷରେ ବସିଛି ।

ମଝିରେ ଟେବୁଲ୍ ।

ଦୁହେଁ ଦୁଇପାଖେ ସାମ୍ନା ସାମ୍ନି ।

ଊର୍ମି କହିଲା, ''ତମ ପାଖକୁ ଏମିତି ଆସିବା ଆଜି ମୋର ଶେଷ । ନିର୍ବନ୍ଧ ଆଉ ସପ୍ତାହେ ରହିଲା, ତା'ପରେ ବିବାହ । ସାମାଜିକତା ଦୃଷ୍ଟିରୁ ଆଉ ଏଠାକୁ ଆସିବା ସଂଗତ ହେବନି ।''

ହସିଲା ସାଗର, ''ଏକାବେଳେକେ ବଧୂ ହୋଇ ଆସିବ ଏହି କଥା ତ ।''

ଅଳ୍ପ ହସିଲା ଊର୍ମି, ''ତୁମେ ତ କହୁଛ, ମୁଁ ଅଧିକ ଆଉ କ'ଣ କହିବି ? ଗୋଟିଏ କଥା ଭାବି କିନ୍ତୁ ଭାରି ଦୁଃଖ ଲାଗୁଛି । ବିବାହ ପରେ ଆମେ ପରିସ୍ପରର ହୋଇଯିବା ସତ, ମାତ୍ର ଏବେର ଆମର ଏଇ ସାକ୍ଷାତ, ତଜ୍ଜନିତ ଆବେଗ, ଉତ୍କଣ୍ଠା ଏବଂ ଆନନ୍ଦରୁ ଆମେ ଚିରଦିନ ଲାଗି ବଂଚିତ ହେବା । ବର୍ତ୍ତମାନ ଆମର କାହାରି ଉପରେ କାହାରି ଅଧିକାର ନାହିଁ । ଦୁହେଁ ନିଜ ନିଜର ସ୍ୱାତନ୍ତ୍ୟ ବଜାୟ ରଖି ପ୍ରୀତି ଉପଭୋଗ କରୁଛେ । ବିବାହ ପରେ ପରସ୍ପରର ପରସ୍ପର ଉପରେ ଅଧିକାର ଆସିଯିବା ପରେ ଏ ପ୍ରୀତିର ଢାଞ୍ଚା କିନ୍ତୁ ବଦଳିଯିବ । ଅନେକ ସ୍ୱାର୍ଥ, ଅନେକ ଦାବିର ପ୍ରଶ୍ନ ସେଠାରେ । ଜଣେ ଅନ୍ୟ ଜଣକୁ ଅକ୍ତିଆର କରିବାର ପ୍ରଚେଷ୍ଟା...... ।''

''ତା'ହେଲେ ବିବାହ କରିବାନି କହୁଛ ?'' ସାଗରର କୌତୂହଳୀ ପ୍ରଶ୍ନ ।

ହସିପକାଇଲା ଊର୍ମି, ''ସେ କଥା ତ ମୁଁ କହୁନି । ମୋ ବକ୍ତବ୍ୟର ଆବେଗ ଠିକ୍ ବୁଝିପାରିଲନି ତମେ ।''

ସାଗର ସେତିକିରେ ତର୍କରେ ପୂର୍ଣ୍ଣଚ୍ଛେଦ ଟାଣି ଦେଇ ପ୍ରସଙ୍ଗ ବଦଳାଇ ନେଇ କହିଲା, ''କାଲିଠାରୁ ଆଉ ଆସିବନି ଯେତେବେଳେ ଆଜିର ଅଙ୍କା ଚିତ୍ର ମୋର ଦେଖି ଯାଇଥାଅ, କେନ୍ଦ୍ର

କରି ତୁମକୁ ଆଙ୍କିଛି ।''

''ମୋତେ କେନ୍ଦ୍ର କରି'' ଆଶ୍ଚର୍ଯ୍ୟ ଆଖିରେ ଅନାଇଲା ଊର୍ମି ।

''ହଁ ଆଜି ସମସ୍ତ ଦ୍ୱିପ୍ରହର ଏକ ବିଚିତ୍ର ଚିନ୍ତାରେ ମନ ମୋର ଆଚ୍ଛନ୍ନ ରହିଥିଲା । ସେଇ ଚିନ୍ତା ହିଁ ରୂପ ପାଇଛି ଚିତ୍ର ମାଧ୍ୟମରେ । ଏଡ଼େ ସୁନ୍ଦର ତୁମେ, ଲାବଣ୍ୟର ପ୍ରତିମା, ମାତ୍ର ଅକ୍ଷୟ ରହିବ କି ଏ ସୁଷମା ଚିରଦିନ ? କାଳ ତା'ର ନିଷ୍ଠୁର ହାତରେ ପୋଛି ଦେବ ଧୀରେ ଧୀରେ ସବୁ । ସମୟ ନିଜର ଅଗ୍ରଗତି ସଙ୍ଗେ ତୁମର ରୂପ ଉପରେ କ୍ରମେ କିପରି ତା'ର ନିଷ୍ଠୁର ପ୍ରଲେପ ଦେବାକୁ ଆରମ୍ଭ କରିବ ଓ ସେଇ ପ୍ରଲେପର ପରିଣତି ସ୍ୱରୂପ ତୁମେ କ୍ରମଶଃ କିପରି ଶ୍ରୀହୀନା ହେବ, ରେଖାଚିତ୍ର ମାଧ୍ୟମରେ ମୁଁ ତାହା ହିଁ ପ୍ରକାଶ କରିବାର ଚେଷ୍ଟା କରିଛି । ରେଖାଚିତ୍ରରେ ତୁମର ମୁହଁ ଆଙ୍କି ସେଇ ପରିବର୍ତ୍ତନ ଦେଖାଇବାର ପ୍ରୟାସ କରିଛି । ତୁମ ମୁହଁର ଢାଞ୍ଚା ବୟସର ଅଗ୍ରଗତି ଫଳରେ କ୍ରମେ କିପରି ବଦଳିଯିବ ମୋ ଦ୍ୱାରା ଅଙ୍କିତ ତୁମର ବିଭିନ୍ନ ବୟସର ପାଞ୍ଚୋଟି ମହଁର ଚିତ୍ରରୁ ତାହା ସହଜରେ ଉପଲବ୍ଧି କରିହେବ । ବିଭିନ୍ନ କିସମର ମୁହଁର ପାଞ୍ଚୋଟି ଚିତ୍ର ହେଲା- ତାରୁଣ୍ୟ, ଯୌବନ, ଯୌବନ ଓ ପ୍ରୌଢ଼ତ୍ୱର ମଧ୍ୟବର୍ତ୍ତୀ ବୟସ, ପ୍ରୌଢ଼ତ୍ୱ ଏବଂ ବାର୍ଦ୍ଧକ୍ୟ । ଏହି ପାଞ୍ଚୋଟି ଚିତ୍ରରୁ ତୁମେ ତୁମ ମୁହଁର କ୍ରମ ପରିବର୍ତ୍ତନ ସ୍ପଷ୍ଟ ଲକ୍ଷ୍ୟ କରିପାରିବ ।''

ବକ୍ତବ୍ୟ ଶେଷରେ ସାଗର ଡ୍ରୟର ଖୋଲି ତନ୍ମଧ୍ୟରୁ ତା'ର ବର୍ଣ୍ଣନା ଅନୁରୂପ ଅଙ୍କା ପାଞ୍ଚୋଟି ଚିତ୍ର ସଯତ୍ନେ ବାହାର କରି ଆଣି ଟେବୁଲ୍ ଉପରେ ଊର୍ମି ସାମ୍ନାରେ ରଖିଦେଲା ।

ସେ ଚିତ୍ର ଦେଖିଦେଇ ସର୍ପାହତ ହେଲାଭଳି ଚମକି ଉଠିଲା ଊର୍ମି । ବିସ୍ଫାରିତ ଦୃଷ୍ଟି ତା'ର ଚିତ୍ର ଉପରେ ସ୍ଥିର ହୋଇଯାଇଛି । ମାତ୍ର ସେ ସ୍ତବ୍ଧତା ମୁହୂର୍ତ୍ତ କେତେକ ଲାଗି । ତା'ପରେ ସେ ଧୀରେ ଧୀରେ ଦୃଷ୍ଟି ଟେକି ଅନାଇଲା ସାଗରକୁ, ଦି'ଆଖିରେ ତାର ଅଶ୍ରୁ ଭରିଯାଇଛି, ''ମୋତେ କେନ୍ଦ୍ର କରି ଏପରି ଚିତ୍ର ଆଙ୍କିବାର କଳ୍ପନା ତୁମେ କରିପାରିଲ ସାଗର ?''

''ଏକ ନିଷ୍ଠୁର ସତ୍ୟକୁ ରୂପ ଦେଇଛି ଚିତ୍ର ମାଧ୍ୟମରେ । ବର୍ତ୍ତମାନକୁ ନେଇ ରଙ୍ଗୀନ ସ୍ୱପ୍ନ ଦେଖୁଥିବା ସମୟରେ ଅବଶ୍ୟମ୍ଭାବୀ ନିର୍ମମ ଭବିଷ୍ୟତର ଚିନ୍ତା କରିବାକୁ ଡରିଥାଉ ଆମେ । କୁହ ଊର୍ମି ଏ ଚିତ୍ର ରୂପ ସଂପର୍କରେ ସେଇ ନିର୍ମମ ସତ୍ୟକୁ ଉଦ୍‌ଘାଟନ କରି ନାହିଁକି ?'' ଶାନ୍ତ କଣ୍ଠରେ ପ୍ରଶ୍ନ କଲା ସାଗର ।

ଊର୍ମି ଦୁଇ କରତଳରେ ନିଜର ମୁଖ ଆବୃତି କରି ଫୁଲି ଫୁଲି କାନ୍ଦିବାକୁ ଆରମ୍ଭ କରିଦେଇଛି ଇତି ମଧ୍ୟରେ ।

ସାଗର କିନ୍ତୁ ଆଶ୍ଚର୍ଯ୍ୟ, ଏଥିରେ ଏତେ କାନ୍ଦିବାର କ'ଣ ଅଛି ? ସେତ ତାର ଚିତ୍ର ସମ୍ପର୍କରେ ଊର୍ମି ଠାରୁ ବାହାବା ହିଁ ପ୍ରତ୍ୟାଶା କରୁଥିଲା ।

କିଂୟଦ୍‌କ୍ଷଣ ଉତ୍ତାରେ ଊର୍ମି ବସ୍ତ୍ରାଞ୍ଚଳରେ ଲୁହ ପୋଛି ନେଇ ଉଠି ଠିଆ ହେଲା ଓ ପରମୁହୂର୍ତ୍ତରେ ଫେରିପଡ଼ି ଧୀର ପଦକ୍ଷେପରେ ପ୍ରକୋଷ୍ଠରୁ ବାହାରିଗଲା ।

ଦୁଇଦିନ ପରେ ସାଗର ଖଣ୍ଡିଏ ଚିଠି ପାଇଲା ଊର୍ମି ନିକଟରୁ । ସେ ଲେଖିଛି, ''ତୁମ ଚିନ୍ତାରେ ମୋ ବାର୍ଦ୍ଧକ୍ୟ ଆସିଯାଇଛି ସାଗର, ତେଣୁ ତୁମ ସାନ୍ନିଧ ସଂପର୍କରେ ଚିନ୍ତା କଲେ ମୁଁ ଆତଙ୍କିତ ହୋଇ ଉଠୁଛି । ତୁମ ତୁଳୀ ଉପରେ କିନ୍ତୁ ପୁଷ୍ପଚନ୍ଦନ ବୃଷ୍ଟି ହେଉ, ତୁମେ ଯଶସ୍ୱୀ ହୁଅ ।''

# ଯୋଗୀ ନୋହିଲୁ କି ପାଇଁ

**ଚନ୍ଦ୍ରଶେଖର ରଥ**

ସେତେବେଳେ ମୁଁ ତାଙ୍କୁ ଚିହ୍ନି ନଥିଲି ତ ! ସେଥିପାଇଁ ଭାବୁଥିଲି କିଏ ଏମିତି ବର୍ଷା-ଅନ୍ଧାର ରାତିରେ ଏକୁଟିଆ ଘଣ୍ଟି ବଜେଇ ସାଇକେଲ୍‌ରେ ଯାଉଥିଲା ? ତା' ଦୁର୍ବଳ ଘଣ୍ଟି ଶବ୍ଦରେ ପଥର ପରି ନିଘଞ୍ଚ ଅନ୍ଧାର ତ ଜମା ଘୁଞ୍ଚୁ ନଥିଲା । ପେଟୁଆ ନୁଆଣିଆଁ ମେଘରୁ ଟିପ୍‌ଟିପ୍ ବର୍ଷାର ଛନ୍ଦ ମଧ ଆଦୌ ଭାଙ୍ଗୁ ନଥିଲା । କାହାକୁ ତା'ହେଲେ ସେ ବାଟ ମାଗୁଥିଲା ସେମିତି ? - କାହାକୁ ଆଡ ହୋଇଯିବାକୁ କହୁଥିଲା ? ଦୁଇପାଖରୁ କେବଳ ଘୁଞ୍ଚିଯାଉଥିଲେ ଓଦା ସରସର ଗଛମାନେ । ନିଃଶବ୍ଦରେ ହୁଏତ ଅପସରି ଯାଉଥିଲେ କଳା ଭଅଁର ସାପମାନେ ରାସ୍ତା ଉପରୁ ।

ତାକରୁ ପକ୍ଷୀଟିଏ ଓହ୍ଲେଇଲା ପରି, ପତ୍ରଟିଏ ଖସିଲା ପରି ଠୁକ୍‌କିନା ଆମ ପଡିଶା ଘର ଆଗରେ ସାଇକେଲ୍‌ରୁ ଜଣକ ଓହ୍ଲେଇଗଲେ ।

''ଆରେ, ବଳ୍ଲବାବୁ ! ଆପଣ ଏପରି ପାଗରେ ?'' ନେହୁରା ହେଲାପରି, ଦ୍ରୋହ କରି ଦୋଷ ମାଗିଲାପରି ଆମ ପଡୋଶୀ କିଛି ସମୟ ପାହାଚ ଉପରେ ଠିଆ ରହି ରାସ୍ତାଯାଏଁ ତରଳିଗଲେ ମୋଲାଏମ୍ ବିନୟରେ ।

ଚନ୍ଦାମୁଣ୍ଡିଆ ଫତେଇପିନ୍ଧା ବୁଢାଟି ନଇଁଲାପରି ନମସ୍କାର କରୁ କରୁ ବର୍ଷାରୁ ଉଠିଗଲେ ପିଣ୍ଡାଯାଏଁ । ''ଟୁନାର ଜର ଏଇନା କେତେ ?''

''ଆରେ , ମୁଁ ସିନା ଏମିତି ତା'ଜର ବିଷୟରେ ଆପଣଙ୍କୁ ଖବର ଦେଇଥିଲି, କିନ୍ତୁ ଆପଣ ନିଜେ କାହିଁକି ଚାଲିଆସିଲେ ଏ ବର୍ଷା-ଅନ୍ଧାର ଭିତରେ ?''

ସେମିତି ହସିଲା ହସିଲା ମୁହଁରେ ସେ ପଚାରିଲେ, ''ଟୁନାର ଜର ଏଇନେ କେତେ ?''

ପଡୋଶୀ ବାଧ ହେଲାପରି କହିଲେ, ''ସେ ଶୋଇଛି । ଦେହରେ ଜର ନଥିଲା ପରି ଲାଗୁଛି ତ ! - ଉପରକୁ ଆସନ୍ତୁ ।''

ଆମ ପିଣ୍ଡାରୁ ଏ ସବୁ ପରିଷାର ଦିଶୁଥାଏ ଏବଂ ଶୁଭୁଥାଏ ।

ଏ କ'ଣ ତା'ହେଲେ ସେଇ ବ୍ରଜବାବୁ ? - ସେମିତି କାଠ କଣ୍ଢେଇ ଭଳି ସିଧା ହୋଇ ଚାଲୁଛନ୍ତି, ସିଧାହୋଇ ବସୁଛନ୍ତି- ଚୌକିରେ ବସୁ ବସୁ ସେ କହିଲେ, ''ଆପଣଙ୍କ ପାଖରେ ମୋର ଗୋଟିଏ ଅନୁଗ୍ରହ ପ୍ରାର୍ଥନା ଥିଲା ''

ଶ୍ରୀକାନ୍ତ ସାମନ୍ତ ତାଙ୍କଠାରୁ ବୟସରେ ଅନେକ ସାନ । ସେ ଏଭଳି କଥା ଶୁଣି କନକନ ହେଲେ । ବ୍ରଜବାବୁ ତାଙ୍କ ଚିକ୍‌କଣ ଚନ୍ଦାମୁଣ୍ଡରୁ ହାତ ମାରି ଟୋପା ଟୋପା ବର୍ଷାପାଣି ପୋଛି ପକାଉଥାନ୍ତି । କହିଲେ, ''ସୁବ୍‌ବାୟା ବୋଲି ଖାନସାମାଟିଏ ଥିଲା ଆମ ସମୟରେ । ମୁଁ ତାକୁ ଜାଣେ । ସେ ଏବେ ବୁଢା ହୋଇଗଲାଣି । ତା'ସାନପୁଅକୁ କୋଉଠି ଟିକିଏ ଲଗେଇଦେଲେ ସେ କୁଟୁମ୍ବଟା ଚଳିଯାନ୍ତେ । ତା' ବାପ ଭଳି ସେ ଭଲ ରାନ୍ଧିଜାଣେ ।''

ଶ୍ରୀକାନ୍ତ ସାମନ୍ତ କିଛି ନ କହି ଅଳ୍ପ ହସି ବସିରହିଲେ ।

ମୋର ଅଳ୍ପକାଳ ରହଣି ଭିତରେ ଅନେକ କଥା ମୋ କାନରେ ପଡିଛି । ଏଇ ବ୍ରଜବାବୁ କୁଆଡେ ତାଙ୍କବେଳେ ଖୁବ୍ ବଡ ଅଫିସର୍ ଥିଲେ । ଭାରି ପ୍ରତାପୀ ଥିଲେ କୁଆଡେ । ଲୋକେ ଜାଣିଥିଲେ ଯେ ସେ ଖୁବ୍ ଆଭିଜାତ ଘର ପିଲା । ସେଇ ବିଶ୍ବାସରେ ତାଙ୍କୁ ଏକପ୍ରକାର ଖାତିର୍ ମଧ କରିଆସିଛନ୍ତି । ଏବେ ତାଙ୍କ ଚେହେରା ଦେଖିଲେ କେହି କହିବେ ନାହିଁ ଯେ ସେ ଦିନେ ଘୋଡା ଚଢି ଗସ୍ତ କରୁଥିଲେ । କଚେରୀ ଘର ଉପର-ମହଲାରେ ଦପ୍ତର କରୁଥିଲେ । ସରକାରୀ ଉଆସମାନଙ୍କରେ ରହୁଥିଲେ । ଟୋପି ଅଚ୍‌କନ୍ ପିନ୍ଧା ଖାନ୍‌ସାମା ତାଙ୍କ ସେବାରେ ଖଟୁଥିଲେ । ସାହେବମାନଙ୍କ ସାଙ୍ଗେ ଟକ୍‌କର ଦେବା ଭଳି, ସେମାନଙ୍କଠାରୁ ଇଜ୍ଜତ୍ ପାଇଲାଭଳି ଏଠିକା ସାହେବ ଥିଲେ ବ୍ରିଜ୍‌ଗୋପାଲ୍ ଦାସ । ଏଇ ତା' ହେଲେ ସେଇ ବ୍ରଜବାବୁ ? -ସେ କାହିଁକି ଚାକିରି ଛାଡିଦେଲେ ?

ତାଙ୍କର ସମ୍ପତ୍ତିବାଡି କିଛି ନାହିଁ । ଛୋଟିଆ ଦୁଇବଖୁରୀ ଘରଟିଏ । ବାରିରେ ବେଲ, ପଣସ, ଆମ୍ବଗଛ ପୁଞ୍ଜାଏ । ଯିବା ଆସିବାକୁ ଖଣ୍ଡେ ସାଇକେଲ, ଖଦଡ ଧୋତି, ଫତେଇ ପିନ୍ଧି ଖାଲି ପାଦରେ ସେ ପ୍ରାୟ ଚାଲିଯାଆନ୍ତି ପାଖଆଖ ଅଞ୍ଚଳକୁ । ସେ କିନ୍ତୁ କେମିତି ଚଳନ୍ତି, ତାଙ୍କ ଘରେ ଖିଆପିଆ କେମିତି ହୁଏ, ତାଙ୍କର ବନ୍ଧୁ କୁଟୁମ୍ବୀ କେବେ ଆସନ୍ତି, କେବେ ଯାଆନ୍ତି, କାହାରିକୁ ହୁଏତ ଜଣାନାହିଁ ।

ଥୋକାଏ କହନ୍ତି, ବ୍ରଜବାବୁ ବଡ ଅଫିସର ଥିଲେ । ତାଙ୍କର ଜମିଦାରୀ ଥିଲା । ତାଙ୍କର ଅଜସ୍ର ସମ୍ପତ୍ତି । ତାଙ୍କର କିଛି ଅଭାବ ନାହିଁ । ସେ ଅଏସ୍‌ରେ ଚଳୁଥିବେ । ତାଙ୍କ ଘରେ ସବୁଦିନ ଖିରି, ପୁରି ହେଉଥିବ । ସେ ଅଭିଜାତ ଥିଲେ ଓ ଅଛନ୍ତି । ବ୍ରଜବାବୁ ବଡଲୋକ । ତାଙ୍କୁ ଯାହା ମାଗିଲେ ମିଳେ ।

ଆଉ ଥୋକେ କହନ୍ତି- ବୁଢାର ଏବେ କିଛି ନାହିଁ । ଜୋତା ହଳକୁ ସୁଦ୍ଧା ପଇସା ନାହିଁ । ନିଜ ଲୋକ କେହି ନଥିବାରୁ ସମସ୍ତଙ୍କ ସାଙ୍ଗେ ଭାବଦୋସ୍ତି କରି ବୁଢା ବୟସର କୋହଲା କାଟୁଛି । ସେ ଦରିଦ୍ର ।

ଯେଉଁ କେତେଜଣ ତାଙ୍କୁ ଆଉ ଟିକିଏ ପାଖରୁ ଜାଣିଛନ୍ତି ବୋଲି କହନ୍ତି, ସେମାନଙ୍କ ମତ ଆଉ ପ୍ରକାର ।-ବୁଢା ଏବେ ଗୋଟିଏ ମଠରୁ ଓଳିଏ ଭାତ ଡାଲ୍‌ମା ଆଣି ଖାଆନ୍ତି ଘରେ ଚୁଲି ଲାଗେ ନାହିଁ । ତାଙ୍କ ସ୍ତ୍ରୀକୁ କ'ଣ କେଜାଣି ? ସେ ଜମା ଖଟରୁ ଓହ୍ଲାନ୍ତି ନାହିଁ । ତାଙ୍କୁ କେହି ଦେଖିନାହାନ୍ତି । ବୁଢୀ ସାଙ୍ଗରେ ଯାଙ୍କର ମୂଳରୁ ଅପଡ । କିଏ କହୁଛି, ତାଙ୍କୁ ତାଙ୍କ ଶଶୁରଘର ଠକିଦେଲେ । ଜଣକୁ ଦେଖେଇ ଆଉ ଜଣକୁ ଛନ୍ଦିଦେଲେ । ଆଉ କିଏ କହୁଛି, ସେ ମାଇକିନାଟା ମୂଳରୁ ବାଞ୍ଝୁଣୀ । ତା'ର ଜମା ଫଳିବାର ନଥିଲା । ସେ ଫଳିଲା ନାହିଁ । ପୁଣି ଶୁଣିବାକୁ ମିଳୁଛି ଯେ ବୁଢା ମୂଳରୁ ଟିକିଏ ରସିକ ଲୋକ । ବାହାରେ ଅନେକ ଭୋଗିଛନ୍ତି, ଏଣୁ ଘରେ ମନ ଦେଇନାହାନ୍ତି । ଏମିତ୍ତି ଏମିତି କେତେ କଥା ।

ଆମ ପଡୋଶୀ ଶ୍ରୀକାନ୍ତ ସାମନ୍ତ ବରାବର ତାଙ୍କ ପାଖରୁ ହୋମିଓପାଥି ଔଷଧ ଆଣନ୍ତି । କୌଣସି କାରଣରୁ ତାଙ୍କୁ ଗୁରୁ ପ୍ରାୟ ଭକ୍ତି କରନ୍ତି । ମୋର ଇଚ୍ଛା ହେଲା ଥରେ ସେ ବୁଢାଟି ସାଙ୍ଗରେ ପରିଚିତ ହେବାପାଇଁ ।

ମୁଁ ଟୁପୁଟୁପୁ ବର୍ଷାରେ ସାମନ୍ତ ବାବୁଙ୍କ ପିଣ୍ଡା ଉପରକୁ ଉଠିଗଲି ।

''ଆଜ୍ଞା,'ନମସ୍କାର ! ମୋ ନାଁ ଦିଗମ୍ବର ପ୍ରଧାନ । ମୁଁ ଏଇ ସାମ୍‌ନା ଘରଟାରେ ଥାଏ । ମୁଁ ଆପଣଙ୍କ କଥା ବ ହୁ ଲୋକଙ୍କଠାରୁ ଶୁଣିଛି । ଆପଣଙ୍କୁ ସମ୍ମାନ ଜଣାଇବାକୁ ଆସିଛି ।''

ବ୍ରଜବାବୁ କଣେଇ ପରି ଠୁକ୍ କିନା ହୋଇ ନମସ୍କାର ଜଣେଇଲେ । ମୋତେ ଚାହିଁ କେବଳ ହସିଲେ । ତାଙ୍କର ଅଧିକାଂଶ ଦାନ୍ତ ପଡିଗଲାଣି ସେତେବେଳକୁ । ନାକ ଆଖି ମୁହଁରେ ତଥାପି ଖୁବ୍ ଟାଣପଣ ଜଣାପଡୁଥାଏ । ସନ୍ତୁଷ୍ଟ ସ୍ଥିର ଚାହାଣିରେ ସେ ଯେପରି କହୁଥିଲେ 'କି ବର ମାଗୁଛୁ ମାଗ୍' ! -ମୋ ମନକୁ ପାଇଗଲା ।

ମୁଁ ଗଦ୍‌ଗଦ ହେଲାପ୍ରାୟ କହିଲି, ''ଆପଣଙ୍କ ଦର୍ଶନ ପାଇବା ମୋର ଭାଗ୍ୟ । ଯଦି ଆପଣଙ୍କ କୌଣସି ସେବାରେ ଆସିପାରେ ତେବେ କହନ୍ତୁ ।''

ତଥାପି ସେ କିଛି ନ କହି ମୋତେ ଚାହିଁ ହସୁଥାନ୍ତି ।

ସାମନ୍ତ ବାବୁ କହିଲେ, ''ଆମ ଦିଗମ୍ବରବାବୁ ଏଇ ଅଳ୍ପଦିନ ହେଲା ଆସିଛନ୍ତି । ସପ୍ଲାଇ ବିଭାଗର ଲୋକ । ଚିନି, ଗହମ, କିରୋସିନର ମାଲିକ । ଭାରି ବଢ଼ିଆ ଲୋକ ।''

''ତା' ହେଲେ ତ' ଦିଗମ୍ବରବାବୁ ମୋତେ ସାହାଯ୍ୟ କରିପାରିବେ ।' - ସାଙ୍ଗେ ସାଙ୍ଗେ ନିଃସଙ୍କୋଚରେ କହିଲେ ବ୍ରଜବାବୁ ! - ''ଦଶ ପନ୍ଦର କିଲୋ ଚିନି ଦେଇପାରିବେ ?''

ମୁଁ ହଠାତ୍ ଅପ୍ରସ୍ତୁତ ବୋଧକଲି । ମୋ ମୁହଁ ତାତିଗଲା । - ଇସ୍ ନଅକିଆ ବୁଢାଟା, ପାଉ ପାଉ କେମିତି ଟାକୁ କିନା ଗିଳିଦେଲା । ଧେତ୍, ଏଇଟାର ଚରିତ୍ର ନାହିଁ ! - କହିଲି, ''ହଉ ଦେଖିବା ।''

''ଦେଖିବେ ଆଉ କ'ଣ ? ଦେବେ ଯଦି କହନ୍ତୁ, ମୁଁ କାଲି ଆପଣଙ୍କୁ ଦେଖା କରିବି । ମୋର ପନ୍ଦର କିଲୋ ଚିନି ପ୍ରୟୋଜନ ।'' - ପକ୍‌କା ଲୋଭୀ ବୁଢାଟିଏ ଦେଖୁଛି । ସମସ୍ତେ ପାଞ୍ଚ କିଲୋରେ ମାସେ ଚଳି ଯାଉଛନ୍ତି । ୟା'ର ପନ୍ଦର କିଲୋ ନ ହେଲେ ନ ଚଳେ । ସୁବିଧା ପାଇଗଲା ତ' !

ମୁଁ କିଛି କହିଲି ନାହିଁ ।

ମଝିରେ ସାମନ୍ତବାବୁ ହାତ ମଳି ପରମ ଭକ୍ତିରେ ପଚାରିଲେ, ''ଆପଣଙ୍କର ଏତେ ଚିନି କ'ଣ ହେବ ?''

ସେ ଠୁକ୍ କିନା ଉଠି ଠିଆ ହେଲେ । ବିନା ଆଡମ୍ବରରେ ଦୁଆରକୁ ଯିବା ବାଟରେ କହିଲେ '' ସେ ଯେଉଁ କମଳା ବେହେରାଣୀ ନୁହେଁ ?- ସେ ଯେ ବେଲ ଗଛ ମୂଳେ କୁଡିଆ କରିଥାଏ, ଲୋକଙ୍କ ଘରେ ବାସନ ମାଜେ ! ସେ ତା' ଝିଅକୁ ବିଭାଦଉଚି- ଭାରି ହଇରାଣ ହଉଚି ।''

ସାମନ୍ତବାବୁ କୁରୁଳିଲା ପରି କହିଲେ, ''ସେଇଆ ! ମୁଁ ଭାବିଲି ଆପଣ ତ ସାକାରିନରେ ଚଳିବା ଲୋକ । ଏତେ ଚିନି କ'ଣ କରିବେ !''

ବ୍ରଜବାବୁ ଚୁପ୍ କିନା ସାଇକେଲ ଚଢି ସେଇ ଟୋପି ଟୋପି ବର୍ଷା ଭିତରକୁ ଚାଲିଗଲେ । ମୁଁ ଭିତରେ ଲୋଟା ହୋଇଗଲି । କିଭଳି ଲୋକଟାକୁ ମୁଁ କ'ଣ ଭାବୁଥିଲି ।-ମୁହଁ ଫିଟେଇ କହିଲି, ''ଆଚ୍ଛା, ବୁଢାଙ୍କୁ କୋଡିଏ କିଲୋ ଚିନି କରେଇ-ଦେଲେ କେମିତି ହୁଅନ୍ତା ? ମୁଁ ବରଂ ନିଜେ ପାଞ୍ଚକିଲୋ ଚିନିର ପଇସା ଦେଇ ଦିଅନ୍ତି । କ'ଣ କହୁଛନ୍ତି ?''

ସାମନ୍ତବାବୁ କିଛି ନ କହି ଚୌକିରେ ବସିଲେ । 'ବସନ୍ତୁ, ବସନ୍ତୁ ଦିଗମ୍ବରବାବୁ ! ଏମିତି ହଠାତ୍ ଆପଣ ଭାବପ୍ରବଣ ହୁଅନ୍ତୁ ନାହିଁ ।''

''ନା , ନା', ଆପଣ ମନାକରନ୍ତୁନାହିଁ । କି ଅଦ୍ଭୁତ ଲୋକ ସତେ !''

''ହେଲେ, କ'ଣ ହବ ! ଲୋକେ ତ ନାନା ପ୍ରକାର କଥା କହୁଛନ୍ତି । ହେଇ ଧରନ୍ତୁ, ଏଇ ବିଭାଘର କଥା । କମଳା ବେହେରାଣୀକୁ ସେ ଘର ଦେଇଛନ୍ତି । ତାକୁ ସେ ଲୁଗା କିଣିଦିଅନ୍ତି । ସେ

ତାଙ୍କ ଘରେ ବାସନ ମାଜେ, ପାଇଟି କରେ । ଲୋକଙ୍କ ତୁଣ୍ଡରେ କ'ଣ ବାଡ ବତା ଅଛି ।''

ମୋ ଭିତରେ କୁସ୍ କୁସ୍ ହୋଇ କ'ଣ ଗୁଡାଏ କୁଡେଇ ହୋଇପଡ଼ିଲା । ମୁଁ ଅସୁସ୍ଥ ବୋଧ କଲି । ମୋ ଆଖିକୁ ପୁଣି ଗୋଟାଏ ଲେସେଡା, ଲମ୍ପଟିଆ ମୋହଗ୍ରସ୍ତ ବୁଢା ଦେଖାଗଲା । ମୁଁ ଗୋଡ ଲମ୍ବେଇ ଚୌକିରେ ବିଛେଇ ହୋଇପଡିଲି । ମୋ ତୁଣ୍ଡରୁ ବାହାରିଗଲା, ''ଓ... ସେକଥା କହୁନାହାନ୍ତି !''

ଶ୍ରୀକାନ୍ତବାବୁ ସାମାନ୍ୟ ଆହତ ସ୍ୱରରେ ମୋତେ ଚାହିଁ କହିଲେ ''କୋଉ କଥା ?''

''ସେଇ କଥା !-ରସିକ ବୁଢାର କାହିଁକି ଏମିତି ଦୟା ଉଛୁଳୁଛି ବୋଲି ମୁଁ କାବା ହୋଇଯାଇଥିଲି । ....କ'ଣ ନା' ....କଥା ଯାଇ କୋଉଠି ! ହେଃ, ହେଃ,....ବୁଢା ତା' ନିଜ ଝିଅ ବିଭାଘର ପାଇଁ ଚିନି ମାଗୁଚି କହନ୍ତୁ ।''

ଶ୍ରୀକାନ୍ତବାବୁଙ୍କ ମୁହଁ ତଳକୁ । ସେ ତା'ପରେ ମୋତେ ଚାହିଁ ସାମାନ୍ୟ ହସିଲେ । କିଛି କହିଲେ ନାହିଁ । ମୋତେ ପୁଣି ଅସୁସ୍ଥ ଲାଗିଲା । ମୁଁ ଗୋଡ ଲୋଚେଇ ସଳଖି ବସିଲି ।- ''କ'ଣ କଥା, ଆପଣ ହଠାତ୍ ଗମ୍ଭୀର ହୋଇଗଲେ ଯେ ? -ବିଷୟ ତା'ହେଲେ କ'ଣ ଅନ୍ୟ ପ୍ରକାର ?''

ତଥାପି ସେ କିଛି କହିଲେ ନାହିଁ । ମୋତେ ସେମିତି ଚାହିଁ ରହିଲେ ।

ମୋତେ ଅପରାଧ କଲାପରି ଲାଗିଲା । '' ଆପଣଙ୍କ ମନରେ କଷ୍ଟଦେଲି । ବ୍ରଜବାବୁ କଦାପି ସେଭଳି ନୀଚ ନୁହନ୍ତି । ତାଙ୍କ ନାଁରେ ଗୁଡାଏ ଖଚୁଆ ଲୋକ ଅନେକ କଥା କହୁଥିବାରୁ ଆମେ ନ ଜାଣିବା ଲୋକେ, ସେଥିରେ ପହଁରି ଯାଉଚୁ ! ସେ କାହିଁକି ସେମିତି ହୁଅନ୍ତେ ? ସେ ଋଷିପ୍ରତିମ ଲୋକ ।-ଛାଡନ୍ତୁ, ମୁଁ ବାସ୍ତବିକ୍ ଦୁଃଖିତ !''

ମୁଁ ତାଙ୍କ ହାତ ଧରିପକେଇଲି । ସେ ଛଡେଇ ନେଲେ ନାହିଁ । ସେମିତି ଗମ୍ଭୀର ରହି କହିଲେ, ''ଆପଣ ଜାଣନ୍ତି, ପଚିଶ ବର୍ଷ ତଳେ ବ୍ରଜବାବୁ ଏମିତି ଅଡୁଆରେ ପଡି ଗୋଟାଏ ବେଶ୍ୟାକୁ ନିଜର ସ୍ତ୍ରୀ ବୋଲି ମାନିନେଲେ ।''

ମୁଁ ଧଡାସ୍‌କିନା ଚୌକିରେ ଚାରିକଡା ମେଲେଇ ପଡିଗଲି । ମୁହୂର୍ତ୍ତକରେ ଚମକିଲା ପରି ଉଠିବସିଲି । ମୋର ଆଚରଣରେ ସେ ଜମା ବିଚଳିତ ହେଲେ ନାହିଁ, କାରଣ ଆଉ ଯେ କେହି ମଧ୍ୟ ସେହିଭଳି ଚମକିଥା'ନ୍ତା- ମୁହୂର୍ତ୍ତ ମୁହୂର୍ତ୍ତକର ଅନ୍ଧାର ଆଲୁଅରେ ଚକିତ ହୋଇ ଯାଇଥାନ୍ତା ।

ମୋର ଉତ୍କଣ୍ଠା ଲକ୍ଷ୍ୟ କରି ଶ୍ରୀକାନ୍ତବାବୁ ଅତି ସହଜ ଢଙ୍ଗରେ କହିଲେ, ''ମିରାଣ୍ଡା ମଣ୍ଡଳ ଆପଣଙ୍କର କ'ଣ ହୁଅନ୍ତି ବୋଲି ପଚରାଯିବାରୁ ବ୍ରଜବାବୁ ସାଙ୍ଗେ ସାଙ୍ଗେ କହିଥିଲେ, 'ସେ ମୋ ସ୍ତ୍ରୀ ।''

''କ'ଣ କହୁଛନ୍ତି ମ' !-ସମସ୍ତଙ୍କ ଆଗରେ ଏ ନିର୍ଲଜ ବୁଢା ଏମିତି କହିଦେଲା ?''

''ସମସ୍ତଙ୍କ ଆଗରେ, ମାନେ, ସେଇଠି ଯିଏ ସବୁଥିଲେ-ମ୍ୟୁନିସିପାଲିଟିର ଠେଲାଗାଡି ଗଡେଇ ନେଇଥିବା ମେହେନ୍ତର ବୁଢାଟିଏ, ଗୋରାକବର ଜଗୁଆଳି, ଆଉଦୁଇଟି ମୂଲିଆ । ଶସ୍ତା ପଟାର କଫିନ୍ ଭିତରେ ମିରାଣ୍ଡା ମଣ୍ଡଳକୁ ତା' ସାହିଘରୁ ସେ ବୁହାଇ ନେଇଥିଲେ କବର ଦେବା ପାଇଁ । ଖାତାରେ ତା'ର ନାଁ' ପରିଚୟ ନ ରହିଲେ କବର ଦେବାକୁ ଜଗୁଆଳି ମନା କରିଦିଏ ତ' !- ଜଗୁଆଳିର କ'ଣ ଥାଏ ? ଇଏ କହିଲେ ମିରାଣ୍ଡା ମଣ୍ଡଳ ତାଙ୍କ ସ୍ତ୍ରୀ । ସେ ସେଇଭଳି ବୁଝିଗଲା ଏବଂ ଲେଖିଦେଲା । କବର ପାଖରେ ମିଛ କ'ଣ, ସତ କ'ଣ ।''

ମୁଁ ଦ୍ରୋହ କଲାପରି ପୁଣି ସାଙ୍କୁଡିଗଲି । ଶ୍ରୀକାନ୍ତବାବୁ ଲକ୍ଷ୍ୟ କରି ଟିକିଏ ରହିଗଲେ ।

''ଅନେକ ଲୋକ କହନ୍ତି ଯେ ବ୍ରଜବାବୁ ତାଙ୍କଦିନେ ସେ ସାଇକୁ ପ୍ରାୟ ଯାଉଥିଲେ । ହୁଏତ

ଯାଉଥିଲେ ! ଏ ଘଟଣାଟା କିନ୍ତୁ ଅନ୍ୟ ପ୍ରକାରର । ଆପଣ ବୋଧହୁଏ ଜାଣନ୍ତି ନାହିଁ ଯେ ବ୍ରଜବାବୁଙ୍କୁ ଏଇନା ଅଶୀ ବର୍ଷ । ସେ ଉଣେଇଶ ସତଚାଳିଶ ମସିହାରୁ ଚାକିରି ଛାଡିଦେଲେ । କହିଲେ, ''ମୁଣ୍ଡ ଥରଟେ ବିକିବା ଦୁର୍ଭାଗ୍ୟ । ଦୁଇଥର ବିକିବା ଅପରାଧ ।'' ତାଙ୍କୁ ସେତେବେଳ ସତଚାଳିଶ ବର୍ଷ । ସେବଠୁଁ ସେ ଏମିତି ଚାରିଆଡେ ବୁଲିବାର, ନାନା ପ୍ରକାର ଲୋକଙ୍କ ସାଙ୍ଗେ ସଂପର୍କ ରଖିବାର କଥା ସମସ୍ତେ ଜାଣନ୍ତି । କେବେ କିନ୍ତୁ ସେ ଏ ସହର ଛାଡି କୁଆଡେ ଯାଇନାହାନ୍ତି । ସଞ୍ଜବେଳୁ ରାତି ଦଶଟା ଯାଏଁ ଅନେକ ଜଞ୍ଜାଳ କରନ୍ତି, ଏଇ ଆଜି ଯେମିତି ଏଠିକି ଆସିଲେ । ନ ହେଲ ଦାଣ୍ଡଘରେ ବସି ଔଷଧ ଦିଅନ୍ତି । ରାତି ଦଶଟାରେ କିନ୍ତୁ ଅନେକ ଦିନ ବାହାରି ଯାଆନ୍ତି ଯେ ଫେରନ୍ତି ତା' ଆରଦିନ ଘଡିଏ ବେଳକୁ । କେହି କେହି କହନ୍ତି ଯେ ସେତେବେଳେ ତାଙ୍କର ଅସାଷ୍ଟମ ଅବସ୍ଥା । ରିକ୍ସା-ବାଲାମାନେ ତାଙ୍କୁ ଦାଣ୍ଡଘରେ ଶୁଆଇ ଚାଲିଯାନ୍ତି । ତା'ପରେ କେତେବେଳ କ'ଣ କେମିତି ହୁଏ କେହି ଜାଣନ୍ତି ନାହିଁ । ଉପର ଓଳିକୁ ସେ ଯୋଉ ଢେଙ୍ଗାକୁ ସେଇ ଢେଙ୍ଗା ।

.... ଏମିତି ରାତିରେ ଥରେ ସେ ବାହାରିଥାନ୍ତି ସେଇ ସାଇବାଟେ । ମିଜାଜ୍ ଭଲ ଥାଏ । ଯାତଘଡି ଅନ୍ଧାର ପରେ ଜହ୍ନ ଉଇଁ ଆସୁଥାଏ । ବ୍ରଜବାବୁଙ୍କ ହାତରେ ଦୁଇ ସୋରା, ବେକଗଳାରେ ଦୁଇ ସୋରା ଯୂଇ ଫୁଲ । ଆଖିରେ ମଧୁର ମଧୁର ନିଶା । ଦିନେ ସେ ନିଜେ ଯାହା କହୁଥିଲେ ମୁଁ ମନେରଖି ଆପଣଙ୍କୁ କହୁଛି । ଉଲ୍ଲାସରେ ସେ ଗୁଣୁଗୁଣଉଥାନ୍ତି- 'ପାହି ଆସୁଥିଲା ଚନ୍ଦ୍ର ନିଶାରେ, ମଦାଳାସା ।' ଏତିକିବେଳେ ତାଙ୍କୁ ଶୁଭିଲା କେହି ଜଣେ ସ୍ତ୍ରୀଲୋକ ଅତି କାତର ଚିତ୍କାର କରୁଛି । ସେ ଡାହାଣ ପାଖ ଦୋତାଲାକୁ ଯିବା ପାଇଁ ବାଟ ଖୋଜିହେଲେ । ଜଣେ କେହି ତଳ ପିଣ୍ଡାରୁ ତାଙ୍କୁ ଶୁଣେଇଲା ପରି କହିଲା, ''ଉପରକୁ ଯାଅନାହିଁ । ସେଠି କାରବାର ବନ୍ଦ ହୋଇଗଲାଣି । ସେ ସେମିତି ଏବେ ଦୁଇଦିନ ହେବ ମରୁଚି । ତାକୁ ଛାଡ ।'' - ତାଙ୍କ ନିଶା ଫାକାସିଗଲା । ସେ ପାହାଚ ଚଢି ଯାଇ କବାଟ ବାଡେଇଲେ । ଭିତରୁ କେବଳ ଆହୁରି ଚିତ୍କାର ଶୁଭିଲା । ସେ ଉପାୟ ନ ପାଇ ବାଲ୍‌କୋନି ଜାଲବାଟେ ସ୍କାଇଲାଇଟ୍ କାଚ ଟେକିଲେ । ହାତ ଗଳେଇ ଭିତର କିଳଣିଟା ହୁଗୁଳେଇ ଦେବାରୁ କବାଟ ଫିଟିଗଲା ।... ସେ ଘର ଭିତରେ ପଶୁ ପଶୁ ଅନୁଭବ କଲେ ଯେ ସେଇଠି ଆଲୁଅ ଲିଭିଯାଇଛି । ପବନ ରୁନ୍ଧି ହୋଇ ରହିଛି କେଉଁ କାଳରୁ । ସେ ପ୍ରଥମେ ଆଲୁଅ ଜାଳିଦେଲେ । ଝରକା ଫିଟେଇଦେଲେ । ରାତିର ପବନ ପଶି ଆସିଲା । ଜହ୍ନ ଦିଶିଲା । ଗୋଟେଇ ପୋଟେଇ ହେଇ ପଡିଥିବା ଲୁଗା ଭିତରେ ମୁହୂର୍ତ୍ତକ ପାଇଁ ଥମିଗଲା ଆର୍ତ୍ତନାଦ ।

ସେ ତା' ପାଖେ ଠିଆହୋଇ ପଚାରିଲେ, ''ଶୋଷ କରୁଚି ?'' ବିଜୁଳି ପରି ସେ ମୁହଁ ଉପରୁ ଚାଦର କାଢି ଚିତ୍କାର କଲା, ''ନିକଲ୍ ଯା ! - କୁକୁର କାହାଁକା ! କୁଆଡେ ଆସିଚୁ ତୁ ? - ମୋ ପୋଚା ମାଉଁସ ଖାଇବୁ ?- ପୂଯ ପଚ ପଚ ଏ ଘା' ଚାଟିବାକୁ ଆସିଚୁ ?- ଭାଗ ମୋ ସାମନାରୁ !!''

ବ୍ରଜବାବୁ ସେମିତି ସ୍ଥିର ହୋଇ ତାକୁ ଚାହିଁ ରହିଥାନ୍ତି । ତା'ର ମୁହଁ ଦେହ ଚାରିଆଡେ ଟଳମଳ ବସନ୍ତ ପାଣିଭରା ହୋଇ ରହିଥାଏ । ପୂଯ ଆଇଁଷିଆ ଗନ୍ଧରେ ନାକ ଫାଟିଯାଉଥାଏ । ମରଣାନ୍ତକ ଯନ୍ତ୍ରଣାରେ ସେ ଛଟପଟ ହେଉଥାଏ । ଫାଇଁ ଫାଇଁ ହେଉଥାଏ । ପ୍ରଳାପ କରୁଥାଏ । ସେ ସେମିତି ସ୍ଥିର ହୋଇ ତାକୁ ପୁଣି ପଚାରିଲେ, ''ପାଣି ପିଇବୁ ? ଶୋଷ କରୁଛି ?''

କେତେ ଦିନର ପାଣି ସେ ସୁରେଇରେ ଥିଲା କେଜାଣି, ସେଥିରୁ ମୁନ୍ଦେ ଗ୍ଲାସରେ ସେ ଟେକି ଧରିଲେ । କନା ସହିତେ ମୁଣ୍ଡକୁ ଅଳ୍ପ ଉଠେଇ ଧରିଲେ । ସେ ସେତକ ପିଇଦେଇ ନଥକିନା

ପଡିଗଲା । ଘୋଡେଇ ହେଲା ଚାଦର ଲାଖିଯାଇଥାଏ । ଗଦି କୋଚଟିଆ ପୁରୁଣା । ଖଟରେ ଦର୍ପଣ । କାନ୍ଥରେ ଚିତ୍ର । ଅନେକ ଦିନରୁ ତା'ର ବ୍ୟବସାୟ ମଉଳିଯାଇ ସାରିଥିଲା । ବ୍ରଜବାବୁ କେବଳ ଅପେକ୍ଷା କଲାପରି ଠିଆ ରହିଥାନ୍ତି ।

ସେ ଆଖି ଫିଟାଇ ତାଙ୍କୁ ଚାହିଁଲା ଏବଂ ସକ୍ ସକ୍ ହେଇ କାନ୍ଦିଲା । ବ୍ରଜବାବୁ ତା' ଦେହରେ ପୁରୁଣା ପାଉଡର ଡବାଏ ଝାଡିଦେଲେ । ଆଉଁସି ଦେଲେ ଲସାରେ ଲାଗିରହିଥିବା ଲୁଗା ଉପରେ । କ'ଣ ମନ ହେଲା କେଜାଣି ତାଙ୍କ ହାତରୁ ବେକରୁ ଯୂଇମାଳା କାଢ଼ି ତା' ବୁକୁ ଉପରେ ଥୋଇଦେଲେ । ସେ ତାଙ୍କ ହାତକୁସେଇ ଫୁଲ ଉପରେ ଚାପି ରଖି ଆହୁରି କାନ୍ଦିଲା । କହିଲା, ''ମୁଁ ତୁମକୁ ଚିହ୍ନେ । ତୁମକୁ ଜୀବନସାରା ଅପେକ୍ଷା କରିଥିଲି । ପ୍ରତ୍ୟେକ ଗରାକକୁ ତୁମେ ଭାବି ମୁଁ ଦେହ ଦାନ କରିଛି । ସେ ଚାଲିଯାଇଛି । ସମସ୍ତେ ଚାଲିଯାଇଛନ୍ତି । ମୁଁ ରକ୍ତ ଝରଉଛି ତୁମରି ଭଳି । .... ଆଃ... ତୁମକୁ ବି ସେମାନେ କଣ୍ଟା ମାରି ଦେଇଥିଲେ ନା ! -ଉଃ... କି ଯନ୍ତ୍ରଣା.... ମୋରି ଭଳି ତୁମର କି ଯନ୍ତ୍ରଣା !!... ମୁଁ ତୁମକୁ ହିଁ ଭଲ ପାଏ !-କେତେ ଯେ ଭଲ ପାଏ !! ମୋତେ କେହି ବୁଝିଲେନାହିଁ । ମୋତେ କେହି ଭଲ ପାଇଲେନାହିଁ ।-ମୁଁ ଏକଦା ସୁନ୍ଦର ଥିଲି-ଭାରି ସୁନ୍ଦର, ବିଶ୍ୱାସ କର ! - ମୋର ପ୍ରକ୍ସିଟା ଫଟୋ ଦେଖିଲେ ତୁମେ ଚାହିଁରହିଥିବ ।...

ତା'ପରେ ସେ ଗୁଡାଏ କ'ଣ ସବୁ ପ୍ରଳାପ କଲା । ବ୍ରଜବାବୁ ସେଇଠି ପୁରୁଣା ଧୂପକାଠି ବିଡାଏ ଜାଳିଦେଲେ । ଅପରିଷ୍କାର ତଉଲିଆଟିଏ ଧରି ତାକୁ ବିଞ୍ଚିଦେଲେ । ସେ ହୁଏତ କିଛି ସମୟ ଶୋଇଗଲା । ସେ ବାହାର ବାଲ୍‌କୋନିରେ ଚୌକି ପକାଇ ଢୋଳଉଥାନ୍ତି । ହଠାତ୍ ଚିତ୍କାର ଶୁଭିଲା । ସେ ଯାଇ ଦେଖନ୍ତି ଯେ ମିରାଣ୍ଡା ଛଟପଟ ହେଉଛି । ଦରାଣ୍ଡି ହେଉଛି । ଯାଙ୍କ ହାତକୁ ପାଇ ପୁଣି ବୁକୁ ଉପରେ ଚାପିଧରିଲା । ଅସ୍ପଷ୍ଟ ସ୍ୱରରେ କହିଲା, ''ମୋତେ ଆଉ ଛାଡିଯାଅନାହିଁ, ମୋତେ ଛାଡିଯାଅନାହିଁ ।'' - ତା'ପରେ ସେ ମରିଗଲା । କାନ୍ଥରୁ କାଠ କ୍ରୁଶଟିକୁ ବ୍ରଜବାବୁ ତା' ବୁକୁ ଉପର ଥୋଇଦେଲେ । ଚାଦରରେ ଘୋଡେଇ ଦେଲେ ସେ ସଡି ଯାଇଥିବା ମୁହଁଟିକୁ ।... ତା ଉତ୍ତାରୁ ଖୁବ୍ ଧାଁ ଦଉଡ କରି ସେଦିନ ସନ୍ଧ୍ୟାବେଳକୁ ଯାଇ କବରଖାନା ପାଖରେ ସେ ତାକୁ ସେଭଳି ସ୍ୱୀକାର କଲେ । କହିଲେ, 'ମିରାଣ୍ଡା ମଣ୍ଡଳ ମୋ ସ୍ତ୍ରୀ ।'

ମୁଁ ଥମ୍ ହୋଇ ବସି ରହିଲି । ଚୌକି ଦଣ୍ଡାକୁ ଖୁବ୍ ଜୋର୍‌ରେ ଚିପି ଧରିଥାଏ । ଦାନ୍ତକୁ ଚାପି ରଖିଥାଏ । ମୁହଁ ଟେକି ମୁଁ ଆଉ ସେଦିନ ଶ୍ରୀକାନ୍ତ ସାମନ୍ତଙ୍କୁ ଚାହିଁପାରିଲି ନାହିଁ । ନୀରବରେ ଉଠି ଚାଲିଆସିଲି ଆମ ଘରକୁ । ବାହାରେ ସେମିତି ଅନ୍ଧାର । ସେମିତି ଟୋପି ଟୋପି ବର୍ଷା !

ତା'ପରେ ମୁଁ ସେ ଅଦ୍ଭୁତ ମଣିଷଟିର ପିଛା ଲାଗିଗଲି । ତାଙ୍କର ସେ ପାନଖିଆ ପାକୁଆ ପାଟିର ସ୍ଥିର ହସଟି ଭେଦି ତାଙ୍କୁ ଚିହ୍ନିବା ସହଜ ନଥିଲା । ... ଆସ୍ତେ ଜାଣିଲି ଯେ ତାଙ୍କ ସ୍ତ୍ରୀ ପକ୍ଷାଘାତ ରୋଗରେ ପଡିଛନ୍ତି ଅସୁମାରି କାଳରୁ । ତାଙ୍କୁ ଟେକପାକ କରିବା ବୁଢାଙ୍କ କାମ । ସେ କେବେ କାହାକୁ ଡ଼ାକେଇ ଦେଇନାହାନ୍ତି ଆସି ଟିକିଏ ସାହାଯ୍ୟ କରିବାକୁ । ତାଙ୍କ ଗାଁ ସମ୍ପର୍କୀ ଅନ୍ୟମାନେ ଖାଇଯାଉଥାନ୍ତି, ସେ ପଦେ କହି ନାହାନ୍ତି କାହାକୁ । ତାଙ୍କ ନିଜର ମଳକଣ୍ଟକ ରୋଗ ଅଛି, ବହୁମୂତ୍ର ରୋଗ ଅଛି । ସେ ଔଷଧ ଖାଆନ୍ତିନାହିଁ । କଷ୍ଟହେଲେ କାହାକୁ କହନ୍ତିନାହିଁ । ତାଙ୍କର ପଇସାର ଅଭାବ ହେଇଚି । ନିର୍ବିଚାର ଖର୍ଚ୍ଚ କରିଦେଇଛନ୍ତି । ସେ କ'ଣ ସେଥିପାଇଁ କାହାକୁ ହାତ ପତେଇଥାନ୍ତେ ? ସେମିତି ସହିଯାଇଛନ୍ତି । ପେଟରୁ କାଟି ଦେଇଛନ୍ତି । ପିଠିରୁ କାଟି ଦେଇଛନ୍ତି ।

ମୁଁ ସେ ବେକୁବ୍ ମଣିଷଟା ଉପରେ ଦିନେ ହଠାତ୍ ଚିଡିଗଲି । ସେ ଏମିତି କେତେକାଳ କେବଳ ଦେଉଥିବ ଏ ସଂସାରକୁ ? -ସେ କ'ଣ କିଛି ନେବନାହିଁ ? - ତା'ର କ'ଣ କିଛି ପ୍ରାପ୍ୟ

ନାହିଁ ?- ମୋତେ ଲାଗୁଥାଏ ଯେ ମୋ ନିଜ ଦେହରୁ କେହି ଲୁଗା କାଢ଼ି ନେଉଛନ୍ତି । ମୁଁ ଦେଉଛି ବୋଲି ଜାଣିଦେଲା ପରେ ମୋ ମାଂସ ଛେଲି ନେଇଯାଉଛନ୍ତି । ହସି ହସି ବେପରୁଆ ମୋତେ ଲୁଟି ଲାଗିଛନ୍ତି । - ଅଥଚ ଲଙ୍ଗଳା ଗଛଟିଏ ପରି ମୁଁ ତାଙ୍କୁ ସହି ଯାଉଛି !!-ମୁଁ ରାଗି ମାଗି ପହଞ୍ଚିଲି ବ୍ରଜବାବୁଙ୍କ ପାଖରେ । ସେ ମୋତେ ଦେଖୁ ଦେଖୁ କହିଲେ, "ମୁଁ ଆପଣଙ୍କ ପାଖକୁ ତ ବାହାରିଥିଲି । ଆପଣଙ୍କ ପୁଅପାଇଁ ସିଟ୍ ମିଳିଯିବ । ମୁଁ ପ୍ରିନିସିପାଲଙ୍କୁ କହି ଆସିଛି । ପାଠ ନ ପଢ଼ିଲେ ପିଲାଟା କ'ଣ କରିବ ?"- ତା'ପରେ ଅଳ୍ପ ହସି କହିଲେ, "ଯିବାର ଆଉ ଗୋଟିଏ କାରଣ ଥିଲା । ଆସିବା ବାଟରେ ଏ ମକା ପୋଡ଼ା ଦେଖି ମନ ହେଲା, ମାନୁ, ନିକୁ,ଟୁକୁ ପାଇଁ ନେଇ ଯିବାକୁ । ଏଥିରେ ବଡ଼ପୁଅ ବୁଢ଼ା ପାଇଁ ଆଉ ଆପଣ ଦୁଇଜଣଙ୍କ ପାଇଁ ମଧ ଅଛି ।...."

ଧେତ୍ ତେରି, ଏ ବୁଢ଼ାଟାକୁ ପାରିହେଲା ନାହିଁ । ମୁଁ କାନ୍ଦ କାନ୍ଦ ହେଇଗଲି । ମୁଁ ଏଥିପାଇଁ ଅଲବତ୍ ପଇସା ଦେଇଦେବି, କିନ୍ତୁ ତାଙ୍କ ମୁହଁକୁ ଚାହିଁଦେଇ ନିରସ୍ତ ହୋଇଗଲି । ମୋ ପିଲାମାନେ ତାଙ୍କ ନାତିନାତୁଣୀ । ସେ ତାଙ୍କ ପାଇଁ ମକା ପୋଡ଼ା କିଣିଛନ୍ତି ।- ମୁଁ କିଏ ସେଥିରେ ବାଧାଦେବାକୁ । ଆମ ସାହିର ପିଲାଟିଏ ହାତରେ ତାକୁ ପଠେଇଦେଇ ମୁଁ ରହିଲି ।

ସେ ମଝିରେ ମଝିରେ ଘରକୁ ପଶିଯାଇ ବାହାରି ଆସୁଥାନ୍ତି । ଶେଷରେ ମୋତେ ଡାକି ନେଲେ ଭିତରକୁ । କତରା-ଲାଗି ହେଇ ପଡ଼ିଥିବା ସେ ମଳୁଟିକୁ ଦେଖେଇ କହିଲେ, "ଆଜି ଏ ଉଠିଯିବାକୁ ବସିଛି । କହି ହେଉନାହିଁ କେତେ ରାତି ହବ ! ଆପଣ କାହିଁକି ଧନ୍ଦି ହେବେ ? -ଘରକୁ ଯାଆନ୍ତୁ ।"

ମୁଁ କ୍ରୋଧରେ କାନ୍ଦି ପକେଇଲି । - ଏ ଗୋଟାଏ ରାତିପାଇଁ ନିଆଁ ଲାଗି ଯାଉ କିନା ମୋ ଘରେ- ଏକାଅଶୀ ବର୍ଷରେ ତୁମର ସ୍ତ୍ରୀ ମରୁଚି । ତୁମ ନିଜର କେହି ନାହିଁ । ତୁମେ ମଳକଣ୍ଟକ, ବହୁମୂତ୍ର ରୋଗୀ । ତୁମେ, ମୋତେ ମୋ ପିଲାଙ୍କୁ ଅଜସ୍ର ଔଷଧ ଦେଇ ଭଲ-କରିଚ । ମୁଁ ତୁମକୁ ଛାଡ଼ି ଚାଲିଯିବି ? ମୁଁ କ'ଣ ଏତିକି ନିମକହାରମା, ନୀଚ, ହୀନ, ଅକୃତଜ୍ଞ ହେଇଚି । ମୁଁ କଥାରେ କେତେ ଜୋର୍ ଦେଲି ମନେନାହିଁ । ଖାଲି କହିଲି, "ନା, ମୁଁ ଯିବିନାହିଁ ।" ସେ କିଛି କହିଲେନାହିଁ । ପୁଣି ଦାଣ୍ଡଘରକୁ ଚାଲି ଆସିଲେ । ଅଳ୍ପ ସମୟ ପରେ ଶ୍ରୀକାନ୍ତ ସାମନ୍ତ ଆସି ପହଞ୍ଚିଲେ । ଝୋଲାଟିରେ ଗହମ ଗୁଣ୍ଡକରି ଆଣିଥାନ୍ତି । କାଗଜ ପୁଡ଼ାଟିରେ ଯୋଡ଼ିଓ ସେଓ ଆଣିଥାନ୍ତି ।

ଓ, ତା'ହେଲେ ଶ୍ରୀକାନ୍ତବାବୁ ଏମିତି ଭିତରେ ସେବାରେ ଲାଗିଛନ୍ତି । -'ବାଃ', ମୋ ଆଖି ଜକେଇଗଲା । ବ୍ରଜବାବୁ ଉଁ ଚୁଁ କିଛି କଲେନାହିଁ । ଜିନିଷ ଥୋଇ-ଦେଇ ସେ ଆସିବା ପରେ ତାଙ୍କୁ କୌତୁକ କଲାପରି ପଚାରିଲେ, "ଲିଲି ମୁଣ୍ଡରୁ ଉକୁଣି ଛାଡ଼ିଲେଣି ନା ନାହିଁ ?" ଲିଲି, ଶ୍ରୀକାନ୍ତବାବୁଙ୍କ ବଡ଼ ଝିଅ । ସେ କିଛି କହିଲେନାହିଁ । ସାମାନ୍ୟ ହସିଲେ । ଆସି ମୋ ପାଖେ ବସିଲେ । ଆମେ ଠରାଠରା ହୋଇ ବୁଝିଗଲୁ ।

ସେଦିନ ରାତିରେ ବୁଢ଼ୀ ଚାଲିଗଲେ । ଖୁବ୍ ପାଖରେ ମଶାଣି । ପାହାନ୍ତିଆ ବେଳକୁ ଚିତା ଲିଭିଆସୁଥାଏ । ସକାଳୁ ଦୁଇଟି ଲୋକଙ୍କୁ ଶ୍ରୀକାନ୍ତବାବୁ ଯୋଗାଡ଼ କରି ନେଇଆସିଲେ । ଘର ସାରା ଧୁଆଧୋଇ ହେଲା । ବୁଢ଼ା ଦୁଇ ଚାରିଘଣ୍ଟା ପାଇଁ କୁଆଡ଼େ ବାହାରି ଯାଇଥିଲେ ।

X X X

ବୁଢ଼ୀ ମରିବାର ଦୁଇମାସ ହୋଇଗଲାଣି । ବ୍ରଜବାବୁ ଆଉ ଔଷଧ ଦେଉନାହାନ୍ତି । ସିମୁଳି ପଦରର ସ୍କୁଲମାଷ୍ଟ୍ର ତୁଟୁକା ହୋମିଓପାଥି କରନ୍ତି । ତାଙ୍କୁ ଡାକି ସବୁ ଔଷଧ-ବାକ୍ସ, ବହିପତ୍ର ଦେଇଦେଲେ ।

ଶ୍ରୀକାନ୍ତବାବୁ କହୁଥିଲେ ଯେ ତାଙ୍କର ସବୁ ସମ୍ପତ୍ତି ଗାଁ ଠାକୁରଙ୍କ ନାଁରେ ଲେଖିଦେଲେଣି । ଏ ଘରଟାକୁ ଉଇଲ୍‌ନାମା କରିଦେବାକୁ ବସିଛନ୍ତି । ହଉ, ଛାଡ ! ବୁଢା ଏମିତି ନିଜକୁ ଖଣ୍ଡ ଖଣ୍ଡ କରି ମାଉଁସ ବାଣ୍ଟିଲାପରି ବାଣ୍ଟିଦେବ । କିଏ ତାକୁ ଭଲା ରୋକି ପାରିବ ? - ଏବେ ଦିନେ ଧଡି ଆଚାର୍ଯ୍ୟଙ୍କୁ ଡାକି ସବୁ ଦିଅଁଙ୍କ ଫଟୋ, ଖଟୁଲିରେ ଶାଳଗ୍ରାମ, ପୂଜା ସରଞ୍ଜାମ, ଘଣ୍ଟି, ରେକାବି, ପଞ୍ଚପାତ୍ରୀ ସବୁ ଦେଇ ଦେଲେ । କହିଲେ, ''ମୁଁ ଯାକୁ ଆଉ ସମ୍ଭାଳି ପାରିବି ନାହିଁ । ଆପଣ ଯାକୁ ନେଇଯାନ୍ତୁ । ଏ ସାମାନ୍ୟ ଦକ୍ଷିଣା ମଧ୍ୟ ନିଅନ୍ତୁ !'' - ଆଚାର୍ଯ୍ୟ କହୁଥିଲେ ଯେ ତାଙ୍କୁ ଶହେ ଏକ ଟଙ୍କା ଦକ୍ଷିଣା ମିଳିଲା । ଜାତିଆ ତିନିମୂର୍ତ୍ତି ଗଣ୍ଡୁକି ଶାଳଗ୍ରାମ ମିଳିଲା ।

ତାଙ୍କର ସାଇକଲ୍ ଖଣ୍ଡ ଆଉ ନାହିଁ । କାହାକୁ ଦେଇଦେଲେ ଜଣାପଡୁନାହିଁ । କିଏ କହୁଛି ଚୋରି ହୋଇଗଲା ବୋଲି । ବାକ୍‌ସପତ୍ର ମଧ୍ୟ ଚୋରି ହୋଇଗଲା । କ'ଣ ଯାଏ ଆସେ କାହାର ? ବୁଢା କ'ଣ କାହାକୁ କହୁଛି, ନା କାହାକୁ ଖାତିର୍ କରିଚି ! ହୁଁଃ, କମ୍ ଗଉଁ ସେ ଏକାଅଶୀ ବର୍ଷ ବୁଢାଟିର !

କାଲି ବସ୍ତାନିଟିଏ ଧରି ମୋ ଘରେ ଆସି ପହଞ୍ଚିଲେ । ପିଲାଙ୍କ ସଙ୍ଗେ ଟାପରା ହେଲେ । ମୁଁ କରଛଡା ଦେଲାପରି ଥାଏ ।- ଏମିତି ମୋତେ କାହିଁକି ଛୋଟ କରି ଦେଉଛ, ମହାପୁରୁଷ ! - ତମେ ଏ ସଂସାରକୁ ଏମିତି ଦେଇପାର, ପୁଣି ଏମିତି ଛାଡି ଦେଇପାର ବୋଲି ମୋତେ ଟାହୁଲି କଲାପରି କାହିଁକି ସୂଚେଇ ଦେଉଛ ବାରମ୍ବାର ?-କାହିଁକି ଜଣେଇ ଦେବାକୁ ଚାହୁଁଚ ଯେ ମୁଁ ଟା ଗୋଟାଏ ମୂଢ ସଂସାରୀ । ମୋତେ ଲୁହା ଜଞ୍ଜିର ଚାରିଆଡୁ ବାନ୍ଧି ରଖିଛି !- ଆଉ ତୁମେ ଫୁର୍ ଫୁର୍ ଚଢେଇ ପରି ଉଡିଯାଇ ପାରୁଛ !!-

ସେ ମୋ ପାଖରେ ଆସି ବସିଲେ । ପୁଣି ସେଇ ପାକୁଆ ପାଟିରେ ହସ । ''ଆପଣଙ୍କଠାରେ ମୋର ଗୋଟିଏ ଅନୁଗ୍ରହ ପ୍ରାର୍ଥନା ଥିଲା ।'' - ମୋ ନାକପୁଡା ଜଳିଉଠିଲା । ସେଇବାଟେ ଲୁଣିଆ ଲୁହ ନିଗିଡି ଆସିଲାପରି ଲାଗିଲା ।... ତୁମକୁ ମୁଁ ଅନୁଗ୍ରହ କରିବି ?- ନାଇଁ ??-କ'ଣ ଆଉ ବିଦ୍ରୁପ କରିବାର ବାକି ଅଛି ?

କିଛି ନ କହି ଅପେକ୍ଷା କଲି ।

''ମୁଁ ଯେତେବେଳେ ଏଗାର ବର୍ଷରେ ବ୍ରତ ହେଲି, ଏ ଭଗବଦ୍ ଗୀତା ଖଣ୍ଡ ମୋ ନନା ମୋତେ ଦେଇଥିଲେ । ମୁଁ ତାକୁ ଏମିତି ସତୁରୀ ବର୍ଷ ପାଇଲି । ସେ ମୋତେ ପାଳିଲା । ଆଉ ପାରିବିନାହିଁ । ପ୍ରୟୋଜନ ମଧ୍ୟ ନାହିଁ । ଏ ଡୋରଟିକୁ କାଟିବାକୁ ଆସିଛି । ଆପଣ ଯୋଗ୍ୟଲୋକ । ଶାସ୍ତ୍ର ଅନୁରାଗ ରଖିଛନ୍ତି । ଏ ଗ୍ରନ୍ଥଟିକୁ ନେଇ ମୋତେ ମୁକ୍ତ କରନ୍ତୁ ।''

ଛିଟ ବସ୍ତାନିରେ ଗୁଡିଆ ହୋଇଥିବା ସତୁରୀ ବର୍ଷର ସମ୍ପଦ ଏବଂ ସାଥୀଟିକୁ ସେ ଦୁଇ ହାତରେ ଟେକି ଧରିଲେ । ମୋ ଦେହ ଶୀତେଇଗଲା । ମୋ ସାହସ ହେଲାନାହିଁ ସେ ଦାନ ଗ୍ରହଣ କରିବାକୁ । ସେ ମୋ କୋଳ ଉପରେ ରଖି ଦେଉ ଦେଉ ମୁଁ ତାକୁଟୋକି ନେଇ ମଥା ଉପରେ ଥୋଇଲି । ମୋ ଆଖି ବୁଜି ହୋଇଗଲା । ଲୁହ ନିଗିଡିଗଲା ।

ବ୍ରଜବାବୁ ମୁହୂର୍ତ୍ତେ ତଳକୁ ଚାହିଁ ରହିଲେ । ତା' ଉତ୍ତାରୁ ସେମିତି ହସ ! ସେମିତି ସ୍ଥିର ଚାହାଣି ।- କଣ୍ଢେଇଟିଏ ପରି ଠୁକ୍‌କିନା ଠିଆହୋଇ ପଡିଲେ । ମୋ ସାନ ଝିଅର ଗାଲ ଟିପି ଦେଇ ଅଟା କଲେ । ପଛକୁ ନଚାହିଁ ଠୁକ୍ ଠୁକ୍ ଚାଲିଗଲେ ରାସ୍ତା ଉପରକୁ ।

ଶ୍ରୀକାନ୍ତ ସାମନ୍ତ କେତେବେଳେ ଆସି ମୋ ପାଖରେ ଠିଆ ହୋଇଯାଇଥିଲେ । ଆମେ

ଚାହିଁରହିଲୁ କିଛି ସମୟ । ସନ୍ଧ୍ୟାବେଳେ ପାଚିଲା ଖରା ପଡୁଥାଏ ଅପସରି ଯାଉଥିବା ସେ ଛୋଟ ମଣିଷଟି ଉପରେ । ଚନ୍ଦାମୁଣ୍ଡ ଚିକ୍ ଚିକ୍ କରୁଥାଏ ସୁନା ପରି ।

ଶ୍ରୀକାନ୍ତବାବୁ ଆସ୍ତେ କହିଲେ, ''ଆଜି ବୁଢା କେତେ ନିର୍ମଳ ଦେଖା ଯାଉଛନ୍ତି, ନୁହେଁ ? ହଅଅ ?... ଏ ପରା ରସିକ ବୁଢା । ଅସୁମାରି ରୋଗିଚି !- କୁଆଡେ ଖାଲି ନିଶା ଆଉ ମାଇକିନା ନେଇ ଜୀବନ ବିତେଇଚି ।

ହାୟରେ, ହତଭାଗା ସଂସାର !!

# ଗେଣ୍ଡା

ଦୁର୍ଗାମାଧବ ମିଶ୍ର

ନର୍ଦ୍ଦମାର ପୋଚାପାଣି ବହୁତ ଦିନ ହେଲା ଟୁବୁଟୁବୁ ହୋଇ ଫୁଟୁଥିଲା - ସୃଷ୍ଟି ହେଉଥିଲା ବୁଦ୍‌ବୁଦ୍ - କଳା ନେଳିମିଶା ପାଣିରେ । ମନେ ହେଉଥିଲା, କେଉଁ ଅଶରୀର ତାପରେ ଫୁଟିଉଠୁଛି ସେ ପାଣି । ଫୁଲି ଫୁଲି ଉଠୁଛି - କେତେବେଳେ ଉତୁରି ପଡିବ ।

ଆଜି ଯେ ସେ ପାଣି ନର୍ଦ୍ଦମା ଦୁଇପାଖର ଇଟାବନ୍ଧକୁ ଟପି ଘର ଭିତରେ ପଶିଯିବ, ସେ କଥା ନତ୍ୟାନନ୍ଦବାବୁ ଜାଣିବେ କେମିତି ? ଦୁଇ ତିନିଜଣ ମେହେନ୍ତରଙ୍କୁ କହିଥିଲେ, ସଫା କରିଦିଅ । ବକ୍‌ସିସ୍ ଯାହା ପାଞ୍ଚ ଦଶ ଟଙ୍କା ନେବ ।

- ପାଞ୍ଚଟଙ୍କା !

ହସିଲେ ସେମାନେ । ମୁହଁବୁଲାଇ ଚାଲିଗଲେ ।

- ବଜାର ବୋଧହୁଏ କରୁନାହାନ୍ତି ଆପଣ । ବାଇଗଣ କିଲୋ ଦଶଟଙ୍କା । ଚାଉଳ କିଲୋ ସାତ ଟଙ୍କା । ଡାଲି କିଲୋ କୋଡିଏ ଟଙ୍କା । ଏପରିକି କାକୁଡି କିଲୋ ଆଠ ଟଙ୍କା । ସେଥିରେ ଏତେବଡ ନର୍ଦ୍ଦମା ପରିଷ୍କାର କରିଦେବାକୁ ଆପଣ ଦେବେ ଆଠଟଙ୍କା ନ ହେଲେ ଦଶ ଟଙ୍କା !

- କ'ଣ ଶହେ ଟଙ୍କା ନେବ ?

- ଶହେ ଟଙ୍କା ମଧ କିଛି ନୁହେଁ, ବୁଝିଲେ ସାହେବ । କେତେ ମଇଳା ଏହା ଭିତରେ ଅଛି, ଆପଣ ଧାରଣା କରିପାରୁଛନ୍ତି ? ଶହେ ଟଙ୍କା ଯଦି ବଞ୍ଚାଇ ରଖିବାକୁ ଇଚ୍ଛା, ନିଜେ ସଫା କରିଦିଅନ୍ତୁ ।

ଛୋଟ ଲୋକମାନଙ୍କର ମୁହଁ ବଢିଗଲାଣି ଦେଖୁଛି - ଭାବିଲେ ନିତ୍ୟାନନ୍ଦବାବୁ । ବିଦ୍ ବଜାର ଉପରେ ତିନିଟା ମେହେନ୍ତର ତାଙ୍କୁ ଅପମାନ ଦେଇ ଚାଲିଗଲେ, ଅଥଚ ସେ କିଛି କରିପାରିଲେ ନାହିଁ । ନିଷ୍ଫଳ କ୍ରୋଧରେ ବାତ୍ୟାହତ କଦଳୀ ବୃକ୍ଷ ପ୍ରାୟ ଥରିଗଲା ତାଙ୍କର ସମଗ୍ର ଶରୀର - ସକଳ ଅଙ୍ଗ ପ୍ରତ୍ୟେଙ୍ଗ ।

ମାସକ ତଳେ ଏପରି କହିପାରିଥାଆନ୍ତେ ସେମାନେ ? ନର୍ଦ୍ଦମା ସଫା ହେବ ବୋଲି ତୁଣ୍ଡରୁ ବାହାରିବା ମାତ୍ରେ, ସେ ହୁକୁମ ତାଲିମ କରିବାକୁ ପୁଞ୍ଜେ ପାଞ୍ଚୁଟା ଲୋକ ଆଗଭର ହୋଇ ଦଉଡାଗି ଆସିଥାଆନ୍ତେ । ନର୍ଦ୍ଦମା ସଫା ହୋଇଯାଇଥାଆନ୍ତା, ସେ ଘରକୁ ଫେରିଲାବେଳକୁ । କିପରି ହେଲା ସେ ଜାଣନ୍ତେ ନାହିଁ । କେତେ ଟଙ୍କା ଖର୍ଚ୍ଚ ହେଲା, ସେ ଜାଣନ୍ତେ ନାହିଁ । କେବଳ ଅତି ନମ୍ର କଣ୍ଠରେ କିଏ ଜଣେ କହିଥାଆନ୍ତେ ।

- ନର୍ଦ୍ଦମା ସଫା ହୋଇଗଲା, ସାର୍ ।

ସେ ତା' ମୁହଁକୁ ଚାହିଁ ନଥାନ୍ତେ ।

- ନର୍ଦ୍ଦମା ! କେଉଁ ନର୍ଦ୍ଦମା ?

ତା'ପରେ ମନେପଡିଯାଉଥାଆନ୍ତା ଯତେମେମିତି ଶତ ବର୍ଷ ତଳର ସ୍ମୃତି .......

ହଁ ନର୍ଦ୍ଦମା ........ ଓ ବୁଝିଲି ବୁଝିଲି

ନାଏ଼ ! କୃତଜ୍ଞ ନୟନରେ ଚାହିଁ ନ ଥାନ୍ତେ ସେ ସେହି ସ୍ୱରର ଅଧିକାରୀ ଆଡେ । ଜୋତା ମସ୍‌ମସ୍ କରି ପଶିଯାଇଥାଆନ୍ତେ ଘର ଭିତରକୁ ।

କିନ୍ତୁ ଏବେ ସେ ସ୍ଥାନଭ୍ରଷ୍ଟ-ସେବା-ନିବୃତ୍ତ । ମନେପଡିଲା, ବାପା କହୁଥିଲେ, ''ସ୍ଥାନଭ୍ରଷ୍ଟା ନ ଶୋଭନ୍ତେ କେଶାଃ, ନଖାଃ, ଦନ୍ତାଃ, ନରାଃ ।'' ଅର୍ଥ ବି ବୁଝାଇ ଦେଇଥିଲେ ଏ ପଦଟିର । କିନ୍ତୁ ଗୁରୁତ୍ୱ ଦେଇ ନଥିଲେ ନିତ୍ୟାନନ୍ଦବାବୁ । ହଃ, ଏମିତି ହେବନା ! ଆକଣ୍ଠ ବିଷୟ-ବିଷ-ପାନ-ପ୍ରମତ୍ତ ନିତ୍ୟାନନ୍ଦବାବୁ ଏଥିପ୍ରତି ଗୁରୁତ୍ୱ ଦେବେ କାହିଁକି ? ତାଙ୍କ ସମ୍ମୁଖରେ ତ ନିତ୍ୟ ଆନନ୍ଦ, ସବୁଜ ଘାସ ପଡିଆ, ଚିରନ୍ତନ, ମସୃଣ, ନରମ । ସେ ସେଥିରେ ନିନ୍ଦିତ, ଆନନ୍ଦିତ, ନିମଜ୍ଜିତ । ସମଗ୍ର ତୃଷା ମେଣ୍ଟିନାହିଁ - ଜୀବନକାଳର ପଞ୍ଚତିରିଶି ବର୍ଷ ପାର୍ ହୋଇଗଲା - ପଞ୍ଚତିରିଶି ମିନିଟ୍ ପରି ଲାଗିଲା ନାହିଁ । ଯେଉଁଦିନ ଫୁଲମାଳ ଦିଆ ଦଉଡିରେ ଜଗନ୍ନାଥଙ୍କ ରଥକୁ ଟାଣି ଟାଣି ନେଲା ପରି, ତାଙ୍କୁ ଏକ ଜିପ୍‌ଗାଡିରେ ଫୁଲମାଳରେ ଟାଣି ଟାଣି ଅଫିସରୁ ଘରକୁ ନେଇଆସିଲେ ସେମାନେ, ଆଉ ଗୋଟି ଗୋଟି କରି ସମସ୍ତେ କରମର୍ଦ୍ଦନ କଲେ ତାଙ୍କ ସହିତ; କହିଲେ, ''ଗୁଡବାଇ, ସାର୍'' - ସେ ଦ୍ରବୀଭୂତ ହୋଇଗଲେ । ତା' ଆରଦିନ ପାଓ୍ୱାର ବ୍ରେକ୍‌ଦିଆ ଆୟାସାଡର ଗାଡି ଆସିଲା ନାହିଁ ତାଙ୍କୁ ନେଇଯିବା ପାଇଁ । କଡା ଇସ୍ତ୍ରୀ କରା ପୋଷାକ ପିନ୍ଧି ଗାଡିର ସାରଥି ତାଙ୍କ ଦ୍ୱାର ମୁହଁରେ ''ସାବଧାନ'' ଅବସ୍ଥାରେ ଘଣ୍ଟା ଘଣ୍ଟା ଠିଆ ହୋଇ ରହିବାର ସେ ଦେଖିଲେ ନାହିଁ, ଆଉ ତମ୍ବୁ ଉଠାଇ ଚାଲିଗଲେ ତାଙ୍କ ଗୃହର ପ୍ରାଙ୍ଗଣରୁ ସଶସ୍ତ୍ର ପ୍ରହରୀମାନଙ୍କର ପ୍ଲାଟୁନ । ସକାଳେ ସନ୍ଧ୍ୟାରେ ଦେବମନ୍ଦିରର ଶଙ୍ଖଧ୍ୱନି ପରି ବିଗୁଲ ବାଜିଲା ନାହିଁ, ନିତ୍ୟାନନ୍ଦବାବୁ ଭାବିଲେ, ଏ କ'ଣ ହେଲା ? ସେ ତ ନୂଆ ପଶମ ସୁଟ୍ ପିନ୍ଧି ବାହାରିବାକୁ ପ୍ରସ୍ତୁତ । କିନ୍ତୁ ବ୍ରେକ୍‌ଫାଷ୍ଟ ରେଡ଼ିତୀ ବୋଲି କହୁନି ରାଜେନ୍ଦ୍ର ପରସାଦ, ଘରର ଗାର୍ଡ-ପାର୍ଟି ଗେଟ୍ ସମ୍ମୁଖରେ ଧାଡିବାନ୍ଧି ଠିଆ ହୋଇନାହାଁନ୍ତି । ସେ ଆଶ୍ଚର୍ଯ୍ୟ ହେଲେ । ଚିତ୍କାର କଲେ ସେ -

''ରାଜେନ୍ଦ୍ର ପ୍ରସାଦ, ଟେବୁଲ ତୟାର କରୋ । ଦେର୍‌ହୋ ରହା ହୈ ।''

ସରଳାଦେବୀ ରୋଷାଇଘରୁ ବାହାରି ଆସି ହସିଲେ । ସେ ହସରେ କ'ଣ ଥିଲା ? ଘୃଣା, ଅବଜ୍ଞା ଓ ଦୟନୀୟତାର ଝଲକ ଅଥବା ବାତ୍ସଲ୍ୟର ମମତା ? ଆହା ବିଚରାଟା ଜାଣିପାରୁନାହିଁ । କହିଲେ -

''ତୁମେ କ'ଣ ବାତୁଳ ହେଲ ? କୁଆଡେ ଯିବ ଯେ ଏତେ ଦାମିକା ସୁଟ୍‌ଟା ପିନ୍ଧି ପକାଇ ଗର୍ଜ୍ଜନ କରୁଛ ? ତାକୁ ଇସ୍ତ୍ରୀ କରାଇବାକୁ ଦଶଟଙ୍କା ଲାଗିବ, ଜାଣିଛ ?''

''ଇସ୍ତ୍ରୀ କରାଇବାକୁ ? କାହିଁକି ଗଙ୍ଗାରାମ ...... ?''

''ଆଉ ଗଙ୍ଗାରାମ ନାହିଁ, ରାଜେନ୍ଦ୍ର ପ୍ରସାଦ ନାହିଁ, ଧନିରାମ ନାହିଁ । ସମସ୍ତେ କାଲି ରାତିରୁ ଚାଲିଯାଇଛନ୍ତି ତାଙ୍କର ନୂଆ ସାହେବଙ୍କ ଘରକୁ । ତୁମେ ଆସିଲ, ସେମାନେ ଗଲେ । ଏବେ କେବଳ ତୁମେ ଓ ମୁଁ - ମୁଁ ଯେଉଁ ସ୍ୱପ୍ନ ଦେଖୁଥିଲି ଗତ ବହୁବର୍ଷ ଧରି । କେହି ନ ଥା'ନ୍ତେ । ଥାଆନ୍ତେ ଆମେ ଦୁଇଜଣ । ତୁମେ କହୁଥାଆନ୍ତ । ମୁଁ ତୁମର କୋଳରେ ମୁଣ୍ଡ ରଖି ଶୁଣୁଥାଆନ୍ତି । କିଛି କହନ୍ତି ନାହିଁ । ଖାଲି କହୁଥାଆନ୍ତି, ଉଁ ଉଁ । କେତେ ସୁଖରେ କଟି ଯାଇଥାଆନ୍ତା ଜୀବନ ! ଆଜିଠାରୁ ସେହି ତୁମେ ଓ ସେହି ମୁଁ ରହିବୁଁ । କିନ୍ତୁ ଦୁହେଁ ଦୁହିଁଙ୍କଠାରେ ଅପରିଚିତ । ତୁମକୁ ମୁଁ ଦରକାର କରୁନାହିଁ ଆଉ । ତୁମେ ମଧ୍ୟ ମୋତେ ଦରକାର କରୁନାହଁ । ତେବେ ଛାଡ, ରୋଷେଇ ଅଧା କରିଛି । ଏକାସାଥିରେ ଭାତ, ଡାଲି, ତରକାରୀ । ଦଶଟା ସାଢେ ଦଶଟାବେଳେ ଖାଇଦେବା । ଆଉ ଲଞ୍ଚ୍ ଖାଇବାରେ ଆଜିଠାରୁ ପୂର୍ଣ୍ଣଚ୍ଛେଦ ପଡିଲା ।'' କହି ରୋଷାଇ ଘରକୁ କ୍ଷିପ୍ର ଗତିରେ ଫେରିଗଲେ ସରଳା ।

ନିତ୍ୟାନନ୍ଦ ବାବୁ ଥ' ହୋଇ ବସିଥିଲେ ନିକଟତମ ଚୌକି ଉପରେ । ପଦେ ମଧ୍ୟ କଥା କହିବାର ଶକ୍ତି ହରାଇ ବସିଥିଲେ ସେ । ସରଳା ଟେବୁଲ ଉପରେ ରଖିଦେଇଥିଲେ ନୂଆ ଗୋଟିଏ କବିତା ଲେଖିବାର ଖାତା ଓ କଲମ । ଖାତାର ପ୍ରଥମ ପୃଷ୍ଠାରେ ଲେଖି ଦେଇଥିଲେ, ''ଏଥର ମନଇଚ୍ଛା ଲେଖ । ଅଖଣ୍ଡ ଅବସର ତୁମ ଜୀବନରେ । କବିତା ତୁମର ପ୍ରେୟସୀ ହେଉ । ମୁଁ ନେପଥ୍ୟରେ ରହିଗଲି ।''

ଦୀର୍ଘଶ୍ୱାସ ପକାଇଲେ ନିତ୍ୟାନନ୍ଦ । କ'ଣ ଲେଖିବେ ? କିଛି ତ ମନ ଭିତରକୁ ଆସୁନାହିଁ !! ବଡ କଷ୍ଟରେ ଲେଖିଲେ କେତୋଟି ଧାଡି -

ପଡି ରହିଅଛି ସମ୍ମୁଖେ ମୋର ଅନାବାଦୀ କେତେ ଆଶା,
ସାକ୍ଷାତ ତା'ର ଦେଇଛି ମୋ' ଆଗେ ବୁକୁର ବ୍ୟାକୁଳ ଭାଷା ।
କର୍ଷଣ ପାଇଁ ଅନାଇ ରହିଛି ଉର୍ବର କେତେ ଭୂଇଁ
କର୍ମକ୍ଷମ ମୁଁ; ତୃପ୍ତି ତ ମୋର ଏ ଯାଏଁ ଆସିଲା ନାହିଁ !

କେତେବେଳେ ଚୁପ୍ ଚୁପ୍ ପଛରୁ ଆସି ଠିଆ ହୋଇଛନ୍ତି ସରଳା, ପଢି ଦେଇଛନ୍ତି କବିତା ଧାଡିତକ ।

''ତୃପ୍ତି ତୁମର କେବେ ଆସିବ ନାହିଁ - ସବୁବେଳେ ଅତୃପ୍ତ ହୋଇ ରହିବ ।''

ତାଚ୍ଛଲ୍ୟର ହସ ତାଙ୍କ ଓଠରେ ।

''ବିଅ, ଉଠ, ତୁମେ ଚାରିଧାଡି କବିତା ଲେଖିଲ, ମୋର ରୋଷାଇ ସରିଗଲା, ଗାଧୁଆପାଧୁଆ ସରିଗଲା । ଆସ ଖାଇବା କହି ତାଙ୍କର କହୁଣୀକୁ ଧରି ଉଠାଇଦେଲେ ସରଳା । ଚିତ୍ରାର୍ପିତ ପରି ନିତ୍ୟାନନ୍ଦବାବୁ ଚାଲିଲେ ଖାଇବା ଟେବୁଲକୁ ।

ଶେଷକୁ ସେଦିନ ଉଚ୍ଛୁଳିପଡିଲା ନର୍ଦ୍ଦମା । ଘରସାରା ମଇଳା, କଳାକଳା ପାଣି - ପୋକଜୋକ ଭିଆ, କେଞ୍ଚୁଆ ଓ ଅସଂଖ୍ୟ ବୀଜାଣୁ, ଅସଂଖ୍ୟ ଜୀବାଣୁ । ଇସ୍ କି ଗନ୍ଧ !! ନାକ ଫାଟିଯିବ ଯେମିତି !

- ସରଳା ! ସରଳା ! କ'ଣ କରିବା, ଧାଇଁ ଆସ । ଘରଟାଯାକ ତ ନର୍ଦ୍ଦମାର ଲହରି ! କି ଦୁର୍ଗନ୍ଧ !! କ'ଣ କରିବା ?

- ଦୁର୍ଗନ୍ଧ !! କାହିଁ ଦୁର୍ଗନ୍ଧ । ମୋତେ ତ ବାସୁନି । ନର୍ଦ୍ଦମା ପାଣି ନାହିଁ ? କାଲି ତ ......

କହି ଚାନିଆତକୁ ଦୃଷ୍ଟି ବୁଲାଇ ଆଣିଲେ ସରଳା ।

- ତୁମକୁ ତ ସବୁ ବାସିବ । ମେଞ୍ଚେ ହେବ ଅତର ସିଞ୍ଚିଥିବ ତ ବ୍ଲାଉଜରେ । ବାସିବ କେମିତି ?

- କ'ଣ ହେଲା ? ଅତର ? କାହିଁ କି ହୋ ? କେଉଁଦିନ ଶିଶିଏ ଏସେନସ କିଣି ଆଣି ଦେଇଛ । ଝିଅ ଆମେରିକାରୁ ଯେଉଁ ଇଣ୍ଟିମେଣ୍ଟ ଶିଶିଟା ଆଣି ଦେଇଥିଲା, ସେ ତ ତୁମର ବିଦାୟ ଭୋଜିମାନଙ୍କରେ ଯୋଗ ଦେଇ ଦେଇ ସରିଲା । ଶୁଙ୍ଘିଲ, ତୁମକୁ ଅତର ବାସୁଛି ?

କହି ପଣତ ତଳକୁ କରି ଦେଇ ନିତ୍ୟାନନ୍ଦ ବାବୁଙ୍କ ମୁଖ ନିକଟରେ ଧରିରଖିଲେ ନିଜକୁ । ଦେଖ ଅତର ବାସୁଛି ?

ଘୁଞ୍ଚି କରି ଠିଆ ହୁଅ ସରଳା । ମୋର ବୋଧହୁଏ ବାନ୍ତି ହୋଇଯିବ । ଅତରର ସଭା ତ ନାହିଁ ତୁମ ବ୍ଲାଉଜରେ । ଓଲଟି ଉତ୍କଟ ଗନ୍ଧ ବାହାରୁଛି ସେଥିରୁ ।

ସରଳା ଅପ୍ରତିଭ ହୋଇ ପଣତ ଗୋଟାଇ ନେଲେ । ପଛକୁ ଘୁଞ୍ଚିଗଲେ ଦୁଇ ପାହୁଣ୍ଡ ।

- ମୋ ଦେହ ଗନ୍ଧାଉଛି ? ଗନ୍ଧାଇବ ତ । ନବପ୍ରସ୍ଫୁଟିତ ମଲ୍ଲିଫୁଲ ତୁମର ଦରକାର । ଚାଳିଶ

ବଣ ତଳେ ଫୁଟିଥିବା ବଉଳ ଫୁଲ, କ'ଣ ସତେଜ ରହିପାରିବ ? ଯାଅ, ଯେଉଁ ଟ୍ଲାଉଳ ସୁବାସ ଦେବ, ସେଇଠିକୁ ଚାଲିଯାଅ ।

ଅପସଁରଗଲେ ସରଳା ।

କିନ୍ତୁ ଏ କ'ଣ ହେଲା ? ଏତେ ଦୁର୍ଗନ୍ଧ କାହିଁକି ? ଅବଶ୍ୟ ଦେହଟା ଉଠାଇ ନିତ୍ୟାନନ୍ଦବାବୁ ଗଲେ ନର୍ଦ୍ଦମା ଦେଖିବାକୁ । କିନ୍ତୁ ନର୍ଦ୍ଦମାରେ ତ ଟୋପେ ପାଣି ନାହିଁ । କେତେବେଳେ ପରିଷ୍କାର ପରିଚ୍ଛନ୍ନ ହୋଇ ଧୂଆଧୋଇ ହୋଇଯାଇଛି ଯେମିତି । ତେବେ ଏତେ ଦୁର୍ଗନ୍ଧ ଆସୁଛି କୁଆଡୁ ?

କିଏ ସଫା କଲା ଏ ନର୍ଦ୍ଦମା ? ସେ ଜାଣି ନାହାନ୍ତି ସରଳା ପଡିଶା ଘରର ଗୋପାଳବାବୁଙ୍କର ସ୍ତ୍ରୀଙ୍କୁ କହି ଗୋଟିଏ ମେହେନ୍ତର ଯୋଗାଡ କଲେ । ସେ ସଫା କରିଦେଲା । ତିରିଶି ଟଙ୍କା ନେଲା । ନିତ୍ୟାନନ୍ଦବାବୁ ଜାଣିଲେ ନାହିଁ । ମୂହ୍ୟମାନ ନିତ୍ୟାନନ୍ଦବାବୁ । ତାଙ୍କ ନାଆଁ ଆଜିକାଲି ଦିଆହୋଇଛି ନିରାନନ୍ଦବାବୁ ବୋଲି । ଚବିଶ ଘଣ୍ଟା ଘର ଭିତରେ ସେ ବସିଥାଆନ୍ତି । କେବଳ ଚର୍ବିତଚର୍ବଣ କରୁଥାଆନ୍ତି ଅତୀତର ସୁଖମୟ ମୁହୂର୍ତ୍ତଗୁଡିକୁ । କିପରି ସେ ପ୍ରଶଂସା-ପଦକ ପାଇଲେ - କିପରି ସେ ଶ୍ରେଷ୍ଠ ସାହିତ୍ୟିକ ପୁରସ୍କାର ପାଇଲେ । କିପରି ବହୁ ସହଧର୍ମୀ ନ୍ୟାଯ୍ୟ ଦାବୀକୁ ଅତିକ୍ରମ କରି ଉଚ୍ଚ ସୋପାନ ମାନଙ୍କୁ ପଦୋନ୍ନତି ପାଇଗଲେ । କିପରି ଶାସକଦଳ ବଦଳିଲେ ମଧ ତାଙ୍କର ପତନ ହେଲା ନାହିଁ, ବରଂ ଉତ୍‌ଥାନ ଘଟିଲା । ସେ ରହିଗଲେ ସମସ୍ତଙ୍କର ପ୍ରିୟ ହୋଇ, ତାଙ୍କର ସମସ୍ତ ଶତ୍ରୁ ବର୍ଗଙ୍କୁ ଆଶ୍ଚର୍ଯ୍ୟ କରାଇଦେଇ । କି ଯାଦୁଥିଲା ତାଙ୍କ ପାଖରେ ? ସେ ଆଜି ଅକର୍ମଣ୍ୟ କାହିଁକି ? ସେହି ଯାଦୁ ବଳରେ ଏପ୍ରକାର ଅଭାବନୀୟ ପରିବେଶକୁ ଅତିକ୍ରମ କରିପାରୁ ନାହାନ୍ତି କାହିଁକି ? ନାହିଁ, ସେଇ ଗୋଟିଏ ଯାଦୁ ସବୁଠାରେ କାମ ଦେବ ନାହିଁ । ସେ ଯାଦୁର କରାମତି ତାଙ୍କର ସେବା-ନିବୃତ୍ତି ସହିତ ଅକାମୀ ହୋଇଯାଇଛି । ସେ ଆଜି ଅପାଂକ୍ତେୟ, ଅଲୋଡା ମଣିଷ ।

କ'ଣ କହୁଛ ନର୍ଦ୍ଦମା ପାଣି ପଶିନାହିଁ ବୋଲି, କ'ଣ କହୁଛ ଦୁର୍ଗନ୍ଧ ଆସୁନାହିଁ ବୋଲି, କ'ଣ କହୁଛ ଜିଆ, କେଞ୍ଚୁଆ, ଲାଙ୍ଗୁଡିଆ ପୋକ ସାଲୁବାଲୁ ହେଉନାହାନ୍ତି ବୋଲି ! ତେବେ ନର୍ଦ୍ଦମା ସଫା ହୋଇଗଲା କିପରି ? ଓ ବୁଝିଲି ବୁଝିଲି । ନର୍ଦ୍ଦମାର ପାଣି ଚତୁର୍ଦ୍ଦିଗରେ ଖେଳିଗଲା ପରେ, ନର୍ଦ୍ଦମା ତ ଆବର୍ଜନା-ମୁକ୍ତ ହୋଇଯିବ । ପୁଣି ଆବର୍ଜନା ଜମିଲେ ସିନା ପୂରି ଉଠିବ ନର୍ଦ୍ଦମା । ତେବେ ସେ ନର୍ଦ୍ଦମା ପାଣି ଗଲା କୁଆଡେ । ଆଖିକୁ ସିନା ଦିଶୁନି, ସବୁ ପଶିଛି ଏଇ ଘର ଭିତରେ, ଏଇ ଖଟରେ, ବାଡରେ । ଚଉକିରେ, ଟେବୁଲରେ, ଦେହର ପ୍ରତ୍ୟେକ ତନ୍ତ୍ରିରେ ... ଖାଲି କିଇ କିଇ ହୋଇଯାଉଛି ଦେହ ଓ ମୁଣ୍ଡ, ଆଉ ଚାରିଧାଡେ ଦୁର୍ଗନ୍ଧ । ପ୍ରତି ପାଖୁଡାରେ ଯେପରି ନର୍ଦ୍ଦମା ପାଣି... ମଝିରେ ଅପରିଷ୍କାର କେନ୍ଦୁଟା ପୋକ । ସେ ଭୟରେ ଫୋପାଡି ଦେଲେ ମଲ୍ଲୀଫୁଲଟା । ଦେହରୁ କାମିଜ, ଗେଞ୍ଜି, ଅଣ୍ଡରଓ୍ୱାର ଓ ପ୍ୟାଣ୍ଟ କାଢି ଫିଙ୍ଗି ଦେଲେ । ତାଙ୍କୁ ଲାଗିଲା ସେଗୁଡାକ ନର୍ଦ୍ଦମା ପାଣିରେ ଧୂଆ ହୋଇଯାଇଛି । ପଶିଗଲେ ଗାଧୁଆ ଘରେ । ସାୱାର ଖୋଲିଦେଲେ । ତାଙ୍କ ସାୱାରରୁ ନାଏଗ୍ରା ଜଳପ୍ରପାତ ପରି ପାଣି ଆସେ । ତାଆରି ତଳେ ଠିଆ ହୋଇଗଲେ ସେ ସଂପୂର୍ଣ୍ଣ ଏକଘଣ୍ଟା । ନୂଆ ସାବୁନଟିଏ ଘଷି ପକେଇଲେ ଦେହସାରା । ପୂରା ସାବୁନ-ମୁଣ୍ଡାଟା ସରିଗଲା । ପୁଣି କାଚିକୁଚି ହୋଇ ଗାଧୋଇଲେ ସେ । ସଫା ତଉଲିଆରେ ପୋଛି ହୋଇ ବ୍ରାହ୍ମୀ ତେଲରେ ମୁଣ୍ଡ କୁଣ୍ଡାଇ ସଫା ପାଇଜାମା ଓ ପଞ୍ଜାବି ପିନ୍ଧି ପକେଇଲେ । ଆଉ ଦୁର୍ଗନ୍ଧ କୁଆଡୁ ଆସିବ ! ବିରାଟ ଆରାମ ଚଉକିଟାରେ ନିଜର ୭୫ କିଲୋ ଓଜନର ଦେହଟା ଲୋଟାଇ ଦେଇ ଆଖିବୁଜି ବସିଗଲେ ସେ ।

ନାଁଃ, ଆଉ ଦୁର୍ଗନ୍ଧ ନାହିଁ ।

କି ଶାନ୍ତି !! ଆହୁରି ଜୋରରେ ଆଖିବୁଜି ଦେଲେ ସେ ।

- ମୋର କ'ଣ ଅଛି ସାର୍, ମୁଁ ଦେବି ? ଦରିଦ୍ର ବାପା ମାଆ, ସେଥିପାଇଁ ପିଅନ ଚାକିରୀଟିଏ ପାଇଁ ଏତେ ଥର କହିଲିଣି !

- ତୁମେ ଯଦି କିଛି ନ ଦେବ, ତୁମକୁ କିଏ କ'ଣ ଦେବ କାହିଁକି ?

- ପାଞ୍ଚ ଭଉଣୀ ଆମେ ସାର୍ । ବାପା ଅକର୍ମଣ୍ୟ । ଦିନକୁ ଓଳିଏ ଖାଇବାକୁ ପାଉ ନାହୁଁ । ମୁଁ ଦେବି କ'ଣ କୁହନ୍ତୁ ?

- ''ଓଃ, ମୁଁ କ'ଣ ମାଗୁଛି ତୁମକୁ ଟଙ୍କା ପଇସା । ନିଜର ବାପା ମା' ଭାଇ ଭଉଣୀଙ୍କର ପେଟ କାଟି ମୋତେ ଦେବାପାଇଁ କହୁଛି ? ତୁମକୁ ଯାହା ମାଗୁଛି ପ୍ରତିଦାନରେ, ତାହା ତୁମର ନିଜସ୍ୱ, ତାକୁ ଦେଲେ ବେ ସରିଯିବ ନାହିଁ । ତୁମେ ଆନନ୍ଦ ପାଇବ ଓ ମୁଁ ମଧ ଆନନ୍ଦ ପାଇବି ।''

କହି ସରୀସୃପ ପରି ସୁଜାତାର ଶରୀରରେ ସର୍ ସର୍ ହୋଇ ଘେରେଇ ହୋଇଗଲେ ନିତ୍ୟାନନ୍ଦବାବୁ । ପାଞ୍ଚଫୁଟ ତିନି ଇଞ୍ଚ ଉଞ୍ଚ । ଝିଅଟା ସୁଜାତା- ଆଖି ପିଛୁଳାକେ ମାଟିରେ ମିଶିଗଲା ଯେମିତି ....... ଘୁଷୁରି ଘୁଷୁରି ଚାଲିଗଲା କୋଠରୀ ଭିତରୁ... ହଁ... ହଁ.... ଠିକ୍ ଗୋଟାଏ ଘେଣ୍ଡା ପରି .... କଠିନ ହୋଇଯାଇଥିଲା ବହିରାବରଣ... ଭିତରେ ଫୁଟୁଥିଲା ଭୀତତ୍ରସ୍ତ ଏକ କ୍ଷୁଦ୍ର ଶରୀର... ଯାହାର ମାଂସ କୁଆଡେ଼ ଖୁବ୍ ସୁସ୍ୱାଦୁ ... ସେ ମନ୍ଥର ଗତିରେ ଘୁଷୁରି ଘୁଷୁରି ଚାଲିଗଲା... ହାତରେ ଧରିଥିଲା ନିଯୁକ୍ତି-ପତ୍ରଟି... ମୋଜାଇକ୍ ଚଟାଣରେ ଲେଖି ହୋଇଗଲା କଳା କଳା ଅପରିଷ୍କାର ଏକ ଗାଢ ରେଖା... ଯାହାକୁ ପାଣିରେ ଧୋଇଲେ ମଧ ଛାଡିଲା ନାହିଁ ।

ଉସ୍ ଚଢି ଆସୁଛି ଘେଣ୍ଡାଟା । ଦଉଡି ଆସ ସରଳା । ଗାଧୋଇ ପାଧୋଇ ସଫାସୁତୁରା ହୋଇ ବସିଛି । ଅଥଚ ଅପରିଷ୍କାର ଘେଣ୍ଡାଟା .....

ସରଳା ଅସ୍ତବ୍ୟସ୍ତ ହୋଇ ଧାଇଁଲେ ଶୋଇବା ଘରକୁ ... ।

... ଘେଣ୍ଡା ! ଘେଣ୍ଡା କୁଆଡୁ ଆସିଲା ? ବିଚିତ୍ର କଥା ।

ଝରକାକବାଟଖୋଲିଦେଲେସରଳା ।ଦିନଦ୍ୱିପ୍ରହରଟାରେମଧସବୁଆଲୁଅଜାଳିଦେଲେ । ଚଷମା ଲଗାଇ ଘେଣ୍ଡା ଖୋଜିବାକୁ ଲାଗିଲେ ସେ ।

.... କାହିଁ ଘେଣ୍ଡା କେଉଁଠି ? କିଛି ତ ନାହିଁ ।

.... ଏଇଠି ଦେଖ ସରଳା ...ଏଇଠି... ଏଇଠି... ଏଇ ଆରାମ ଚୌକି ଉପରେ.....

ଓଲଟି ପଡିଲେ ସରଳା ।

ସତେତ ।ମୋଟାସୋଟାଘେଣ୍ଡାଟାଏବସିଛିନଉକିଉପରେ ।ଏତେସାହସ ।ସତକହୁଥିଲେ ସେ ! ମୁଁ ବିଶ୍ୱାସ କରୁ ନଥିଲି ।

ଉଠାଇଲେ ଝାଡୁ ସରଳା ।ପାହାରେ ଦେବା ପୂର୍ବରୁ ଘେଣ୍ଡାଟା ଚଉକିରୁ ଡିଆଁମାରି ଚଟାଣର କଡାରେ ଚାଲିଗଲା କୁଆଡେ ଅଦୃଶ୍ୟ ହୋଇଗଲା । କିନ୍ତୁ ରହିଗଲା କଳା ମୋଟା ଗୋଟାଏ ବହଳିଆ ଦାଗ । ଘେଣ୍ଡା ଗଲାଣି । ନିଶ୍ଚିନ୍ତରେ ବସ । ରୋଷାଇ ମୋ'ର ସରି ଆସିଲାଣି ।

କିନ୍ତୁ କାହାକୁ କହୁଛନ୍ତି ସରଳା ? ନିତ୍ୟାନନ୍ଦବାବୁ କାହାନ୍ତି ? ତାଙ୍କର ପାଇଜାମା ପଞ୍ଜାବୀ ଖଟ ବାଡରେ ପଡିଛି । ବାଥ୍‌ରୁମ୍ ତ ଖୋଲା । ଗଲେ କୁଆଡେ ? ଘରଟାଯାକ ଖୋଜି ଆସିଲେ ସେ । କେଉଁଠି ହେଲେ ନାହାନ୍ତି ନିତ୍ୟାନନ୍ଦବାବୁ । କ'ଣ ଗାଡି ଚଲେଇ କୁଆଡେ ଚାଲିଗଲେ ସରଳା ଘେଣ୍ଡା ଖୋଜୁଥିବା ବେଳେ । ଗ୍ୟାରେଜ୍ ଖୋଲି ଦେଖିଲେ ସରଳା । ନାଲି ମାରୁତି ଆରାମରେ ବସିଛି ସାରା ଗ୍ୟାରେଜରେ କାୟା ବିସ୍ତାର କରି ।

ତେବେ -

ବୁଲି ପଡିଲେ ସରଳା ।

ଆଉ ଟିକକରେ ମାଡି ଦେଇଥାଆନ୍ତେ । ସେଇ ଗେଣ୍ଡାଟା ତାଙ୍କୁ ପଛରୁ ଚାହିଁଥିଲା । ଏ ମା ..... ବୋଲି ଚିତ୍କାର କରିବା ପୂର୍ବରୁ କୁଆଡେ ଅନ୍ତର୍ଦ୍ଧାନ ହୋଇଗଲା ଗେଣ୍ଡାଟା ।

# କର୍ମଫଳ

ସାତକଡି ହୋତା

ଖାଲି - ତୁମେ ବଡ ଚାକିରି କଲେ କଅଣ ହେବ, ତୁମର ପୁଅମାନେ ତ ଗୁଣ୍ଡା ବଦମାସ୍ ବୋଲି ନାଗରା ବାଜିଲାଣି ଦାଣ୍ଡରେ । କେତେଦିନ ଇମିତି ଚୁପ୍‌ହୋଇ ବସିଥିବ, ସେଇ ସକାଳେ ଅଫିସକୁ ବାହାରିଯାଇ ସନ୍ଧ୍ୟାରେ ଫେରୁଥିବ ? ନିଜ ଘରକଥା ଟିକେ ବୁଝ, ଝିଅ ପୁଅଙ୍କ ପାଇଁ କିଛି କର । ମୋ କଥା ନହେଲା ନାହିଁ ତୁମ ଦେହ କଅଣ ହେଲାଣି ଦେଖ !

ଇମିତି ଆଜି ନୁହେଁ ଏଇ କେତେ ମାସ ହେବ ପ୍ରାୟ ପ୍ରତିଦିନ କହନ୍ତି ରମାଦେବୀ । ସବୁ ଶୁଣନ୍ତି ଦେବବ୍ରତ, ମୁହଁ ଫିଟାଇ କିଛି କହନ୍ତି ନାହିଁ । କଅଣ ବା କହିବେ ? ସବୁ ପ୍ରାରବ୍ଧ ସବୁ ଭାଗ୍ୟ । ସେ ପିଲାଙ୍କ ପାଇଁ କଅଣ କରିନାହାନ୍ତି । ଭଲ ସ୍କୁଲରେ ପାଠ ପଢେଇଛନ୍ତି, ସମୟ ଦେଖି ଭଲ ଉପଦେଶ ଦେଇଛନ୍ତି । କିନ୍ତୁ ସବୁ ନିଷ୍ଫଳ, ନିରର୍ଥକ ହୋଇଯିବ ବୋଲି ସେ କଅଣ ଜାଣିଥିଲେ ? ଯିଏ ଭଲହେବ ସେ ଯେଉଁଠାରେ ରହିଲେ ବି ଭଲ ହେବ । ଖତଗଦାରେ ପୁଣି ତ ପଦ୍ମ ଫୁଟେ ! ସେଗାଆଁରସାମାନ୍ୟଚାଷୀପରିବାରରେଜନ୍ମଗ୍ରହଣକରିତିରିଶବର୍ଷଚାକିରିକରିଏବେତହସିଲଦାର ହୋଇଛନ୍ତି । ଚାରିଟା ପ୍ରଗଣାର ଲୋକ ଦୁଃଖ ସୁଖରେ ତାଙ୍କ ମୁହଁକୁ ଚାହିଁ ଚଳନ୍ତି, ହାରି ଗୁହାରି ଜଣାନ୍ତି, ପରସ୍ପର ମଧ୍ୟରେ ବିବାଦ ହେଲେ ସାମାଧାନ କରିବାକୁ କହନ୍ତି । ତାଙ୍କର ନାମଡାକ । ଅନେକ ବଡବଡ ଅଫିସରଙ୍କର, ଏକା ସାଙ୍ଗରେ କାମକରୁଥିବା ସହକର୍ମୀମାନଙ୍କର ଈର୍ଷାର ବିଷୟ । ଦେବବ୍ରତ ଗଧପରି କେବଳ କାମ କରି ଆସିଛନ୍ତି । ନିଜର ଇଚ୍ଛା ତାଲିମ କରିବା ପୂର୍ବରୁ ଅନ୍ୟର ଇଚ୍ଛା ପୂର୍ଣ୍ଣ କରିବାଲାଗି ବାଟ ଦରାଣ୍ଡିଛନ୍ତି । ଆଉ ଦୁଇବର୍ଷ ଚାକିରି- ତା'ପରେ ଅବସର ।

ରମା ପ୍ରତିଦିନ ଇମିତି କହନ୍ତି, ସେ ଚୁପ୍‌ଚାପ୍ ଶୁଣିଯାଆନ୍ତି, ମୁହଁଖୋଲି ପଦେ କହନ୍ତି ନାହିଁ, ପ୍ରତିବାଦ କରନ୍ତି ନାହିଁ । ଆଜି ବି ସ୍ତ୍ରୀ ଯାହା କହିଲେ ନୀରବରେ ସବୁ ଶୁଣିଗଲେ ଦେବବ୍ରତ । କରିବା ପାଇଁ ଆଉ ଜଣେ ଅଛି । ତାହାରି ଇଚ୍ଛାରେ ଜଗତ ଚଳୁଛି । ସେ ସାମାନ୍ୟ ଲୋକ । ତାଙ୍କ କଥାରେ ଦୂବ ଘାସଟିଏ ଉଠିବ ନାହିଁ କି ଫୁଲଟିଏ ଫୁଟିବ ନାହିଁ । ସବୁ ପୂର୍ବଜନ୍ମର ଫଳ । ପ୍ରାରବ୍ଧ । ଭାଗ୍ୟକୁ ସ୍ୱୟଂ ଭଗବାନ ବି ଏଡେଇ ଦେଇ ପାରିନାହାଁନ୍ତି ।

କିନ୍ତୁ ଆଜି ଆଉଗୋଟେ କଥା ସ୍ତ୍ରୀଙ୍କୁ କହିବା ପାଇଁ ପାଟି ଖଇଖଇ କରୁଥିଲା । ସେ ଲୁଗା ଜାମା ବଦଳାଇ ପିଣ୍ଡା ଉପରେ ସପ ପକେଇ ଲମ୍ବହୋଇ ଦେହ ମେଲେଇ କହିଲେ - ଯାହା ହବାର ଥିବ ହେବ..... ପୃଥିବୀର ନିୟମ ସେୟା.... ଆଜି ଅଫିସରୁ ସହଳ ସହଳ ଫେରୁଥିଲି.....ଠିକ୍ ଆମ ଘର ଆଗରେ ଯାହା ଦେଖିଲି ଆଖି ଓଲଟିଗଲା ଜାଣ ।

ରମା ଭାତ ହାଣ୍ଡି ଚୁଲି ଉପରୁ ଓହ୍ଲେଇ ଆଣି ପେଜ କାଢି ନବାବେଳେ ମୁହଁ ବୁଲେଇ କହିଲେ କି ଅପୂର୍ବ - ସୂର୍ଯ୍ୟ ପଶ୍ଚିମରେ ଉଇଁଲେ କି କଅଣ, ଡବ ଡବ ହେଇ ତ କେତେ କଥା କହିଯାଉଛ ।

ଦେବବ୍ରତ ପରୁଆ ନକରି କହି ଚାଲିଲେ ଆମ ଘରର ପଶ୍ଚିମ କୋଣରେ ଝାଉଁ ଗଛ

ମୂଳରେ ଦୁଇଟା ଡିମା ପଥର କୋଉଦିନୁ ପଡିଛି .... କେତେଥର ଦେଖିନଥିବି ସେଇ ପଥର ଦୁଇଟାକୁ .... କିନ୍ତୁ ଆଜି ଯାହା ଦେଖିଲି ସେଥିରେ ମୋ ଆଖି କପାଳ ଉପରକୁ ଉଠିଗଲା......

ରମା ଭାତହାଣ୍ଡି ପିଣ୍ଡି ଉପରେ ରଖିଦେଇ କହିଲେ - ''ତମେ ତା'ହେଲେ ଦେଖ କୋଉଠି କଅଣ ଅଛି, ଡିମା ପଥର ଦୁଇଟା ଆଖିରେ ପଡିଲା ଅଥଚ ତମ ଦୁଇ ପୁଅ ଆଖିରେ ପଡିଲେ ନାହିଁ ?'' ହାଣ୍ଡିଶାଳରେ ଥିଲେ ବି ତାଙ୍କର ଦୀର୍ଘ ନିଃଶ୍ୱାସ ସ୍ପଷ୍ଟ ଶୁଣିପାରିଲେ ଦେବବ୍ରତ ।

ବାଲେଶ୍ୱରକୁ ବଦଳି ହୋଇ ଆସିଲେଣି କେତେବର୍ଷ ହବ... ସହଦେବ ଖୁଣ୍ଟାରେ ସମବାୟ ଗୃହ ନିର୍ମାଣ ସମିତିରୁ ଟଙ୍କା କରଜ କରି ତୋଳିଥିବା ଘରେ ଅଛନ୍ତି ସେଇଦିନୁ । ନିଅଁ ପଡିବାବେଳେ ଇଟା ପଥର ଆଣିଥିଲେ ବାହାରୁ । ସେଥିରୁ କାମରେ ଲାଗିନଥିବା ଡିମା ପଥର ଯୋଡିଏ ରଖିଦେଇଥିଲେ ଗୋଟିଏ କୋଣରେ ଝାଉଁଗଛକୁ ଲାଗି ।

ଯୋଡିଏ ପଥର ପଡିଥିଲେ ବି ଗୋଟିଏ ପଥରର ଛାତି ଫଟେଇ ସବୁଜ ଗଛଟିଏ ଉଠୁଛି । ଚିହ୍ନା ଚିହ୍ନା ଗଛଟିଏ - କଣ୍ଟାବାଇଗଣ ଗଛପରି ଲାଗୁଛି । ଦେବବ୍ରତ ସ୍ତ୍ରୀଙ୍କ ଅନୁଯୋଗର ଉତ୍ତର ନ ଦେଇ କହିଲେ - ପଥର ଦିହରୁ ବି ଗଛ ଉଠେ । ମରୁଭୂମିରେ ବି ପାଣି ମିଳେ । ସେଇ ଡିମା ପଥରର ଛାତି ଫଟେଇ କିମିତି ଶାଗୁଆ ଗଛଟିଏ ମୁଣ୍ଡ ଟେକୁଛି ଦେଖିଆସ ରମା, ତମର ସବୁ ପ୍ରଶ୍ନର ଉତ୍ତର ସେଥିରୁ ପାଇଯିବ ।

ରମା ମୁହଁ ଛିଞ୍ଚାଡି କହିଲେ - ମୋ ପିଲାମାନେ ଡିମା ପଥର ହୋଇନାହାଁନ୍ତି ମ... ଦଶମାସ ଦଶଦିନ ଗର୍ଭରେ ଧରି ସେମାନଙ୍କୁ ଜନ୍ମଦେଇଛି ମୁଁ । ତମେ ନଦେଖି ଥିଲେ ଦେଖିଆସ । କଥାରେ କହନ୍ତିନି, ଅଦେଖିଲା ଦେଖ, କଚିମ କାଡିଚି ବେକ ......

ଦେବବ୍ରତ କିନ୍ତୁ ବହୁଦିନୁ ମନ ଭିତରେ ଘୋଳେଇ ଘାଣ୍ଟି ହେଉଥିବା ପ୍ରଶ୍ନର ଉତ୍ତର ପାଇ ବେଶ୍ ପ୍ରଫୁଲ୍ଲ ଦିଶୁଥିଲେ । ପଥର ଦିହରୁ ଗଛ ଯଦି ଜନ୍ମିପାରେ ଶୁଷ୍କ କଠିନ ଅତି ପ୍ରତିକୂଳ ପରିବେଶରେ ଜନ୍ମ ଗ୍ରହଣକରି ବି ଶିଶୁଟିଏ ବଡହୋଇ ପାରେ । ଏଇ କଣ୍ଟାବାଇଗଣ ଗଛପରି ସୁନ୍ଦର କୋମଳ ଓ ସବୁଜ ହୋଇ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିପାରେ ।

ସେ ସ୍ତ୍ରୀକୁ ଅପ୍ରସନ୍ନ କରିବାଲାଗି ଚାହୁଁ ନ ଥିଲେ, କିନ୍ତୁ ଚୁପ୍ ରହି ସେ ଯାହା ଆବିଷ୍କାର କରିଛନ୍ତି ତାର ଗୁରୁତ୍ୱ ଲାଘବ କରିବା ପାଇଁ ମଧ ଇଚ୍ଛା କରୁ ନଥିଲେ । ସେଥିପାଇଁ ପୁଣି ଥରେ କହିଲେ - ମୁଁ ସେକଥା କହୁଁନି ରମା, ମୋର କହିବାର ଉଦ୍ଦେଶ୍ୟ ହେଲା ଏହି ଯେ ଯଦି ପଥର ଦେହରୁ ଗଛ ବାହାରି ପାରିଲା, ତୁମ ପେଟରୁ ଜନ୍ମି ବି ଏଇ ଟୋକାଏ ଯଦି ଖରାପ ହେବେ କଅଣ କରି ପାରିବ ? ସବୁ ଭାଗ୍ୟଫଳ ... ଭାଗ୍ୟଂ ଫଳତି ସର୍ବତ୍ର ।

ଆଜିଯାଏ ସମସ୍ତଙ୍କ ସହିତ ଲଢିଛନ୍ତି ଦେବବ୍ରତ, କିନ୍ତୁ ଏଇ ଭାଗ୍ୟ ସହିତ ଲଢିବା କଥା ମନରେ ଉଠିଲେ ଝାଳେଇ ଯାଆନ୍ତି ସେ । କର୍ମଫଳ ଭୋଗ କରିବାକୁ ହେବ । ପ୍ରାରବ୍ଧ ଏଡି ଯିବାର ଉପାୟ ନାହିଁ । ଆଜି ବଡପୁଅ ଯଦି ବାବାଜି ହୋଇ ବୁଲୁଥାଏ ବା ସାନପୁଅ ଗୁଣ୍ଡାଗିରି କରି ବ୍ୟବସାୟୀମାନଙ୍କଠାରୁ ଚାନ୍ଦାଆଦାୟ କରୁଥାଏ - ଏହା ସେମାନଙ୍କର କର୍ମଫଳ ପ୍ରାରବ୍ଧ ଭାଗ୍ୟଲିପି; କେହି ପୋଛିଦେଇ ପାରିବ ନାହିଁ । ବଡ଼ପୁଅର କୋଷ୍ଠୀ ଗଣନା କରି ଜଣେ ଜ୍ୟୋତିଷୀ କହିଥିଲେ ଯେ ସେ ଆଇ.ଏ.ଏସ୍. ଅଫିସର୍ ହେବ । ଦୁଇଥର ବାହାହେବ । ପାଞ୍ଚଟି ପିଲାର ବାପା ଓ ଧନ ଜନ ଗୋପଲକ୍ଷ୍ମୀର ମାଲିକ ହେବ । କିନ୍ତୁ ସବୁ ପାଣି ଫୋଟକା ପରି ଫାଟିଗଲା । ପାଣିର ଗାର ପରି ଜ୍ୟୋତିଷୀଙ୍କର ସବୁ ଗଣନା ଲିଭିଗଲା । ବଡ଼ପୁଅ ଏମ୍.ଏ. ପରୀକ୍ଷା ନ ଦେଇ ଦିନେ ମଧ୍ୟରାତ୍ରିରେ

ଗୌତମଙ୍କ ପରି ପରିବାର, ସୁଖ ସମ୍ଭୋଗର ମୋହ ପରିତ୍ୟାଗ କରି କେଉଁଆଡ଼େ ଚାଲିଗଲା । ରମାଦେବୀ ଅନେକ କାନ୍ଦିଲେ । ଅନେକ ନେହୁରା ହୋଇ କହିଲେ ତାଙ୍କୁ ପୁଅର ଫଟୋ ଖବର କାଗଜରେ ଛାପି ତାକୁ ଫେରି ଆସିବାକୁ ଅନୁରୋଧ କରିବା ପାଇଁ, ପୋଲିସକୁ କହି ତାର ସନ୍ଧାନ କରିବା ପାଇଁ । କିନ୍ତୁ ଏସବୁ କିଛି କଲେ ନାହିଁ ସେ । ଯିଏ ଯିବ ତାକୁ ବାନ୍ଧି ରଖି ହେବନାହିଁ । ପ୍ରତ୍ୟେକ ଲୋକ ନିଜର ଭାଗ୍ୟ ନେଇ ଜନ୍ମିଛି । ସେଥିପାଇଁ ପରା କହନ୍ତି - ପୂର୍ବାର୍ଜିତ ଯଦା ବିଦ୍ୟା, ପୂର୍ବାର୍ଜିତ ଯଦା ଧନ ପୂର୍ବାର୍ଜିତ ଯଦା କନ୍ୟା ଅଗ୍ରେ ଧାବତି ଧାବତି । ପୂର୍ବଜନ୍ମରେ ଯାହା ଅର୍ଜନ କରିଛି ତାକୁ ଭୋଗ ନ କରି ପଳେଇ ଯିବା ଅସମ୍ଭବ । ଦଇବ ଦଉଡ଼ି ମଣିଷ ଗାଈ ଯେଣିକି ଟାଣଇ ତେଣିକି ଯାଇ... ।

ରମା କହିଲେ - ସେଇ ଚାକିରି ଚାକିରି କରି ତିରିଶ ବର୍ଷ ବିତେଇ ଦେଲ । ଆଉ ଦୁଇବର୍ଷ ପରେ ଅବସର ନବ । ସେତେବେଳେ ଦେଖିବି ଯେ କଅଣ କରିବ ? ସେତେବେଳେ ଯଦି ତୁମ ଦେହରୁ ଯୌବନର ଦୀପ୍ତି ବାହାରେ ମୁଁ ଜାଣିବି ଯେ ତୁମେ ଯୋଗଜନ୍ମା, ନିର୍ବିକାର, ନିର୍ଲିପ୍ତ, ପରମପୁରୁଷ..... ।

ହଠାତ୍ ଠୋ ଠୋ କରି ହସି ପକାଇଲେ ଦେବବ୍ରତ । ତାଙ୍କର ହସର ଲହରି କାନ୍ଥରେ, ଛାତରେ, କବାଟରେ, ଖୁଣ୍ଟରେ ବାଜି ଫେରିଆସିଲା ପ୍ରତିଧ୍ୱନି ହୋଇ ।

ରମା ମୁହୂର୍ତ୍ତେ ଅବାକ୍ ହୋଇ ଅନାଇ ରହିଲେ । ତା'ପରେ ତାଙ୍କ ମୁହଁରେ ବି ହସ ଫୁଟିଲା । ସେ ମୁଗ୍ଧ ପୁଲକିତ ଚିତ୍ତରେ ଅନାଇ ରହିଲେ ସ୍ୱାମୀ ଆଡ଼କୁ । ସଚରାଚର ହସନ୍ତି ନାହିଁ ଦେବବ୍ରତ, ବହୁଦିନ ପରେ ପ୍ରଥମ ଏଇ ମନଖୋଲା ହସ ହସିଲେ ସିଏ ।

ଟିକେ ପରେ କହିଲେ ସେ - ବାପା ହେଲ କାହିଁକି ? ପିଲାଙ୍କ କଥା ଯଦି ଇମିତି ହସରେ ଉଡ଼େଇଦବ କିଏ ବୁଝିବ ସଂସାର କଥା । ମୁଁ ତ ଥଳକୂଳ ପାଉନି... ଅକାତ ପାଣିରେ ଭାସୁଛି ।

ହସିବା ପରେ କାନ୍ଦିବାକୁ ହୁଏ ବୋଲି ନା କଅଣ ରମାଙ୍କର ଶେଷ ପଦକ କାନ୍ଦିବା ପରି ଶୁଣାଗଲା ।

କଅଣ କରିବେ ଦେବବ୍ରତ ? ବଡ଼ ପୁଅକୁ ଫେରାଇ ଆଣିବାପାଇଁ ବୃଥା ଚେଷ୍ଟା ନ କରି ସେ ଯେଉଁ ପଥରେ ଯାଇଛି ସେଇ ପଥ ସୁଗମ ହେଉ, ସେ ନକଲି ବାବାଜି ନ ହୋଇ ଈଶ୍ୱରଙ୍କ ସଚ୍ଚା ଭକ୍ତ ହେଉ, ସାଧୁ ହେଉ, ସିଦ୍ଧ ହୋଇ.....

ଆଣ ପ୍ରଣବ କଥା ଭାବନ୍ତିନି ଦେବବ୍ରତ । ସେ ତା' ବାଟରେ ଯାଉ, ନଦୀ ଯେମିତି ନିଜ ବାଟରେ ଯାଏ... କେହି ତା'ର ଗତିରୋଧ କରିପାରେ ନାହିଁ ।

ଆଉ ପାର୍ଥ ବି ଚାଲିଛି ନିଜ ବାଟରେ... ପ୍ରଣବର ଠିକ୍ ବିପରିତ ବାଟରେ । ଏମ୍.ଏସ୍.ସି. ଶେଷକଲା, ସେକେଣ୍ଡ କ୍ଲାସ ପାଇଲା, ଇଚ୍ଛା କରିଥିଲେ ମାଷ୍ଟର ବା କିରାଣି ହୋଇପାରିଥାନ୍ତା, କିନ୍ତୁ ହେଲାନାହିଁ ସିନେମା ଦେଖିବା, ନେତା ବନିବା, କ୍ଲବ ଗଢ଼ିବା, ନିଜ ଦଳପାଇଁ ଲଢ଼ିବା, ଚାନ୍ଦା ଆଦାୟ କରିବା ତା'ର କାମ । ସେଥିପାଇଁ ବଦନାମ୍ ବଢୁଛି । ବଜାରର ବ୍ୟବସାୟୀମାନେ ତାଙ୍କ ପାଖରେ ତା' ବିରୁଦ୍ଧରେ ନାଲିସ୍ ମଧ କରିଛନ୍ତି । ସେ କୁଆଡ଼େ ଗୁଣ୍ଡା, ଯୁଆ ଖେଳେ, ମଦ ଖାଏ, ଚାକୁ ଚଳାଏ....

ସବୁ କର୍ମଫଳ । ସେ କଅଣ ଚାହିଁନଥିଲେ ଦୁଇ ପୁଅକୁ ବଡ଼ ବଡ଼ ପଦବୀରେ ଦେଖିବା ପାଇଁ, କିନ୍ତୁ ହେଲା ନାହିଁ ।

ପାର୍ଥ ପାଇଁ କିନ୍ତୁ ନିଶ୍ଚିନ୍ତ ହୋଇପାରନ୍ତି ନାହିଁ ଦେବବ୍ରତ । ଇମିତି ଉଚ୍ଚଶିକ୍ଷିତ ବୁଦ୍ଧିମାନ ପିଲା ଯଦି ଅବାଟରେ ଯାଏ କିଏ କଅଣ କରିପାରିବ ? ସେ କିଛି ଦିନ ମଧ୍ୟରେ ପୁଣି ସ୍ତ୍ରୀଙ୍କ ଅନୁରୋଧ ଭୁଲିଗଲେ, ପୁଅମାନଙ୍କ କଥା ଆଉ ସବୁବେଳେ ମନେପଡ଼ିଲା ନାହିଁ, ଫାଇଲ ଭିତରେ ହଜେଇଦେଲେ ନିଜକୁ ।

ସକାଳରୁ ସନ୍ଧ୍ୟାଯାଏ ଅଫିସ୍‌ରେ କାମ କରି ଘରକୁ ଫେରିବା ବେଳକୁ ଦେହରେ ମନରେ ଆଉ ଉତ୍ସାହ ନ ଥାଏ ଅନ୍ୟ କିଛି କରିବାପାଇଁ । ତଥାପି କେବେ କେବେ ବଜାର ଯିବାକୁ ହୁଏ, ଡାକ୍ତରଙ୍କ ପାଖକୁ ପରାମର୍ଶ କରିବା ପାଇଁ ଯିବାକୁ ହୁଏ । ବନ୍ଧୁ ବାନ୍ଧବଙ୍କୁ ସମ୍ଭାଳିବାକୁ ହୁଏ । ଏଇ କେତେକ ଅଫିସର୍ କାମ ବଢ଼ିଛି ଯେ ଆଉ ଫୁରୁସତ୍ ପାଇନାହାନ୍ତି ଦେବବ୍ରତ ଅନ୍ୟ କିଛି କରିବା ପାଇଁ । ବନ୍ଦୋବସ୍ତ ସହିତ ଚକବନ୍ଦୀ କାମ ଶୀଘ୍ର ଶେଷ କରିବାଲାଗି ସରକାର ତାଗିଦ୍ କଲେଣି କେତେଥର । ବନ୍ଦୋବସ୍ତ ଅଫିସରଙ୍କ ସହିତ ରେକର୍ଡ଼ପତ୍ର ଧରି ପରୀକ୍ଷାନିରୀକ୍ଷା, ମାପ କରିବାରେ ସମୟ ସରିଯାଉଛି ।

ସେଦିନ ଘରକୁ ଫେରୁ ଫେରୁ ରାତି ନଅଟା । ପହଞ୍ଚିବାକ୍ଷଣି ରମା ତାଙ୍କ ହାତକୁ ଟେଲିଗ୍ରାମ୍ ଖଣ୍ଡେ ବଢ଼େଇଦେଇ କହିଲେ - ପଢ଼...। ବଡ଼ଶଳାଙ୍କ ବଡ଼ପୁଅର ବିବାହ ହଠାତ୍ ଠିକ୍ ହୋଇଯାଇଛି । ନିମନ୍ତ୍ରଣ କରିଛନ୍ତି ଯିବାପାଇଁ । ରମା କହିଲେ - ଭାଉଜ ରୋଗିଣୀ । ଭାଇନା ଏକା ଲୋକ । ଆମକୁ ଅପେକ୍ଷା କରୁଥିବେ ।

କାନମୂଳ ଆଉଁସି କହିଲେ ଦେବବ୍ରତ - ସବୁ ସତ ଯେ, କିନ୍ତୁ ଯିବା କେମିତି ? ଘରେ ପାର୍ଥ ନାହିଁ । କୁଆଡ଼େ ବୁଲୁଛି କିଏ ଜାଣେ... ତିନିଦିନ ହବ ଫେରିନି ରାତିରେ....

- ସେ ଫେରି ଆସିଲେ ଦାଣ୍ଡଘରେ ରହିବ... ମାମୁଁ ଘରକୁ ଯିବବୋଲି ତ କହୁଥିଲା । ଆମ ପଛେ ପଛେ ଠିକ୍ ସମୟରେ ଆସିଲେ ବରଯାତ୍ରୀ ହୋଇ ଯିବ ।

- କିନ୍ତୁ ଯଦି ନ ଆସେ ? କହିଲେ ଦେବବ୍ରତ ।

- ନ ଆସି ଯିବ କୁଆଡ଼େ ? କେତେଦିନ ବାହାରେ ବାହାରେ ବୁଲିବ ?

- ଶିକାର ଖୋଜୁଥିବ ସାଙ୍ଗମାନଙ୍କ ସହିତ । ଛି ଛି ଟୋକାଟା ନଷ୍ଟ ହୋଇଗଲା । ଆଉ ମୁଣ୍ଡ ଟେକି ଚାଲିପାରୁନି ରାସ୍ତାରେ । ଆଜି ଆସିବା ବାଟରେ ଗଣପତି ରାମ ଲୁହା ବେପାରୀ ସହିତ ଭେଟ ହୋଇଯିବାରୁ କଅଣ କହିଲା ଜାଣ ? ତାଙ୍କ ପେଟରେ ଛୁରୀ ଭୁଷିଦବ କହି ହଜାରେ ଟଙ୍କା ଜବରଦସ୍ତି ଆଦାୟ କରିନେଇଛି କ୍ରିକେଟ୍ ମ୍ୟାଚ୍ ପାଇଁ ।

- କିନ୍ତୁ ପାର୍ଥ କଲେଜରେ କେପ୍‌ଟେନ୍ ହୋଇଥିଲା ବୋଲି ତୁମେ ତ ତା'ର ପ୍ରଶଂସା କରୁଥିଲ....

- କେପ୍‌ଟେନ୍ ହେଲା ଭଲକଲା । କ୍ରିକେଟ୍ ଖେଳିବା ଖରାପ କଥା ନୁହେଁ । କିନ୍ତୁ ଲୋକଙ୍କୁ ଥରେଇ ହଲେଇ ଟଙ୍କା ଆଦାୟ କରିବା ଭଲ କଥା ନୁହେଁ । ଗଣପତି ରାମ ଚିହ୍ନାଲୋକ... ମୋ ପୁଅ ଜାଣି ପୁଲିସ୍‌ରେ ଏତାଲା ଦେଇନାହିଁ... ନହେଲେ ଏତେବେଳକୁ ଆମ ଘର ଖାନ୍‌ତଲାସ କରୁଥାଆନ୍ତା ପୁଲିସ୍... ।

ରମା କହିଲେ - ସେ'ତ ଚୋରି କରିନି । ଭଲକାମ ପାଇଁ ଚାନ୍ଦାନବା ଚୋରି ନୁହେଁ ।

ସ୍ତ୍ରୀଙ୍କ ସହିତ ଯୁକ୍ତି ନ କରି ଶଳା ପୁଅର ବାହାଘରେ ଯୋଗଦେବା ପାଇଁ ପ୍ରସ୍ତୁତ ହବା ପାଇଁ ମନଦେଲେ ଦେବବ୍ରତ । ଯିବି କହିଲେ ତ ଯାଇହୁଏ ନାହିଁ, ମାସ ଅଧା ପାର ହୋଇଲାଣି,

ହାତରେ ଯାହା ଅଛି ପରିବା ଓ ପାନ ଖର୍ଚ୍ଚକୁ ନିଅଣ୍ଟ । ସୁନା ମୁଦି ଗୋଟେ କିଣିଲେ ହଜାରେ ବାରଶହ ଲାଗିଯିବ । ବୋହୂ ଦେଖା ଆଉ କମ୍‌ରେ ହୋଇପାରିବ ନାହିଁ ।

ଆଉ ବିଶ୍ରାମ ନ କରି ପୁଣି ବଜାର ଆଡ଼େ ଚାଲିଲେ ଦେବବ୍ରତ । ରମା କହିଲେ- ବାଲି ଯିବ । ହାତରେ ଦୁଇଦିନ ତ ଅଛି କିନ୍ତୁ ସେ ନିଶ୍ଚିନ୍ତ ହୋଇ ବସି ନ ଯାଇ ବାହାରି ପଡ଼ିଲେ ପାଣି ଗିଲାସେ ପିଇସାରି ।

ଏଇ ରାସ୍ତାରେ ରାତି ବାରଟା ଗୋଟେରେ ଚାଲିଲେ କୁକୁର ଗୋଟେ ଭୁକୁ ନ ଥିଲା, ଏବେ କିନ୍ତୁ ଦିନ କାଳ ଖରାପ ହେଲାଣି, ଦଶଟା ବେଳକୁ ରାସ୍ତା ଶୂନ୍‌ଶାନ୍ ହୋଇଯାଉଛି । ସ୍ତ୍ରୀ ଲୋକ ଏକା ଯିବା ଆସିବା କରିବାକୁ ନିରାପଦ ମଣୁନାହାନ୍ତି । ଛତରା ଟୋକାଗୁଡ଼ା ରାସ୍ତା ଛକରେ, ନିଛାଟିଆ ସ୍ଥାନରେ, ପୋଲ ଉପରେ ଆଡ଼ା ଦିଅନ୍ତି ଅଧରାତି ଯାଏ ।  କାଳେ କାହାରି ହାବୁଡ଼ରେ ପଡ଼ିଯିବେ ବୋଲି ଝିଅବୋହୂ ସିନେମା ଦେଖା ବନ୍ଦ କଲେଣି ।

ଦେବବ୍ରତ ସରକାରୀ ଅଫିସର୍ ହୋଇ ବି ଡ଼ରିଯାଆନ୍ତି । ସମୟ ଯାହା ହେଲାଣି ପୈତୃକ ପ୍ରାଣ ପିଣ୍ଡରେ ରହିବା ଭାଗ୍ୟର କଥା । କଚେରିହତା ଭିତରେ ଦୁଇଟା ଝଙ୍କାଳିଆ ବରଗଛ ମୂଳେ ଅନ୍ଧାର ଠୁଳହୋଇଛି । ବତିଖୁଣ୍ଟରେ ଲାଇଟ୍ ନାହିଁ, କେହି ବଲ୍‌ବ୍ ଭାଙ୍ଗିଦେଇଛି କିମ୍ବା ଚୋରିକରି ନେଇଛି ।

ସାଇକେଲ୍ ସାଇଁ ସାଇଁ କରି ଚାଲିଗଲା । ଗଣପତି ରାମର ଗୋଦାମ ବନ୍ଦ ହୋଇ ନଥିଲା ସେତେବେଳ ପର୍ଯ୍ୟନ୍ତ । ଦେବବ୍ରତଙ୍କ କଥା ଶୁଣି କୌଣସି ଗୌରଚନ୍ଦ୍ରିକା ନକରି ଦେଢ଼ହଜାର ଟଙ୍କା ବଢ଼ାଇଦେଇ କହିଲା ସେ - ଆପଣ ସୁବିଧା ଅନୁସାରେ ଫେରେଇ ଦେବେ । ସୁଧ ଦବାକୁ ପଡ଼ିବ ନାହିଁ ଆପଣ ଉପକାରୀ ମଣିଷ ।

ଗଣପତି ରାମ ପାଖରୁ ବିଦାୟ ନେଇ ଟଙ୍କା ପକେଟ୍ ଭିତରେ ନିରାପଦରେ ରଖି ପୁଣି ସାଇକେଲ୍ ଚଲେଇଲେ ଦେବବ୍ରତ । ଯିବାବେଳେ ଗଣପତି କହିଲେ - ପୁଅକୁ ଟିକେ କଣ୍ଟ୍ରୋଲ କରନ୍ତୁ ତହସିଲଦାର ବାବୁ... ଏତେ ବଡ଼ ଲୋକର ପୁଅ... ଛତରା ବଦ୍‌ମାସଙ୍କ ସାଙ୍ଗରେ ମିଶୁଛି ...

ତାଙ୍କ କଥାଗୁଡ଼ା କାନରେ ଗୁଳି ଫୁଟିବା ଶବ୍ଦପରି ଶୁଭୁଛି । ସେ କେବଳ ଭାବିବାରେ ଲାଗିଛନ୍ତି ପୁଅ କଥା । ପାର୍ଥ ଶେଷରେ ଗୁଣ୍ଡା ହୋଇଗଲା, ଅସାମାଜିକ ହୋଇଗଲା.... ଆଇନର ହାତ ଅନେକ ଲମ୍ବା..... ଧରାପଡ଼ିଲେ କେହି ମୁକୁଳାଇ ପାରିବେନାହିଁ ।

କଚେରିହତା ଆଗରେ ରାସ୍ତାଟା ଲମ୍ବିଯାଇଛି ଆଗକୁ । ଯିବାବେଳେ କଚେରିହତା ଭିତରେ ବରଗଛ ମୂଳେ ଅନ୍ଧାର ଠୁଳ ହୋଇଥିଲେ ବି ରାସ୍ତାରେ ଆଲୁଅ ଥିଲା । ଏଇ ଆଲୁଅ ହିଁ ନିଷ୍ଚୟତାର ସାକ୍ଷୀ । ଏଇ ଆଲୁଅ ଦେଖିଲେ ସାହସ ଆସେ ମନରେ । କିନ୍ତୁ ହାୟ ! ଯିବା ବେଳର ଆଲୁଅ ନଥିଲା ରାସ୍ତାର ବତି ଖମ୍ବରେ ।  କିଏ ଲିଭେଇଦେଲା ଏତେ ଶୀଘ୍ର ବା ପଥର ମାରି ବଲ୍‌ବ ଭାଙ୍ଗିଦେଲା ଜାଣିବା ମୁସ୍କିଲ୍ । ଏଇ ବାଲେଶ୍ବର ସହରରେ ଦୁଇବର୍ଷ ଆଗରୁ ଉତ୍ପାତ ନଥିଲା କି ଏପରି ଅସାମାଜିକ କାର୍ଯ୍ୟ ଆଖିରେ ପଡୁନଥିଲା । ହଠାତ୍ ପରିବେଶ ବଦଳିଗଲା କେମିତି ? ଲୋକ ଚରିତ୍ର କଅଣ ଏତେ ଶୀଘ୍ର ବଦଳିଯାଏ ? ଆଗେ କେହି ଅପରାଧ କରୁଥିଲେ ସମାଜ ତାକୁ ଦଣ୍ଡ ଦେଉଥିଲା, ସେଥିରେ ବ୍ୟକ୍ତିବିଶେଷଙ୍କର ଚରିତ୍ର ସଂଶୋଧନ ହୋଇଯାଉଥିଲା । ଏବେ କଅଣ ହୋଇଛି କେଜାଣି, ଆଉ ଚରିତ୍ର ଉପରେ କେହି ଜୋର୍ ଦେଉନାହିଁ, ସଂଶୋଧନ କରିବା ଆବଶ୍ୟକ ହେବନାହିଁ ଅପରାଧ ସାମାଜିକ କାର୍ଯ୍ୟର ଅଙ୍ଗ ହୋଇଗଲାଣି । ସମାଜ ଅପରାଧୀକୁ ଦଣ୍ଡ ଦେଇପାରୁନି । ସମାଜ

ଯେଉଁମାନଙ୍କ ନିର୍ଦ୍ଦେଶରେ ଚାଲେ ସେମାନେ ନିଜକୁ ସୁହାଇଲା ଭଳି କାର୍ଯ୍ୟରେ ସମାଜକୁ ଲଗାଉଛନ୍ତି... ଯେମିତି ତାଙ୍କ ପୁଅ ପାର୍ଥ ଗୁଣ୍ଡାମି କରି ବୁଲୁଛି ସହରରେ, ଡରି ମରି କେହି ତାକୁ ଧରୁ ନାହାନ୍ତି, ତା' ନାମରେ ଅଭିଯୋଗ କରୁନାହାଁନ୍ତି, ତାକୁ ଶାସ୍ତି ଦେଉ ନାହାନ୍ତି ।

ଦେବବ୍ରତ ନିର୍ଭୟରେ ରାତି ଅଧରେ ଏଇ ବାଟରେ କେତେଥର ଯାଆଆସ କରିଛନ୍ତି, କିଛି ହୋଇନାହିଁ । ଆଜି କାହିଁକି କେଜାଣି କଚେରିହତା ପାଖ ହବାକ୍ଷଣି ଛାତି ଭିତରଟା ଧଡ଼୍‌କରି ଉଠିଲା । ସେ ଜୋର୍‌ରେ ପ୍ୟାଡ଼େଲ୍ ଘୂରେଇବା ପାଇଁ ଚେଷ୍ଟା କଲେ । ହଠାତ୍ କିନ୍ତୁ ସେଇ ଅନ୍ଧାରୁଆ ସ୍ଥାନରେ ଚେନ୍‌ଟା ଖୋଲିଗଲା, ସାଇକେଲ୍ ଚକ ବନ୍ଦ ହୋଇଗଲା ।

ଦେବବ୍ରତ ଓହ୍ଲେଇ ପଡ଼ିଲେ ସାଇକେଲ୍‌ରୁ । ସନ୍ଧ୍ୟାବେଳେ ଘରୁ ବାହାରିଲେ ଟର୍ଚ୍ଚ ଖଣ୍ଡିକ ସାଙ୍ଗରେ ନିଅନ୍ତି ସେ । ବ୍ୟାଗ୍ ଅଣ୍ଡାଳିଲେ, ତରତରରେ ବାହାରି ଆସି ଥିବାରୁ ଟର୍ଚ୍ଚ ଆଣି ନଥିଲେ ଆଜି ।

ଚେନ୍‌ଟାକୁ ଲଗାଇବା ଆଗରୁ ପକେଟ୍ ଭିତରୁ ଟଙ୍କାତକ ବାହାର କରି ଗେଞ୍ଜି ତଳେ ଛାତି ଉପରେ ରଖିଦେଲେ । କେହି ଅନ୍ଧାରରେ ଥଳିରେ ହାତ ପକେଇ ଦେଲେ ବି ଟଙ୍କା ପାଇବ ନାହିଁ ଛାତି ତଳର ସ୍ପନ୍ଦନ ସହିତ ଟଙ୍କା ଅଙ୍କଟା ପ୍ରତି ମୁହୂର୍ତ୍ତରେ ଗଣିବାକୁ ଲାଗିଲେ ଦେବବ୍ରତ ।

ଚେନ୍‌ଟା ଲଗାଇବାବେଳେ ପଛରୁ ପାଦ ଶବ୍ଦ ଶୁଣାଗଲା । ସେ ସତର୍କ ହୋଇଯାଇ କହିଲେ, କିଏ ସେ ? ହଠାତ୍ ଝପାଝପ୍ ତିନି ଚାରିଜଣ ଲୋକ ଦୌଡ଼ିଆସି ତାଙ୍କ ଉପରେ ମାଡ଼ି ବସିଲେ ଏବଂ ଜଣେ ଲୁଗାଚାପି ତାଙ୍କ ମୁହଁ ବନ୍ଦ କରିଦେଲା । ଦେବବ୍ରତ ଆତଙ୍କରେ ଶିହରି ଉଠି ଦୁଇହାତ ଛାତି ଉପରେ ଜାକି ରଖିଲେ ।

ତାଙ୍କ ଛାତି ଉପରେ ଛୁରୀର ମୁନ ଚାପି କହିଲା ଜଣେ କର୍କଶ କଣ୍ଠରେ - ଯାହା ଅଛି ଦେଇଦେ ଶଳା ହାରାମଜାଦା - ନହେଲେ ଛାତିରେ ଭୁଷିଦେବି ଛୁରୀ ।

ଦେବବ୍ରତ ଭାବିଲେ ସେ କେଉଁଠି ଟଙ୍କା ରଖିଛନ୍ତି ବୋଧହୁଏ ଦୁର୍ବୃତ୍ତ ଜାଣିଯାଇଛି, ନହେଲେ ପେଟଉପରେ କି ମୁହଁ ଉପରେ ଛୁରୀର ମୁନ ନ ରଖି ଛାତି ଉପରେ ରଖନ୍ତା କାହିଁକି ? ସେତେବେଳେ ତାଙ୍କ ବାମହାତ ମଣିବନ୍ଧରୁ ଏଚ୍.ଏମ୍.ଟି ଘଣ୍ଟାଟି ଜୋର୍‌କରି ଟାଣି ନେଇଥାଏ ଜଣେ ଏବଂ ଆଉ ଜଣେ ବହୁବର୍ଷ ପରେ ପାଇଥିବା ତାଙ୍କ ବାହାଘର ମୁଦିଟି ଖୋଲିବାକୁ ଚେଷ୍ଟା କରୁଥାଏ ଆଙ୍ଗୁଳିରୁ । ପଚିଶବର୍ଷ ତଳେ ଏଇ ମୁଦି ପିନ୍ଧିଥିଲେ ଦେବବ୍ରତ । ଘୋରିଗଲେ ବି ଛୋଟ ହୋଇ ମାଂସ ଭିତରେ ମାଡ଼ି ବସିଥିଲେ ବି ସେ ଖୋଲି ନଥିଲେ କେବେ । ଲୋକଟା ମୁଦି ଖୋଲିବା ପାଇଁ ଏଡ଼େ ଜୋର୍‌ରେ ଟାଣିଲା ଯେ ଯନ୍ତ୍ରଣାରେ ସେ ଚିତ୍କାର କରି ଉଠିଲେ । ଆଉ ସେଇ ମୁହୂର୍ତ୍ତରେ ଛୁରୀଟା ଛାତି ଉପରେ ଚାପିବାବେଳେ ସେ ଅତର୍କ୍ଷ ହୋଇ ନୋଟ ବିଡ଼ା ବାହାର କରୁ କରୁ ଛୁରୀର ମୁନଟା ଗଳିଗଲା ଠିକ୍ ବେକତଳେ....

ତା'ପରେ ଆଉ ତାଙ୍କର ମନେ ନାହିଁ କଅଣ ହେଲା.... କିଏ ତାଙ୍କୁ ହସ୍‌ପିଟାଲକୁ ଆଣିଲା । ସେ ଘରକୁ ଫେରିବା ଲୋକ, କିନ୍ତୁ ରାତିସାରା ପଡ଼ିରହିଲେ ଡାକ୍ତରଖାନାରେ । ସକାଳେ ଆଖି ଖୋଲିଲାବେଳକୁ ତାଙ୍କ ମୁହଁ ଉପରେ ରମାଙ୍କର ଉତ୍କଣ୍ଠିତ ମୁହଁ ଦେଖି ସେ କମ୍ପିତ କଣ୍ଠରେ କହିଲେ - ସବୁ ଚେଷ୍ଟା ବ୍ୟର୍ଥ ହୋଇଛି ରମା । ମୋତେ ମାରିଦେଇଥିଲେ ମୁଁ ଶାନ୍ତିପାଇଥାନ୍ତି, କିନ୍ତୁ ଏଇନେ ପନ୍ଦରଶହ ଟଙ୍କା କୋଉଠୁ ଆଣିବି ଯେ ତମେ ଭାଇନାଙ୍କ ପୁଅ ବାହାଘରକୁ ଯିବ ।

ରମା ତାଙ୍କ ମଥା ଉପରେ ହାତ ବୁଲାଇଆଣିଲ ଫିସ୍ ଫିସ୍ କରି କହିଲେ - ଆଉ କିଛି ଚିନ୍ତା ନାହିଁ - ପାର୍ଥ ଫେରିଆସିଛି । ପନ୍ଦରଶହ ଟଙ୍କାର ନୋଟ୍ ବିଡ଼ା ମୋ ହାତକୁ ବଢ଼େଇ ଦେଇ ପ୍ରତିଜ୍ଞା କରିଛି ଯେ ସେ ଆଉ ସେ ବାଟରେ ଯିବନାହିଁ ।

# ଅନ୍ୟ ପୃଥିବୀ

**ନନ୍ଦିନୀ ଶତପଥୀ**

ସାନ୍ତାକ୍ରୁଜ ବିମାନଘାଟୀରେ ଉଡାଜାହାଜ ଅବତରଣ କରିବାକୁ ଆଉ ଅଳ୍ପ ସମୟ ଅଛି । ତରବରରେ ଛୋଟ ହାତ ବ୍ୟାଗ୍‌ଟି ଧରି ଜୟଶ୍ରୀ ଟଏଲେଟ୍ ଭିତରକୁ ପଶିଗଲା । ବିମାନର ଯାତ୍ରୀମାନେ ସମସ୍ତେ ବି ଚଞ୍ଚଳ ହୋଇ ଉଠିଛନ୍ତି । ଛୋଟ ଛୋଟ ଜିନିଷ, ମ୍ୟାଗାଜିନ୍, ବକ୍ଷମା ଇତ୍ୟାଦି ଯଥାସ୍ଥାନରେ ରଖିଦେବା ପାଇଁ ସମସ୍ତେ ବ୍ୟସ୍ତ । ଏୟାର୍ ହୋଷ୍ଟେସ୍ ଏବଂ ଷ୍ଟୁଆର୍ଡମାନେ ମଧ୍ୟ ଥରକୁ ଥର ବିଭିନ୍ନ ଯାତ୍ରୀମାନଙ୍କ ପାଖକୁ ଆସି ସୁବିଧା ଅସୁବିଧା ବୁଝି ଯାଉଛନ୍ତି । ଅନେକ ସିଟ୍ ଉପରର ନାଲି ଆଲୁଅ ଜଳି ଥରକୁ ଥର ସେମାନଙ୍କୁ ସଙ୍କେତ ଦେଉଛି ।

ଦୀର୍ଘ ସାତବର୍ଷ ପରେ ସେ ଦେଶକୁ ଫେରୁଛି । ଏଇ ସାତ ବର୍ଷ ଭିତରେ ଦେଶରେ କେତେ ପରିବର୍ତ୍ତନ ହୋଇଗଲାଣି । ବିଦେଶ ସମ୍ବାଦପତ୍ରରୁ ସେ କିଛି କିଛି ଜାଣିଛି । କିନ୍ତୁ ସାଧାରଣ ଲୋକଙ୍କର କ'ଣ ପରିବର୍ତ୍ତନ ହୋଇଛି, ସେ କଥା ସମ୍ବାଦ ପତ୍ରରୁ ଜାଣିବାର ଅବକାଶ ନ ଥାଏ । ଦେଶରେ ଥିଲାବେଳେ ତ ବୁଝି ହେଉ ନଥିଲା ଆଉ ବିଦେଶର କାଗଜରୁ ବା ଜାଣିବ କଣ ?

ଅନେକ ଭାବନା ମନରେ ଖେଳିଯାଉଛି । ଛାଡି ଯାଇଥିବା ଆପଣାର ଲୋକ ଓ ଗାଁ ଭୂଇଁକୁ ଦେଖିବା ପାଇଁ ମନରେ ଗୋଟାଏ ପ୍ରକାର ଉଦ୍‌ବେଗ ହେଉଛି । ପୁଣି ଏକ ପ୍ରକାର ଜୀବନଯାତ୍ରା ସହିତ ନିଜକୁ ଏତେ ଦିନ ଧରି ଖାପ ଖୁଆଇ ନେଲା ପରେ ଆଉ ଥରେ ପୁରୁଣା ଢଙ୍ଗରେ ଚଳି ହେବ କି ନାହିଁ ସେଥିରେ ବି ସନ୍ଦେହ ହେଉଛି ।

ବିମାନ ଅବତରଣ କରିବାର ସଙ୍କେତ ଘଣ୍ଟି ବାଜିଉଠିଲା । ପୋଷାକ ବଦଳାଇ ତରବରରେ ଜୟଶ୍ରୀ ଟଏଲେଟ୍ ଭିତରୁ ବାହାରି ଆସିଲା ବେଳକୁ ବିମାନ ଭିତରର ବଡ ଲାଇଟ୍ ଗୁଡିକ ଲିଭି ଗଲାଣି । ନିଜ ସିଟ୍ ପାଖରେ ପହଞ୍ଚିଲା କ୍ଷଣି ସେହି ସ୍ୱଳ୍ପାଲୋକ ଭିତରେ ତାକୁ ଦେଖି ହଠାତ୍ ଚମକି ପଡିଲା ରୁବେନା । ଚନ୍ଦନ ବି ଲକ୍ଷ୍ୟ କଲା ତାକୁ । କୌଣସି ଭାବାନ୍ତର ନ ହେଲେ ମଧ୍ୟ ତା' ମୁହଁରେ ଏକ ମୃଦୁ ହାସ୍ୟର ରେଖା ଖେଳିଗଲା ।

ଅମାବାସ୍ୟାର ଅନ୍ଧକାର ଭେଦ କରି ବମ୍ବେ ନଗରୀର ଉଜ୍ଜ୍ୱଳ ଆଲୋକମାଳାକୁ ନିରୀକ୍ଷଣ କରୁଥିବା ରୁବେନାର ଚକ୍ଷୁଦ୍ୱୟ ବର୍ତ୍ତମାନ ଜୟଶ୍ରୀ ଉପରେ ସ୍ଥିର । ଜୟଶ୍ରୀ ସ୍ଲାକ୍‌ସ ବଦଳାଇ ଶାଢୀ ପିନ୍ଧିଛି ସେ ପୁଣି ମୋଟା ଖଦଡ ଶାଢୀ । ମୁହଁର ସବୁ ମେକ୍‌ଅପ୍ ଏକାଥରେ ପୋଛି ସଫା କରିଦେଇଛି । ଚନ୍ଦନ ପାଖରେ ଜୟଶ୍ରୀର ଏ ବେଶ ନୂତନ ନ ହେଲେ ମଧ୍ୟ ରୁବେନା ପାଇଁ ଏକାଥରେ ନୂଆ । ଜୟଶ୍ରୀ ସହିତ ନ୍ୟୁୟର୍କରେ ତା'ର ପରିଚୟ ହେବା ଦିନଠାରୁ ବିନା ମେକ୍‌ଅପ୍‌ରେ କେବେ ତାକୁ ସେ ଦେଖିନାହିଁ । ଅବଶ୍ୟ ଥରେ ଅଧେ ଯେ ତାକୁ ଶାଢୀ

ପିନ୍ଧିବାର ନ ଦେଖିଛି ଏପରି ନୁହେଁ କିନ୍ତୁ ସେ ସିଫନ୍ କିମ୍ବା ଜର୍ଜେଟ ଶାଢୀ ।

ସିଗାରେଟ୍ ଲିଭାଇ ବେଲ୍ଟ ବାନ୍ଧିବା ପାଇଁ ମାଇକ୍‌ରେ ଘୋଷଣା କରାଯାଉଛି । ବମ୍ବେ ବିମାନ ବନ୍ଦରର ତାପମାତ୍ରା ମଧ୍ୟ ଘୋଷିତ ହେଉଛି । ଜୟଶ୍ରୀ, ଚନ୍ଦନ ଓ ରୁବେନା ମଝିରେ ଥିବା ତା'ର ସିଟ୍‌ରେ ବସିଯାଇ ବେଲ୍ଟ ବାନ୍ଧିଲା ।

ସେତେବେଳ ଯାଏଁ ରୁବେନା ତାକୁ ସେହିପରି ଚାହିଁ ରହିଛି । ଘୋଷଣା ବନ୍ଦ ହେବା କ୍ଷଣି ହସି ହସି ଜୟଶ୍ରୀ କହିଲା - ଏପରି ଆଶ୍ଚର୍ଯ୍ୟ ହୋଇ କଣ ଦେଖୁଛ ? 'ତୁମକୁ' - କହିଲା ରୁବେନ୍ । ଏପରି ପୋଷକରେ ତୁମେ ଏକା ବେଳକେ ଅଲଗା ପ୍ରକାର ମନେ ହେଉଛ ।'

ଜୟଶ୍ରୀ ହସି ହସି ପଚାରିଲା, 'କେମିତି ମନେ ହେଉଛି ?' ହଠାତ୍ ଗମ୍ଭୀର ହୋଇଗଲା ରୁବେନା । ଗୋଟାଏ ସୁନ୍ଦର ବ୍ୟକ୍ତିତ୍ୱ - ଯାହା ଆରୋପିତ ନୁହେଁ, ସ୍ୱତଃସ୍ଫୂର୍ତ୍ତ !

ଏତେବେଳ ଯାଏଁ ନୀରବରେ ଦୁଇଜଣଙ୍କ କଥା ବାର୍ତ୍ତା ଶୁଣି ଉପଭୋଗ କରୁଥିଲା ଚନ୍ଦନ । ରୁବେନାର ମନ୍ତବ୍ୟ ଶୁଣି ସେ କହିଲା, 'ହଁ ତୁମେ ଠିକ୍ କହିଛ । ବିବାହ ପୂର୍ବରୁ ଜୟଶ୍ରୀ ସବୁବେଳେ ଏହିପରି ଦିଶୁଥିଲା । ବର୍ତ୍ତମାନ ଭାରତବର୍ଷକୁ ଆସୁଥିବାରୁ ଓ ପୁଣି ପୁରୁଣା ଅବସ୍ଥାକୁ ଫେରିଆସିବାକୁ ଚେଷ୍ଟା କରୁଛି ।

ରୁବେନା ଆଶ୍ଚର୍ଯ୍ୟ ହୋଇ ଚନ୍ଦନକୁ ଚାହିଁଲା । 'କିନ୍ତୁ ତୁମେ ତ ଯେପରି ଆସିଥିଲ, ଠିକ୍ ସେହିପରି ଭାବରେ ଓହ୍ଲାଇବାକୁ ଯାଉଛ ବମ୍ବେ ବିମାନ ଘାଟିରେ ।'

ହଁ, ରୁବେନା ମୁଁ ଏଠାରୁ ବିମାନରେ ଚଢିଥିଲା ବେଳେ ମଧ୍ୟ ଏହିଭଳି ବେଶରେ ଯାଇଥିଲି । ମୋର ଆଉ କିଛି ପରିବର୍ତ୍ତନ କରିବାର ଦରକାର ନାହିଁ ।' ଚନ୍ଦନର କଥାରେ ସାମାନ୍ୟ ଆଘାତ ପାଇଲା ଜୟଶ୍ରୀ ।

ଚନ୍ଦନ ଓ ଜୟଶ୍ରୀ ବିବାହର ମାତ୍ର ପନ୍ଦର ଦିନ ପରେ ଦେଶ ଛାଡି ଯାଇଥିଲେ । ବିଦେଶରେ କାମ କରୁଥିବା ଇଞ୍ଜିନିୟର ଚନ୍ଦନ ବିବାହ କରିବାକୁ ଆସିଥିଲା ଦେଶକୁ । ଉଚ୍ଚଶିକ୍ଷିତ, ଉଚ୍ଚ ପଦବୀରେ ଅଧିଷ୍ଠିତ ସୌମ୍ୟ ଦର୍ଶନ ଯୁବକ ଚନ୍ଦନକୁ ସ୍ୱାମୀ ରୂପେ ପାଇବା ପାଇଁ ବହୁ ବିଦେଶୀ ତରୁଣୀ ଆଗ୍ରହୀ ଥିଲେ । କିନ୍ତୁ ଚନ୍ଦନର ରୁଚି ଥିଲା ଭିନ୍ନ ପ୍ରକାରର । ଦୀର୍ଘ କାଳ ବିଦେଶ ବାସ ଭିତରେ ତାର କୌଣସି ବାନ୍ଧବୀକୁ ପତ୍ନୀ ରୂପରେ ଗ୍ରହଣ କରିବାକୁ ସେ ଚାହିଁନଥିଲା ! ସେଥିପାଇଁ ପିତାମାତାଙ୍କ ନିର୍ଦ୍ଦେଶ ପାଇବା କ୍ଷଣି ସେ ଭାରତକୁ ଚାଲି ଆସିଥିଲା ବିବାହ କରିବା ପାଇଁ ।

କିନ୍ତୁ ଚନ୍ଦନର ପିତାମାତା ରକ୍ଷଣଶୀଳ ନଥିଲେ । ଆଧୁନିକ ଉଚ୍ଚ ଶିକ୍ଷିତ ପୁଅର ମତାମତ ନନେଇ ସେ ନିଜର ଇଚ୍ଛାକୁ ତା'ଉପରେ ଚାପି ଦେଇ ନାହାଁନ୍ତି । ଯେଉଁ ଦୁଇ ତିନୋଟି ଝିଅକୁ ସେମାନେ ପସନ୍ଦ କରିଥିଲେ, ଚନ୍ଦନକୁ ସେମାନଙ୍କ ବିଷୟରେ କହିଛନ୍ତି । ସମସ୍ତଙ୍କୁ ଦେଖି ଏବଂ କଥାବାର୍ତ୍ତା କରି ଶେଷରେ ଏକ ସଂପୂର୍ଣ୍ଣ ଭିନ୍ନ ପାରିବାରିକ ପୃଷ୍ଠଭୂମିରୁ ଆସିଥିବା ଜୟଶ୍ରୀକୁ ବିବାହ କରିବାକୁ ସେ ନିଜେ ସ୍ଥିର କରିଥିଲା ।

ସାନ୍ତାକ୍ରୁଜ ବିମାନଘାଟୀର ରନ୍‌ୱେ ସ୍ପର୍ଶ କଲା ବିରାଟ ବୋଇଂଗ୍ । ଚନ୍ଦନର ଭାବନା ଭାଙ୍ଗିଗଲା । ରନ୍‌ୱେ ଉପରେ ଦୋହଲି ଦୋହଲି ବିମାନ ଚାଲୁଥିବାବେଳେ ସେ ହସି ହସି ରୁବେନା କହିଲା 'ଏଥର ଆମେ ଇଣ୍ଡିଆରେ ପହଞ୍ଚିଗଲେ । ତୁମର ତ ଅନେକ ଦିନର ସ୍ୱପ୍ନ ଫଳବତୀ ହେବାକୁ ଯାଉଛି । ଆଶାକରେ, ତୁମେ ଏଠାରେ ହତାଶ ହେବ ନାହିଁ ।

ଏକ ଶିଶୁସୁଲଭ ବ୍ୟଗ୍ରତା ନେଇ ଛୋଟ କାଚ ଝରକା ଭିତରୁ ବିମାନ ଘାଟୀକୁ ଦେଖୁଥିଲା ରୁବେନା । ଚନ୍ଦନର ବିଶେଷ ମନୋଯୋଗ ନ ଦେଇ କେବଳ ଜୋର୍‌ରେ ମୁଣ୍ଡ ହଲାଇ କହିଲା - 'ନୋ, ନୋ, ନଟ୍ ଆଟ୍ ଅଲ୍ ।'

ଚନ୍ଦନ ବି ଆଉ କିଛି ନ କହି ର୍‌ୟାକ୍ ଉପରୁ ନିଜର ଓଭର କୋଟ୍, ହ୍ୟାଣ୍ଡ ବ୍ୟାଗ୍ ଇତ୍ୟାଦି କାଢିବାକୁ ଲାଗିଲା । ଏଠି ତ ଆଉ ଏ ଗୁଡିକର କିଛି ପ୍ରୟୋଜନ ନାହିଁ କେବଳ ବୋଝ ବୋହିବା ସାର ।

ଜୟଶ୍ରୀ କହିଲା, 'ଏଥାର୍ ପୋର୍ଟକୁ କିଏ ଆସିଥିବେ ବୋଲି ତୁମେ ଭାବୁଛ ? ମୋ ବାପା ମା'ଙ୍କ ପକ୍ଷରେ କଣ ଆସିବା ସମ୍ଭବ ହେଇଥିବ ?'

ଚନ୍ଦନ ବୁଝିପାରିଲା ଜୟଶ୍ରୀର ଭାବନା । କହିଲା, 'ଆମେ ତ ପହଁଚି ଗଲୁଣି । ଓହ୍ଲାଇଲା କ୍ଷଣି ଦେଖିପାରିବା କିଏ ଆସିଛନ୍ତି । ବର୍ତ୍ତମାନ ଆଉ ସେ ବିଷୟରେ ଭାବିବା ଦରକାର କ'ଣ ? ମୁଁ ତ ଭାବୁଛି କେହି ଆସି ନଥିଲେ ଭଲ ।'

ପ୍ଲେନର କବାଟ ପାଖରେ ସିଡି ଆସି ଲାଗିବା ଯାଏଁ ସମସ୍ତେ ଚୁପ୍ ହୋଇ ବସି ରହିଲେ । ଅନେକ ଯାତ୍ରୀ ନିଜ ନିଜର ଜିନିଷ ପତ୍ର ଦୁଇ ହାତରେ ଝୁଲାଇ ଦୁଆର ଆଡକୁ ଆଗେଇଛନ୍ତି । ଧୀରେ ଧୀରେ ଜଣକ ପରେ ଜଣେ ଠିଆ ହୋଇ ପଡିଲେଣି । ଚଢିଲାବେଳେ ଯେପରି ବ୍ୟସ୍ତତା, ଓହ୍ଲାଇଲାବେଳେ ମଧ୍ୟ ସେହିପରି -ଆଗ ଯିବାକୁ ହେବ -ଶୀଘ୍ର ଯିବାକୁ ହେବ ! ଆଧୁନିକ ମଣିଷର, ଯୁଗର ଚରିତ୍ର । ଦୀର୍ଘ ସମୟ ଧରି ଯେଉଁମାନଙ୍କ ସହ ଯାତ୍ରା କଲେ, ପଥରେ ବନ୍ଧୁତା ହେଲା, ସେମାନେ କିଏ କେଉଁଆଡେ ଗଲେ ଭାବିବାକୁ ବେଳନାହିଁ, ଇଚ୍ଛା ବି ନାହିଁ । ପ୍ରତ୍ୟେକ ନିଜ ପାଇଁ ବ୍ୟସ୍ତ-ବ୍ୟସ୍ତ ପାଇଁ କାରଣ ଥାଉ ବା ନଥାଉ ।

ଚନ୍ଦନ ନୀରବରେ ବିମାନ ଭିତରର କ୍ର୍ୟୁ ଦେଖୁଥିଲା । ଏ ପର୍ଯ୍ୟନ୍ତ ମଧ୍ୟ ଦ୍ୱାର ଖୋଲିନାହିଁ । ରୁବେନା ଝରକା କାଚ ପାଖରେ ମୁହଁ ରଖି ବାହାରକୁ ଚାହିଁଛି । ଉଠିଯିବା ପାଇଁ ତାର କୌଣସି ଉଦ୍‌ବେଗ ନାହିଁ । ଜୟଶ୍ରୀ କିନ୍ତୁ ଠିଆହୋଇ ପଡିଲାଣି । ଚନ୍ଦନ ଉଠୁନାହିଁ ବୋଲି ସେ ବାହାରିପାରୁନାହିଁ ।

କଷ୍ଟମସ୍‌ରୁ ବାହାରି ଲାଉଞ୍ଜ ଭିତରେ ପଶିବା କ୍ଷଣି ପ୍ରଥମେ ଚନ୍ଦନ ଦେଖିଲା ଜୟଶ୍ରୀର ମାଙ୍କୁ । 'ମା ଆସିଛନ୍ତି-ଧୀରେ ଜୟଶ୍ରୀର କାନ ପାଖରେ କହିଲା ଚନ୍ଦନ । ଜୟଶ୍ରୀ ରୁବେନା ଓ ଚନ୍ଦନକୁ ପଛରେ ଛାଡି ଦଉଡିଗଲା । ମା'ଙ୍କୁ ପ୍ରଣାମ କରୁ କରୁ ସେ ତାକୁ ଛାତି ଉପରକୁ ଟାଣିନେଲେ । ଚନ୍ଦନ ପାଖରେ ଠିଆ ହୋଇ ବିଦେଶୀ କନ୍ୟା ରୁବେନା ମୁଗ୍ଧ ଦୃଷ୍ଟିରେ ଏ ଦୃଶ୍ୟ ଦେଖୁଥିଲା ।

''ତୁମର ଅଭିବାଦନ କରିବାର ପ୍ରଣାଳୀ ଭାରି ସୁନ୍ଦର ନା ଚନ୍ଦନ !'' ରୁବେନା କଥାରେ ଚନ୍ଦନ ସାମାନ୍ୟ ହସିଲା । 'ପହଁଚୁ ପହଁଚୁ ଏତେ ମୁଗ୍ଧ ହୋଇ ଯାଅନା । ପୁଣିପରେ ହତାଶାଟା ଯଦି ସେଇ ପରିମାଣରେ ହୋଇଯାଏ ତେବେ ଅସୁବିଧାରେ ପଡିବ ।' ଚନ୍ଦନର କଥାକୁ ଏଡେଇ ଦେଇ ରୁବେନା କହିଲା, 'ସେ ଭୟ ଆଦୌ ନାହିଁ '।

ଅର୍ଦ୍ଧ ରାତ୍ରିର ନୀରବତା ଆଭିଜାତ୍ୟପୂର୍ଣ୍ଣ ବମ୍ବେ ନଗରୀର ବୁକୁରେ ଓହ୍ଲାଇ ଆସିଥିଲେ ମଧ୍ୟ ଭିନ୍ନ ଏକ ପ୍ରାଣୀଗୋଷ୍ଠୀରେ ଚଞ୍ଚଳତା ଆରମ୍ଭ ହୋଇଥିଲା । ଏ ଗୋଷ୍ଠୀରେ ନାନା ବ୍ୟବସାୟର ମଣିଷ । ଦିନବେଳେ ନିଜକୁ ମଣିଷ ବୋଲି କହିବାକୁ କୁଣ୍ଠିତ ହେଉଥିବା ଜୀବ

ରାତ୍ରିର ଏଇ ସମୟରେ ସମ୍ପୂର୍ଣ୍ଣ ସକ୍ରିୟ । ବହୁ ଜାଗାରେ ଏଇ ରାତ୍ରି ଅନେକ ମନର ଗ୍ରନ୍ଥି ଖୋଲି ଦେଉଛି । ସହଜ ସରଳ ବନ୍ୟ ଆଦିମ ମଣିଷକୁ ରାତ୍ରିତାର ବିରାଟ ଦୁଇ ବାହୁ ବିସ୍ତାର କରି ଆଲିଙ୍ଗନ କରୁଛି ।

ଗୋଟିଏ ରାତି ପାଇଁ ଆଶ୍ରୟ ନେବାକୁ ଯେଉଁ ହୋଟେଲକୁ ଆସିଲେ ସେଠାରେ ମାତ୍ର ଦୁଇଟି ରୁମ୍ ସେମାନଙ୍କୁ ମିଳିଲା । ରୁବେନା ଆନନ୍ଦନରେ ଜୟଶ୍ରୀର ମା'ଙ୍କ ସହିତ ଗୋଟିଏ ରୁମ୍‌ରେ ରହିବାକୁ ରାଜିହୋଇଗଲା । ତାଙ୍କୁ ଦେଖିଲା ବେଳଠାରୁ ରୁବେନା ମନରେ ତାଙ୍କ ପ୍ରତି ଏକ ସ୍ନେହ ଜାତ ହୋଇଛି । ଆହୁରି ଅଧିକ ତାଙ୍କ ବିଷୟରେ ଜାଣିବା ପାଇଁ ତା'ର ପ୍ରବଳ ଆଗ୍ରହ । ଗୋଟିଏ ଘରେ ରହିଲେ ଏହା ସମ୍ଭବ ହେବ ।

ଅନୁରାଧା ଦେବୀ ଜଣେ ଦେଶସେବୀ ବୋଲି ସେ ଜୟଶ୍ରୀଠାରୁ ଶୁଣିଛି । ତାଙ୍କ ଦେଶରେ ଦେଶସେବୀ ବୋଲି ଗୋଟିଏ ଶ୍ରେଣୀ ସେପରି କିଛି ନାହିଁ । ସେ ନିଜେ ୟୁନିଭର୍ସିଟିରେ ପଢୁଥିଲା ବେଳେ ଅନେକ ଆନ୍ଦୋଳନରେ ଯୋଗଦେଇଛି । ଭିଏତ୍‌ନାମ ଯୁଦ୍ଧ ବିରୁଦ୍ଧରେ ଯେଉଁ ଆନ୍ଦୋଳନ ହେଉଥିଲା, ସେଥିରେ ଯୋଗଦେଇ ସେ ପୁଲିସର ନିର୍ମମ ଲାଠି ପ୍ରହାର ଖାଇଛି । କିଛିଦିନ ଜେଲଖାନା ଭିତରେ ମଧ୍ୟ ରହି ଆସିଛି । କିନ୍ତୁ ଇଉନିଭର୍ସିଟିରୁ ପାସ୍ କଲାପରେ ସେ ସାମ୍ବାଦିକତା କରେ । ଆନ୍ଦୋଳନ କରିଥିଲା ବା ଜେଲ ଯାଇଥିଲା ବୋଲି ତାକୁ କେହି ଦେଶକର୍ମୀ କହେ ନାହିଁ କି ସେ ନିଜେ ମଧ୍ୟ ଏପରି ଭାବି ପାରେ ନାହିଁ । ଭାରତବର୍ଷ ବିଷୟରେ ଜାଣିବା, ଲେଖିବା ତା'ର କାମ । ସେଥିପାଇଁ ତାର ବନ୍ଧୁ ଚନ୍ଦନ ଆଉ ଜୟଶ୍ରୀ ଯେତେବେଳେ ଦେଶକୁ ଆସବାକୁ ବାହାରିଲେ ସେ ଏ ସୁଯୋଗ ଛାଡିବାକୁ ଚାହିଁଲା ନାହିଁ । ସେମାନଙ୍କ ସହିତ ଆସିଲେ ଏ ଦେଶକୁ ଆହୁରି ଘନିଷ୍ଠ ଭାବରେ ଜାଣି ହେବ, ଏଇ ଆଶାରେ ତା'ର ଆଗମନ ।

ଅନେକ ଡେରିରେ ଶୋଇଥିଲେ ବି କିଛି ଗୋଟାଏ ଶବ୍ଦରେ ରୁବେନାର ନିଦ ଭାଙ୍ଗିଗଲା । ସେ ଆଖି ଖୋଲି ଦେଖିଲା, ବାଥ୍‌ରୁମ୍ କବାଟ ଫିଟାଇ ଅନୁରାଧା ଦେବୀ ଆସୁଛନ୍ତି । ତାଙ୍କର ସଦ୍ୟସ୍ନାତ ଚେହେରାଟି ତାକୁ ଖୁବ୍ ଭଲ ଲାଗିଲା । ନାଇଟ୍ ଲାଇଟ୍‌ର ଅଳ୍ପ ଆଲୁଅରେ ରୁବେନା ହାତରେ ବନ୍ଧା ହୋଇଥିବା ଘଡିକୁ ଦେଖିଲା-ମାତ୍ର ଚାରିଟା ବାଜିଛି । ନୀରବରେ ନିଜ ବିଛଣାରେ ପଡିରହି ସେ ଅନୁରାଧାଙ୍କ କାମକୁ ଲକ୍ଷ୍ୟକଲା ।

ଅନୁରାଧା ନିଜ ବିଛଣା ପାଖ ଆଲୁଅଟିକୁ ଜଳାଇ ସୁଟ୍‌କେଶରୁ ଗୋଟାଏ ଛୋଟ ବହି କାଢିଲେ । ତା'ପରେ ବିଛଣାରେ ଚକା ପକାଇ ବସି ଗୁଣୁଗୁଣୁ ହୋଇ ସେ ବହିରୁ କିଛି ପଢି ଲାଗିଲେ । ବିଷୟ ବସ୍ତୁ ଜାଣି ନ ପାରିଲେ ବି ରୁବେନା ବୁଝିଲା ଯେ ସେ ପ୍ରାର୍ଥନା କରୁଛନ୍ତି । ମୁଗ୍ଧ ଦୃଷ୍ଟିରେ ସେ ତାଙ୍କୁ ଚାହିଁ ରହିଥାଏ ।

ଅନୁରାଧା କପ୍‌ଟି ହାତରେ ଧରି ଠିଆ ହୋଇଛନ୍ତି । ରୁବେନା ଆଖି ଖୋଲି ଚାହଁଲା । ରାତି ଚାରିଟା ବେଳେ ତାଙ୍କୁ ଦେଖୁ ଦେଖୁ କେତେବେଳେ ସେ ଶୋଇ ପଡିଛି, ଜାଣେ ନାହିଁ । ଚା' ଖାଇବା ପାଇଁ ତାଙ୍କ ଡାକରେ ନିଦରୁ ଉଠି ପଡି ସେ ଖୁବ୍ ଲଜ୍ଜିତା ହେଲା ।

ଅନୁରାଧାଙ୍କ ଡାକରେ ସେ ଉଠିପଡିବା ସଙ୍ଗେ ସଙ୍ଗେ ତାଙ୍କୁ କ୍ଷମା ମାଗି ରୁବେନା ମହଁ ହାତ ଧୋଇବାକୁ ଗଲା । ଏହା ମଧ୍ୟରେ ଚନ୍ଦନ ଓ ଜୟଶ୍ରୀ ମଧ୍ୟ ତା'ର ରୁମ୍‌କୁ ଆସିଯାଇଛନ୍ତି । ଜୟଶ୍ରୀ ପଚାରିଲା ତୁମର ତ କିଛି ଅସୁବିଧା ହୋଇନାହିଁ ରୁବେନା ? ମା ଯେ ଖୁବ୍ ଭୋର୍‌ରୁ ଉଠି ଗୀତ ପଢନ୍ତି, ନିଦରେ ବ୍ୟାଘାତ ହୋଇ ନାହିଁ ତ ?

ରୁବେନା କହିଲା 'ଆଦୌ ନୁହେଁ । ବରଂ ମୁଁ ଏତେବେଳଯାଏ ଶୋଇ ରହିଥିବାରୁ ଦୁଃଖିତ ।'

ନିତ୍ୟକର୍ମ ଶେଷ କରି ପ୍ରାୟ ନ'ଟା ବେଳକୁ ସମସ୍ତେ ବାହାରକୁ ଯିବାକୁ ପ୍ରସ୍ତୁତ ହୋଇଗଲେ । ଅନୁରାଧା କିନ୍ତୁ ଯିବାକୁ ଚାହିଁଲେ ନାହିଁ । ଅନୁରାଧାଙ୍କଠାରୁ କିଛି ଶୁଣିବାକୁ ରୁବେନାର ଭାରି ଇଚ୍ଛା ।

ସେ ଚନ୍ଦନକୁ କହିଲେ, 'ସବୁ ବଡ ସହର ମୋତେ ଏକା ପରି ଲାଗେ । ବଡ ବଡ କୋଠାବାଡି, ଯାନବାହାନ, ଜୀବିକା ପାଇଁ ମଣିଷର ପ୍ରାଣାନ୍ତକ ପ୍ରତିଯୋଗିତା, ସ୍ୱାର୍ଥ ପାଇଁ ଅଣନିଶ୍ୱାସୀ ହୋଇ ଧାଉଁଥିବାରୁ ଏକ ବୀଭତ୍ସ ଦୃଶ୍ୟ ସବୁ ସହରରେ ସମାନ । ଏଠି ସବୁ ମଣିଷ ଉପରେ ଗୋଟାଏ କଠିନ ଆବରଣ । ମାପିଚୁପି କଥାବାର୍ତ୍ତା, ହସ । ବରଂ ମୁଁ ମାଙ୍କ ପାଖରେ ରହୁଛି ।'

ଅନୁରାଧା ଖୁବ୍ ପ୍ରସନ୍ନ ହେଲେ ବୋଲି ମନେ ହେଲା ନାହିଁ । ଜୟଶ୍ରୀ ବା ଚନ୍ଦନଙ୍କ ଦୃଷ୍ଟିରେ ତାହା ନ ପଡିଲେ ବି ରୁବେନାର ତୀକ୍ଷଣ ଦୃଷ୍ଟିରୁ ଏହା ବାଦ୍ ଗଲା ନାହିଁ । ତେବେ ବି ସେ ରହିବାକୁ ଚାହିଁଲା - କାରଣ ଆଜି ସକାଳର ସଂବାଦ ପତ୍ରରେ ପ୍ରକାଶିତ ଏକ ସଂବାଦ ତା'ମନରେ ବିଶେଷ ଆଲୋଡନ ସୃଷ୍ଟି କରିଥିଲା । ଅନୁରାଧା ଦେଶସେବୀ ଭାବରେ ପୁରସ୍କୃତା ହୋଇଛନ୍ତି ବୋଲି ସେ ଜୟଶ୍ରୀଠାରୁ ଶୁଣିଥିଲା । ତେଣୁ ସେ ନିଶ୍ଚୟ ତା'ର ସଂଦେହ ଦୂର କରିପାରିବେ ।

ଜୟଶ୍ରୀ ଓ ଚନ୍ଦନ କକ୍ଷରୁ ନିଶ୍କ୍ରାନ୍ତ ହୋଇଯିବା କ୍ଷଣି ରୁବେନା ଅତି ନମ୍ର ଭାବରେ ଅନୁରାଧାଙ୍କୁ ପଚାରିଲା - 'ଆଜି ସକାଳର କାଗଜରେ ଗୋଟିଏ ଝିଅକୁ ତାର ଶ୍ୱଶୁର ଘରର ଲୋକମାନେ ପୋଡି ମାରିଦେଇଥିବାର ଖବର ବାହାରିଛି - ଏହାର ମାନେ କଣ ?'

'ମାନେ ଆଉ କଣ ?' କିପରି ଏକ ନିସ୍ପୃହ ଭାବରେ କହିଲେ ଅନୁରାଧା । 'ସେ ଯେତିକି ଯୌତୁକ ଆଣିବ ବୋଲି ତାର ଶଶୁର ଘର ଲୋକେ ଆଶା କରିଥିଲେ ତାହା ସେ ଆଣିଲା ନାହିଁ । ସେଥିପାଇଁ ସେମାନେ ରାଗରେ ଏପରି କରିଥିବେ ।' ଅନ୍ୟ କୌଣସି ପ୍ରଶ୍ନ ପାଇଁ ଅପେକ୍ଷା ନକରି ସେ ନିଜ ବ୍ୟାଗ୍ ଭିତରୁ ଏକ ବହି କାଢି ଆଖିଆଗରେ ଖୋଲି ଧରିଲେ ।

ସେ ଯେ ରୁବେନା ସହିତ କଥା କହିବାକୁ ଚାହୁଁନାହାନ୍ତି ଏକଥା ବୁଝିବାକୁ ତାକୁ କଷ୍ଟ ହେଲା ନାହିଁ । ତଥାପି ଯୌତୁକର ଅର୍ଥ ସେ ତାଙ୍କୁ ପଚାରିଲା ଏବଂ ସଂକ୍ଷେପରେ ଅନୁରାଧାଙ୍କ ଉତ୍ତର ମଧ୍ୟ ଶୁଣିଲା ।

ତା'ପରେ ସେ ହଠାତ୍ ଅନୁରାଧାଙ୍କୁ ପଚାରିଲା, 'ଆପଣମାନଙ୍କ ଭଳି ଏତେ ମହତ୍ ଲୋକ ଏ ଦେଶରେ ଥାଉ ଥାଉ ଏପରି ଘଟୁଛି କିପରି ? ଆପଣ କ'ଣ ଏକଥା ବନ୍ଦ କରିପାରିବେ ନାହିଁ ?'

ଅତ୍ୟନ୍ତ ବିରକ୍ତି ପୂର୍ଣ୍ଣ ସ୍ୱରରେ ଅନୁରାଧା କହିଲେ, 'ଏସବୁ ମୋର କାମ ନୁହେଁ । ଦେଶ ପାଇଁ ମୁଁ ଅନେକ ତ୍ୟାଗ କରିଛି । ଏବେ ତ ସ୍ୱାଧୀନ ସରକାର ଅଛନ୍ତି । ଏସବୁ ବନ୍ଦ କରିବା ସରକାରର କାମ ।' ବିଛଣାରେ ଶୋଇ ରହି ଅନ୍ୟ ଦିଗକୁ ମୁହଁ ବୁଲାଇ ନେଲେ ଅନୁରାଧା । ଆଖି ସାମନାରେ ଖୋଲା ବହି ।

ତାଙ୍କର ବ୍ୟବହାରରେ ରୁବେନା ଆହତ ହେଲା ନାହିଁ -ଆଶ୍ଚର୍ଯ୍ୟ ହେଲା । ଚନ୍ଦନର

କଥା ହଠାତ୍ ତାର ମନେପଡିଗଲା - ବେଶୀ ମୁଗ୍ଧ ହୋଇଗଲେ ହତାଶ ହେବାକୁ ପଡିବ ।' ରୁବେନା ଭାବୁଥିଲା କେତେ ଦୈନ୍ୟ ଓ ଗ୍ଲାନି ବିଛାଡି ହୋଇ ପଡିଛି ଦୁନିଆ ସାରା । ଅତି ଉଦାର ଆଉ ମହତ୍ ମଣିଷ ବି ଏଥିରୁ ବାଦ୍ ଯାଉନାହାନ୍ତି । ସ୍ୱାର୍ଥର ସଂଘାତ ହେଲେ କଣ ସେଇ ଦୈନ୍ୟ ଆଉ ଗ୍ଲାନି ଏହିଭଳି ଆତ୍ମପ୍ରକାଶ କରିପକାଏ ?

# ତକ୍ଷକ

ଚଉଧୁରୀ ହେମକାନ୍ତ ମିଶ୍ର

ମୋର ଏଇ ଗପଟିରେ ଯାହା ଯାହା ମୋ ମତରେ ଗୋଟିଏ ଆଦର୍ଶ ଗଳ୍ପର ବିଭାବ, ସେସବୁ ଏକାଠି ପାଠକ ସମ୍ମୁଖରେ ଉପସ୍ଥାପିତ କରିବାକୁ ମୁଁ ସ୍ଥିର କରିଛି । ଏପରି ଏକ ରୀତି, ଆଙ୍ଗିକ ଓ ଶୈଳୀ....(ଏମାନଙ୍କ ମଧ୍ୟରେ ସୂକ୍ଷ୍ମ ତଫାତ୍‌ଟି ବୁଝି ପାରୁ ନଥିବାରୁ ତିନୋଟିଯାକ ଏକାଠି ଦେଇଥିଲି, ଯାହା ଫଳରେ କୌଣସି ସମାଲୋଚକ ତାର ସ୍ୱତନ୍ତ୍ର ଚଷମାଟି ଭିତରେ ସବୁ ଠିକ୍ ଦେଖିପାରିବ ।) ''ପୃଥକ, ଅତଏବ ଆଦର୍ଶ'' ନ ହୋଇ, ''ଆଦର୍ଶ,ଅତଏବ ପୃଥକ୍'' ହେବାର ଇଚ୍ଛା । ଗଳ୍ପଟି ମନେ ମନେ ପୂରା ଲେଖାସରିଥିଲା; କିନ୍ତୁ ଯେତେବେଳେ ଲେଖିବସିଲି, ବୁଝିପାରିଲିନି ଠିକ୍ କେଉଁଠୁ ଆରମ୍ଭ କରିବି । ଗପ ଆଦିରେ କେତେକ ଧରାବନ୍ଧା ଆରମ୍ଭରେ ଆମେ ଲେଖକ, ଆଉ ଆମଠୁଁ ବେଶୀ ପାଠକମାନେ, ଅଭ୍ୟସ୍ତ । ''ବାହାରେ ମାୟାବିନି ରାତ୍ରି'' (ଭିତରେ ସରଳା !), ''ଆନତ ଗୋଧୂଳି'' (ଆୟ ତାଳ ପରା !), 'ଝରକା ବାହାରେ ନିଦାଘ' (ଭିତରେ ବର୍ଷା ଋତୁ !), ''ଭାଦ୍ରବର ପାଣିଚିଆ ସକାଳ'' (ଦି'ପହର ବେଳକୁ ଲୁଣିଆ !) - ଏଇ ଧରଣର କିଛି ''ଋତୁବର୍ଣ୍ଣନା'' ପରେ, ଚରିତ୍ରର ପରିଚୟଟି କାଇଦା ମାଫିକେ, ତାଲାଖି କରି ଛାଡିଦେବା ଗୋଟିଏ ରୀତି । ଲେଖକେ ମନେକରନ୍ତି, ଏ ବିଷୟରେ ଯେତେ ତାଲାଖି ଦେଖାଇବ, ସେତେ ବେଶୀ ସମ୍ମାନ ସେ ପାଠକଙ୍କଠାରୁ ଆଦାୟ କରିପାରିବ । ଅଥଚ ମୁଁ ଭାବିଚିନ୍ତି ସ୍ଥିର କରିଛି, ''ପାଠକଙ୍କଠାରୁ ସମ୍ମାନ'' କଥାଟାର ଅର୍ଥ କିଛି ନାହିଁ । କେତେକ ଲେଖକ ଏବେ ସମସ୍ୱରରେ ରୋଦନ କରୁଥିଲେ, ସେମାନଙ୍କର ପରିଚୟ କିଛି ନାହିଁ, ଦୁନିଆଁ ସେମାନଙ୍କୁ ଚିହ୍ନିଲା ନାହିଁ, କେହି ପଚାରୁ ନାହିଁ, ଇତ୍ୟାଦି । ଠିକ୍ କେଉଁ ଧରଣର ପରିଚୟ ବା ସମ୍ମାନ ତମେ ସବୁ ଆଶା କର-ପଚାରିଲି । ସେମାନେ ମୋ ମୁହଁକୁ କେମିତି ଗୋଟାଏ ଚାହିଁଲେ, ଯାହା ମାନେ - 'ପାଗଳ' । ଉଦାହରଣ ଦେଲି-ମାନେ, ମଫସଲର ହାଇସ୍କୁଲମାନଙ୍କରେ ପୁରସ୍କାର ବିତରଣୀ ସଭାରେ ସଭାପତିତ୍ୱ କରିବା, ଗୁଡିଏ ସ୍ୱାକ୍ଷର-ଶିକାରୀ କିଶୋରୀଙ୍କ ଭାଇର କେନ୍ଦ୍ରବିନ୍ଦୁ ହୋଇ ଅସହାୟ ଭାବେ ହସିବା, ପ୍ରକାଶକଙ୍କଠାରୁ ଅର୍ଡର୍ ଓ ବିଡା-ବିଡା ନୋଟ୍ ସ-ଧନ୍ୟବାଦ ଗ୍ରହଣ କରିବା ଆଦି କେଉଁ ଧରଣର ସମ୍ମାନ ଲାଗି ତମର ହୃଦୟ କାନ୍ଦୁଛି ? ସେମାନେ ପରସ୍ପର ଚାହାଁଚାହିଁ ହେଲେ, ଯେ ଯାକେ ଜଣେ ପ୍ରବୀଣ ନୀରବତା ଭାଙ୍ଗି ନ କହିଛନ୍ତି, ''ଛାଡ ବାଳକୃଷ୍ଣ, ସେଥିରୁ କି ମିଳିବ'' ଏବଂ ଯଦିଓ ଏଥିରେ କୌଣସି 'ମତ' ନଥିଲା, ବାକିମାନେ ତାଙ୍କ ସଙ୍ଗେ କିପରି କେଜାଣି ଏକମତ ହେଲେ । ସେମାନଙ୍କର ଫାଙ୍କା ଚାହାଣିଇ ଯଥେଷ୍ଟ ପ୍ରମାଣ ଯେ ନିଜ ନିଜ ପୃଥିବୀ, ଯହିଁରେ ସେମାନେ ସ୍ୱୟଂ-ନିଯୁକ୍ତ-ନାୟକ, ସେଠି ସେମାନେ ବେଶ୍ ଆରାମରେ ଅଛନ୍ତି ।

''ମୋ ନାଁ ବାଳକୃଷ୍ଣ'' - ଧରଣର ଆତ୍ମକାହାଣୀ ମାର୍କା ଆରମ୍ଭଟି ମୋର ପସନ୍ଦ ନୁହେଁ, କାରଣ ଏହାଦ୍ୱାରା ''ଦୁଆତର ଆମକଥା'' ଶୀର୍ଷକ ପ୍ରବନ୍ଧରେ ଅଭ୍ୟସ୍ତ ସୁକୁମାର, ସୁକୋମଳ ବାଲ୍ୟକାଳକୁ ହିଁ ଲେଖକ ଫେରି-ଫେରି ଯାଏ । ସେ କଥା ବି ଭାବିଥିଲି, ଭାବିଥିଲି, ଗପଟି ନିମ୍ନଲିଖିତ ମତେ ଆରମ୍ଭ କରିବି-

''ଆଜି ସକାଳୁ ମୋର ମୁଣ୍ଡ ବିନ୍ଧୁଛି । ଅନେକ କଥା ଉପରେ ମୋର ଅକ୍ତିଆର ନାହିଁ, ଯଥା-ପଡିଶାଘରମାନଙ୍କର ରେଡିଓ, ଗୋଟିଏ ଗୀତ ସେପାଖେ, ଅନ୍ୟ ଗୋଟିଏ ଏପାଖେ । ମୁଁ ଭାଗ୍ୟବାନ୍ ଯେବେ 'ବିବିଧଭାରତୀ' ଭଳି ପ୍ରୋଗ୍ରାମରୁ ଟିକିଏ ଆଗ ପଛ ହୋଇ ଦୁଇପଟୁ ସମାନ ଗୀତଟି ବାଜୁଥାନ୍ତା, ଧ୍ୱନି କିଏ, ପ୍ରତିଧ୍ୱନି କିଏ, ବୁଝିବା ଅସମ୍ଭବ ହୋଇପଡୁଥାନ୍ତା, ଅଥଚ ମୋର କୁଆଡେ ପଳାଇଯିବାର ଉପାୟ ନାହିଁ, କାରଣ ମୁଁ ପକ୍ଷାଘାତଗ୍ରସ୍ତ....' ଇତ୍ୟାଦି ।

ଏଥିରୁ ଆଖପାଖର ଅବସ୍ଥାଟି ବି ଜଣାଯାଇଥାନ୍ତା ସମାଲୋଚକଙ୍କୁ । ଯେ ବି ଏକ ମରୀଚିକା । ସମସ୍ତଙ୍କର, ଏବଂ ଏଥିର ବ୍ୟତିକ୍ରମ କେହି ନାହିଁ, ସମସ୍ତଙ୍କର ଧାରଣା ଯେ ତାଙ୍କ ଲେଖାଟିକି କେହି ସମାଲୋଚକ ପଢି ତଳିରେ ନେଳି ନାଲି ଗାର କାଟି ଗୋଟିଏ ସରୁ ମୁନିଆଁ ପେନ୍‌ସିଲ ସାହାଯ୍ୟରେ ମାର୍ଜିନ୍ ଉପରେ ନୋଟ୍ କରିନେବ-'ଜୀବନଦର୍ଶନ', 'ପ୍ରକୃତି', 'ମନସ୍ତତ୍ତ୍ୱ' ବା ସେହିପରି କିଛି ଚଳନ୍ତି ମୋହର ଦେଇ । ଆଜି ନୋହିଲେ କାଲି, ଦିନେ ନା ଦିନେ, ଏହି ସବୁ ମନ୍ତବ୍ୟକୁ ଏକାଠି କରି, ''ଓଡିଆ ସାହିତ୍ୟର ମେରୁଦଣ୍ଡହୀନ ଲେଖକ ବାଳକୃଷ୍ଣ'' ଧରଣର କିଛି ଗୋଟାଏ ଦାୟିତ୍ୱହୀନ ଶିରୋନାମା ସମ୍ବଳିତ ଗୋଟିଏ ସମାଲୋଚନା କେଉଁଠି ଛାପିଦେବ । ଫଳରେ ଏତେ ଦିନର, ଏତେ ଯତ୍ନରେ ସାଇତା 'ପାଠକଙ୍କଠାରୁ ସମ୍ମାନ'ଗୁଡାକ ଦୁଲ୍‌ଦାଲ୍ ତଳେ ପଡି ଧୂଳିସାତ !- ଏହି ଭୟରେ କେଉଁ ନାହିଁନଥିବା, କାହିଁ ନଥିବା ସମାଲୋଚକର ଭୂତ ମୋ କାନ୍ଧରେ ସବାର ହୋଇ ବାଟ କଢାଏ । କିପରି ଯେ ଏକ କାଳ୍ପନିକ ଭବିଷ୍ୟତ ଚଳନ୍ତ ବର୍ତ୍ତମାନ ସଙ୍ଗେ ଏକ ହୋଇଯାଏ, ମୁଁ ବୁଝିପାରେନା । ଯେତେ ରକମର ସାନ୍ତ୍ୱନା ଅଛି, ଏତେ ନିଠେଇ କେଉଁ ସମାଲୋଚକ ପଢୁଥିବ କି, ସମାଲୋଚକ ସଦାବେଳେ ଠିକ୍ ନୁହେଁ, କାରଣ ସେ ଏକ ବିଗତ ଯୁଗର ପରିପ୍ରେକ୍ଷୀରେ ବିଚାର କରୁଛି, ସମାଲୋଚକ ମାତ୍ରେ ନିନ୍ଦୁକ - ଏସବୁ ସତ୍ତ୍ୱେ । ଅତଏବ ପାଠକଙ୍କୁ ନୁହେଁ (ବିଚରା ପାଠକ, ସେଇ ଖାଲି ମଝିରେ ଅସହାୟ !) ସମାଲୋଚକଙ୍କୁ ହିଁ ଉଦ୍ଦେଶ୍ୟ କରି ଲେଖାଲେଖି ଚାଲେ । 'ପାଠକ କିଛି ବୁଝିପାରୁନାହିଁ' ଧରଣ ଆପେକ୍ଷ ଦୁଇଆଡୁ ।

ଲୋକଟି ବିଛଣା ଉପରୁ ଛାତକୁ ଚାହିଁ ଚିତ୍କାର କଲା- ''ମୁଁ କିଏ ?'' ଛାତ ତାର ଉତ୍ତରରେ ବିଡିବିଡି କରି କିଛି କହିଲା । ଲୋକଟି କହିଲା, ''ଠିକ ଅଛି'' ଏବଂ ପରେ - ପାଖ ଟୁଲ ଉପରୁ ଗୋଟିଏ ଗିଲାସ ଉଠାଇ ନେଇ ଆଇନା ଉପରକୁ ଫୋପାଡି ଆଇନାଟିକି ଚୂନା କରିଦେଲା । ତା ପରେ ସେ ବିଛଣା ଉପରୁ ବହୁ କଷ୍ଟରେ ଟାଣି ଓଟାରି ହୋଇ ଖଣ୍ଡିଏ ଛୋଟ ଟୁକୁରା ଆଇନା ତକୁ ଗୋଟାଇ ନିଜର ମୁହଁ ଦେଖିଲା ଏବଂ କହିଲା, ''ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବଶିଷ୍ୟତେ ।'' ତା ପରେ ସେ ଗୋଟିଏ ହାତରେ ନିଜର ବେକ ଚିପିବାକୁ ଚେଷ୍ଟା କଲା ଏବଂ ଅକୃତକାର୍ଯ୍ୟ ହେଲା ।

ଆଧୁନିକ ପାଠକ ମାତ୍ରେ ଅନୁମାନ କରିପାରିବ ଯେ ମୁଁ ଆଧୁନିକ ଯୁଗର ଆତ୍ମଜିଜ୍ଞାସା ଚେର-ମୂଳ-ହୀନତା, ଗ୍ଲାନି ଓ ବିରକ୍ତି ଆଦି ବହୁ ଆକ୍ଷେପ ଦିଗମାନ ଦେଖାଇବାକୁ ଚାହୁଁଛି । ଠିକ୍ ଏହି ରୀତିରେ ମୋର ସାଙ୍ଗଟିଏ ଚିଠି ଲେଖିଥିଲା ମୋ ପାଖକୁ । ସେ ଲେଖକ ନୁହେଁ, କିମ୍ବା ସେଇ ହିଁ ଲେଖକ, ଯାହାକୁ କି ଆମେ ତଥାକଥିତମାନେ ଅନୁକରଣ କରି ଚାଲିଛୁ । ଯେଉଁସବୁ ଘଟଣାର କିଛି ସ୍ୱାଭାବିକ ପରିଣିତ ନାହିଁ ସେଆଡୁ ଲେଖକମାନେ ମୁହଁ ଫେରାଇ ନିଅନ୍ତି, କିନ୍ତୁ କିଏ ନଜାଣେ ଯେ ଅଧିକାଂଶ ଦୈନନ୍ଦିନ ଘଟଣାର (ଏବଂ ଦୈନନ୍ଦିନ ଘଟଣାଇ କୁହାଯାଉଛି ଗଳ୍ପର ଅସଲ ଆତ୍ମା) କିଛି ସ୍ୱାଭାବିକ ପରିଣତି ହୋଇ-ନପାରେ, ଏବଂ ଏପରି କିଛି କଥା ନାହିଁ ଯେ ସବୁ ରକମର ଘଟଣାରେ କଳ୍ପନାର ରଙ୍ଗ ଗୋଳି ଗୋଟିଏ ଗୋଟିଏ ଗଳ୍ପ ତିଆରି ହୋଇଯାଇପାରିବ । ଅତଏବ, ସେ ପ୍ରକାର ଆରମ୍ଭ କିଛି ନୁହେଁ ।

ଲୋକଟି ଚିତ୍କାର କରି କହିଉଠିଲା, ''ମୁଁ ପକ୍ଷାଘାତଗ୍ରସ୍ତ ।'' ସେ ନୀରବ ହେଲା । ପୁଣି, ''ମୁଁ ମଣିଷ ।'' ଏତିକିରେ ହିସାବ ଶେଷ ହୋଇଗଲା ବୋଧହୁଏ । ଅନ୍ୟ କିଛି ପରିଚୟ ସେ ଶୂନ୍ୟ ପ୍ରତି କି ଦେଇପାରିଲା ନାହିଁ । ଲକ୍ଷ୍ୟ କରନ୍ତୁ, କିପରି ମୁଁ ସାଧାରଣ ପରମ୍ପରାଠାରୁ ବାହାରିଯିବାକୁ ଚାହୁଁଛି । ମଣିଷଟି ମରିନାହିଁ, ଜୀଇଁଛି, ଅଥଚ ନୀରବତା ! ମିନିଟ୍‌କେ କେତେ ଶବ୍ଦ ମଣିଷ କହେ, ସେତକ ହିସାବ କରିନେଇ ଘଣ୍ଟାକେ ( x ୬୦ ), ଦିନକେ, ବର୍ଷକେ, ସାରା ଜୀବନର ଶବ୍ଦର ସଂଖ୍ୟା କଳ୍ପନୀୟ । ଜଣେ ପେଶାଦାର ଲେଖକ ଯେବେ ଦୈନିକ ୨୦୦୦ ଶବ୍ଦ ଲେଖେ, ସେ ବର୍ଷକୁ ୭,୩୦,୦୦୦ ଶବ୍ଦ ଲେଖିବ । ଜଣେ ଜଣାଶୁଣା ଲେଖକ, ନାମ ଅବାନ୍ତର, ତାହାଙ୍କର ମୋଟ୍ ୬୮ ବର୍ଷର ଜୀବନକାଳ ଭିତରେ ୫୩, ୭୩୫ ଟି ଛାପା ପୃଷ୍ଠା ଲେଖିଥିଲେ - (ଏଇଠି ଥାଉ । ପିଲାଦିନୁ ମୋର ହିସାବପତ୍ର ପ୍ରତି ଘୃଣା ରହିଛି, କାରଣ ଏସବୁ ମୁଁ ଅକାରଣ ଚାଲାଖି ମନେକରେ ।) ଏହି ହିସାବରେ ପ୍ରତି ୨ ମିନିଟ୍‌ରେ ଗୋଟିଏ ଶବ୍ଦ । ଅତଏବ, ମୋର ନାୟକ ଦଶଟି ମାତ୍ର ଶବ୍ଦ ଉଚ୍ଚାରଣ କରି ଚୁପ୍ ରହିଯିବାଟା ସାହିତ୍ୟରେ ଅନ୍ତତଃ ଖୁବ୍ ବେଢଙ୍ଗ । ସେ କହିପାରିଥାନ୍ତା, ''ମୋର ଘରେ ସ୍ତ୍ରୀ, ଗୋଟିଏ ପୁଅ, ଗୋଟିଏ ଝିଅ ।'' କହିପାରିଥାନ୍ତା, ''ସେମାନେ ମୋର ପକ୍ଷାଘାତ କଥା କେବେ ଉଚ୍ଚାରଣ କରନ୍ତି ନାହିଁ । ଆଉ କିଏ ସେ କଥା କହିପକାଇଲେ ଗୋଟେ ଅସ୍ୱସ୍ତିକର ନୀରବତା ଘରେ ଘେରିରହେ ।'' ତା ଛଡା ପାଖ ଘରେ କ'ଣ କ'ଣ ହେଉଛି, ସେ ବିଷୟରେ କିଛି ଉଲ୍ଲେଖ ନାହିଁ । ଆଇନା ଭାଙ୍ଗିଯିବାର ଝଣ୍‌ଝଣ୍ ଶବ୍ଦ ଶୁଣି ପାଖ ଘରେ କଲେଜପଢୁଆ ଝିଅଟିଏ ଚାକିରିଆ ପୁଅଟିକି କହିଲା, ''ବାପା ରାଗିଗଲେଣି ପୁଣି ।'' ରୋଷେଇଘରେ ମାଇପିଟି ମନକୁମନ କହିଲା ''ସକ୍‌କାକୁ- ।'' ତା ଛଡା ଅନେକ ଆନୁଷଙ୍ଗିକ ବର୍ଣ୍ଣନା, ଯଥା - ''ମାଇପିଟି ଦୀର୍ଘଶ୍ୱାସ ଛାଡି କହିଲା....'', ଏବଂ କିଏ ନ ଜାଣେ, ବଚନ ବ୍ୟାପାରରେ ଏତେ ମିତବ୍ୟୟିତା କୌଣସି ସ୍ତ୍ରୀଲୋକଠାରୁ ଆଶା କରିବା ବିଡମ୍ବନା । ତେବେ, ଅନେକ ଘଟିଯାଇଥିବା ଘଟଣାକୁ ଆଉ ଥରେ କହିବାକୁ କେହି ରାଜି ହୁଏନା, ଏହି ନିୟମର ସୁଯୋଗ ନେଇ ଖୁବ୍ ବୁଦ୍ଧିମାନ୍ ଉପାୟରେ ହିଁ ମୁଁ ଦେଖାଇଦେଇଛି ଯେ ଏଇମିତି ହୋଇଥାଏ ନିତ୍ୟନୈମିତ୍ତିକ ଘଟଣା ।

କିନ୍ତୁ କ୍ଷମା କରିବେ-ଚରିତ୍ରଗୁଡାକ ଗପର ମୂଳ ପଦ୍ଧତି ସଙ୍ଗେ ମିଶିଯାଉଛନ୍ତି । ସ୍ୱୀକାର କରୁଛି ଯେ ମୋର ମୁଣ୍ଡ ଠିକ୍ ନାହିଁ । ପଦ୍ଧତି ବିଷୟରେ ଅବଶ୍ୟ ମୁଁ ବଦ୍ଧପରିକର ଏବଂ ଦୃଢନିଶ୍ଚିତ ଯେ ଗଳ୍ପର ଶେଷ ଆଡକୁ ଏହାର ସର୍ବାଧୁନିକ, ଅଶ୍ରୁତପୂର୍ବ ଅକୃତ ପୂର୍ବ ରୀତି ପାଠକ ସମ୍ମୁଖରେ ପେଟ ଦେଖାଇ ଗେହ୍ଲାଇ ହେବ ଗୋଟାଏ ପୋଷା କୁକୁର 'ପରି । ବର୍ତ୍ତମାନ ମୋର ଲୋଭ ହେଉଛି ସେହି କଲେଜପଢୁଆ ଝିଅଟି ବିଷୟରେ କିଛି କହିବାକୁ, କିନ୍ତୁ ଏତଦ୍ୱାରା ସେହି ଲୋଭକୁ ଦମନ କରୁଛି, ଯଦିଓ ଅନେକ କିଛି ଲେଖିବାର ଥିଲା । ଚାକିରିଆ ପୁଅଟି କଥା ବି କିଛି କମ୍ ଯାଏନା, କିନ୍ତୁ ସେ ବିଷୟରେ ଅଧିକ କିଛି ନଲେଖିବାକୁ ସ୍ଥିର କରିଛି ।

ସବୁଠୁଁ ସୁନ୍ଦର ଉପାୟ ହେଉଛି ଗୋଟିଏ ଭୂମିକମ୍ପରୁ ଆରମ୍ଭ କରିବା । ସେ କ୍ଷେତ୍ରରେ, ''ଆରମ୍ଭ ହିଁ ଅର୍ଦ୍ଧେକ ସମାପ୍ତ'' ନାମକ ବିଦେଶୀ ପ୍ରବଚନଟିର ବ୍ୟାବହାରିକ ପ୍ରୟୋଗ ବି ହୋଇଯିବ । ଆଧୁନିକ ଗଳ୍ପ କିପରି ଆରମ୍ଭ ହେବା ଉଚିତ୍, ସେ ବିଷୟରେ ଅନେକ ଦିନ ତଳେ କେତେକ ପ୍ରବନ୍ଧ ଗୋଟିଏ ପତ୍ରିକାରେ ପଢିଥିଲି । ସେତେବେଳକାର ବଡ ବଡ ଲେଖକମାନେ (ହାୟ ! ଆଜି ସେମାନେ କାହାନ୍ତି ?) ଏସବୁ ରଚନା ନବୀନମାନଙ୍କର ଉପକାରାର୍ଥେ ଲେଖିଥିଲେ । ପୃଷ୍ଠାର ବାଁପଟେ ସବା ଉପରେ ସେମାନଙ୍କର ଗୋଟିଏ ଗୋଟିଏ କଲମରେ ଅଙ୍କା ଛବି । ତହିଁରେ ସେମାନେ ସାଧାରଣତଃ ମୁଠ୍ଠଣିରେ ମୁହଁ ଥାପି ଖୁବ୍ ଚିନ୍ତିତ ଦେଖାଯାଉଥାନ୍ତି । ଗୋଟିଏ ଲେଖାଏ ଅଣ୍ଡାକୃତି ପ୍ରଭା ମଧ୍ୟ ସେହି

ଛବିମାନଙ୍କ ଚାରିପଟେ ଏଭଳିଭାବରେ ରହିଥାଏ, ଯେପରିକି ଆଉ ଟିକିଏ ସମୟ ପାଇଥିଲେଇ କଳାକାର ସେମାନଙ୍କୁ ସୂର୍ଯ୍ୟ ପରି ଗାର ଗାର କିରଣବିଶିଷ୍ଟ କରିଦେଇଥାନ୍ତେ । ସେହି ସବୁ ରଚନା ଭିତରୁ ଗୋଟିକର ଲେଖକ କୁଆଡେ କେଉଁ ଗୋଟିଏ ବାକ୍ୟକୁ ମନେ ମନେ ଗୁଣି ତାହାର ଫେଣ ବାହାର କରନ୍ତି ଏବଂ ପରେ ସେହି ଫେଣକୁ ଗପ ବାହାରେ, କି କ'ଣ ଏମିତି, ମୋର ଭଲକରି ମନେନାହିଁ । ଠିକ୍ ଫେଣ ପରି ହିଁ ସେହି ଲେଖକ କୁଆଡେ ଉଡିଗଲେଣି । ସେମିତି, ମୁଁ ଭଲକରି ଜାଣେ ଯେ, ମୁଁ ଯେତେ ଆଣ୍ଟ କରି ଆରମ୍ଭଟି କରେ, ମୁଁ ରହିବି ନାହିଁ, ''କେହି ରହି ନାହିଁ ରହିବେ ନାହିଁଟି....''

ଭୂମିକମ୍ପ । ସେ ଦିନ ମୁଁ ଦରଜା ସାମନାରେ, ଦରଜାଟି ସାମାନ୍ୟ ଆଉଜେଇ ଦେଇ ମୋ ସ୍ତ୍ରୀକୁ ଚୁମାଦେଉଥିଲି । ମୋର ଆଉ ତା'ର ଭିତରେ ଏତିକି ଷଡଯନ୍ତ୍ର ବାହାଘର ପରଠୁଁ (ମୋଟ୍ ଏଗାର ବର୍ଷ) ବଜାୟ ରହି ଆସିଛି । ପିଲାଏ ବୁଝି ଶୁଣି ପାରିଲେଣିକିନା, ବର୍ତ୍ତମାନ ଟିକିଏ ସାବଧାନତା ଦରକାର ହେଉଛି ।

ପରବର୍ତ୍ତୀ ଦୃଶ୍ୟ, ହସ୍‌ପିଟାଲ୍ । ଏହା ମଧରେ କେତେକ ତତ୍‌ଦ୍ୱାରା ସମୟର ଏକକ ସୈନିକମାନଙ୍କର ଲୁହାଟୋପି ଉତାଜାହଜରୁ ଫଟୋଗ୍ରାଫ୍ ନେଇ ଦେଖାଇ ଦେଇ ହୋଇଥାନ୍ତା, ଯାହାକି ସାଧାରଣ ଗଳ୍ପମାନଙ୍କର ରୀତି (ନୋଟ୍ : ବିଚରା ଲେଖକ ! ଏଇ କେତେକ ଦୁଷ୍ଟାମି ଜରିଆରେ 'ନିଃଶବ୍ଦେ ଜୀବନସ୍ରୋତ ଧାଉଁଛି କିପରି' ଦେଖାଇବାର ଧୃଷ୍ଟତା ବିନୁଁ ତାର ଆନ ଗତି ନାହିଁ), କିନ୍ତୁ ସେ ବିଷୟରେ ମୁଁ ଖୁବ୍ ସାବଧାନ୍ । ଯଦିଓ କୁହାଯାଉଛି ଯେ ପରବର୍ତ୍ତୀ ଦୃଶ୍ୟ ହସ୍‌ପିଟାଲ, ଏ ମଧରେ ବେଶ୍ କିଛି କଥା ଅକୁହା ରହିଛି । କାରଣ, ଏପରିକି ଅଚେତ ହେବା ପୂର୍ବରୁ ଆମର ଓଠ ଦୁଇଟି ଭୂମିକମ୍ପଦ୍ୱାରା ବିଚ୍ଛିନ୍ନ ହୋଇଛି ସଶବ୍ଦେ ଏବଂ ଭୟଙ୍କର ସେହି ମୁହୂର୍ତ୍ତଟାରେ ମଧ ସାମାନ୍ୟ ଟିକିଏ ହସିବାର ଲୋଭ ସମ୍ବରଣ କରିହୋଇନାହିଁ , କିନ୍ତୁ ଠିକ ସମୟରେ ବାକି ସବୁ କଥାର ଆଭାସ ଦିଆହେବ । ପରବର୍ତ୍ତୀ ଦୃଶ୍ୟ, ହସ୍‌ପିଟାଲ୍‌ରେ ମୋର ନିଦ ଭାଙ୍ଗିଲାବେଳକୁ ମୁଁ ଅଫିସ୍‌ରେ ଥିଲି (ଫୁଟ୍‌ନୋଟ୍ : ସେଠି ଶୋଇଥିଲେ ବି, ସ୍ୱପ୍ନରେ । ଅଭ୍ୟାସ ମନୁଷ୍ୟର ଦ୍ୱିତୀୟ ପ୍ରକୃତି । ଫୁଟ୍‌ନୋଟ୍ : ସମାପ୍ତ ।) ମୁଁ ଆଖି ମେଲି ଦେଖିଲି ଯେ ଏତେଗୁଡିଏ ରଙ୍ଗର ଦୁନିଆଁଟି ହଠାତ୍ ଧଳା ହୋଇଯାଇଛି, ଚାରିଆଡେ ବରଫ ପରି ଧଳା ଏବଂ ତୁଷାରବୁଣା ପୋଷାକ ପିନ୍ଧି ଧଳା ଧଳା ଭୂତମାନେ ଇଙ୍ଗିତରେ କଥାବାର୍ତ୍ତା କରୁଛନ୍ତି । ଅବଶ୍ୟ କେବଳ ଗନ୍ଧରୁ ହିଁ ଜାଣିବା ସହଜ ଥିଲା ଯେ ମୁଁ ହସ୍‌ପିଟାଲ୍‌ରେ ଅଛି . କିପରି ଓ କାହିଁକି, ସେ ବିଷୟରେ ପରେ ଜଣାଯିବ ଭାବି ଅଧିକ ଚିନ୍ତା କରିନଥିଲି । ସମ୍ଭବତଃ ଏକପ୍ରକାର ଔଷଧର ପ୍ରଭାବ ଏବଂ ଚିନ୍ତାରୁ ମୁକ୍ତି ପାଇବାକୁ ମନୁଷ୍ୟର ସ୍ୱାଭାବିକ ଆଗ୍ରହ, ଗାଏମୋଟ୍, ସମସ୍ତ ମତାମତ, ବିଚାରଣାର ପଟୁଆର ବୀରଦର୍ପ ସହିତ ପଛଘୁଞ୍ଚା ଦେଲେ ଏବଂ ଭାବୁକ ନିଦେଇଗଲେ ।

ସ୍ତ୍ରୀକି ଯେତେବେଳେ ଅଣାଗଲା, ସେତେବେଳେ ସେ କାନ୍ଦୁଥିଲା । ଅବଶ୍ୟ ସେ କାନ୍ଦ ଭିତରେ କିଛି ଭରସା ବି ଥିଲା - ''ତମେ ଯାହା ହୁଅ ପଛକେ ମୁଁ ତମରି'' ଧରଣର ବୋଧହୁଏ । ତାକୁ ଦେଖି ମୁଁ ମୋର ଛୋଟ ପୁଅଟି ହୋଇଗଲି । ସ୍ତ୍ରୀକି ମୋ ସାମନାରେ ଖୁବ୍ କିଛି ଭରସା ଦିଆଗଲା ଯଦିଓ ମୁଁ ଜାଣିପାରୁଥିଲି ଯେ କଥାଗୁଡାକ ମଡେଇ କୁହାଯାଉଛି ଏବଂ ସମ୍ଭବତଃ ଯା ଭିତରେ କିଛି ଗୋଟାଏ ଷଡଯନ୍ତ୍ର ବି ରହିଥାଇପାରେ, କାହିଁକି ନା, ସେ କିପରି ଗୋଟାଏ ପୂର୍ବ-ପ୍ରସ୍ତୁତ, ରିହର୍ସାଲରେ ଦେଖାଶିଖା ଧରଣର ମୁଣ୍ଡ ଟୁଙ୍ଗାରୁଥିଲା ଏବଂ ମୋଟ କଥା, ତାହାର ଭାବଭଙ୍ଗୀରୁ ଜଣାପଡୁଥିଲା ଯେପରି ସେ ଏହି କଥାଯାକ ଆଗରୁ ଶୁଣିଛି । ତାକୁ କୁହାଗଲା, ବ୍ୟସ୍ତ

ହେବାର କିଛି କାରଣ ନାହିଁ, କେତେକ ଛୋଟ ଛୋଟ ଫ୍ରାକ୍‌ଚର ମାତ୍ର ତିନି ସପ୍ତାହ ଭିତରେ ସବୁ ଠିକ୍ ହୋଇଯିବ । ଅଫିସ୍‌କୁ ତ ଖବର ଦିଆଯାଇଛି, ଚାକିରି-ବାକିରିରେ କିଛି ଅସୁବିଧା ହେବ ନାହିଁ । ତାଙ୍କୁ ବୁଝେଇ କହନ୍ତୁ, ଯେମିତି ବ୍ୟସ୍ତ ନ ହୁଅନ୍ତି ।''

ଡାକ୍ତର ଓ ସମ୍ପ୍ରଦାୟ ଚାଲିଯିବା ପରେ ପ୍ରଥମେ କେତେକ ଦରକାରୀ କଥା ସ୍ତ୍ରୀଠାରୁ ଜାଣିନେଲି । ଯେତେବେଳେ ଦୁଆରବନ୍ଧ ପାଖରେ ଆମେ ଦୁହେଁ ଚୁମାଖାଉଥିଲୁ , ଭୂମିକମ୍ପ ହେଲା । ସଙ୍ଗେ ସଙ୍ଗେ ଉପସ୍ଥିତ ବୁଦ୍ଧିଦ୍ୱାରା ପିଲା ଦୁହିଁଙ୍କୁ ବାହାରେ ଠିଆକରିଦେଲି । ଅନ୍ୟମାନେ ଭଗବାନଙ୍କ କୃପାରୁ ବର୍ତ୍ତିଗଲେ । ମୁଁ ବି ନିରାପଦ ଜାଗାରେ ଥିଲି, କିନ୍ତୁ ବିଧିର ବିଧାନ କେ କରିବ ଆନ - ମୋ ଉପରେ ଗୋଟିଏ ବଡଧରଣର କଡିକାଠ ଛିଡିକି କରି ପଡିଗଲା । ସେଇଟା ପଡିବା ପୂର୍ବରୁ ଜାଣିପାରି ଟିକିଏ ଘୁଞ୍ଚିଯାଇଥିଲି, ରକ୍ଷା ହୋଇଗଲା, କାଠଟି ପଡିଲା ମୋର ଗୋଡ ଯୋଡିକି ଉପରେ ଏବଂ ପରେ ପରେ ମୁଁ ତଳେ ପଡିଗଲି ଏବଂ ସବୁ ଅନ୍ଧାର ହୋଇଯାଇଥିଲା । ଘରଟି ସମ୍ପୂର୍ଣ୍ଣ ଭୁଷୁଡି ପଡିଛି - କେବଳ ଆମର ନୁହେଁ, ସାହିପଡିଶା ସମସ୍ତଙ୍କର । ଅମୁକର ପୁଅଟି ଖାଇବସିଥିଲା, ତା ମଥାରେ ଛାତ ପଡିଛି, ସେଇ ଜାଗାରେ ସେ ଖତମ୍ । ଅମୁକର ସ୍ତ୍ରୀ, ସମୁକର ଝିଅ, ଜମୁକର ଚାକର-ମୋଟଉପରେ ବଡ ଭୟାବହ । ସମୁଦାୟ ଅଢେଇ ମିନିଟର ଭୂମିକମ୍ପ । ତଥାପି ଭାଗ୍ୟ ଭଲ, କେବଳ ମୋର ଗୋଡ ଦୁଇଟି ଭିନ୍ନ ଆମର ଆଉ କାହାରି କିଛି ଯାଇନି ଏବଂ ତାହା ବି ଭଲ ହୋଇଯିବାର ସମ୍ଭାବନା ରହିଛି । ଘରକଣାର କୌଣସି ଜିନିଷ ଆଉ ବାକି ନାହିଁ । ଆମେ ଦାଣ୍ଡରେ ଠିଆହୋଇଛୁ ।

ଏତିକି ଜାଣିବା ପରେ ମୁଁ ନୀରବ ହେଲି ଏବଂ ଏ ନୀରବତା ଅନେକ ଦିନ ରହିଲା । ଏ ମଧ୍ୟରେ ମୋତେ କୁହାଯାଇଛି, ତିନି ସପ୍ତାହ ଭିତରେ ପୁଣି ଥରେ 'ଏକ୍‌ସ-ରେ' ହେଲେ ସବୁ ଜଣାପଡିଯିବ-ମାନେ, ଗୋଡ ଦୁଇଟି ରହିବ କି ନାହିଁ, କାଟି ଫୋପାଡି ଦିଆହେବ କି ନାହିଁ । ଗୋଡ ଦୁଇଟି ନଥିଲେ ବି ଆଜିକାଲି ବିଜ୍ଞାନ-ଯୁଗରେ କିଛି କ୍ଷତି ନାହିଁ । ଅନେକ ସୈନ୍ୟଙ୍କର କୁଆଡେ ଗୋଡ ଦୁଇଟି କାଟିଦେବାକୁ ହୁଏ - ସେମାନେ ଦିବ୍ୟ ସୁନ୍ଦର ଘୂରି ବୁଲୁଛନ୍ତି-ଏପରି କୌଣସି କାମ ନାହିଁ ଯାହାକି କରି ନ ପାରନ୍ତି... ।

ଲକ୍ଷ୍ୟ କରିବା କଥା, ମୁଁ କିପରି ସହଜରେ ଏତେଗୁଡାଏ କଥା କହି ପକାଇଲି । ବୋଲିବା ବାହୁଲ୍ୟ, ସାଧାରଣ ଗଳ୍ପରେ ଏହି କେତେକ କଥା କହିବାକୁ ବହୁତ ବେଶୀ ନାଟକୀୟତାର ଅବତାରଣା କରାଯାଇଥାଏ । ଏଠି ବି ସେହି ଅକାରଣ ଚାଲାଖି, କିନ୍ତୁ ମୋ ଗଳ୍ପର ଅସଲ କଥା ହେଲା ଘଟଣା-ଲକ୍ଷ୍ୟ କରିବେ । ମୋ ମତରେ ଗୁଡାଏ ବାଲିଙ୍ଗି କାଢି ଲାଭ କଣ ?

ଏହାର ପରବର୍ତ୍ତୀ ଦୃଶ୍ୟ ପ୍ରାୟ ପନ୍ଦର ବର୍ଷ ତଳର ଘଟଣା । ମୁଁ ସେତେବେଳକୁ ସ୍କୁଲରେ ପଢୁଛି । ସେଦିନ ଆମ ସ୍କୁଲ ଆଉ ଏକ ପାଖ ସ୍କୁଲ ସଙ୍ଗେ ଫୁଟବଲ୍ ମ୍ୟାଚ୍ ଖେଳୁଛି । ମୁଁ ରାଇଟ୍ ଆଉଟ୍ । ଭଲ ଖେଳାଳୀ ବୋଲି ମୁଁ ସମସ୍ତଙ୍କଠୁଁ ଛୋଟ ହେଲେ ବି ମୋତେ ସାମିଲ କରାଯାଇଛି । ଛୋଟ ବୋଲି କେବଳ ବୁଦ୍ଧି ଦେଇ ମୁଁ ଖେଳୁଥିଲି- (ସ୍କୁଲର ଫୁଟବଲ କୋଚ୍ କହନ୍ତି, 'ବାଳକୃଷ୍ଣ ! ମଜା ହଉଚି ବାପା, ଅଧିକାଂଶ ଖେଳ ମାଂସପେଶୀ ନୁହେଁ, ବୁଦ୍ଧି ଦେଇ ଖେଳାହୁଏ । ଯେଉଁମାନେ ଅସଲ ଖେଳାଳି....) ଯଦିଓ ଏଥିରେ ଅସୁବିଧା ଥିଲା ବହୁତ । କାହାରିକି ବୁଦ୍ଧି ଦେଇ ପରାସ୍ତ କରିଦେଲେ ତାର ରାଗ ବହୁତ ପରିମାଣରେ ବେଶୀ ହୁଏ, କାରଣ ମଣିଷ ମାଂସପେଶୀ ନେଇ ନୁହେଁ, ବୁଦ୍ଧି ନେଇ ଗର୍ବ କରିବାକୁ ସୁଖ ପାଏ । ଏଣେ, ଯଦିଓ କଥାଟାର କୌଣସି ଯଥାର୍ଥ୍ୟ ନାହିଁ, ବୟସରେ କମ୍ କେହି ଲୋକ ବେଶୀ ବୁଦ୍ଧିମାନ୍ ବୋଲି ପ୍ରମାଣିତ ହେଲେ କ୍ରୋଧ ଆହୁରି ବେଶୀ ବଢିଯାଏ । ସେଦିନର ପ୍ରତିପକ୍ଷ ଯେତେ ହାରୁଥିଲେ, ସେତେ ବେଶୀ ରାଗୁଥିଲେ ଏବଂ ସେତିକି ସେତିକି ମୋର

ମଧ ବେଶୀ ଚାଲାକି କରିବାର ଲୋଭ ବଢିଚାଲିଥିଲା । ଗୋଟିଏ ବଲ୍ ପାଇ ମୁଁ କାଇଦା କରି ଆଗେଇ ନେଉଛି, ଦୁଇଜଣ ଷଣ୍ଡା ଷଣ୍ଡା ମର୍ଦ୍ଦ ମୋ ଉପରକୁ ସୁହୁସି ଆସିଲେ । ପରେ ପରେ ମୁଁ ଅଜ୍ଞାନ ହୋଇଗଲି । ପରେ ଜଣାଗଲା ଯେ ମୋର ଡାହାଣ ହାତଟି ଭାଙ୍ଗିଯାଇଛି । ବୁଦ୍ଧିରେ ପରାସ୍ତ ଲୋକ ପଶୁ ହୋଇଯାଏ ।

ଯଦିଓ ବର୍ତ୍ତମାନର ଘଟଣା ସମ୍ପୂର୍ଣ୍ଣ ଅଲଗା, ଯେତେବେଳେ 'ଏକ୍ସ-ରେ' ଫଟୋଟି ନିଠେଇ ପରୀକ୍ଷା କରି ଡାକ୍ତରବାବୁ ମୋ ଆଡେ ଚାହିଁଲେ, ମୋତେ ଲାଗିଲା ଏମିତି ଚାହାଣି ମୁଁ ଆଗରୁ ଦେଖିଛି । ସେହି ମୁହୂର୍ତ୍ତରେ ଫୁଟବଲ୍ ପଡିଆର ଦୃଶ୍ୟର ପୁନରାବୃତ୍ତି ଦରକାର ହେଲା । ଆହୁରି ମଧ, ମଣିଷ-ଜୀବନର ପ୍ରତ୍ୟେକ ମୁହୂର୍ତ୍ତରେ ଅତୀତ ଓ ଭବିଷ୍ୟତ ଛନ୍ଦାଛନ୍ଦି ହୋଇ ରହିଥାନ୍ତି ଏବଂ ଏମାନଙ୍କ ଜାଲରେ ମଣିଷ ସଦାବେଳେ ବନ୍ଦୀ । ବର୍ତ୍ତମାନ କେବଳ ମାୟା -ଏହାର କୌଣସି ସ୍ଥିତି ନାହିଁ ।

ମୋର ଗୋଡ ଦୁଇଟି କଟାହୋଇଗଲା । ତା ପରେ କଣ କିପରି ହେଲା କେଜାଣି, ମେରୁଦଣ୍ଡଟି ମଧ ଆଂଶିକଭାବେ ପକ୍ଷାଘାତଗ୍ରସ୍ତ ହୋଇଗଲା, ଯାହା ଫଳରେ ସେହି ଦୁଇଚକିଆ ଚଉକିରେ ବସି ସକାଳୁଆ ପବନ ସେବନର ଆନନ୍ଦବିଳାସ ମଧ ଭାଗ୍ୟରେ ଜୁଟିଲା ନାହିଁ । ନାନାରକମର ସଂକ୍ରମଣ, ନାନା କାର୍ଯ୍ୟ-କାରଣ ସମ୍ବନ୍ଧ, ଦୁର୍ବୋଧ ଶବ୍ଦ ଓ କ୍ଲିଷ୍ଟ ଚିକିତ୍ସା ସଂକଟ ଓ ତର୍କବିତର୍କ, ସେସବୁରୁ ବା ମିଳିବ କଣ ? ମୁଁ ସ୍ଥିର କରିଛି, ମୁଁ ବଞ୍ଚିବାକୁ ଚାହେଁ । ଜାଣେ ଯେ ମୋର ଏହି ସ୍ଥିର-ସଂକଳ୍ପ ବିରୁଦ୍ଧରେ ନାନାପ୍ରକାର ଶକ୍ତି, ଭିତରର ଓ ବାହାରର, କାମ କରିବ । ବେଳେ ବେଳେ ମନେହୁଏ, ମରିଗଲେ ବିଶ୍ରାମ ମିଳିବ ପରା । ସେତେବେଳେ ଅବଶ୍ୟ ମୁଁ ଜାଣିପାରେ ଯେ ଏପରି ଭାବନା ମୋ ନିଜର ନୁହେଁ, ଏକ କାଳ୍ପନିକ ଉପନ୍ୟାସର ପକ୍ଷାଘାତଗ୍ରସ୍ତ ନାୟକର । ବାସ୍ତବରେ କିନ୍ତୁ ମୋର ବଞ୍ଚିବାର ଇଚ୍ଛା ଖୁବ୍ ପ୍ରବଳ, ଯଦିଓ ଗୋଟି ଗୋଟି କରି ମୋର ଅଙ୍ଗ-ପ୍ରତ୍ୟଙ୍ଗ (ପ୍ରକୃତରେ କେବଳ ବାମହସ୍ତ ଓ ମେରୁଦଣ୍ଡ ମାତ୍ର, କାରଣ ପଦଦ୍ୱୟ ତ ନାହାନ୍ତି ଓ ଦକ୍ଷିଣହସ୍ତ ଆଗରୁହିଁ ଆଂଶିକ ଅଚଳ ଥିଲା) ଅଚଳ ହୋଇଯାଉଛି (ନୋଟ୍ : ଅଙ୍ଗପ୍ରତ୍ୟଙ୍ଗଙ୍କ କ୍ଷେତ୍ରରେ 'ଯାଉଛି' ପରିବର୍ତ୍ତେ 'ଯାଉଛନ୍ତି' କହିବାକୁ କିପରି ଲଜ୍ଜାବୋଧ ହେଲା । ସେପରି ଦୟାକରଣିକ ଯୁକ୍ତିତର୍କରେ ମୁଁ ଅନଭ୍ୟସ୍ତ, କିନ୍ତୁ ପ୍ରତ୍ୟଙ୍ଗମାନଙ୍କୁ ବା ବହୁବଚନ କରାଯିବ କିପରି, ଯେହେତୁ ଏମାନେ ଏକତ୍ର ହେଲେ ଯାଇ ଗୋଟିଏ ସମ୍ପୂର୍ଣ୍ଣ ବ୍ୟକ୍ତି ହେବ ଏବଂ 'ବଚନ' ହେବ ଏକ ବା ବହୁ), ଏବଂ ମୁଁ ବୁଝିପାରୁଛି ଯେ ମୁଁ ପୋଟାଏ ଅଲୋଡା ଜୀବ । ନା, 'ଅଲୋଡା' କଥାଟା ଠିକ୍ ହେଲା ନାହିଁ- ଅନ୍ୟ କିଏ ଲୋଡୁ ନ ଲୋଡୁ, ମୁଁ ମୋତେ ଖୋଜେ ଓ ଲୋଡେ । ତେବେ ଖାଲି ବଞ୍ଚିବା ଅସମ୍ଭବ-ଏ କଥାଟି ଗଲା କେତେ ବର୍ଷ ହେଲା ପ୍ରମାଣିତ ହୋଇସାରିଲାଣି । ଏ ଦୃଷ୍ଟିରୁ ମୁଁ ଖୁସି ଯେ, ଆମର ଏହି ଭାରତବର୍ଷ ବେଶ୍ ପଛରେ ପଡିଛି । ଖୁସି ଯେ, ଏଠି ଏବେ ସୁଦ୍ଧା ଏକାନ୍ନବର୍ତ୍ତୀ ପରିବାର ଏବଂ ପିତୃଋଣ ପରିଶୋଧ ପରି ବ୍ୟବସ୍ଥାମାନ ରହିଛି । ଦେଶଟି ଯେପରି ଆଉ ଆଗେଇ ନ ଯାଉ ! ଖାଲି ବଞ୍ଚିବା ଅସମ୍ଭବ, କିନ୍ତୁ ମରିବାଠୁଁ ଭଲ !

ଖାଲି ବଞ୍ଚିବା ମାନେ, ଅତି ତୀକ୍ଷ୍ଣ ଶ୍ରବଣଶକ୍ତି, ପ୍ରଖର ଘ୍ରାଣଶକ୍ତି, ତୀବ୍ର ଦୃଷ୍ଟିଶକ୍ତି ଦେଇ ଜୀବନ ଭିତରେ ପଶିବା, ରଙ୍ଗ-ରଙ୍ଗେଲି କଳ୍ପନାର ନାୟକ ହୋଇ ହରିନାଟ କରିବା । ଉଦାହରଣସ୍ୱରୂପ, ପାଖ ରାସ୍ତାରେ ଜଣେ ସ୍କୁଟର୍ ଛୁଟାଇ ବାହାରିଗଲା, ତା ସ୍କୁଟରର ଗତିବେଗ କେତେ ? ଯେବେ ଆଗରୁ ଝରକାର ଲମ୍ବ, ଆଖିଠାରୁ ଝରକା ଓ ଝରକାଠାରୁ ରାସ୍ତାର ଦୂରତ୍ୱ ଜଣାଅଛି ଏବଂ ଝରକାର ଗୋଟିଏ ପ୍ରାନ୍ତରୁ ଅନ୍ୟ ଏକ ପ୍ରାନ୍ତ ଚାଲିଯିବାର ସମୟ ମଧ ଜଣାଅଛି, ଆଖି ଥିବା

ସ୍ଥାନରେ ଗୋଟିଏ ବିନ୍ଦୁ କଳ୍ପନା କରି (ମୋ କପାଳର ମଧ୍ୟବିନ୍ଦୁ, ତ୍ରାଟକ ଯୋଗର ବିନ୍ଦୁଟି । ଆଖି ଦୁଇଟି, ଅତଏବ ସେମାନଙ୍କର କଳ୍ପନାର ଲାଗ ଦୁଇଜଣଙ୍କର ମଧ୍ୟବିନ୍ଦୁର, ଯେପରି କୌଣସି ଇଂରେଜୀ ଶବ୍ଦର ଉଚ୍ଚାରଣ ନେଇ ଦୁଇଟି ପିଲା କଳି କଲେ ମାଷ୍ଟ୍ର ଉଭୟଙ୍କୁ ଚୁପ୍ କରାଇ କହନ୍ତି, ''ଯେ ବି ନୁହେଁ, ସେ ବି ନୁହେଁ, କିନ୍ତୁ ମଝିଆମଝି କିଛି ଗୋଟାଏ....''), ସେ ବିନ୍ଦୁରୁ ଦୁଇଟି ହାତ ପ୍ରସାର କରି ଝରକାର ଧାର ଦୁଇଟି ଛୁଇଁ ରାସ୍ତାକୁ ବାହୁବନ୍ଧନ ଲାଗି ଆହ୍ୱାନ କରି ଛୁଇଁଲେ ଯେଉଁ ତ୍ରିଭୁଜଟି ହେବ, ସେଥିରୁ କଳନା କରିବାକୁ ହେବ । ତ୍ରିଭୁଜଟି କଳ୍ପନା କଲେ ଦେଖାଯାଉଛି ଯେପରି କେଉଁ ଅତ୍ୟଧିକ ମୋଟି, ମଧ୍ୟବୟସ୍କା ଧନୀ ମହିଳା ବିଉଟି ପାର୍ଲୋର୍‌ରୁ ବାହାରୁଛି, ତାହା ବୃଦ୍ଧଦେବ ମାର୍କା ଜୁତା ସାଙ୍ଗକୁ ଅଣ୍ଟାରେ ଶାଢ଼ିଟି କଷିକରି ଭିଡ଼ିଛି ଏବଂ ବଡ ବଡ ପାହୁଣ୍ଡ ପକେଇ ଗାଡ଼ିଆଡକୁ ଆଗେଇଯାଉଛି ।

ସେହି ପେଟକଟା ତ୍ରିଭୁଜରୁ ମୋ ଆଖିକୁ ଦୃଶ୍ୟମାନ ରାସ୍ତାର ଲୟ ବାହାର କର.... (କିନ୍ତୁ ରିଲେଟିଭିଟି ? କାରଣ, ଯେତେ ଜୋର୍‌ରେ ପ୍ରକୃତରେ ସ୍କୁଟର୍‌ଟି ଯାଉଥିଲା, ସେତେ ଜୋର୍‌ରେ ଦେଖାଯିବ ନାହିଁ ମୋ ପୃଷ୍ଠଭୂମିରେ) । ଅନ୍ୟ ଏକ ଉପାୟ, ସ୍କୁଟରଟିର ଇଞ୍ଜିନ୍‌ର ଷ୍ଟ୍ରୋକ୍‌ମାନ ଗଣି ଗତିବେଗ କଳନା କରିବା । ମୋର ଧାରା ଭିନେ, କାରଣ ମୋତେ ଏସବୁ କିଛି ଜଣାନାହିଁ । ଯେଉଁଠୁ ପ୍ରଥମେ ଶୁଣିଲି ସ୍କୁଟର୍‌ଟିକି, ତାକୁ 'ସା' ବୋଲି ଧରିନେଲି । ବୁଲାଣି ପାଖରେ ସେ ଉଦାଗ୍ ସପ୍ତକର କୋମଳ 'ନି' ଗାଏ ଏବଂ ପୁଣି 'ସା' ଦେଇ 'ମା' ପର୍ଯ୍ୟନ୍ତ ବାହାରି ଶୂନ୍ୟରେ ମିଳେଇଯାଏ । ଦିନେ ଠିକ୍ ମୁଦାରାର ଗାନ୍ଧାର ପାଖରେ ସେ ଅଟକିଗଲା ଏବଂ ସୁର୍‌ଟା ଭୁଲଭାଲ୍ ହୋଇଗଲା । ମୁଁ ଚମକି ପଡ଼ିଲି ଯେମିତି ମଥାପାଖ ଆଲାର୍ମ ଘଡି ବନ୍ଦହୋଇଗଲେ ନିଦ ଭାଙ୍ଗିଯାଏ, କିନ୍ତୁ କାରଣଟା କୋଉଠି ପ୍ରଥମରୁ ଜଣାପଡେ ନାହିଁ । ନାନାପ୍ରକାରେ ଚେଷ୍ଟା କଲି ଶୁଣିବାକୁ, ଏପରିକି ମଥାଟା ଉଠାଇବା ମଧ୍ୟ ବାଦ୍ ଯାଉନାହିଁ, କିନ୍ତୁ ସେ ବହୁତ ଦୂରରେ । ଶେଷକୁ ପୁଅକୁ ଡାକିଲି । ସେ ଅଫିସ୍ ବାହାରିଥିଲା, ଏବଂ ସବୁ ରୋଜଗାରିଆ ମୁରବି ପରି ଖୁବ୍ ବିରକ୍ତ ହେଲା ଯେ ଏସବୁ ବାଜେ କଥା ଲାଗି ତାର ସମୟ ନାହିଁ । ବହୁ କଷ୍ଟରେ ତାକୁ ରାଜି କରି ପଠାଇଲି । ସେ ଯେତେବେଳେ ଦେଖିବାକୁ ଯାଉଥିଲା, ଉଦ୍‌ବେଗର ବିନ୍ଦୁ ବିନ୍ଦୁ ଝାଳ ମୋର ନିଶରେ ଜମିଯାଇଥିଲା ଏବଂ ଭିତରଟା ଛଟପଟ କରୁଥିଲା । ଏତିକିବେଳେ କଡି ମଧ୍ୟମଯାକେ ସାମାନ୍ୟ ଉଠିଯାଇ ସେ ବନ୍ଦ ହୋଇଗଲା । ଯାହା ସନ୍ଦେହ ଥିଲା, ପୁଅ ଆସି ଖବର ଦେଲା ଯେ ଆକ୍‌ସିଡେଣ୍ଟ ହୋଇଛି, ଲୋକଟି ହସ୍‌ପାତାଲ୍, ଟ୍ରକ୍ ଡ୍ରାଇଭରଟି ଜେଲ୍ ଓ ଦେଖଣାହାରିଏ ଯେଝା ବାଟରେ ଗଲେଣି : ଲୋକଟି କିଏ ମୁଁ ଜାଣେନା । ଲୋକଟି ମରିଗଲେ ମୋର କିଛି କ୍ଷତି ନାହିଁ, କିନ୍ତୁ ମୋର ଅକାରଣରେ ଭୟ ହେବାକୁ ଲାଗିଲା ଯେ ସେ ମରିବ ନାହିଁ, ସେ ପକ୍ଷାଘାତଗ୍ରସ୍ତ ହୋଇ ପଡିରହିବ । ମନେପଡିଗଲା, ସେ କିପରି ମଥାଟିକି ଡାହାଣ ଆଡକୁ ସାମାନ୍ୟ ଢଳେଇ ଦେଇ ଚୁରୁଟ୍ ଟାଣୁ ଟାଣୁ ସ୍କୁଟର ଚଳାଏ । ଦିନ ପରେ ଦିନ, ଅଳ୍ପକ୍ଷଣସ୍ଥାୟୀ ଆବିର୍ଭାବ ଓ ଅନ୍ତର୍ଦ୍ଧାନ ଫଳରେ ତାର ଏହି ଚେହେରାଟି ମୋର ଅଜାଣତରେ ମୁଖସ୍ଥ ହୋଇଯାଇଛି । ଆଜି ବି ସେ ତା'ର ସ୍ତ୍ରୀକୁ ଛୁଟେଇ ଚୁମିଥିବ ଏବଂ ଫାଟକରେ ଆଉଜି ସ୍ତ୍ରୀ କହିଥିବ-ଡେରି କରିବ ନାହିଁ, ସୁନାଟା ପରା, ବେଶି ଡେରି ହେଲେ ଚିନ୍ତା ହୁଏ । ମନେକରି ଅମୁକ ବାବୁଙ୍କୁ ଫୋନ୍ କରିବ(ଯେମିତି ଭୋଳା ମନ...) । ନାଃ, ସେ ଫେରିବ ନାହିଁ । ପକେଟ୍ ଡାଇରିରୁ ଠିକଣା ବାହାରିବ, ଠିକ୍ ସମୟରେ ଖବର ଆସିବ । ଏଇଠି ମୋର ପୂର୍ବବର୍ଣ୍ଣିତ ହସ୍‌ପିଟାଲ୍‌ର ପ୍ରଥମ ଦୃଶ୍ୟର ପୁନରାବୃତ୍ତି । ସେହି ଭୟ ହିଁ ମୋତେ ଗ୍ରାସ କରିଥିଲା କିଛି କାଳ । ଖାଲି ବଞ୍ଚିବାର ମୂଳ ଅସୁବିଧାଟି ହେଲା, ଛୋଟ ଛୋଟ କଥାଗୁଡାକ ହଠାତ୍ ବଡ ବଡ ହୋଇଯିବେ ଏବଂ ତମକୁ ଅକାରଣେ ବ୍ୟସ୍ତ କରିପକାଇବେ ।

ଏ କ୍ଷେତ୍ରରେ ସେ ମଲା, ବଞ୍ଚିଲା କି ପକ୍ଷାଘାତଗ୍ରସ୍ତ ହେଲା, ଜାଣିବାର ଉପାୟ ବି ନାହିଁ । ସେହି ଘଟଣା ପରଠାରୁ ମୁଁ ଠିକ୍ କରିଛି, ପ୍ରତ୍ୟେକ ସ୍କୁଟର୍‌ର ମୋ ଘର ସାମନାରେ ଯିବାର ଏକ ନିର୍ଦ୍ଦିଷ୍ଟ ସ୍ୱର-ସମୁଦାୟ ରହିଛି, ଯାହାକି ଘଡିକଣ୍ଟା ସଙ୍ଗେ ମିଳାଇ ଥରେ ସ୍ଥିର କରିପକାଇପାରିଲେ ସେହି ଚାଳକମାନେ ମଲେ କି ବଞ୍ଚିଲେ ଜାଣିବାକୁ ସୁବିଧା ହେବ । ଅବଶ୍ୟ ଏଇଟା ତୁଚ୍ଛା ଚାଲ୍ ! ସତେ କଣ ଆଉ ମୁଁ ଏଇଆ କରିବି କି ? କେବଳ ମୁଁ ନିଜକୁ ବୁଝାଇବାକୁ ସୁଖପାଏ ଯେ ମୁଁ କିଛି ନା କିଛି କରୁଛି, ଅନବରତ କରିଚାଲିଛି, କାରଣ ସ୍ୱପ୍ନର ପକ୍ଷାଘାତ ନାହିଁ । ଏଣୁ ଖାଲି ବଞ୍ଚିବା ମାନେ ତିଳକୁ ତାଳ କରିବା ମାତ୍ର ।

ପକ୍ଷାଘାତଗ୍ରସ୍ତ ଅବସ୍ଥାରେ ମଧ୍ୟ ମଣିଷ ପ୍ରେମିକ, ଭାବୁକ ଏବଂ ଚାହିଁଲେ ଘାତକ । ଏଇଠି ଶୋଇ ଶୋଇ କିପରି ଅବନୀ ସାମଲଙ୍କୁ ଘାଏଲ୍ କରିହେବ ସେ ନେଇ ମୁଁ ଚିନ୍ତା କରିଛି । ଅବନୀ ସାମଲ ମୋ ସହକର୍ମୀ ଥିଲା, ବର୍ତ୍ତମାନ ବଡଲୋକ ହୋଇଛି । ପହରଦିନ ସେ ସପରିବାରେ ମୋତେ ନିଜର ସୌଭାଗ୍ୟ, ସ୍ୱାସ୍ଥ୍ୟ ଏବଂ ପିଲାମାନଙ୍କର ଯୋଗ୍ୟତା ଦେଖାଇବାକୁ ଆସିଥିଲା । ଅବନୀ ଦୁଇ ଚାରି ମନିଟ୍ ଏଠି ବସିଥିଲା, ଏବଂ ମୁଁ ବୁଝିପାରୁଥିଲି (କାରଣ ଏ ମଧ୍ୟରେ ମୁଁ ଆଉ କାହା ଆଖି ଭିତରେ ପଶି, ତା ଆଖିବାଟେ ନିଜକୁ ଦେଖିବାର କାୟାପ୍ରବେଶବିଦ୍ୟାଟି ହାସଲ କରିନେଇଛି) । ସେ ଟିକେ ଅସ୍ତବ୍ୟସ୍ତ ହେଉଛି । ଅବନୀର ପୁଅଟି ଆସି ମୋତେ ନମସ୍କାର କଲା ( ସେ ଅବନୀର ଲୁଇତାଯୋଡିକି ପାଇଛି ଏବଂ ତା ସ୍ତ୍ରୀର ଗହମ ରଙ୍ଗ ପାଇଛି) । ସାଧାରଣତଃ ମୋତେ କେହି ନମସ୍କାର କରେ ନାହିଁ । ଏ ପ୍ରସଙ୍ଗ ମୁଁ ମୋ ସ୍ତ୍ରୀ ସାମନାରେ ବି ଉଠାଏ ନାହିଁ । ଆଜି ଅବନୀର ଝିଅଟି ମୋ ସ୍ତ୍ରୀର ଗୋଡତଳେ ପଡିଲା, କିନ୍ତୁ ମୋ ଆଡକୁ ଚାହିଁଲା ନାହିଁ, ଆଉ ମୋ ସ୍ତ୍ରୀ ବା ତା'ର ବାପ ମା' କେହି ଏ ବ୍ୟବହାରରେ କିଛି ହେଲେ ଅସ୍ୱାଭାବିକତା ଦେଖିଲେ ନାହିଁ । ଦିନେ ମୋ ଝିଅ ସଙ୍ଗେ ଅବନୀ ପୁଅର ସମ୍ବନ୍ଧ ପଡୁଥିଲା । ଅବନୀ ପୁଅର ଆଖି ବଡ ହୋଇଛି, ସେ ପ୍ରସଙ୍ଗ ଆଉ ସେମାନେ ଉଠାଇବେ ନାହିଁ । ଅବନୀର ଖୁବ୍ ଗର୍ବ ଯେ, ସେ ଅଫିସ୍‌ରୁ ଚାନ୍ଦାଭେଦା କରି ଏବଂ ସରକାରୀ ସାହାଯ୍ୟ ଯୋଗାଡ କରିଦେଇ ମୋତେ ସ୍ୱର୍ଗକୁ ଉଠାଇଛି । ସେତେବେଳେ ଅବନୀବାବୁ ଅବନୀବାବୁ ବୋଲି ମୋ ସ୍ତ୍ରୀ ସର୍ବଦା ମୁଖର ଥିଲା । ଆମର ଏଠି ଅବନୀବାବୁଙ୍କ ନିଜର ଲୋକ (ପିଲାଙ୍କର ବାପ ବଦଳି ବାପ ?) । ଦୁଇ ଚାରି ମିନିଟ୍ ପରେ ଅବନୀ ଆରଘରକୁ ଚାଲିଗଲା । ସାଧାରଣତଃ କୋଳାହଳଟି ଆରଘରେଇ ଥାଏ । ଆରଘରୁ ଶୁଣାଯାଉଥିବା ଶବ୍ଦପୁଞ୍ଜକୁ ମୁଁ ଦୁଇ ଶ୍ରେଣୀରେ ବିଭକ୍ତ କରେ -(୧) ଗଣ୍ଡଗୋଳ, (୨) ହସ । ଅବନୀ ସେ ଘରେ ନାୟକ । କିଛି ଏମଯ ହସ ଓ ଗଣ୍ଡଗୋଳର ମାଳା ଗୁନ୍ଥି (ହସ, ଗଣ୍ଡଗୋଳ, ହସ ବା ହସ ଗଣ୍ଡଗୋଳ, ଗଣ୍ଡଗୋଳ, ହସ, ହସ ବା ଏକ୍ ଦୁଇ, ଏକ୍ ଦୁଇ ତିନ୍, ଏକ୍ ଦୁଇ ଦୁଇ, ଏକ୍ ଦୁଇ ତିନ୍ ଇତ୍ୟାଦି) ମୋ ସ୍ତ୍ରୀ ବାହାରିଯାଏ ଚାହା ବା କଫି କରିବାକୁ । ଅବନୀ ଓ ମୋ ସ୍ତ୍ରୀ ଭିତରେ ଯେବେ କିଛି ସମ୍ପର୍କ ଥାଏ (ସେକଥା କ'ଣ ସାହିପଡିଶାରେ ଚୁପଚାପ୍ ଚାଲୁନଥିବ କି ?) ସମସ୍ତେ ମୋ ସ୍ତ୍ରୀର ଦୁଃଖ ସଙ୍ଗେ ସହାନୁଭୂତି ଦେଖାଇବେ-ବିଚରାଟିର ପକ୍ଷାଘାତଗ୍ରସ୍ତ ସ୍ୱାମୀ...

ପରବର୍ତ୍ତୀ ଦୃଶ୍ୟ ପୂର୍ବ ଦୃଶ୍ୟର ପୁନରାବୃତ୍ତି । ଅବନୀ ସାମଲ ମୋ ଖଟପାଖରେ ଚଉକିରେ ବସି ସିଗାରେଟ୍ ଲଗାଉଛି । ''ଅବନୀ !'' ମୁଁ କହିଲି, ''ଜାଣିଛୁ ? ସିଗାରେଟ୍ ଫାଳିକିଆ ଜଳିଲେ ତା ମାନେ ତୋ ସ୍ତ୍ରୀ ତୋତେ ଧୋକାଦେଉଛି ।'' ଅବନୀ ହସିଲା, କିନ୍ତୁ ସିଗାରେଟ୍ ଟାଣିବା ସଙ୍ଗେ କିପରି କୁସଂସ୍କାର ରହିଛି ଦେଖ । ଗୋଟିଏ କାଠିରୁ ସିଗ୍ରେଟ୍ ଜଳେଇଲେ ତୃତୀୟ ବ୍ୟକ୍ତି ମରିବ-ଇଯେ ତ ପ୍ରଥମ ମହାସମରର ଦାନ ! ବନ୍ଧୁକ ଯିଏ ନିଶାଣ କରିଛି ଦିଆସିଲି ଆଲୁଅ ଦେଖି ସେ

ଘୋଡିଆ ଟିପିଲାବେଳକୁ ସାଧାରଣତଃ ତୃତୀୟ ବ୍ୟକ୍ତିହିଁ ନିଆଁ ଲଗାଉଥାଏ । ବାକି ଚତୁର୍ଥ ଜଣକ ଯେବେ ଲଗେଇ ନେଇ ପାରିଲା, ତା ମାନେ କେହି ଆରପଟୁ ନିଶାଣ ଲଗେଇ ନାହିଁ । କଥାଟାର କେତେ ବେଶୀ... ଆଚ୍ଛା ଜାଣିଛୁ ଅବନୀ, ପ୍ରଥମ କାଠିରେ ଯେବେ ନିଆଁ ଲଗେଇ ନପାରୁ, ତାହେଲେ ତୁ ନପୁଂସକ, ଯାଇ ବି କୁହାଯାଏ ।'' ଏତକ କହି ମୁଁ ଜୋର୍ ଜୋର୍ ହସିଲି । ଅବନୀ ଆସ୍-ଟ୍ରେକୁ ଚାହିଁଛି । ଦୁଇ ତିନିଟା କାଠି....

ହଁ ଘାତକ ବି ହୋଇହୁଏ । ଆଟମ୍ ବୋମାଟିଏ ପକେଇଦିଅ, ତାହାର ବି ଶେଷ ଅଛି । ଆଇଡିଆଟି ପୋତିଦିଅ- ସେ କ୍ରମେ କ୍ରମେ ବଢ଼ିବ, ନାନା ଶାଖା-ପ୍ରଶାଖା ପ୍ରସାର କରି, ନିଜକୁ ନିଜେ ସାର ଦେଇ, ଖତ ଦେଇ ଦେଇ ବଢ଼ିବ, ଚତୁର୍ଦ୍ଦିଗ ବସ୍ତାର କରି । ଓଲ୍ଲୁ, ଓଲ୍ଲୁ !! ଅବନୀ ମୋର ଫାଶ ଆଡକୁ ଦ୍ରୁତ ଆଗେଇ ଆସୁଛି, ଅଥଚ ମୁଁ କେବଳ ଅନ୍ଧାରରେ ଅନ୍ଦାଜ ଉପରେ ଫାଶ ବସେଇଥିଲି । ପ୍ରଥମେ କହିଥିଲି, ''ବଡ ଗରମ୍ ଅବନୀ, ପଙ୍ଖାଟାକୁ ଟିକେ ଜୋର୍ କରିଦେ '' ତା ପରେ, ତା ପରେ ? ଯଦି ସେ ସିଗାରେଟ୍ ନଖାଏ ? କିନ୍ତୁ ସେ ପକେଟ୍ ଅଣ୍ଡାଳି ସିଗାରେଟ୍ କେଶ୍ ବାହାରକଲା ଧୀରେ ଧୀରେ । ଧୈର୍ଯ୍ୟ ହେଉଛି ସବୁଠୁଁ ବଡ କଥା । ଅବନୀ ମଥାରେ କିଛି ଧାରଣାର ବୀଜ ବପନ ହୋଇଛି । ଆଶ କରାଯାଏ ଏଣିକି ସେ ଭିନେ ଏକ ଆଖିରେ ତାର ସ୍ତ୍ରୀ ଆଡକୁ ଚାହିଁବ । ତାର ଯେପରି ଠିକ୍ ମନେପଡେ ଯେ ତା ବାହାଘର ଆଗରୁ ମୁଁ ତା ସ୍ତ୍ରୀକୁ ଜାଣିଥିଲି । ତେଣିକି ଅବନୀର ସ୍ତ୍ରୀ ଆଗରେ ଦି'ବୁନ୍ଦା ଲୁହ, ଯେପରି ତାର ସହାନୁଭୂତି ଉଛୁଳି ଉଠେ । ମୋ ପିଲା କ'ଣ ଡମରି ନୁହନ୍ତି ଗିରିଜା, ତାଙ୍କର ଆଉ ଅଛି କିଏ, ଅଛି କିଏ (ସୁକ ସୁକ୍) ଅଛି କିଏ.... ଏବଂ ସେ କଥା ପରେ ଯେତେବେଳେ ଗିରିଜା ଅବନୀକୁ କହିବ, ପୂର୍ବାରୋପିତ ବୀଜଟି ଶାଖା-ପ୍ରଶାଖା ମେଲାଇ ସୁଁ-ସୁଁ ବଢିଚାଲିବ । ହଁ ଘାତକ, ହଁ ପ୍ରେମିକ, ବଢି-ଚାଲିବ ସୁଁ ସୁଁ ।

ଏକ୍ ଦୁଇ, ଏକ୍ ଏକ୍ ଦୁଇ । ଗଣ୍ଡଗୋଳ ବଢିଚାଲିଲା ପାଖ ଘରେ । ଅବନୀ ନିଶ୍ଚୟ ଆଜି କିଛି ନୂଆ ହସକଥା ଶିଖିଛି । ଝିଅ ଆସି ଦିଟା ବଟିକା ଖୁଆଇ ଦେଇ ଗଲା । ମୋ'ଲାଗି ଏମାନଙ୍କର ଜୀବନ ବିକଳ । କେଉଁ ନୂଆ ପିଲାକୁ ଆଣି ମୋ ସଙ୍ଗେ ପରିଚୟ କରାଇ ଦେଇ ତା ପ୍ରତି ପ୍ରେମର ଇଙ୍ଗିତ ଦେବା ଏ ଝିଅ ପକ୍ଷରେ ସମ୍ଭବ ହେଲା ନାହିଁ । ପିଲାଟି ଅତି ଭଲ, କିନ୍ତୁ ସହ୍ୟଶକ୍ତିର ସୀମା ଅଛି, ଅଥଚ ମୋର ବଞ୍ଚିବାକୁ ଇଚ୍ଛା । ସବୁ ବୁଝିପାରୁଛି, କିନ୍ତୁ ମୋର ବଞ୍ଚିବାକୁ ଇଚ୍ଛା । ଏଇ ଖଟ ଉପରୁ ଶୂନ୍ୟକୁ ଚାହିଁ ମୁଁ କହେ-ମୁଁ ଅଛି, ମୁଁ ଅଛି, ଶେଷ ହୋଇଯାଇନାହିଁ । ..... ପିଲାଦିନେ ଗୋଟିଏ ସାପକୁ ଆମର ଚାକର ପାଣୁଆ ପିଟିଦେଇ ତା'ର ମେରୁଦଣ୍ଡ ଭାଙ୍ଗି ଦେଇଥିଲା । ସେ ରାଗରେ ଫଣା ଟେକି ସଁ-ସଁ ହେଉଥିଲା । ତା ପରେ ଅନ୍ଧାର । ଚାରିଆଡେ ଅନ୍ଧାର । ପରବର୍ତ୍ତୀ ଦୃଶ୍ୟ, ଅନ୍ଧାର । ଅନ୍ଧାର ଏବଂ ଅଜସ୍ର, ନାନାପ୍ରକାରର ଚିତ୍କାର, ନାନା ଲୋକଙ୍କର, ନାନା ଲୋକଙ୍କର କ୍ରନ୍ଦନ ଏବଂ ମୟୂରର ଡାକ । କି ବିଭତ୍ସ ! ମୟୂର ଏତେ ସୁନ୍ଦର, କିନ୍ତୁ ତାର ଡାକ ଏତିକି ବୀଭତ୍ସ ଯେ ସତ୍ତ୍ଵ ଚିତ୍କାର ଟପି ସେ ବାହାରିପଡୁଛି । ତାପରେ ମୋ ସ୍ତ୍ରୀ । ମୁଁ ଡାକ୍ତରଖାନାରୁ ଫେରିଆସିବା ପରେ ସେ ମୋତେ ଦିନେ ରାତିଅଧରେ ଆଦର କଲା, ମୋର କୋଳ ଉପରେ ମଥା ରଖି ପଚାରିଲା, କାଟୁଛି କି ନାହିଁ । ମୋତେ କାଟୁଥିଲା, କିନ୍ତୁ ମୁଁ ନା କହିଲି, ଯାହା ଫଳରେ ସେ ଆହୁରି ଉତ୍ସାହିତ ହେଲା । ସେ ମୋର ଆତ୍ମବିଶ୍ୱାସ ଫେରାଇ ଆଣୁଥିଲା, ଆମେ ଏମିତି ବଞ୍ଚଯାଇପାରିବୁ, ତାର କିଛି ହେଲେ ଅସୁବିଧା ହେବ ନାହିଁ, ମୋତେ ଏଇ କଥା ଜଣାଇବାକୁ ଚେଷ୍ଟା କରୁଥିଲା । ତାର ଏଇ ଚେଷ୍ଟାରେ ସେ ଯେ ଏକାନ୍ତଭାବେ ମୋର, ସେକଥା ଜଣାଇବାର ବ୍ୟାକୁଳତାରେ ମୋତେ କାନ୍ଦ ମାଡିଲା ଏବଂ ମୋ ପାରୁପର୍ଯ୍ୟନ୍ତ ସମସ୍ତ କଷ୍ଟ ସତ୍ତ୍ୱେ ମୁଁ ତା ସଙ୍ଗେ ସହଯୋଗ କରିଥିଲି । ସେ ଏକ ପରୀକ୍ଷା !

ବିଜ୍ଞାନରେ ସହସ୍ର ବିଫଳତା ପରେ ଗୋଟିଏ ସଫଳତା ଆସେ । ଏଠି ଥରକର ବିଫଳତା ଯଥେଷ୍ଟ... । ପାଖ ଘରେ ଅବନୀ ଓ ମୋ ସ୍ତ୍ରୀ କଥାବାର୍ତ୍ତା ହେଉଛନ୍ତି । ଅନେକ କଥା ମୋଠାରୁ ଲୁଚାଇବା ଦରକାର, ଡାକ୍ତରଙ୍କର ନିର୍ଦ୍ଦେଶ ପରା, ସେମାନେ ଫୁସ୍‌ଫାସ୍ କଥା ହେଉଛନ୍ତି । ଝିଅ (ସେତେବେଳକୁ ଅତି ଛୋଟ) କହୁଚି, ''ମା, ତୁ ଅବନୀ ଦାଦାକୁ ବାହାହେଇପଡ, ଏ ବାପାଟା ସଦାବେଳେ ପଡିଥାଏ ।'' ଯୌବନ ଚଞ୍ଚଳ, ଈର୍ଷାପରାୟଣ ଏବଂ ବେଦନାଦାୟକ । ପକ୍ଷାଘାତଗ୍ରସ୍ତ ଯୌବନ ହୃଦୟବିଦାରକ । ସାପଟି ଦଂଶିବାକୁ ଚେଷ୍ଟାକଲା ଆମ ଦେଖଣାହାରିମାନଙ୍କୁ । କ୍ରୋଧାନ୍ଧ ବୋକା ସେ, ଦୂରତ୍ୱ ଦେଖିପାରୁନଥିଲା, ଚୋଟ ପରେ ଚୋଟ ମାରିଯାଉଥିଲା ସର୍ବଂସହା ଧରିତ୍ରୀ ବୁକୁରେ । ବିଜୟ-ଗର୍ବରେ ପାଣୁଆ ଚାହିଁଛି ଏବଂ ପାଣୁଆ ପ୍ରତି ପ୍ରଶଂସ ଦୃଷ୍ଟି ସମସ୍ତଙ୍କର । ଅବନୀ ପାଣୁଆକୁ ବକ୍ସିସ୍ ଦେଲା ଏବଂ କହିଲା ସାବାସ୍ ଏବଂ ଯନ୍ତ୍ରଣାରେ ଅସ୍ଥିର ହୋଇ ମୁଁ ଉଠିବାକୁ, କିଛି ଗୋଟାଏ ଧରିବାକୁ, କୁଆଡିକି ଚାଲିଯିବାକୁ ଚେଷ୍ଟା କରୁଛି-ଚେଷ୍ଟା ଚେଷ୍ଟା ଚେଷ୍ଟା, ସେମାନେ ଚାଲିଗଲେ - ସମସ୍ତେ ଚାଲିଗଲେ ସାପଟିକୁ ମରିବାକୁ ଛାଡିଦେଇ ଏବଂ କିଛି ସମୟ ପରେ ପାଣୁଆ ଆସି ସାପଟିର ମୁଣ୍ଡ ଛେଚିଦେଇଗଲା, ଆଉ ସେ ମଥା ଉଠିବ ନାହିଁ.... ମୋ ସ୍ତ୍ରୀର କଣ୍ଠସ୍ୱର, '' ସେଥିରେ କଣ ଅଛି, ତମର ତ କିଛି ଦୋଷ ନାହିଁ ମୁଁ ରାଗିବି କାହିଁକି,'' ଏବଂ ଅବନୀ ଆସ୍-ଟ୍ରେ ଭିତରକୁ ଚାହିଁରହିଛି ଏବଂ ମୁଁ ହସୁଛି ଏବଂ ହସିବା ଭିତରେ ବି ମୁଁ ବୁଝିପାରୁଛି ଯେ ମୋ ଲାଗି ଢେର୍ ବେଶି କାଠି ଲାଗିବ ଏବଂ ମୁଁ ହସୁଛି,ଏତିକିବେଳେ ବତି ଲିଭିଗଲା ସାରା ସହରରେ ଏବଂ ମୁଁ ବଡ ପାଟିରେ ଚିତ୍କାର କରିବାକୁ ଚେଷ୍ଟା କଲି, ଯେତେ ଶକ୍ତି ଅଛି ଠୁଳ କରି, ମୁଁ ବଞ୍ଚିଛି, ମୁଁ ବଞ୍ଚିଛି ଏବଂ ପାଖଘରୁ ଅକ୍ସିଜେନ୍ ସିଲିଣ୍ଡରଟାଏ ଘୋଷାରି ଘୋଷାରି ପୁଅ ଏ ଘରକୁ ଆଣୁଛି, ପୁଣି ଅନ୍ଧାର... ସେ ଅନ୍ଧାରକୁ ଧରି ଧରି ଏହି ପ୍ରଥମ ଥର ପାଇଁ ମୁଁ ଉଠି ଠିଆ ହେଲି ଏବଂ ଚାଲିବାକୁ ଲାଗିଲି ।

ପରବର୍ତ୍ତୀ ଦୃଶ୍ୟ, ଖଟ ଉପରେ ଗୋଟିଏ ଶବ, ଖଟ ପାଖରେ ଷ୍ଟୁଲଟି ଓଲଟି ପଡିଛି-ପାଣିଗିଲାସ ଓ ଔଷଧପତ୍ର ସମେତ । ଲୋକଟିର କାଚ ଆଖି ଶୂନ୍ୟକୁ ଚାହିଁଛି, କିନ୍ତୁ ତା ମୁହଁରେ ଗୋଟିଏ ଅକାରଣ ସନ୍ତୋଷର ଚିହ୍ନ ରହିଛି । ଚାରିପଟର ଦେଖଣାହାରିଙ୍କର ଦୀର୍ଘଶ୍ୱାସ ଶୁଣାଯାଉଛି । ଏକ ମରଣାନ୍ତକ ଦୃଶ୍ୟ ତୁଳନାରେ କିଛି କମ୍ କ୍ରନ୍ଦନ । ''ମରିଗଲା ନାହିଁ ତ ତରିଗଲା'' ଧରଣର କାଁ ଭାଁ ମନ୍ତବ୍ୟ । ପରେ ଅଖଣ୍ଡ ନୀରବତା ।

# ବନ୍ଧ୍ୟା ଗାନ୍ଧାରୀ

ରବି ପଟ୍ଟନାୟକ

ଏଇତ ପାଞ୍ଚବର୍ଷ ତଳର କଥା ।

ଦିନ ଏଗାରଟା ବେଳେ ବିନା ପଣ୍ଡା କୁନା ସାହୁକୁ ଦୋକାନ ଭିତରୁ ଘୋସାରିଆଣି ଛୁରୀ ଭୁଷି ଦେଲା ବଜାର ଉପରେ । କୁନା ସାହୁ, ''ମାରି ପକେଇଲା ହୋ, କିଏ ଅଛି ବଞ୍ଚାଅ'' ଥରକ ମାତ୍ର ଚିତ୍କାର କରିଥିଲା । ତା' ପରଠୁ ତାର ଅନ୍ତବୁଜୁଳା ବାହାରି ପଡି ଖଦଡିଆ ନାଳି ରାସ୍ତା ଉପରେ ପଡି ସାରିଥାଏ । ତାର ''ମରିଗଲି ପାଣି, ଆଃ ପାଣି ଟୋପେ '' ଓ କାନ୍ଦ କ୍ରମଶଃ ଧିମେଇ ଆସୁଥିବାର ଲୋକେ ଶୁଣିଛନ୍ତି ।

ଚାରିଆଡେ ଲୋକ ହାଉଯାଉ ହେଉଥିଲେ । ହଠାତ୍ କେମିତି ନିଶୂନ୍ ହୋଇଗଲା ଜାଗାଟା । ଧଡଧାଡ୍ ଦୋକାନ କବାଟ ପଡିଗଲା । ଯିଏ ଯୁଆଡେ ଅତର୍ଦ୍ଧରେ ହୁ । କ୍ଷଣକ ଭିତରେ ବଜାରଟାରେ ମଧ୍ୟରାତ୍ରର ନିର୍ଜନତା ଛାଇଗଲା । ରାସ୍ତା ଜନଶୂନ୍ୟ । କେବଳ ଅଇଁଠୁ ଗୁଡିଆ ଦୋକାନ ପାଖରେ ପଇଁତରା ମାରୁଥିବା କେତେଟା ଧେଡି କୁକୁର ଆସି କୁନା ସାହୁ ଚାରିପାଖରେ ଚକ୍କର ମାରି ଦୋଦୋପାଞ୍ଚ ହୋଇ ଅନ୍ତବୁଜୁଳା ଉପରେ ଥରେ ମୁହଁ ମାରିଦେଇ ଘୁଞ୍ଚି ପଳଉଥାନ୍ତି ଦୂରକୁ । କୁନା ସାହୁ ସେତେବେଳକୁ ନିଷ୍ଟୁପ ହୋଇ ପଡି ରହିଥାଏ ରାସ୍ତା ମଝିରେ । ଡୋଳା ଦୁଇଟା ତରାଟି ହୋଇ ବାହାରି ପଡିଥାଏ ଆଖି ଭିତରୁ । ହାତ ଦୁଇଟା ମୁଠା ମୁଠା- ଯନ୍ତ୍ରଣାରେ ବିଭତ୍ସ ଓ ଭୟଙ୍କର । ଓଠ ଦୁଇଟା ବଙ୍କା ହୋଇଯାଇଥାଏ ।

ଶ୍ମଶାନର ଏଇ ଜମାଟବନ୍ଧା କଠିନ ନୀରବତାକୁ ଚୂନ୍ ଚୂନ୍ କରି ଭାଙ୍ଗି ଦେଇଗଲା ଗୋଟାଏ ମର୍ମଭେଦୀ କରୁଣ ବିଳାପର ଉଦାର କଣ୍ଠସ୍ୱର । ଚିତ୍କିରେଇ ଉଠିଲା ଗୋଟାଏ ନାରୀ କଣ୍ଠର ଯନ୍ତ୍ରଣାବିଦ୍ଧ ଚିତ୍କାର । ''ଆରେ ମୋ କୁନାରେ, ମୋ ଧନରେ ।''

ସେଇ ଧ୍ୱନିର ଆଘାତରେ କାନ୍ଥରୁ ଚୂନ ପଲସ୍ତରା ଖସିଲା ପରି ନିସ୍ତବ୍ଧତା ଖଣ୍ଡ ଖଣ୍ଡ ହୋଇ ଖସିପଡିଲା । ଦୋକାନ ଘର ଫାଙ୍କରେ, କବାଟ ଫାଙ୍କରେ ଯୋଡା ଯୋଡା ଆଖି ଚକ୍‌ମକ୍ କରି ଉଠିଲା । ତା'ପରେ କବାଟ ଧୀରେ ଧୀରେ ଖୋଲିଲା । ଗୋଟାଏ, ଦୁଇଟା-ପୁଣି ଆଉଥରେ ପାଞ୍ଚ ମିନିଟ ଭିତରେ ଜନଗହଳି ଆରମ୍ଭ ହୋଇଗଲା । ''ଆରେ ତାକୁ ଡାକ୍ତରଖାନାକୁ ନେଇଚାଲ । ଆରେ କିଏ ପୋଲିସ୍‌ରେ ଖବର ଦିଅରେ ।'' ଅଯଥା କୋଳାହଳ, ଚିତ୍କାର । କାନ୍ଦଣାର ସ୍ୱର ଯାହା କିଛି ସମୟ ତଳେ ଏକକ କଣ୍ଠସ୍ୱର ଥିଲା- ତା' ଏବେ ମିଳିତ ଐକତାନରେ ପରିଣତ ହୋଇ ସାରିଥାଏ । କୁନାର ବାପା, ବନ୍ଧୁବାନ୍ଧବ ତାକୁ ଅନ୍ତବୁଜୁଳା ସମେତ ଗୋଟାଏ ଗାମୁଛାରେ ବାନ୍ଧି, ଦଉଡିଆ ଖଟରେ ପକେଇ ସଙ୍ଗେ ସଙ୍ଗେ ବୋହିନେଲେ ପ୍ରାୟ ଦେଢଫର୍ଲଙ୍ଗ ଦୂରରେ ଥିବା ସରକାରୀ ଡାକ୍ତରଖାନାକୁ ।

କୁନା ବୋଉକୁ କେତେଜଣ ସାହି ମାଇପେ ଆସି କୁଣ୍ଡା କୁଣ୍ଡି କରି ଘରକୁ ନେଇଗଲେଣି । ଧୀରେ ଧୀରେ ବଜାର ତାର ପୂର୍ବବର୍ତ୍ତୀ ଅବସ୍ଥାକୁ ଫେରି ଆସୁଛି । ଫେର୍ କିଣାବିକା । ଗହଳି । ତା'

ପାନ, ସିଗାରେଟ୍ । ଯେମିତି କିଛି ହୋଇନାହିଁ । କେହି ସେ ବିଷୟରେ ପାଟି ଫିଟଉ ନାହାନ୍ତି । ଗୋଟାଏ ଚାପା ଭୟରେ ସମସ୍ତେ ଆଚ୍ଛନ୍ନ । ଯୋଉ କେତେଜଣ ନୂଆ ଲୋକ ଖବର ପାଇ ଘଟଣା ବୁଝିବାକୁ ଆସିଛନ୍ତି, ସେମାନଙ୍କର ପ୍ରଶ୍ନର ଉତ୍ତର ମଧ କେହି ଭରସିଦେଉ ନାହାନ୍ତି । ''ମୁଁ କ'ଣ ଦେଖିଛି ଯେ କହିବି ? ଆରେ ମୁଁ ତ ଏଇନେ ଆସୁଛି ।'' ଆଉ କେତେଜଣ ପ୍ରଶ୍ନର ଉତ୍ତର ନ ଦେଇ କେବଳ ଗୋଟାଏ ପାଷାଣୀୟ ନୀରବତାର ମୁଖା ପିନ୍ଧି ପ୍ରଶ୍ନ କର୍ତ୍ତାଙ୍କୁ ଗ୍ରାହ୍ୟ ସୁଦ୍ଧା କରୁନାହାନ୍ତି ।

କିଏ କହିବ ? କ'ଣ ହାଣ ମୁହଁକୁ ବେକ ଦେଖେଇବା ଲାଗି ? କି ଦରକାର ବାବା ସେ ପୋଲିସ୍ ଝାମେଲାରେ ? ପୁଣି ଥରେ ଯଦି ବିନା ପଣ୍ଡା ଜାଣେ, ସେ କ'ଣ ଆଉ ବାକୀ ରଖିବ- ଗୋଟାଏ ଦିନରେ ଦୋକାନ ଲୁଟ୍ ହୋଇଯିବ । ଆମର ବେଉସା ଭଲ-ଆମେ ଭଲ । ସେ ଭିତରେ ମୁଣ୍ଡ ନପୁରେଇବା ଭଲ ।

ଏ ଭିତରେ ବିନାର ଚର କେତେବେଳେ କୋଉ ଫାଙ୍କରେ ଆସି କାହାକୁ କହିଯାଇଛି କେହି ଜାଣନ୍ତି ନାହିଁ । କିନ୍ତୁ ଫୁସ୍‌ଫାସରେ ଏ କାନରୁ ସେ କାନକୁ ହୋଇ ସମସ୍ତେ ଜାଣି ସାରିଲେଣି କଥାଟା । ବିନା କହିଛି '' ଯେ ପୋଲିସରେ ସାକ୍ଷୀ ଦେବ, ତା ଜିଭ କାଟିନେବ ସେ । ତାର ବଂଶର ଅବସ୍ଥା କୁନା ସାହୁ ପରି ହେବ ।''

ପ୍ରାୟ ଦୁଇଘଣ୍ଟା ପରେ ପୋଲିସ୍ ଆସିଲେ ବଜାର ଭିତରକୁ । ଥାନାବାବୁ, ସାନବାବୁ, ଚାରିଜଣ ସିପାହୀ । ପୋଲିସ୍‌କୁ ଦେଖି ଘଟଣା ଘଟିଥିବା ଠିକ୍ ସାମ୍ନାପଟ ଦୋକାନ ସବୁ ବନ୍ଦ ହୋଇଗଲା । ଥାନାବାବୁ ମଦନ ସାହୁର ବନ୍ଦ ଥିବା ଦୋକାନ ବାରଣ୍ଡା ଉପରେ ପଡିଥିବା ଖାଲି ବେଞ୍ଚଟା ଉପରେ ବସିପଡି ସାନବାବୁଙ୍କୁ ନିର୍ଦ୍ଦେଶ ଦେଲେ ଘଟଣାସ୍ଥଳ ପରିଦର୍ଶନ କରିବାକୁ । ଚାରିଜଣ ସିପାହୀ ସହିତ ଏ.ଏସ୍. ଆଇ. ବାବୁ ଘଟଣାସ୍ଥଳରେ ଛିଡା ହୋଇ ଚାରିପଟକୁ ଅନେଇ କ'ଣ ଟିପାଟିପି କଲେ । ସେତେବେଳକୁ କୁନା ସାହୁର ତାଜା ନାଲିଟକଟକ ରକ୍ତ ନାଲି ମୋରମ ବିଛା ରାସ୍ତା ସାଙ୍ଗରେ ପ୍ରାୟ ମିଶି ଯାଇଥିଲା । କେବଳ ଗୋଟାଏ ଜାଗାରେ ମେଞ୍ଚାଏ ରକ୍ତ ଜମିଯାଇ ତା ଉପରେ ଗୋଟାଏ କାଳିଚିଆ ଘୋଡଣୀ ହୋଇଯାଇଥାଏ ।

ପ୍ରଥମେ ପ୍ରଥମେ ପୋଲିସ୍ ପାଖକୁ ଭରସି କେହି ଆସୁ ନଥିଲେ । ତା'ପରେ ଜଣେ ଦି'ଜଣ ହୋଇ ଗଡିଲେ ବାରଣ୍ଡା ଉପରକୁ । କିଛି ସମୟ ପରେ ଥାନାବାବୁ ଚାରିପଟେ ବେଶ୍ ଜନଗହଳିଟିଏ ହୋଇଗଲା । ଘଟଣାସ୍ଥଳ ପାଖରେ ମଧ ଗୋଟାଏ କୌତୁହଳୀ ଜନତାର ଭିଡ ମଧ ହୋଇ ସାରିଥାଏ ।

ଥାନାବାବୁ ଅନୁସନ୍ଧାନ ଆରମ୍ଭ କଲେ । କିଏ ମାରିଲା ? ମାରିବା ଲୋକକୁ କିଏ ଦେଖିଛି କି ? ଘଟଣା କେତେବେଳ ଘଟିଲା ?

କିନ୍ତୁ ସବୁ ପ୍ରଶ୍ନର ଗୋଟାଏ ଉତ୍ତର, ''କେଜାଣି ଆଜ୍ଞା, ଆମେ କିଛି ଦେଖିନୁ କି ଜାଣିନୁ ? ଆଜ୍ଞା ମୁଁ ତ ଏଇନେ ଆସିଲି ଆପଣମାନଙ୍କୁ ଦେଖି । ଆଜ୍ଞା ମୁଁ ତ ଦୋକାନରେ ବ୍ୟସ୍ତ । ଏତେ ଦୂରରୁ କେମିତି ଦେଖିବି ?''

ଶହ ଶହ ଲୋକଙ୍କର ଉପସ୍ଥିତିରେ ଘଟଣାଟା ଘଟିଗଲା ଅଥଚ ଜଣେ ମଧ ସାକ୍ଷୀ ନାହିଁ ।

ଚାରିଆଡେ ଗୋଟାଏ ଚାପା ଗୁଞ୍ଜନ । ନାନା ପ୍ରକାର ଆଲୋଚନା । ଦଳ ଦଳ, ମେଞ୍ଚା ମେଞ୍ଚା ଲୋକ । ପରସ୍ପରର ସହିତ ଆଲୋଚନାରତ । ଫୁସ୍‌ଫାସ୍ କଥା । ''ପୋଲିସ୍ ଖୋଜି ବାହାର କରୁନି କିଏ ମାରିଛି ? ଆମକୁ ଏତେ ପଚରା ହେଉଛି କାହିଁକି ? ସର୍କାର ଘରୁ ପଇସା ଖାଉଛନ୍ତି- ଏବେ ନିଜେ ବାହାର କରନ୍ତୁ ।''

ଥାନାବାବୁ ଆଉଥରେ ଗମ୍ଭୀର ସ୍ୱରରେ ପଚାରିଗଲେ, 'କିଏ ବାବୁମାନେ, କେହି ଦେଖିନ

ମାରିଲା କିଏ ? ଏତେ ଲୋକ ଭିତରେ ଗୋଟାଏ ଲୋକ ଆସି ମଣିଷ ଖୁନ୍ କରିଦେଇଗଲା, କେହି କିଛି ଦେଖି ପାରିଲନାହିଁ ? ଆରେ ଡରୁଛ କାହିଁକି ? ଆମେ କାହିଁକି ଅଛୁ ? ସେ ଶଳାକୁ ବାନ୍ଧି ହାଜତରେ ଭର୍ତ୍ତି କରି ଦେବିନି ?''

ପଛରୁ କେହି-ଜଣେ ଚୁପି ଚୁପି ମନ୍ତବ୍ୟ କଲେ, ''ଛେନାଗୁଡ କରିବ ? ଆମେ ଜାଣିନୁ ତମ କରାମତି । ପାଞ୍ଚ ଦଶହଜାରଟଙ୍କା ଖାଇ କେଶ୍ ଫଇସଲା କରିଦେବ- ଆଉ ମରିବୁ ଆମେ ।''

ଥାନାବାବୁ ବୋଧହୁଏ କଥାଟା ଶୁଣି ପାରିନାହାନ୍ତି । ସେ ଫେର୍ ଆଉଥରେ ପଚାରିଲେ, ''ତମ ଭିତରୁ ସତରେ କେହି କିଛି ଦେଖିନାହଁ ।''

ମଦନା ସାହୁ ଦୋକାନ କଡକୁ ପଡିଥିବା ଗୁମୁଟି କଡକୁ ଆଉଜି ଛାତି ଉପରେ ବହିବସ୍ତାନି ଜାକି ବଲବଲ ଆଖିରେ ଚାହିଁ ରହିଥିବା ବାର ତେର ବର୍ଷର ଝିଅଟି ହଠାତ୍ ଚଡ଼୍‌ଚିରା ରଡି ଛାଡି ବିଳିବିଳେଇ ଉଠିଲା-''ମୁଁ ଦେଖିଛି, ମୁଁ ଦେଖିଛି ବିନା ପଣ୍ଡା କୁନା ସାହୁକୁ ଛୁରୀ ଭୁଷିଛି ।''

ସବୁ କୋଳାହଳ କଥାବାର୍ତ୍ତା ସ୍ତବ୍‌ଧ ହୋଇଗଲା । ସମସ୍ତେ ଭୟ, ଆଶଙ୍କା ଓ ଉତ୍କଣ୍ଠାରେ ନିର୍ବାକ୍ ହୋଇ ଏକାବେଳେ ମୁହଁ ଫେରେଇ ନେଲେ ସେଇ ଚିତ୍କାର ଶୁଭୁଥିବା ଗୁମୁଟି କଡକୁ ।

ପାତଳୀ ହୋଇ ଗୋରା ଝିଅଟି । ଭୟ, ଆଶଙ୍କା ଓ ନରହତ୍ୟାର ପ୍ରଥମ ଚାକ୍ଷୁଷ ଅନୁଭୂତିରେ ଯନ୍ତ୍ରଣାବିଦ୍ଧ ହୋଇ ସେ ଏକ ଅଦ୍ଭୁତ ଉତ୍ତେଜନାରେ ଥରୁଛି । ମୁହଁଟା ଲାଲ୍ ହୋଇଯାଇଛି । ଆଖି ଯୋଡାକ ବିସ୍ଫାରିତ । ନାକପୁଡା ଦୁଇଟି ଫୁଲି ଫୁଲି ଉଠୁଛି । ଓଠ ପୁଡା ଦୁଇଟି କମ୍ପି କମ୍ପି ଉଠୁଛି । ଆଉ କ'ଣ ଭୟାର୍ତ୍ତ ଆଖିରେ ସେ ଅପଲକ ନୟନରେ ଗୋଟାଏ ଆଡକୁ ଅନିର୍ଦ୍ଦିଷ୍ଟ ଲକ୍ଷ୍ୟରେ ଚାହିଁରହିଛି ଏକଲୟରେ । ସେଇ ଦୁଇ ତିନିପଦ କଥା କହିସାରି ସେ ଯେମିତି ସ୍ତବ୍‌ଧ ହୋଇଯାଇଛି ।

କିଛିକ୍ଷଣର ସ୍ତବ୍‌ଧତା ପରେ ଭିଡ ଭିତରୁ କିଏ ଜଣେ ପାଟି କରି ଉଠିଲା, ''ଏଇ ଭାରତୀ, ଏଇଠି କ'ଣ କରୁଛୁ ? ସ୍କୁଲକୁ ନ ଯାଇ ଏଠି କ'ଣ କରୁଥିଲୁ ଏଯାଏଁ ?'' କହୁ କହୁ ସେଇ ଦରବୁଢା ଲୋକ ଜଣକ ସେଇ ଝିଅ ପାଖରେ ପହଞ୍ଚି ଗୋଟାଏ ଚଟକଣା ଠାଏ କରି କସି ଦେଲା ତା ଗାଲରେ । ସେତକ ଯେମିତି ଦରକାର ଥିଲା ବନ୍ଧ ଭାଙ୍ଗିବା ପାଇଁ । ଝିଅଟି ବହିବସ୍ତାନିଟା ଜଚାଡି ଦେଇ 'ବାପା' ବୋଲି ଥରଟିଏ ଡାକି ଅଜାଡି ହୋଇପଡିଲା ତାଙ୍କ ଛାତିରେ । ତାପରେ ଯେମିତି ଲହଡି ପରେ ଲହଡି ପରି କାନ୍ଦଣାର କୋହ ମାଡି ଆସିଲା । ସେ ଜୋରରେ ଜାବୁଡି ଧରି ବାପ ଛାତି ଉପରେ ମୁହଁ ଲୁଚାଇ ଖାଲି କାନ୍ଦି ଚାଲିଥାଏ ଅବିଶ୍ରାନ୍ତ ଭାବରେ । ସେଇ ଲୋକଟି ଯେ ରାଗରେ ପାଚି ଲାଲ୍ ହୋଇଯାଇଥିଲା, ତା ଆଖିପତା ହଠାତ୍ ସଜଳ ହୋଇଉଠିଲା । ସେ ତାକୁ ଏକରକମ କାଖେଇ କରି ଭିଡ ଭିତରୁ ନେଇଗଲା ବାହାରକୁ । ''ନାଇଁ, ନାଇଁ, ସୁନାଟା ପରା । ଚାଲ ଘରକୁ ଚାଲ । ଛି, କାନ୍ଦନା ।''

ଉପସ୍ଥିତ ଜନତା ଏହି ବିୟୋଗ ମିଳନାତ୍ମକ ନାଟକଟିକୁ ନୀରବରେ କିଛି ସମୟ ଉପଭୋଗ କରିବାକୁ ଲାଗିଲେ ମଞ୍ଚ ଉପରୁ ପିତା ଓ ପୁତ୍ରୀର ପ୍ରସ୍ଥାନ ପର୍ଯ୍ୟନ୍ତ ।

କିଛି ସମୟପରେ ଥାନାବାବୁ ସଦଳବଳେ ଥାନା ଅଭିମୁଖେ ପ୍ରସ୍ଥାନ କଲେ । ମନ୍ଦା ମନ୍ଦା ହୋଇ ଜମିଥିବା ଲୋକଗୁଡିକ ପୁଣି ଆଉଥରେ ଖେଳେଇ ହୋଇଗଲେ ଚାରିଆଡକୁ ଟିକ୍କା ଟିପ୍‌ପଣୀ, ମନ୍ତବ୍ୟର ଗୁଞ୍ଜନ ଭିତରେ ।

ସେଇଦିନ ସନ୍ଧ୍ୟାରେ ଥାନାବାବୁଙ୍କ ଘର ବାରନ୍ଦାରେ ସେଇ ଦୁଇଘଣ୍ଟାହେଲା ବସିଛନ୍ତି ଗଙ୍ଗାଧର ବାବୁ । ଥାନାବାବୁ ଏଯାଏଁ ଫେରିନାହାନ୍ତି । ଯେତେବେଳେ ଫେରନ୍ତୁ ପଛକେ କଥାଟା ଆଜି ଫଇସଲା ନ କଲେ ନୁହେଁ ।

ଥାନାର ଠିକ୍ ଦୁଇଶ ଗଜ ପଛକୁ ଥାନାବାବୁଙ୍କ କ୍ୱାଟର । ପ୍ରାୟ ରାତି ଆଠଟା ବେଳକୁ ଥାନାବାବୁ ଘରକୁ ଫେରିଲେ । ସେ ବାରଣ୍ଡା ଉପରକୁ ଉଠୁ ଉଠୁ ଗଙ୍ଗାଧର ଲମ୍ବ ହୋଇ ପଡିଗଲେ ତାଙ୍କ ଗୋଡତଳେ ।

''ମୋତେ ବଞ୍ଚାନ୍ତୁ ଆଜ୍ଞା ! ସାନ ପିଲାଟା କିଛି ଜାଣେ ନାହିଁ ବୁଝେ ନାହିଁ । କଥାଟା ଫସକି ଯାଇଛି ତା ମୁହଁରୁ । ତାକୁ ଧରିବେ ନାହିଁ । ତାକୁ ଏ କେଶ୍ ଭିତରକୁ ଟାଣିବେ ନାହିଁ । ଏକେ ତ ଝିଅ ପିଲା । ଟିକିଏ ଦୁର୍ନାମ ହେଲେ ତା ଜୀବନଟା ମାଟି ହୋଇଯିବ । କୁଳକୁ ଚିରଦିନ ପାଇଁ କଳଙ୍କ । ଆପଣଙ୍କ ନିଜ ପିଲାଙ୍କ ମୁହଁକୁ ଚାହିଁ, ତାକୁ ରକ୍ଷାକରନ୍ତୁ । ତା ଛଡା ଆପଣ ଆଜି ଅଛନ୍ତି କାଲିକୁ କୁଆଡେ ବଦଳି ହୋଇଯିବେ । ଆମେ ତ ଆଉ ଘରଦ୍ୱାର ଛାଡି କୁଆଡେ ଯାଇପାରିବୁ ନାହିଁ । ବିନା ପଣ୍ଡା ମୋର ସର୍ବସ୍ୱାନ୍ତ କରିଦେବ । ଆପଣ କଥା ନ ଦେଲେ ମୁଁ ଏଠୁ ଆଉ ଉଠିବି ନାହିଁ ।''

ଥାନାବାବୁ ପ୍ରଥମେ କିଛି ସମୟ ଚୁପ୍‌କରି ଶୁଣିବା ପରେ ଗୋଡ ଛିଣ୍ଡାଡି ଦେଇ ଘର ଭିତରକୁ ପଶିଗଲେ । ଗଙ୍ଗାଧର କିନ୍ତୁ ନଛୋଡବନ୍ଧା । ସେ ସେଇଠି ସେମିତି ବସି ରହିଲେ ।

ଥାନା ବାବୁ ଡ୍ରେସ ପାଲଟି ପାଇଖାନା ଯାଇ ଚାହା ଖାଇସାରି ବାହାରକୁ ଆସି ଦେଖନ୍ତିନି ଗଙ୍ଗାଧାର ବାବୁ ସେମିତି ବସିଛନ୍ତି । ତାପରେ ବହୁ ସମୟ ଧରି 'ହଁ', 'ନାଁ', ହୋଇପାରିବ ନାହିଁ' । ଏତେ ଲୋକଙ୍କ ମଝିରେ କହି ଦେଇଛି । ଏ କ'ଣ ସହଜ କେଶ୍-ମର୍ଡର କେଶ୍‌ପରା । ଗୋଟାଏ ସାକ୍ଷୀ ! କେମିତି ଛାଡିଦେବି ? ମୋ ଚାକିରୀକି ଭୟ ନାହିଁ ଇତ୍ୟାଦି ବହୁ ଅମଙ୍ଗ ସତ୍ତ୍ୱେ ଶେଷକୁ ଗଙ୍ଗାଧର ବାବୁ ବଢେଇଥିବା କେଇଖଣ୍ଡ କାଗଜ ଅଣ୍ଟାରେ ଗୁଞ୍ଜି ନିର୍ଣ୍ଣୟଦେଲେ ଯେ ଭାରତୀର ନାଁ ରେକର୍ଡପତ୍ରରେ କେଉଁଠି ରହିବ ନାହିଁ । ଗଙ୍ଗାଧର ବାବୁ ଆଶ୍ୱସ୍ତ ହୋଇ ଘରକୁ ଫେରିଲେ ରାତି ଏଗାରଟା ବେଳକୁ ।

ସେଇଦିନ ସନ୍ଧ୍ୟାବେଳେ ଆଉ ଗୋଟାଏ ଘରେ ଆଡ୍‌ଡା ବସିଥିଲା ବିନା ପଣ୍ଡା ଦଳର । ଶେଷ ମଦ ବୋତଲଟା ଖୋଲୁ ଖୋଲୁ ଚିନ୍ତୁ ମହାନ୍ତି କହିଲା-''ଭାଇନା, କହିବ ତ ଆଜି ରାତି ଚାରିଟା ସୁଦ୍ଧା ସେ ଶାଳି ଟୋକି ତା ଘର ଆମ୍ବ ଗଛରେ ଲଟିକିଥିବ ।'' ବିନା ପଣ୍ଡା ମଦ ଗ୍ଲାସଟା ଏକା ନିଃଶ୍ୱାସକେ ଖାଲି କରି ଦେଇ କହିଲା-''ଚୋପ୍ ବେ ଶଳା । ସେ ଶାଳି ସତେଇରାଣୀକୁ ମୋ ମାଇପ କରିବି । ତା ବୋପାକୁ କାଲି କହିଦେଇ ଆସିବୁ, କଣ୍ଠ ରହିଲା । ଯଦି ସେ ଅନ୍ୟ କାହାକୁ ବିଭା ଦିଏ କି ତାକୁ ଅନ୍ୟ କୋଉଠିକି ପଠାଏ, ତାର ବାକୀ ମୁଣ୍ଡ ଝିଅ ରହିବେ ନାହିଁ ।''

ସେଇ ଦିନଠୁ ଭାରତୀର ସ୍କୁଲଯିବା ବନ୍ଦ ହୋଇଗଲା । ଝିଅଟିକୁ ପାଠ ପଢେଇ ଡାକ୍ତରାଣୀ କରିବାକୁ ଉଚ୍ଚ ଆଶା ପୋଷଣ କରିଥିବା ଉଚ୍ଚ ପ୍ରାଥମିକ ସ୍କୁଲର ହେଡ୍‌ମାଷ୍ଟର ଗଙ୍ଗାଧର ମିଶ୍ର ତାକୁ ଘର ଚାରିକାନ୍ଥ ଭିତରେ ରଖିବାକୁ ବାଧ ହୋଇଥିଲେ । ଭାରତୀ ପରି ତବତବି, ହସକୁରୀ ଝିଅଟା ମଧ୍ୟ ତା ପରଠୁ ଅସ୍ୱାଭାବିକ ଭାବରେ ଗମ୍ଭୀର ହୋଇଗଲା । ସେ ବି ଆଉ ଘର ବାହାରକୁ ପାଦ କାଢିବାକୁ ଇଚ୍ଛା କରି ନଥିଲା । ଯଦି ତାର ପରିବାରର ଜୀବନ ରକ୍ଷା ପାଇଁ ତାକୁ ଗୋଟାଏ ଖୁଣୀ ଆସାମୀକୁ ପତି ରୂପରେ ବରଣ କରିବାକୁ ପଡେ, ତାର ଆଉ ଚାରା କ'ଣ ? ଅନିଚ୍ଛାକୃତ ଭାବରେ ମଧ୍ୟ ତାକୁ ଏ ସ୍ୱାର୍ଥତ୍ୟାଗ କରିବାକୁ ପଡିବ ହିଁ ପଡିବ ।

ହୁଏତ ଅଘଟଣ ଘଟିପାରେ । ବିନା ପଣ୍ଡାର ଅକସ୍ମାତ ମୃତ୍ୟୁ ହୋଇଯାଇପାରେ । ସେ ଯାବଜ୍ଜୀବନ କାରାଦଣ୍ଡ ବି ପାଇପାରେ । ସେ ଭଗବାନଙ୍କୁ ସେଇ କଥା ହିଁ ପ୍ରାର୍ଥନା କରୁଥିଲା ଦିନ ଦିନ ଧରି ।

କିନ୍ତୁ ବିନା ପଣ୍ଡାର କିଛି ହୋଇ ନଥିଲା । ସାକ୍ଷ୍ୟ ପ୍ରମାଣ ଅଭାବରୁ ପ୍ରଥମ କୋର୍ଟରେ ହିଁ ତା କେଶ୍ ଖାରଜ ହୋଇଗଲା ଏବଂ ତା ପରଠୁ ସେ ବୀରଦର୍ପରେ ନିକଟବର୍ତ୍ତୀ ସମସ୍ତ ଗ୍ରାମ ଓ ବଜାରରେ ତାର ଅଖଣ୍ଡ ପ୍ରତିପତ୍ତି ବିସ୍ତାର କରିବାକୁ ଲାଗିଲା । ମାସକୁ ମାସ ସମସ୍ତ ଦୋକାନୀମାନେ ତାର ମାସିକିଆ ଚାନ୍ଦା ନିଜେ ଯାଇ ତା ଘରେ ପଇଠ କରି ଆସନ୍ତି । ତା ପରେ ଦୁର୍ଗାପୂଜା ଚାନ୍ଦା, ଅପେରାପାର୍ଟି ଚାନ୍ଦା ଇତ୍ୟାଦି ତ ଲାଗିରହିଛି ।

ତା ଭାଗ୍ୟକୁ ତା ପରବର୍ଷ ଆସିଲା ପଞ୍ଚାୟତ ନିର୍ବାଚନ । ସେତେବେଳକୁ ସବୁ ଦଳର ଲୋକେ ତା ଘରେ । ''ବିନୟ ବାବୁ, ଆପଣ ନ ଚାହିଁଲେ କିଛି ହେବ ନାହିଁ ।'' ବିନା ସବୁଦଳରୁ କିଛି ଟଙ୍କା ମାରି ଶେଷକୁ ଶାସକ ଦଳ ପକ୍ଷରୁ କିଛି ମୋଟା ରକମ ଚାନ୍ଦା ଗ୍ରହଣ କରି ସେମାନଙ୍କୁ ଜିତେଇ ଦେଇଥିଲା । ବାଉରୀ ସାହି, ମୁସଲମାନ ସାହିର ଲୋକେ ଭୋଟ ଦେବେନାହିଁ ବୋଲି ଚର ପାଖରୁ ଖବରପାଇ ଭୋଟ ଆଗଦିନ ରାତିରେ ସେ ଦୁଇଟା ସାହିକୁ ନିଆଁ ଲଗେଇ ପୋଡି ଦେଇଥିଲା । ସେଥରକ ଶାସକଦଳ ନିରଙ୍କୁଶ ସଂଖ୍ୟା ଗରିଷ୍ଠତା ଲାଭ କରିଥିଲା ।

ତା ପରଠୁ ବିନାର କ୍ଷମତା ଓ ପ୍ରତିପତ୍ତି ବହୁଗୁଣରେ ବଢି ଯାଇଥିଲା । ସେ ଏଥର ନିୟମିତ ଭୁବନେଶ୍ୱର ଯାଇ ମନ୍ତ୍ରୀଙ୍କ ଠାରୁ ଆରମ୍ଭ କରି ମୁଖ୍ୟମନ୍ତ୍ରୀ ପର୍ଯ୍ୟନ୍ତ ସମସ୍ତଙ୍କୁ ନିର୍ବିବାଦରେ ଦେଖା କରିଆସୁଥିଲା ।

କିଛିଦିନ ପରେ ଦେଖାଗଲା ବିନ ତାର ପୁରୁଣା ଜିନ୍‌ପେଣ୍ଟ, ନାଇଲନ୍ ଗେଞ୍ଜି ଡ୍ରେସ ଛାଡିଦେଇ ଏଥର ମୋଟା ଧଳା ପାଇଜାମା ଓ ପଞ୍ଜାବୀ ପିନ୍ଧିବାକୁ ଆରମ୍ଭ କଲାଣି ଏବଂ ସ୍ଥାନୀୟ ବି.ଡି.ଓ. ଡାକ୍ତର, ଥାନାବାବୁଙ୍କ ଠାରୁ ଆରମ୍ଭ କରି ଗ୍ରାମସେବକ ଓ ନିମ୍ନପ୍ରାଥମିକ ସ୍କୁଲ ମାଷ୍ଟରଙ୍କ ବଦଳି କେଶ୍ ମଧ୍ୟ ସେ ଧୀରେ ଧୀରେ ହାତକୁ ନେଲାଣି ।

ଏଥର ବିନା ପଣ୍ଡାର ଅଧିକାଂଶ ସମୟ ଏହି ସରକାରୀ କର୍ମଚାରୀମାନଙ୍କ ଗହଣରେ କଟେ ଓ ସେ ରାତ୍ରି ଭୋଜନଟା ପ୍ରାୟ ସେହିମାନଙ୍କ ସାଙ୍ଗରେ ସାରିଥାଏ ।

ବେଶଭୂଷାର ପରିବର୍ତ୍ତନ ସାଙ୍ଗକୁ ବିନା ପଣ୍ଡାର ଚାଲିଚଳଣ ଓ କଥା କହିବାର ରଙ୍ଗଢଙ୍ଗ ମଧ୍ୟ ଧୀରେ ଧୀରେ ବଦଳିଗଲା ଏବଂ ପ୍ରାୟ ତିନିବର୍ଷ ଭିତରେ ସେ ସେହି ଅଞ୍ଚଳରେ ଜଣେ ଅପ୍ରତିଦ୍ୱନ୍ଦୀ ନେତା ଭାବରେ ପ୍ରତିଷ୍ଠିତ ହୋଇଗଲା । ଯଦିଓ ଏ ଅଞ୍ଚଳରେ ଘଟିଯାଇଥିବା ଚାରି ପାଞ୍ଚଟା ଧର୍ଷଣ, ତିନୋଟି ମର୍ଡର କେଶ୍‌ରେ ବିନା ପଣ୍ଡାର ପ୍ରଚ୍ଛନ୍ନ ହାତ ରହିଛି ବୋଲି ଲୋକମାନେ ପଛରେ ଚୁପ୍‌ଚାପ୍ ହେଉଥିଲେ, ତଥାପି ପ୍ରକାଶ୍ୟରେ ସମମସ୍ତ ତାକୁ ହିଁ ସମର୍ଥନ ଜଣାଉଥିଲେ ଅକୁଣ୍ଠିତ ଭାବରେ । ତା'ରି ପରିଶ୍ରମ ଫଳରେ ଗଙ୍ଗାଧରବାବୁଙ୍କ ଉଚ୍ଚ ପ୍ରାଥମିକ ସ୍କୁଲଟି ମାଇନର ସ୍କୁଲ ହୋଇଗଲା ଏବଂ ସେହି ସ୍କୁଲରେ ପ୍ରାଇଭେଟ୍ ଭାବରେ ଗୋଟାଏ ଉଚ୍ଚ ବାଳିକା ବିଦ୍ୟାଳୟ ମଧ୍ୟ ଖୋଲି ଯାଇଥିଲା । ସେହି ବାଳିକା ବିଦ୍ୟାଳୟରର ସେକ୍ରେଟାରୀ ଭାବରେ ବିନା ପଣ୍ଡା ନିର୍ବିବାଦରେ ନିର୍ବାଚିତ ହୋଇଥିଲା । ବାଳିକା ବିଦ୍ୟାଳୟର ଶିକ୍ଷୟିତ୍ରୀମାନେ ଅଧିକାଂଶ ରାତିରେ ବିନା ପଣ୍ଡାର ଶଯ୍ୟାସଙ୍ଗିନୀ ହୋଇଥିବା କଥା ଲୋକେ ମଧ୍ୟ ପଛରେ କୁହାକୁହି ହୁଅନ୍ତି ।

କିନ୍ତୁ ଏସବୁ ସତ୍ୱେ ବି ଗତ ସାଧାରଣ ନିର୍ବାଚନରେ ବିନା ପଣ୍ଡା ହିଁ ବହୁ ଭୋଟରେ ନିର୍ବାଚିତ ହେଲା । ଏଇ ଅଞ୍ଚଳରେ ଏମ୍.ଏଲ୍. ଏ. ଭାବରେ ଏବଂ ନିର୍ବାଚିତ ହେବାର ଠିକ ମାସକ ପରେ ସେ ଗଙ୍ଗାଧର ବାବୁଙ୍କୁ ଖବର ପଠାଇଲା ବାହାଘରର ଯୋଗାଡ କରିବାକୁ । ଗଙ୍ଗାଧର ବାବୁଙ୍କ ଚାରିପାଞ୍ଚ

ବର୍ଷ ତଳର ପ୍ରବଳ ପ୍ରତିରୋଧ ଏ ଭିତରେ ଧୀରେ ଧୀରେ ସ୍ତିମିତ ହୋଇ ଆସିଲାଣି । ବିଶେଷତଃ ସେ ମାଇନର ସ୍କୁଲର ହେଡ୍‌ମାଷ୍ଟ୍ର ଭାବରେ ନିଯୁକ୍ତି ପାଇସାରିଲା ପରେ । ବିନା ପଣ୍ଡା ଆଉ ଏବେ ସେ ଖୁଣୀ ଆସାମୀ ବିନା ପଣ୍ଡା ନୁହେଁ- ସେ ଏବେ ଶାସକ, ବ୍ୟବସ୍ଥାପକ । ତାର ସମାଜରେ ସମ୍ମାନ ଅଛି । ଖାତିର ଅଛି । ତା ହାତରେ କ୍ଷମତା ଅଛି-ଧନ ଅଛି । ହଅ, ପୁରୁଷ ପୁଅ, କ'ଣ କେବେ ରାଗରେ ଗୋଟାଏ କରି ପକାଇଥିଲା ବୋଲି ସେ କଥାକୁ କ'ଣ ଏବେ ଆଉ ଧରିଲେ ଚଳିବ । ସେ ପିଲା କେତେ ବଦଳି ଗଲାଣି । ସୁଧାର ହୋଇଗଲାଣି । ତା ଛଡା ବିନା ପଣ୍ଡାର ଶ୍ୱଶୁର ଭାବରେ ତାଙ୍କର କ୍ଷମତା ବି କମ ବଢିଯିବ ନାହିଁ ?

ଗଙ୍ଗାଧର ବାବୁ ନିଶ୍ଚିନ୍ତ ମନରେ ବିବାହର ଯୋଗାଡ କରିବାକୁ ଲାଗିଲେ । ବିନା ପଣ୍ଡାର ବିଶ୍ୱସ୍ତ ଚର ଚିନ୍ତୁ ମହାନ୍ତି ଆସି କହି ଦେଇଗଲାଣି, ''କିଛି ଚନ୍ତା କରିବାର ଦରକାର ନାହିଁ । ଆମେ ଆସି ଛାମୁଣ୍ଡିଆ ବାନ୍ଧି ଦେଇଯିବୁ । ହଣ୍ଡା କଡେଇ ଟେବୁଲ ଚେୟାର ଯାହା ଦରକାର ସବୁପହଞ୍ଚେଇ ଦେବୁ । ହେଲେ ଯେମିତି ବରଯାତ୍ରୀଙ୍କ ତର୍ଚ୍ଚାଟା ଖୁବ୍ ଭଲ ଭାବରେ ହୁଏ । ଭୁବନେଶ୍ୱରୁ ଦି ଚାରିଜଣ ମନ୍ତ୍ରୀ ଓ ଦଶ ବାରଜଣ ଏମ୍.ଏଲ୍.ଏ. ବି ଆସିବେ । ଏଇ ରଖନ୍ତୁ ପାଞ୍ଚ ହଜାର । ନିଅଣ୍ଟ ହେଲେ କହିବେ । ବିନାବାବୁ କହିଛନ୍ତି, ''ଖର୍ଚ୍ଚ ଯାହାହେଉ ତାଙ୍କ ମାନ ସମ୍ମାନ ଯେମିତି ତଳେ ନ ପଡେ ।''

ଚାରିଆଡେ ଖବର ଖେଳିଗଲା । ''ଯାହାହେଉ ବିନା ପଣ୍ଡାଟା ସତରେ ଖାଣ୍ଟି ଲୋକ । ଯାହା କହିବ ସେଇଆ କରିବ । ଜବାବ ଏପଟ ସେପଟ ହେବ ନାହିଁ । ନହେଲେ ଦେଖ ପାଞ୍ଚବର୍ଷ ତଳେ କହିଥିଲା ଭାରତୀକୁ ବାହାହେବ ବୋଲି ଶେଷକୁ ହେଲା ହିଁ ହେଲା । ନହେଲେ ଏଇନେ ତାର ଯୋଉ ପାବାର, କେତେ ବଡ ବଡ ଧନୀ ଲୋକଙ୍କ ଘରୁ ପ୍ରସ୍ତାବ ଆସିଥିଲା ପରା, ସମସ୍ତଙ୍କୁ ନାହିଁ କରିଦେଲା ।''

ବାହାଘର ଆୟୋଜନ ଧୂମ୍ ଧାମ୍‌ରେ ଚାଲିଥାଏ । କିନ୍ତୁ ବିନୟ କୁମାର ପଣ୍ଡାଙ୍କ ଲୋକହିତକର କାର୍ଯ୍ୟ ବି ସେ ଭିତରେ ଚାଲିଥାଏ । ବାହାଘର ମାସେ ବାକୀ । ବିନୟବାବୁଙ୍କ ଚେଷ୍ଟାରେ ସ୍ଥାନୀୟ ଡାକ୍ତରଖାନାରେ ଗୋଟାଏ ପରିବାର ନିୟୋଜନ କାର୍ଯ୍ୟକ୍ରମ ସ୍ୱାସ୍ଥ୍ୟ ଡେପୁଟି ମିନିଷ୍ଟରଙ୍କ ସଭାପତିତ୍ୱରେ ଉଦ୍‌ଘାଟିତ ହୋଇଯାଇଛି । ମନ୍ତ୍ରୀଙ୍କ ସହ ବିନୟବାବୁ ମଧ୍ୟ ପରିବାର ନିୟୋଜନର ଉପକାରିତା ସମ୍ବନ୍ଧରେ ଗୋଟାଏ ନାତିଦୀର୍ଘ ଭାଷଣ ଦେଇଥିଲେ ସେ ସଭାରେ । ଏପରି ଗୋଟାଏ କାର୍ଯ୍ୟକ୍ରମ ଏ ଅଞ୍ଚଳରେ ପ୍ରଥମ । ତେଣୁ ଲୋକମାନଙ୍କ, ବିଶେଷତଃ ସାହି ମାଇପମାନଙ୍କ ମଧ୍ୟରେ ଏହା ଏକ ମୁଖରୋଚକ ଘଟଣା ଭାବରେ ବହୁଳ ଭାବରେ ପ୍ରଚାରିତ ହୋଇଗଲା । ଚାରିଆଡେ ଚୁପ୍‌ଚାପ୍ - ଫୁସ୍ ଫାସ୍ । ହସା ହସି । କେତେ ଆଶଙ୍କା, ଭୟ । ''ଶଳା ଅଣପୁରୁଷା ହୋଇଯିବେ ସବୁ ।'' ''ଆରେ ଥରେ ହେଲେ ଏ ମାଇକିନିଆ ସମ୍ପଛା ପଡିବେ । ଚରିବୁଲି ଖାଇବାକୁ ସୁବିଧା ହେବ ।''

''ଆରେ, ଯେତେହେଲେ ଛୁଆପିଲା ଭଗବାନଙ୍କ ଦାନ । ଏମିତି ଜବରଦସ୍ତି ବନ୍ଦ କରିଦେଲେ ଆଉ ପୃଥ୍ୱୀ ରହିବ ? ନିବଂଶ ହୋଇଯିବେ ସବୁ ।''

ଯଦିଓ ପ୍ରଥମ ଦିନେ ଦି ଦିନ ବିନୟ ବାବୁଙ୍କ ଚେଲାମାନେ ଟଙ୍କା ପଇସା ଦେଇ, ଧମକ ଚମକ ଦେଖାଇ ବାଉରୀ ସାହି, ତମ ସାହିରୁ କିଛି ମରଦ ମାଇପଙ୍କୁ ଧରି ଆଣିଥିଲେ, ତୃତୀୟ ଦିନ ବେଳକୁ ପ୍ରାୟ ସବୁ ଫାଙ୍କା । କରଣ, ବ୍ରାହ୍ମଣ, ଖଣ୍ଡାୟତ ସାହରୁ ଜଣେ ବି କେହି ଆସିଲେ ନାହିଁ ।

ବିନୟ ବାବୁଙ୍କର ଆଉ ତା ପ୍ରତି ନଜର ବି ନାହିଁ । ମନ୍ତ୍ରୀ ଆସିଥିଲେ - ଦେଖିଗଲେ ସଇଲା । ଖାତାରେ ନାଁ କ'ଣ ବାକୀ ରହିବ ? ଡାକ୍ତରଙ୍କ ସାଙ୍ଗରେ ସେଇ କଥା ଠିକ୍‌ଠାକ୍ ହୋଇଯାଇଛି । ଚାରିଶ ନାଁ ପଡିବ । ଯେତିକି ସତରେ ହେଲା ହେଲା - ବାକୀ ସବୁ ମିଛ ନାଁ ଭର୍ତ୍ତି ହେବ । ଟଙ୍କା ଅଧା ଅଧା ଭାଗ ହେବ ।

ଚତୁର୍ଥ ଦିନ ପ୍ରାୟ ସାଢେ ନଅଟା ହେବ ; କେହି କୁଆଡେ ନାହାନ୍ତି । ନର୍ସ କମ୍ପାଉଣ୍ଡର ଡ୍ରେସର ସବୁ ସେପଟ ଘରେ ବସି ଗପ ଜମେଇଛନ୍ତି । ଡାକ୍ତର ବାବୁ ଚଉକି ଉପରେ ବସି ପାଖ ଟୁଲ୍‌ରେ ଗୋଡଥୋଇ କୋଉ ଗୋଟାଏ ସିନେମା ପତ୍ରିକାଟାଏ ପଢୁଛନ୍ତି । ଏତିକିବେଳେ ମୁହଁରେ ହାତେ ଓଢଣାଦେଇ ପଶି ଆସିଲା ସ୍ତ୍ରୀ ଲୋକଟିଏ ।

ଡାକ୍ତରବାବୁ ପତ୍ରିକାଟା ଥୋଇଦେଇ ସାମାନ୍ୟ ବିରକ୍ତିରେ ପଚାରିଲେ, ''କ'ଣ ଦରକାର ?''

ସ୍ତ୍ରୀ ଲୋକଟି କିଛି ସମୟ ଚୁପ୍ ଚାପ୍ ରହି ଧୀରେ ଧୀରେ କହିଲା, ''ଅପରେସନ୍ ହେବି ।''

ଡାକ୍ତରବାବୁ ଚଞ୍ଚଳ ହୋଇ ଉଠିଲେ ।

''ଆଚ୍ଛା, ଆଚ୍ଛା'' ।

ଟେବୁଲ ଉପରେ ଅଧାମେଲା ରହିଥିବା ଖାତାଟା ଟାଣିଆଣି ପଚାରିଲେ, ''ନାଁ କଣ ?''

-ଭାରତୀ ମିଶ୍ର ।

-ବୟସ ?

-ଊଣେଇଶ୍ ।

-ଆଏଁ । ଚମକି ପଡିଲେ ଡାକ୍ତରବାବୁ । କିନ୍ତୁ ଗାଁ ଗହଳିରେ ଏମିତି ଘଟଣା ଘଟିଥାଏ । ବୟସର ହିସାବ ଠିକ୍ ନଥାଏ କାହାର । ଚାଳିଶ ବର୍ଷର ପ୍ରୌଢାଟିଏ ବି ଅନାୟାସରେ ପଚାଶ କିମ୍ବା ବାଇଶ କହି ଦେଇପାରେ । ତେଣୁ ସେ କିଛି ସମୟ କଲମ ବନ୍ଦକରି ଟିକିଏ ଭାବିଲାପରି ହୋଇ ଲେଖିଲେ, ''ବୟସ ଅଣତିରିଶ ।'' ମୁହଁ ତ ଦେଖାଯାଉନି । ଦେହ ବି ମୋଟା କପଡାରେ ପୁରାପୁରୀ ଢାଙ୍କି ହୋଇ ରହିଛି ।

-କେତୋଟି ଛୁଆ !

-ଗୋଟେ ବି ନାହିଁ ।

-ଆଏଁ । ତମେ କଣ ବାହା ହେଇନ ?

-ନା, ହେବାକୁ ଯାଉଛି ।

-କ'ଣ ମୋ ସାଙ୍ଗରେ ଥଟ୍ଟା କରୁଛ ? ଡାକ୍ତରବାବୁ ସତକୁ ସତ ଏଥର ରାଗିଗଲେ । ''ଡାକିବି ସେ ସୁଇପର୍‌କୁ ।''

ଏଥର ମୁଣ୍ଡର ଓଢଣାକୁ ଖୋଲିଦେଇ ଭାରତୀ ଟେବୁଲ ଉପରେ ଭରା ଦେଇ ଡାକ୍ତରବାବୁଙ୍କ ଆଡକୁ ଚାହିଁ ରହିଲା ଏକ ଦୃଷ୍ଟିରେ । ହଠାତ୍ ଗୋଟାଏ ଅସାମାନ୍ୟ ରୂପସୀ କନ୍ୟାକୁ ଆଖି ଆଗରେ ଦେଖି ବିସ୍ମୟରେ ଡାକ୍ତରବାବୁଙ୍କ ପାଟିରୁ କଥା ବାହାରିଲା ନାହିଁ । ସେ କେବଳ ଆଁ କରି ଚାହିଁ ରହିଲେ ତା' ଆଡକୁ ।

-ଡାକ୍ତରବାବୁ । ମୁଁ ପାଗଳି ନୁହେଁ କି ବେଶ୍ୟା ନୁହେଁ । ମୁଁ ଜଣେ ଭଦ୍ରଘରର କନ୍ୟା । ମୋର

ବିବାହ ଗୋଟାଏ ଖୁନୀ ଆସାମୀ ସହିତ ସ୍ଥିର ହୋଇଯାଇଛି । ବାହାଘର ଆଉ ମାସେ ବାକୀ । ସେ ବାହାଘରକୁ ଅସ୍ୱୀକାର କରିବା ମୋ ପକ୍ଷରେ ସମ୍ଭବ ନୁହେଁ-ମୋର ବାପା ମା' ଭାଇ ଭଉଣୀଙ୍କ ଭବିଷ୍ୟତ ପାଇଁ । ଜଣେ ହତ୍ୟାକାରୀର ସ୍ତ୍ରୀ ହେବାକୁ ମୋର ଆପତ୍ତି ନାହିଁ କିନ୍ତୁ ମୁଁ ଚାହେଁନା ଡାକ୍ତରବାବୁ ଖୁନୀ ଆସାମୀର ମା' ହେବାକୁ କିମ୍ବା ନଂପୁସକ ଭୀରୁ ସନ୍ତାନର ଜନନୀ ହେବାକୁ ।

ଡାକ୍ତରବାବୁ ! ଏ ଦେଶରେ ଅଧିକାଂଶ ସନ୍ତାନ ଆଜି ଆପଣଙ୍କ ପରି ଭୀରୁ, କାପୁରୁଷ, ନଂପୁସକ ଆଉ ବାକୀ ମୋ ଭାବି ସ୍ୱାମୀ ପରି ହତ୍ୟାକାରୀ, ଧର୍ଷଣକାରୀ, ଲୁଣ୍ଠନକାରୀ, ଡକାୟତ ।

ଏମିତି ଆହୁରି କିଛି ସନ୍ତାନ ଜନ୍ମ ଦେବାର ପାପରୁ ମୋତେ ଉଦ୍ଧାର କରନ୍ତୁ ଡାକ୍ତରବାବୁ !

ମୋତେ ବନ୍ଧ୍ୟା କରିଦିଅନ୍ତୁ-ଚିରଦିନ ବନ୍ଧ୍ୟା କରିଦିଅନ୍ତୁ ।

# ମନ୍ତ୍ର

ଜଗନ୍ନାଥ ପ୍ରସାଦ ଦାସ

ସନ୍ଧ୍ୟାବେଳେ ଘରକୁ ଫେରିଲେ ପ୍ରଭାକର ସାଧାରଣତଃ ଅଫିସ କଥା କହିଥାଏ, କିନ୍ତୁ ସେଦିନ ଆସି କହିଲା, ବୁଝିଲ, ସ୍ୱାମୀଜୀ ଶେଷକୁ ଆସି ଆମ ଚିଫ୍ ଇଞ୍ଜିନିୟରଙ୍କ ଘରେ ରହିଲେ । ସୁହାସିନୀ ସକାଳର ଖବରକାଗଜରେ 'ରାଜଧାନୀରେ ସ୍ୱାମୀଜୀଙ୍କ ପଦାର୍ପଣ' ଶୀର୍ଷକ ସମ୍ବାଦଟି ପଢିଥିଲା, କିନ୍ତୁ ପଚାରିଲା, କୋଉ ସ୍ୱାମୀଜୀ ? ପ୍ରଭାକର କହିଲା, ତମେ ଘରେ ବସି ବସି ବାହାରର କିଛି ବି ଖବର ରଖୁ ନାହଁ । ଅନେକ ବର୍ଷ ପରେ ସ୍ୱାମୀଜୀ ଓଡିଶା ଫେରିଛନ୍ତି ତାଙ୍କର ହିମାଳୟ ଆଶ୍ରମରୁ । ଖୋଦ ମୁଖ୍ୟମନ୍ତ୍ରୀ ଯାଇଥିଲେ । ତାଙ୍କୁ ଏୟାରପୋର୍ଟରୁ ଆଣିବା ପାଇଁ । ଏ ବିଷୟରେ ଅଧିକ ଜାଣିବା ପାଇଁ ସୁହାସିନୀର କୌତୂହଳ ଥିଲା, ତେବେ ତାର ଘରେ ବସି ରହୁଥିବା ଉପରେ ପ୍ରଭାକର ମନ୍ତବ୍ୟ କରିଥିବା ତାକୁ ଭଲ ଲାଗିଲା ନାହିଁ ଏବଂ ସେ ଆଉ କିଛି ନ ପଚାରି ଖାଲି କହିଲା, ଓଃ ! ପ୍ରଭାକର କିନ୍ତୁ ଚୁପ ରହିଲା ନାହିଁ । କହିଲା, ଚିଫ୍ ଇଞ୍ଜିନିୟରଙ୍କର ସବୁ ସମସ୍ୟାର ଏଥର ସମାଧାନ ହୋଇଯିବ । ସେ କଣ କମ୍ ଚେଷ୍ଟା କରିଛନ୍ତି ସ୍ୱାମୀଜୀଙ୍କୁ ହାତ କରିବାକୁ ?

ସୁହାସିନୀର ସବୁ ଆଗ୍ରହ ଥଣ୍ଡା ପଡିଗଲା । ପୁଣି ସେଇ ଅଫିସ କଥା । କିଏ କାହାର ପ୍ରିୟ ଅପ୍ରିୟ, କିଏ ଚୋର କିଏ ସଚ୍ଚୋଟ ଏବଂ କାହାକୁ ଧରି କିଏ କି ଭାବରେ ଲାଗିଛି ନିଜର ଉନ୍ନତି ବା ଅନ୍ୟ କାହାର କ୍ଷତି କରିବା ପାଇଁ । ଖାଇସାରି ଶୋଇବାକୁ ଗଲାବେଳେ ବି ପ୍ରଭାକର ନିଜ କଥାର ସୂତ୍ର ଧରି କହିଲା, ଚିଫ୍ ଇଞ୍ଜିନିୟରଙ୍କର ଯଦି ବଦଳି ବନ୍ଦ ହୋଇଯିବ, ଜଣାଯିବ ସେ ସତରେ ସ୍ୱାମୀଜୀଙ୍କର କରାମତି ଅଛି । ସୁହାସିନୀ ମନେ ମନେ ବିରକ୍ତ ହେଲା ଏବଂ ପ୍ରଭାକରକୁ ଅସ୍ୱସ୍ତି ପହଞ୍ଚାଇବା ପାଇଁ ପୁରୁଣା କଥା ଉଠାଇ କହିଲା, ତମର କଣ ଭିଜିଲାନ୍ସ କେସ୍ ଏତେ ବର୍ଷ ହେଲା ପଡିରହିଛି, ତମେ ଯାଇ ସ୍ୱାମୀଜୀଙ୍କୁ ଧରୁନା ? ଯଦିଓ ପିଲା ଦୁହେଁ ଅନ୍ୟ ଘରେ ଶୋଇଯାଇଥିଲେ ଏବଂ ସେମାନେ ଏକା ଥିଲେ, ପ୍ରଭାକର କହିଲା, ଏ ସବୁ କଥା ବଡ ପାଟିରେ କହିବ ନାହିଁ । ନିଜେ ସ୍ୱରକୁ ଆହୁରି ଧୀର କରି କହିଲା, ଶଳା କିଏ କେତେ ଟଙ୍କା ଖାଇ ମଜା କରି ବୁଲୁଛନ୍ତି, ମୋରି ବେଳକୁ ଯାଙ୍କର କେସ୍ କରିବାକୁ ଥିଲା । କେସ୍ ତ କୋଉକାଳୁ ଛିଣ୍ଡି ଯାଆନ୍ତାଣି, କିନ୍ତୁ ତାକୁ ଧରି ରଖିଛନ୍ତି ଖାଲି ମଝିରେ ମଝିରେ ମତେ ଡର ଦେଖାଇ ମୋ ପାଖରୁ ଟଙ୍କା ଆଦାୟ କରିବାକୁ । କେସ୍ ବୋଲି କଣ ନା ଷ୍ଟୋରରେ ଜିନିଷ ନ ଥିଲା । ସାତ ଦିନ ଭିତରେ ତ....

ଅଫିସ କାଗଜପତ୍ରରେ ପ୍ରଭାକର ଯାହା ସବୁ କୈଫିୟତ ଦେଇଥିଲା, ବାରମ୍ବାର ସ୍ତ୍ରୀ ଆଗରେ ତାର ପୁନରାବୃତ୍ତି କରି ସେ ସୁହାସିନୀକୁ ଏବଂ ବିଶେଷରେ ନିଜକୁ ସାନ୍ତ୍ୱନା ଦେଉଥିଲା ଯେ ତାର କିଛି ବି ଭୁଲ ନାହିଁ ଏବଂ ଅନ୍ୟାନ୍ୟ ଦୁର୍ନୀତିଗ୍ରସ୍ତ ଅଫିସରଙ୍କ ଭଳି ସେ ମଧ୍ୟ ଖସିଯିବ ଏ କେସ୍‌ରୁ । ତାର ଦୁଃଖ ଥିଲା ଯେ ତାର ଅସତ୍ କାମମାନଙ୍କରେ ତାର ସହକର୍ମୀଙ୍କ ସ୍ତ୍ରୀମାନଙ୍କ ଭଳି ସୁହାସିନୀ ସହଯୋଗ କରୁ ନଥିଲା । ତାର ଦୁର୍ଦ୍ଦଶାରେ ଭାଗୀ ହେବା ତ ଦୂରର କଥା, ବର୍ତ୍ତମାନ ସେ ତାର କେସ୍‌ର ଯେଉଁ ଦୀର୍ଘ ବିବରଣୀ ଦେଉଥିଲା, ସୁହାସିନୀ ସେଥିରେ ଆଦୌ ଆଗ୍ରହୀ ଜଣା ପଡୁ ନ

ଥିଲା । କଥା ବନ୍ଦ କରି ପ୍ରଭାକର ପଚାରିଲା, କଣ ଶୋଇଗଲଣି ନା କଣ ? ଅନ୍ୟ ପାଖକୁ ମୁହଁ ବୁଲାଇ ନେଇ ସୁହାସିନୀ କହିଲା, ହଁ ।

ସୁହାସିନୀକୁ କିନ୍ତୁ ନିଦ ଲାଗୁ ନ ଥିଲା । ପ୍ରଭାକର ତାକୁ ସହଜରେ କହିଦେଲା ଯେ ସେ ବାହାରର କିଛି ଖବର ରଖୁ ନାହିଁ । ତା ପୁଣି କି ଖବର ନା କୋଉ ଭଣ୍ଡ ସାଧୁ ଆସି କୋଉ ଭ୍ରଷ୍ଟ ଚିଫ୍ ଇଞ୍ଜିନିୟରଙ୍କ ଘରେ ଡେରା ପକାଇବେ । ପାଠ ପଢ଼ିବାବେଳେ ସୁହାସିନୀ କେବଳ ରାଜନୀତି ବିଜ୍ଞାନର ବହି ପଢ଼ୁ ନ ଥିଲା, ଦେଶ ବିଦେଶର ଖବର ରଖିବାରେ ବି ଅଗ୍ରଣୀ ଥିଲା । ମେଧାବିନୀ ଛାତ୍ରୀ ଓ ନେତ୍ରୀ ଭାବରେ କଲେଜର ତାର ସମ୍ମାନ ଥିଲା । ସ୍ପୋର୍ଟସରୁ ଆରମ୍ଭ କରି କଲେଜର ନାଟକ ପର୍ଯ୍ୟନ୍ତ ସବୁଥିରେ ଭାଗ ନେଉଥିଲା ସୁହାସିନୀ । କଲେଜ ବେଳର ଅନେକ ଛୋଟ ଛୋଟ ଘଟଣା ମନକୁ ଆସୁଥିଲା ବର୍ତ୍ତମାନ : ସାଙ୍ଗମାନେ ଏକାଠି ହୋଇ ସିଗାରେଟ୍ ପିଇ ଧରା ପଡ଼ିବା, କ୍ଲାସରେ ନୂଆ ଲେକ୍‌ଚରରଙ୍କୁ ହଇରାଣ କରିବା, ରାତିରେ ସିନେମାରୁ ଫେରି ଫାଟକ ଡେଇଁ ହଷ୍ଟେଲ ଭିତରକୁ ପଶିବା । ଅନେକ ଦିନ ଧରି ସେ ପୁରୁଣା ଦିନ ବିଷୟରେ ଭାବିବା ଛାଡ଼ି ଦେଇଥିଲା, କିନ୍ତୁ ଆଜି ଅନାୟାସ ତାର ମନେପଡୁଥିଲେ ଅତି ଅକିଞ୍ଚିତକର କଥା ଓ ଦୃଶ୍ୟ ସବୁ : ଡିବେଟ୍‌ରେ ପ୍ରାଇଜ ନେଇ ଫେରିବା ବେଳେ ସେମାନେ ଟ୍ରେନ୍‌ରେ ଗାଉଥିବା ଗୀତ, ତାକୁ ଭଲ ଲାଗିଥିବା ପିଲାଟି ପାଇଁ ସେ ଲେଖିଥିବା ଦୁଇଧାଡ଼ି କବିତାର ଶବ୍ଦମାନ, ସିନେମା ହଲ୍‌ର ଅନ୍ଧାର ଭିତରେ କାହାର ହାତ ଆସି ତାର ଛାତିକୁ ଛୁଇଁ ଦେଇଥିବାର ଏକାଧାରରେ ପୁଲକ ଓ ଅସ୍ୱସ୍ତି । ନା, ଏ ସବୁ ମନେ ପକାଇ କିଛି ଲାଭ ନାହିଁ ଆଉ । କେତେ କଣ ଆଶା ଆକାଂକ୍ଷା ଥିଲା ତାର, କିନ୍ତୁ ପିଏଚ୍.ଡି କରୁଥିବା ବେଳେ ବାହାଘର ହୋଇଗଲା । ତା ଠାରୁ ଅଳ୍ପ ଯୋଗ୍ୟ ତାର ସାଙ୍ଗମାନେ ଚାକିରିର ପାହାଚରୁ ପାହାଚ ଉପରକୁ ଉଠୁଥିବା ବେଳେ ସେ ତାର ସ୍ୱାମୀ ସହିତ ଗୋଟିଏ ମଫସଲରୁ ଆଉ ଗୋଟିଏ ମଫସଲକୁ ଘର ସଂସାର ବଦଳାଇବାରେ ବ୍ୟସ୍ତ ରହିଲା । ତାର ସ୍ୱାମୀ ଜୁନିୟର ଆସିଷ୍ଟାଣ୍ଟ ଏକ୍‌ଜିକ୍ୟୁଟିଭ ଇଞ୍ଜିନିୟର ହେବା ଭିତରେ ତାର ଉନ୍ନତି ହେଲା ଦିଓଟି ସନ୍ତାନ, ଘରେ ଆଉ କିଛି ଜିନିଷପତ୍ର ଓ ଅଧିକା ଚାକର ବାକର । ପ୍ରଥମେ ପ୍ରଥମେ ମନ ଭିତରେ ଅପ୍ରାପ୍ତିର ଯେଉଁ କ୍ଷୋଭ ଉପୁଜୁଥିଲା, ତାକୁ ସେ ଚେଷ୍ଟା କରି ଦୂର କରିଦେଲା ଏଇ କଥା ଭାବି ଯେ ତାର ପ୍ରଥମ କର୍ତ୍ତବ୍ୟ ହେଉଛି ପିଲା ଦୁହିଁଙ୍କୁ ମଣିଷ କରିବା । ଏଇଥିରେ କଟିଗଲା ତାର ଜୀବନର କୋଡ଼ିଏଟି ବର୍ଷ ।

ପ୍ରଭାକର ସହିତ କେବେ ବି ତାର ଗୁରୁତର ଅପଡ଼ ହୋଇ ନଥିଲା, କିନ୍ତୁ କେବେ ବି ତା ସହିତ ଭଲରେ ମନ ମିଳି ନ ଥିଲା ସୁହାସିନୀର । ପ୍ରଭାକର ବିଷୟସର୍ବସ୍ୱ ଥିଲା ଏବଂ ସବୁବେଳେ ଲାଗିଥିଲା କିପରି ଆହୁରି ସଂପତ୍ତି ଏକାଠି କରିବ । କର୍ମଠ ଅଫିସର ଭାବରେ ତାର ନାଁ ଥିଲା ଏବଂ ସେ ତାର ସହକର୍ମୀମାନଙ୍କ ଅପେକ୍ଷା ଅଧିକ ଦୁର୍ନୀତିଗ୍ରସ୍ତ ନ ଥିଲା । ନିଜର ସବୁ ସମୟ ସେ କାମରେ ଲଗାଉଥିଲା ଏବଂ ଘରକୁ ଫେରିଲେ ଯୋଜନା କରୁଥିଲା କୋଉଠି ନୂଆ ଘର କରିବ, କଣ ନୂଆ ଜିନିଷ କିଣିବ ଏବଂ ଚୋରା ଟଙ୍କାକୁ କିଭଳି ବିନିଯୋଗ କରିବ । ଏ ସବୁ ବିଷୟରେ କିନ୍ତୁ ସୁହାସିନୀର ଟିକିଏ ବି ଆଗ୍ରହ ନ ଥିଲା ଏବଂ ପ୍ରଭାକର ଯେତେବେଳେ ଘର ତିଆରି କରିବାର ନକ୍‌ସା ଆଣି ଦେଖାଉଥିଲା ଏବଂ ତାକୁ ଆହୁରି ସୁନ୍ଦର କରିବାର ପ୍ରସ୍ତାବ ଦେଉଥିଲା, ସୁହାସିନୀ ସେଥିରେ ମୁଣ୍ଡ ନ ଖେଳାଇ ତା କଥାରେ ହଁ ଭରୁଥିଲା । ପ୍ରଭାରକର ଦୁଃଖ ଥିଲା ଯେ ସେ ଯେତେବେଳେ ସୁହାସିନୀର ହାତକୁ ଅଳଙ୍କାରର ପୁଡ଼ିଆ କିମ୍ବା ଟଙ୍କା ବିନିଯୋଗର କାଗଜପତ୍ର ଦେଉଥିଲା, ସୁହାସିନୀ କୃତଜ୍ଞତା ଓ ଆନନ୍ଦରେ ଗଦ୍‌ଗଦ ନ ହୋଇ ତାକୁ ନିର୍ବିକାରରେ ନେଇ ଆଲମାରିରେ ରଖି ଦେଉଥିଲା । ପ୍ରଭାକରର ଏତିକି ସାନ୍ତ୍ୱନା ଥିଲା ଯେ ସ୍ତ୍ରୀର ବିମୁଖତା ସତ୍ତ୍ୱେ ତାର ସଂସାର ଓ ସଂପତ୍ତିର ଉତ୍ତରୋତ୍ତର ଉନ୍ନତି ହେଉଥିଲା ।

ସେ ଭାବିଥିଲା ଯେ ରାଜଧାନୀକୁ ଆସିବା ପରେ ସୁହାସିନୀର ମନ ବଦଳିଯିବ ଏବଂ ସେ ତାର ଚାକିରି ଓ ଘରବାଡିର ଯୋଜନାରେ କିଛି ରୁଚି ରଖିବ, କିନ୍ତୁ ଏପରି କିଛି ହେଲା ନାହିଁ । ଝିଅ ବର୍ତ୍ତମାନ କଲେଜରେ ପଢୁଥିଲା ଏବଂ ପୁଅ ସ୍କୁଲର ଶେଷ କ୍ଲାସରେ । ସେମାନଙ୍କ ପାଇଁ ସୁହାସିନୀର ଆଉ ବେଶି କିଛି ଦାୟିତ୍ୱ ନ ଥିଲା । ସେ କିନ୍ତୁ ତାର ପୂରା ସମୟ କଟାଉଥିଲା ତାର କିଛି ପୁରୁଣା ସାଙ୍ଗଙ୍କୁ ଭେଟି, ପିଲାଙ୍କ ପଢା ପଢି କଥା ବୁଝି ଏବଂ ତାଙ୍କର ଛୋଟ ବଗିଚାର ଯତ୍ନ ନେବାରେ । ପ୍ରଭାକର ବୁଝି ପାରୁ ନଥିଲା ସେ ଅନେକ ପଇସାପତ୍ର କରି ପରିବାରକୁ ଏତେ ସୁଖସ୍ୱାଚ୍ଛନ୍ଦ୍ୟରେ ରଖି ସେମାନଙ୍କର ଭବିଷ୍ୟତ ପାଇଁ ସଂପତ୍ତି ଖଞ୍ଜି ଦେଇଥିବା କଥା କାହିଁକି ସୁହାସିନୀକୁ ପ୍ରଭାବିତ କରି ପାରୁ ନଥିଲା ଏବଂ କିପରି ସେ ଏ ବିଷୟରେ ନିଃସ୍ପୃହ ରହୁଥିଲା । ତଥାପି ସେ ନିୟମିତ ଭାବରେ ନିଜର ସବୁ କଥା ଆସି ଟିକିନିଖି କରି କହୁଥିଲା, ସୁହାସିନୀ ତାର କଥାକୁ ଅଶୁଣା କରିଦେଉଥିବା ସତ୍ତ୍ୱେ ।

ଦି ଦିନ ପରେ ରାତିରେ ଡେରିରେ ଘରକୁ ଫେରି ପ୍ରଭାକର ତାକୁ କହିଲା, ଆଜି ଅଫିସରୁ ସିଧା ଚାଲିଗଲି ସ୍ୱାମୀଜୀଙ୍କ ପାଖକୁ । କି ସୁନ୍ଦର ପ୍ରବଚନ ଦେଲେ ସତେ ! ଆଜି ଗୀତାର ଗୋଟାଏ ଅଧ୍ୟାୟ ବୁଝାଇଲେ ସ୍ୱାମୀଜୀ । ସେ କୁଆଡେ ଗୀତା ଉପରେ ଗୋଟାଏ ଭାଷ୍ୟ ଲେଖିଛନ୍ତି । ସୁହାସିନୀ କହିଲା, ଗୀତା ଉପରେ ହଜାର ବହି ଲେଖା ହୋଇଛି । ତଥାପି ସବୁ ସ୍ୱାମୀଜୀ ତା'ଉପରେ ନିଶ୍ଚେ ଆଉ ଗୋଟିଏ ଟୀକା ଲେଖିବେ ।

ତାଙ୍କ ବହିରେ କଣ ଥିବ କେଜାଣି, କିନ୍ତୁ ତାଙ୍କ କଥା ଯେମିତି ଅମୃତ । ଥରେ ଶୁଣିଲେ ଉଠି ଆସିବାକୁ ଇଚ୍ଛା ହେବନି । ସ୍ୱାମୀଜୀ କୁଆଡେ ଖାଲି ଗୀତା ଭାଗବତ ନୁହେଁ, ବାଇବେଲ୍, କୋରାନ୍ ଉପରେ ବି ଏମିତି ପ୍ରବଚନ ଦେଉଛନ୍ତି । ମୁଁ ଭାବୁଛି ପ୍ରତିଦିନ ଅଫିସ ଫେରନ୍ତା ସେଇବାଟ ଦେଇ ଆସିବି ।

ସ୍ୱାମୀଜୀ କୁଆଡେ ପରା ଅସମ୍ଭବକୁ ସମ୍ଭବ କରି ଦେଖାଉଛନ୍ତି ? ସୁବିଧା ଦେଖି ତମ ଭିଜିଲାନ୍ସ କେସ୍ କଥା କହିଲ ନାହିଁ ?

ତାଙ୍କୁ ଏକୁଟିଆ ପାଇ ସବୁ କଥା କହିବା କଣ ଏତେ ସହଜ ? ତମେ ତାଙ୍କ ସଭାକୁ ଗଲେ ଦେଖନ୍ତ କେତେ ଲୋକ ଆସି ଜମା ହେଉଛନ୍ତି । ଯାହା ଉପରେ ତାଙ୍କର କୃପା ହେଉଛି, ତାକୁ ଡାକୁଛନ୍ତି ମନ୍ତ୍ର ଦେବା ପାଇଁ ।

କିଏ ଜାଣିଚି କି ମନ୍ତ୍ର । ଆଜି ସେ ପ୍ରବଚନ ପରେ ଡାକିଲେ ରାଓବାବୁଙ୍କୁ । ଏତେ ଲୋକ ବସିଥିଲେ, ଏମିତି ବି ଆଜି ସେଠି ଜଣେ ମନ୍ତ୍ରୀ ବି ଥିଲେ, କିନ୍ତୁ ସ୍ୱାମୀଜୀଙ୍କ ଆଖିରେ ପଡିଲେ ଏଇ କଣ୍ଟ୍ରାକ୍ଟର ।

ତମ ପାଳି ପୁଣି କେବେ ପଡିବ ବୋଲି ଭାବୁଚ ? ସୁହାସିନୀ ପଚାରିଲା ।

ଦିନ ସାରା ତ ସ୍ୱାମୀଜୀ ଲୋକଙ୍କୁ ଭେଟୁଛନ୍ତି ! ଚିଫ୍ ଇଞ୍ଜିନିୟରଙ୍କ ଘରେ ଏବେ ଲୋକଙ୍କ ମେଳା । ତାଙ୍କ ଡ୍ରଇଂରୁମ୍ କଣ ଆଉ ବୈଠକଖାନା ହୋଇ ଅଛି ? ସ୍ୱାମୀଜୀ ସାରାଦିନ ସେଇଠି କଟାଉଛନ୍ତି । କେତେବେଳେ ପ୍ରବଚନ ଦଉଛନ୍ତି ତ କେତେବେଳେ ପ୍ରଶ୍ନର ଉତ୍ତର ଦେଉଛନ୍ତି । ପୁଣି କେତେବେଳେ କାହାକୁ ଭିତରକୁ ଡାକି ନଉଛନ୍ତି ମନ୍ତ୍ର ଦବାପାଇଁ ।

ଯାହାହଉ, ସହରର ଲୋକଙ୍କ ପାଇଁ ଭଲ କାମ ମିଳିଗଲା । ଏଠି ତ ଅଫିସ ଛଡା ଆଉ କାହାରି କିଛି କାମ ନ ଥାଏ, ଏବେ ମନୋରଞ୍ଜନ ପାଇଁ ଅନ୍ତତଃ ସ୍ୱାମୀଜୀଙ୍କ ମୁହଁ ଦେଖିବାକୁ ମିଳିବ ।

କାହିଁ ଏମିତି କଥା ସବୁ କହୁଚ, ପ୍ରଭାକର କହିଲା ; ତମେ ନିଜେ ଥରେ ଗଲେ ଜାଣିବ

ସ୍ୱାମୀଜୀ କି ଜ୍ଞାନୀ ଲୋକ ।

ଏଥରକ ପ୍ରତିଦିନ ସନ୍ଧ୍ୟାରେ ପ୍ରଭାକର ସ୍ୱାମୀଜୀଙ୍କ ପାଖକୁ ଯିବାରେ ଲାଗିଲା ଏବଂ ସୁହାସିନୀକୁ ରାତିରେ ଶୁଣିବାକୁ ହେଲା ତାର ଧାରା ବିବରଣୀ । ସ୍ୱାମୀଜୀଙ୍କ ପାଖକୁ ଆଜିକାଲି ବେଶୀ ବେଶୀ ଲୋକ ଆସିବାରେ ଲାଗିଥିଲେ ଏବଂ ସେ ଚିଫ୍ ଇଞ୍ଜିନିୟରଙ୍କ ଘରୁ ଯାଇ ଗୋଟିଏ ବଡ ଭଡାଘରେ ରହୁଥିଲେ । ତାଙ୍କର କୁଆଡେ ରାଜଧାନୀକୁ ଆସିବାର ବିଶେଷ ଉଦ୍ଦେଶ୍ୟ ଥିଲା ଯେ ଆଶ୍ରମର ଯୋଉ ଡାକ୍ତରଖାନା କରୁଥିଲେ, ତା ପାଇଁ ଟଙ୍କା ସଂଗ୍ରହ କରିବା । ଏ ଭିତରେ ସହରର ଅଫିସର, ବ୍ୟବସାୟୀ, ନେତାମାନେ ତାଙ୍କୁ ଏଥିପାଇଁ ଲକ୍ଷ ଲକ୍ଷ ଟଙ୍କା ଦେଇସାରିଥିଲେ । ସ୍ୱାମୀଜୀ କହୁଥିଲେ, ଡାକ୍ତରଖାନା ପାଇଁ ପୂରା ଟଙ୍କା ହୋଇଗଲେ ସେ ପୁଣି ନିଜ ଆଶ୍ରମକୁ ଫେରିଯିବେ ।

ଦିନେ ପ୍ରଭାକର ଆସି ଘରେ ପଶୁ ପଶୁ ଉତ୍ତେଜିତ ସ୍ୱରରେ କହିଲା, ବୁଝିଲ, ଚିଫ୍‌ଇଞ୍ଜିନିୟରଙ୍କର ବଦଳି ବନ୍ଦ ହୋଇଗଲା । ସୁହାସିନୀ କିଛି ନ କହିବାରୁ ପ୍ରଭାକର ପୁଣି କହିଲା, କେହି ବି ଭାବି ନଥିଲେ ଏ ଅସାଧ କାମ ସାଧ ହେବ ବୋଲି । ନିରୁତ୍ତାପ ସ୍ୱରରେ ସୁହାସିନୀ କହିଲା, ସ୍ୱାମୀଜୀଙ୍କର କରାମତି ଅଛି ତାହେଲେ । ପ୍ରଭାକର ଯେ ଭାବିଥିଲା ଏ ବିଷୟରେ ସୁହାସିନୀ ଆହୁରି ଟିକିନିଖି ଜାଣିବାକୁ ଚାହିଁବ, ଏପରି କିଛି ହେଲା ନାହିଁ । ତେବେ ଦି ଦିନ ପରେ ପ୍ରଭାକର ଯେତେବେଳେ ଆସି କହିଲା, ସ୍ୱାମୀଜୀ ମତେ ଆଜି ମନ୍ତ୍ର ଦେବାପାଇଁ ଡାକିଲେ, ସୁହାସିନୀ ଚୁପ ରହିପାରିଲା ନାହିଁ । ପଚାରିଲା, କେମିତି କଣ ମନ୍ତ୍ର ଦେଲେ ? ଏତେଦିନ ଧରି ସୁହାସିନୀ ତାର କଥାରେ କୌଣସି ଆଗ୍ରହ ଦେଖାଉ ନ ଥିବାରୁ ପ୍ରଭାକର କ୍ଷୁବ୍ଧ ଥିଲା । କହିଲା, ପରେ କହିବି ।

ରାତିରେ ଶୋଇବା ବେଳେ ବି ଯେତେବେଳେ ପ୍ରଭାକର ନିଜଆଡୁ ସେ କଥା ଉଠାଇଲା ନାହିଁ, ସୁହାସିନୀ ଭାବିଲା ସେ ଏ ବିଷୟରେ ତାକୁ ପଚାରିବ ନାହିଁ । ଶେଷରେ କିନ୍ତୁ ସେ ତାର କୌତୂହଳ ଚାପି ରଖିପାରିଲା ନାହିଁ; କହିଲା କଣ କହୁଥିଲ ପରା ସ୍ୱାମୀଜୀ ତମକୁ ଆଜି ମନ୍ତ୍ର ଦେଲେ ବୋଲି; କି ମନ୍ତ୍ର ? ଏଥରକ ପ୍ରଭାକର ସେଦିନ ସନ୍ଧ୍ୟାର ଏକ ବିଶଦ ବିବରଣୀ ଦେଲା । ସ୍ୱାମୀଜୀ କଠୋପନିଷଦର ବ୍ୟାଖ୍ୟା କରିସାରିବା ପରେ ସେ ବିଷୟରେ ଦି ଚାରିଟି ପ୍ରଶ୍ନର ଉତ୍ତର ଦେଲେ । ତା ପରେ ସେ ସଭାରେ ବସିଥିବା ଲୋକମାନଙ୍କୁ ଅନାଇ ଯେତେବେଳେ ତାଙ୍କର ଆଖି ପ୍ରଭାକର ଉପରେ ପଡିଲା, ଉଠି ଠିଆହେଲେ ଆଉ ତାକୁ ତାଙ୍କ ସାଙ୍ଗରେ ଭିତରକୁ ଯିବାକୁ ଡାକିଲେ, ଭିତରେ ଗୋଟିଏ କୋଠରିର ପୂଜାଘରେ ତାକୁ ବସାଇ କହିଲେ, ତମର ଯୋଉ ସମସ୍ୟା ଅଛି, ଏଇ ଅଳ୍ପଦିନ ଭିତରେ ଠିକ୍ ହୋଇଯିବ ।

ସୁହାସିନୀ କଣ କହିବାକୁ ଯାଉଥିଲା, ପ୍ରଭାକର କହିଲା, ତମେ ଭାବୁଥିବ ଏ କଣ ବଡ କଥା ! ଏଭଳି କଥା ତ ସମସ୍ତଙ୍କୁ କୁହାଯାଇପାରେ, କାରଣ ସମସ୍ତଙ୍କର କିଛି ନା କିଛି ସମସ୍ୟା ନିଶ୍ଚେ ଥିବ । କିନ୍ତୁ ତା ପରେ ମତେ ସେ କେସ୍ ବିଷୟରେ ଏମିତି କେତେ କଥା ପଚାରିଲେ, ଯୋଉଥିରୁ ମୁଁ ଜାଣିଲି ଯେ ତାଙ୍କୁ ସବୁ ଜଣା ।

ତମ ବିଷୟରେ ସେ କେମିତି କଣ ଜାଣିବେ ? ତାଙ୍କୁ ଭେଟିବାକୁ ଯେତେ ଲୋକ ଯାଉଛନ୍ତି, ସେ କଣ ସମସ୍ତଙ୍କ ବିଷୟରେ ସବୁ କଥା ଜାଣିଥିବେ ? ଯଦି ତମ ବିଷୟରେ ସେ ଆଗରୁ କୋଉଠୁ ଖବର ସଂଗ୍ରହ କରିଥିବେ, ସେ ଅଲଗା କଥା ।

ଅବଶ୍ୟ ତାଙ୍କ ପାଖରେ ଚିଫ୍ ଇଞ୍ଜିନିୟରଙ୍କ ସ୍ତ୍ରୀ ପିଲାମାନେ ଏବେ ବି ଚଳପ୍ରଚଳ ହଉଛନ୍ତି, କିନ୍ତୁ ସେମାନେ କାହିଁକି ମୋ ବିଷୟରେ ଏତେ ଖବର ଦେବେ ତାଙ୍କୁ ? ସେ ଯାହାହେଉ, ସ୍ୱାମୀଜୀ ମୋର ସମସ୍ୟା କଥା ବୁଝିବେ ବୋଲି କହିଲେ ।

ତମକୁ ମନ୍ତ୍ର କେତେବେଳେ ଦେଲେ ?

ନା, ମତେ ପୂରା ମନ୍ତ୍ର ଦେଇଛନ୍ତି କୋଉଠି ? ମତେ ଗୋଟିଏ କାଗଜ ଦେଇଛନ୍ତି, ସେଥିରେ ଏବେ କିଛି ଲେଖା ନାହିଁ । କହିଛନ୍ତି ଆଉ ଥରେ ମତେ ଡକାଇ ସେଥିରେ ମୋ ପାଇଁ ମନ୍ତ୍ର ଲେଖିଦେବେ ।

ଓଃ, ଏତିକି କଥା ! ସୁହାସିନୀ ନିରାଶ ହୋଇଥିବା ଭଳି ଜଣା ପଡିଲା । ପ୍ରଭାକର କହିଲା, ମୋଠୁ ଏମିତି ଶୁଣିଲେ ତମେ କଣ ବୁଝିବ ସ୍ୱାମୀଜୀ କିଭଳି ଲୋକ । ତମେ ଯଦି ତାଙ୍କ ପ୍ରବଚନକୁ ଯା'ନ୍ତ, ଜାଣିପାରନ୍ତ ତାଙ୍କର କେତେ ଜ୍ଞାନ ।

ମୋର ଏଭଳି ବାବାଜିଙ୍କ ପାଖକୁ ଯିବା ଦରକାର ନାହିଁ । ଯଦି ମୋର ଧର୍ମର ବିଷୟରେ ଜାଣିବାକୁ ଇଚ୍ଛା ହେବ. ମୁଁ ବହି ପଢିବି ନାହିଁ କାହିଁକି ? ସୁହାସିନୀ ଏ କଥା କହିଲା ସିନା, ଟିକିଏ ପରେ ପଚାରିଲା, ସେଠିକି କଣ ସ୍ତ୍ରୀଲୋକମାନେ ଯାଉଛନ୍ତି ?

ତାଙ୍କୁ ଭେଟିବାକୁ ଯାଉଥିବା ଅଧାରୁ ବେଶି ତ ସ୍ତ୍ରୀଲୋକ । ଆଉ ଅଫିସ ସମୟରେ ସେ ଯେତେବେଳେ ଦର୍ଶନ ଦଉଛନ୍ତି, ସେତେବେଳେ କୁଆଡେ ଖାଲି ସ୍ତ୍ରୀଲୋକ ସେଠାରେ । ଥରେ ଯାଇକରି ତ ଦେଖ ।

ନା, ମୋର ଯିବା ଦରକାର ନାହିଁ । ସୁହାସିନୀ ଏ କଥା କହିଲା, କିନ୍ତୁ ପ୍ରଭାକର ଅଧା ମନ୍ତ୍ର ପାଇବା କଥା ଶୁଣିବା ପରେ ତାର ମଧ କୌତୁହଳ ହୋଇଥିଲା ଯାଇ ଦେଖିବ ଏତେ ଲୋକ କାହିଁକି କୋଉ ସାଧୁ ପାଖରେ ପ୍ରତି ସନ୍ଧ୍ୟାରେ ଯାଇ ଅଧିଆ ପଡୁଛନ୍ତି । କିଛି ଦିନ ପରେ ଦିନେ ସନ୍ଧ୍ୟାବେଳେ ପିଲା ଦୁହେଁ କାହାଘରକୁ ଚାଲିଯିବାରୁ ସୁହାସିନୀ ପ୍ରଭାକର ସାଙ୍ଗରେ ବାହାରିଲା ସ୍ୱାମୀଜୀଙ୍କ ପାଖକୁ ।

ନିଜର ସମସ୍ତ ପ୍ରତିକୂଳ ମନୋଭାବ ସତ୍ତ୍ୱେ ପ୍ରଥମ ଦର୍ଶନରେ ହିଁ ସୁହାସିନୀକୁ ମାନିବାକୁ ପଡିଲା ଯେ ସ୍ୱାମୀଜୀ ପ୍ରକୃତରେ ଜଣେ ପ୍ରଭାବ ପକାଇବା ଭଳି ବ୍ୟକ୍ତିତ୍ୱ । କୋଠରିଟି ଭର୍ତ୍ତି ହୋଇ ଲୋକ ବସିଥିଲେ; ସାମନାରେ ସାମାନ୍ୟ ଉଚ୍ଚ ଆସନରେ ବସିଥିଲେ ସ୍ୱାମୀଜୀ । ତାରି ବୟସର, କି ତା'ଠାରୁ ଟିକିଏ କମ୍ ବୟସର ହେବେ, ଭଦ୍ରବ୍ୟକ୍ତି ନିଜକୁ ପୂରାପୂରି ସଜାଇଥିଲେ ଏଇ ଚରିତ୍ର ପାଇଁ । ଏଇ ଫାଇଭ୍ ଷ୍ଟାର୍ ସ୍ୱାମୀଜୀଙ୍କର ବାଳ, ତାଙ୍କ ଦାଢ଼ି, ତାଙ୍କର ଗେରୁଆ ପୋଷାକ ସବୁ ଯେମିତି ଡିଜାଇନର ତିଆରି ଥିଲା ଏବଂ ସେ ଦିଶୁଥିଲେ କୌଣସି ସୌମ୍ୟଦର୍ଶନ ଚିତ୍ରତାରକା ଜଣେ ସ୍ୱାମୀଜୀଙ୍କ ଭୂମିକାରେ ଅବତୀର୍ଣ୍ଣ ହେବାପାଇଁ ବେଶଭୂଷା ହେବାଭଳି । ତାଙ୍କର ମୁହଁର ସବୁଠାରୁ ଦର୍ଶନୀୟ ବସ୍ତୁ ଥିଲା ତାଙ୍କର ଆଖି ଦୁଇଟି, ଯାହା ଥର ଥର କରି ସମସ୍ତଙ୍କ ଆଖିରେ ଯାଇ ମିଶୁଥିଲା; ଅନ୍ୟ କାହାରି ହୋଇଥିଲେ ହୁଏତ ତାକୁ ଲୋଲୁପ ବା ଲମ୍ପଟ କୁହାଯାଇଥାନ୍ତା, କିନ୍ତୁ ଜଣେ ସ୍ୱାମୀଜୀଙ୍କର ମୁହଁରେ ଥିବାରୁ ତାକୁ ମର୍ମଭେଦୀ ଓ ସମ୍ମୋହକ ବୋଲି ମାନିବାକୁ ହେଉଥିଲା ।

ସୁହାସିନୀ ଆହୁରି ପ୍ରଭାବିତ ହେଲା ସ୍ୱାମୀଜୀ ଯେତେବେଳେ ତାଙ୍କର ବକ୍ତବ୍ୟ ଦେଲେ । ଆଜି ସେ କହୁଥିଲେ ରାମକୃଷ୍ଣ ପରମହଂସଙ୍କ ବିଷୟରେ । ମଫସଲରୁ ଆସିଥିବା ଅଶିକ୍ଷିତ ଯୁବକଟି କିପରି କଲିକତା'ର ମଧବିତ୍ତ ସମାଜରେ ଚହଳ ପକାଇ ଦେଇଥିଲା ସେ ବିଷୟରେ କହିଲେ ସ୍ୱାମୀଜୀ । ଅନେକ ପ୍ରକାରର ବ୍ୟକ୍ତିଗତ ବିବରଣୀ, କାହାଣୀ ଓ ଦେଶୀ ବିଦେଶୀ ଲେଖକଙ୍କର ଉଦାହରଣ ଦେଇ ସେ ଯେତେବେଳେ ପରମହଂସଙ୍କର ଜୀବନ-ଦର୍ଶନର ବ୍ୟାଖ୍ୟାନ ଶେଷ କଲେ, ସୁହାସିନୀ ମାନିଲା ଯେ ଲୋକଟିର ଭଲ ବିଦ୍ୟାବୁଦ୍ଧି ଅଛି । ସେଦିନ ମନ୍ତ୍ର ଦେବାପାଇଁ ସ୍ୱାମୀଜୀ ଯାହାକୁ ବାଛିଲେ, ସେ ଥିଲେ ଜଣେ ବରିଷ୍ଠ ଅଫିସରଙ୍କର ସହଧର୍ମିଣୀ । ଘରକୁ ଫେରିବା ବେଳେ ପ୍ରଭାକର କହିଲା, କଣ ଏଥର ମୋ କଥାରେ ବିଶ୍ୱାସ ହେଲା ତ ? ମୁଁ କହୁ ନଥିଲି ସ୍ୱାମୀଜୀଙ୍କର କିଛି ଗୋଟାଏ ଶକ୍ତି

ଅଛି ବୋଲି ? ସୁହାସିନୀ କହିଲା, ଭଲ ବକ୍ତୃତା ଦେଲେ ସ୍ୱାମୀଜୀ । ସେ ଆଗରୁ ଯୋଉସବୁ ବକ୍ତୃତା ଦେଇଥିଲେ ତାର ଟେପ୍ ଯଦି କିଏ ରଖିଥିବ ବୁଝିବ ତ ।

ସେହିଦିନଠାରୁ ଯେତେବେଳେ ସୁବିଧା ପାଇଲା ସୁହାସିନୀ ଯାଇ ସ୍ୱାମୀଜୀଙ୍କ ସଭାରେ ଯୋଗଦେଲା । ପ୍ରତି ବୈଠକରେ ସେ ଗୋଟିଏ ଅତି ଅପ୍ରତ୍ୟାଶିତ ନୂଆ ବିଷୟ ଉପରେ କହୁଥିଲେ, କିନ୍ତୁ ତାଙ୍କର ପ୍ରତିଟି ବକ୍ତୃତା ଥିଲା ସାରଗର୍ଭକ ଓ ସ୍ମରଣୀୟ । ଦିନବେଳେ ସ୍ୱାମୀଜୀ ଯେଉଁ ସମୟତକ ଆସି ବସୁଥିଲେ, ସେତେବେଳେ ପୁରୁଷମାନେ ପ୍ରାୟ ନିଜ ନିଜ କାମରେ ବ୍ୟସ୍ତ ଥିବାରୁ ତାଙ୍କର ଦର୍ଶନାର୍ଥୀ ଥିଲେ କେବଳ ସ୍ତ୍ରୀଲୋକ । ସୁହାସିନୀ ଏଇ ସଭାମାନଙ୍କୁ ମଧ୍ୟ ଯିବାରେ ଲାଗିଲା । ତାକୁ ବକ୍ତୃତା ସବୁ ଅତି ଚମତ୍କାର ଲାଗୁଥିଲା, କିନ୍ତୁ ସ୍ୱାମୀଜୀ ଜଣେ ଜଣେ ସ୍ତ୍ରୀଲୋକକୁ ଭିତରକୁ ଡାକିନେଇ ମନ୍ତ୍ରଦେବା କଥା ତାକୁ କିପରି ଅଶ୍ଳୀଳ ବୋଧ ହେଉଥିଲା । ବୋଧହୁଏ ଅନ୍ୟମାନେ ମଧ୍ୟ ଠିକ୍ ସେପରି ଭାବୁଥିଲେ, କାରଣ ସ୍ୱାମୀଜୀ ଚାଲିଯାଇଥିବା ସମୟତକ ଦର୍ଶନାର୍ଥୀମାନଙ୍କ ଭିତରେ ଏକ ମୃଦୁ ଗୁଞ୍ଜରଣ ଏବଂ ଚାପା ହସ ସୃଷ୍ଟି ହେଉଥିଲା । ଏତିକି ଆଶ୍ୱାସନା ଥିଲା ଯେ, ସେ ଘର ଭିତରେ ଚିଫ୍ ଇଞ୍ଜିନିୟର୍‌ଙ୍କ ସଂପର୍କୀୟମାନେ ପ୍ରାୟ ସବୁ ସମୟରେ ଦେଖାଯାଉଥିଲେ ଏବଂ ଚାରିଆଡ଼େ ଏକ ଖୋଲା ଖୋଲା ଭାବ ଥିଲା ।

ଏଇଭଳି କିଛିଦିନ ସେଠାକୁ ଯିବା ପରେ ସୁହାସିନୀ ହଠାତ୍ ନିଜକୁ ପ୍ରଶ୍ନ କଲା, ସ୍ୱାମୀଜୀ ତାକୁ କାହିଁକି ମନ୍ତ୍ର ଦେବାକୁ ଡାକୁ ନାହାନ୍ତି । ସେ ନିଜେ ଏଇ ମନ୍ତ୍ରଦାନ ପଦ୍ଧତିକୁ ଅତି ଅଶିଷ୍ଟ ଓ ଅଶୋଭନ ବୋଲି ଭାବୁଥିଲା ଏବଂ ତାର ମନେ ହେଉଥିଲା ଏଥିରେ ଯେପରି କେଉଁଠି କିପରି ଏକ ପ୍ରଚ୍ଛନ୍ନ ଯୌନଭାବ ରହିଛି । ତେବେ ସ୍ୱାମୀଜୀ ଯେ କେବଳ ସୁନ୍ଦରୀ ଓ ତରୁଣୀମାନଙ୍କୁ ମନ୍ତ୍ର ଦେବା ପାଇଁ ଡାକୁଥିଲେ, ତା ନୁହେଁ । ହୁଏତ ସ୍ୱାମୀଜୀ ଏଭଳି ଖରାପ ଚିନ୍ତାରୁ ଉର୍ଦ୍ଧ୍ୱରେ ଥିଲେ । ତଥାପି ସୁହାସିନୀ ନିଜ ମନ ଭିତରର ସଂଶୟକୁ ଦୂର କରିପାରୁ ନଥିଲା ।

ତାର ଏଥରକ ଇଚ୍ଛା ହେଲା କିପରି ନିଜେ ଯାଇ ଦେଖିବ ସ୍ୱାମୀଜୀ କିଭଳି ମନ୍ତ୍ର ଦେଉଛନ୍ତି । ପ୍ରଭାକର ଅବଶ୍ୟ ତାକୁ ତାର ଅଭିଜ୍ଞତା କଥା ବିଶଦ ଭାବରେ ଶୁଣାଇଥିଲା । ଏ ଭିତରେ ସେ ପୁଣି ଥରେ ସ୍ୱାମୀଜୀଙ୍କ ପାଖକୁ ଯାଇ ତାଙ୍କ ପାଖରୁ ମନ୍ତ୍ର ଆଣିଥିଲା । ସ୍ୱାମୀଜୀ ତାକୁ ଯେଉଁ କାଗଜଟି ଦେଇଥିଲେ ସେଇଟିକୁ ତଉଡି ତାଙ୍କ ପାଖରେ ଥିବା ଖାଲି ମୁଣି ଭିତରେ ପକାଇବାକୁ କହିଥିଲେ । ସେଇଟିକୁ ବାହାର କରି ପ୍ରଭାକରକୁ ଦେଇ ସ୍ୱାମୀଜୀ କହିଥିଲେ ଘରେ ଯାଇ ଖୋଲିବାକୁ । ପ୍ରଭାକର ଘରେ ପହଞ୍ଚିଲା ବେଳକୁ କାଗଜରେ ମନ୍ତ୍ରଟି ଲେଖାହୋଇ ରହିଥିଲା । ମନ୍ତ୍ରଟିକୁ କାହାରିକି ନ କହିବାକୁ ସ୍ୱାମୀଜୀ ବାରଣ କରିଥିଲେ ଏବଂ ସେଥିପାଇଁ ସୁହାସିନୀର ଆଗ୍ରହ ସତ୍ତ୍ୱେ ପ୍ରଭାକର ତାକୁ କହି ନଥିଲା ମନ୍ତ୍ରଟି କଣ ଥିଲା ।

ଯୋଉଦିନ ତାର ପାଖରେ ବସିଥିବା ବୟସ୍କା ପୃଥୁଳା ଭଦ୍ରମହିଳାଙ୍କର ମନ୍ତ୍ର ନେବାର ପାଳି ପଡ଼ିଲା, ସୁହାସିନୀ ନିଷ୍ପତ୍ତି କଲା ଯେ, ତାକୁ ଏ ବିଷୟରେ କିଛି କରିବାକୁ ପଡ଼ିବ । ସେ ନିଜ କଥା ଭାବିଲା । ବୟସ ବଢ଼ି ଚାଲିଥିଲେ ବି ସେ ଏ ପର୍ଯ୍ୟନ୍ତ ନିଜର ଚେହେରା ବିଷୟରେ ସଚେତନ ରହି ଦେହର ଯତ୍ନ ନେଉଥିଲା ଏବଂ ଭାବୁଥିଲା ଯେ ଲୋକେ ତାକୁ ସୁନ୍ଦରୀ ହିଁ କହୁଥିବେ । ପରଦିନ ଯେତେବେଳେ ସ୍ୱାମୀଜୀଙ୍କ ପାଖକୁ ଯିବାକୁ ବାହାରିଲା, ସୁହାସିନୀ ନିଜକୁ ଆଉ ଟିକିଏ ସଜାଇଲା ଏବଂ ଆଖିକୁ ଆକର୍ଷଣ କରିବା ଭଳି ଶାଢ଼ିଟିଏ ପିନ୍ଧିଲା । ତଥାପି ସ୍ୱାମୀଜୀଙ୍କର ଆଖି ସେ ଦିନ ତା ଉପରେ ନ ଅଟକିବାରୁ ସେ ମନେ ମନେ ତାଙ୍କୁ ଗାଳିଦେଲା ଏବଂ ଭାବିଲା ଯେ ଭଲ ହୋଇଛି; ମନ୍ତ୍ର ନେବାର ଏଭଳି ଅଶ୍ଳୀଳ ବିଧି ତାର ଦରକାର ନାହିଁ । ନିଜକୁ ଏ କଥା କହିବା ସତ୍ତ୍ୱେ ପରଦିନମାନଙ୍କରେ

ସେ ଆହୁରି ଭଲ ଭାବରେ ନିଜକୁ ସଜାଇ ଯାଇ ସାମନା ଧାଡ଼ିରେ ବସିଲା । ସ୍ୱାମୀଜୀଙ୍କର ଆଖିକୁ ନିଜ ଉପରେ ଅଟକାଇବା ବର୍ତ୍ତମାନ ଯେପରି ଏକ ସ୍ପର୍ଦ୍ଧାର ବିଷୟ ହୋଇଯାଇଥିଲା ତା ପାଇଁ । ସେ ମନକୁ ମନ ସ୍ୱାମୀଜୀଙ୍କୁ ସମ୍ବୋଧନ କରି କହୁଥିଲା, ଦେଖିବା କେତେଦିନ ଏଡ଼ାଇ ଯାଇପାରିବ ମୋର ଆଖିକୁ ।

ଶେଷକୁ ଯେପରି ସ୍ୱାମୀଜୀ ହାର ମାନିଲେ ଏବଂ ଦିନେ ଖରାବେଳେ ମନ୍ତ୍ର ଦେବାପାଇଁ ସୁହାସିନୀକୁ ଡାକ ମିଳିଲା । ସଭାରୁ ଉଠି ସ୍ୱାମୀଜୀଙ୍କ ପଛେ ପଛେ ଯିବାବେଳକୁ ସେ ଯେତିକି ଖୁସି ଥିଲା, ସେତିକି ଚିନ୍ତିତ ଥିଲା ତା ପଛରେ ଯେଉଁ ମଧୁର ଗୁଞ୍ଜନ ହେବ ସେଥିପାଇଁ । ତେବେ ସେ ମନ ସ୍ଥିର କରି ନେଇଥିଲା ସ୍ୱାମୀଜୀଙ୍କ ସହିତ ଏକାଠି ଭେଟ ହେଲାବେଳେ କଣ କରିବ । ବସିବା ଘରୁ ଯାଇ ସ୍ୱାମୀଜୀ ପଛ ପାଖର ଯେଉଁ ଅନ୍ଧାରୁଆ କୋଠରିରେ ପଶିଲେ, ତା ଭିତରକୁ ଯାଇ ସୁହାସିନୀ ଦେଖିଲା ଯେ ସେଇଟି ପ୍ରଭାକର ବର୍ଣ୍ଣନା କରିଥିବାର ଅନୁରୂପ ଥିଲା । ତାର ଗୋଟିଏ ପାଖରେ ଠାକୁରମାନଙ୍କର ମୂର୍ତ୍ତିମାନ ରଖାହୋଇ ପୂଜା ବ୍ୟବସ୍ଥା ଥିଲା ଏବଂ ଅନ୍ୟ ପାଖରେ ହରିଣ ଛାଲ ପଡ଼ିଥିବା ଗୋଟିଏ ଦିବାନ ଥିଲା । ସେମାନେ ଭିତରକୁ ଗଲାବେଳକୁ ଝିଅଟିଏ ସେଠାରେ ପୂଜାର ଜିନିଷକୁ ଠିକ୍ ଠାକ୍ କରୁଥିଲା । ସୁହାସିନୀ ତାକୁ ଚିହ୍ନିଲା ଚିଫ୍ ଇଞ୍ଜିନିୟରଙ୍କ ଶାଳୀ ବୋଲି । ଟିକିଏ ସମୟ ପରେ ପୂଜା ଜାଗାକୁ ସଜାଡ଼ିସାରି ସେ ବାହାରକୁ ଯାଇ କବାଟକୁ ଆଉଜାଇ ଦେବାପରେ ସ୍ୱାମୀଜୀ ହରିଣ ଛାଲ ଉପରେ ବସିଲେ ଏବଂ ନିଜ ପାଦ ପାଖରେ ସୁହାସିନୀକୁ ବସାଇବାର ଜାଗା ଦେଖାଇଦେଲେ ।

ବୈଠକଖାନାରେ ସ୍ୱାମୀଜୀ ଉଚ୍ଚ ଆସନରେ ବସିଥିବା ବେଳେ ଲୋକଙ୍କ ଗହଳିରେ ତାଙ୍କ ସାମନାରେ ତଳେ ବସିବା ଅଲଗା କଥା ଥିଲା । କିନ୍ତୁ ଗୋଟିଏ କୋଠରୀରେ କେବଳ ଦୁଇଜଣ ଲୋକ ଥିବାବେଳେ ଜଣେ ଆଉ ଜଣକ ପାଦ ତଳେ ବସିବା ଅତ୍ୟନ୍ତ ଅପମାନଜନକ ମନେହେଲା ସୁହାସିନୀକୁ । ସେ କହିଲା, ଆପଣ ଉପରେ ବସିଥିବା ବେଳେ ମୁଁ ତଳେ ବସିପାରିବି ନାହିଁ । ତା ଆଡ଼କୁ ଅନାଇ ସ୍ୱାମୀଜୀ ହସିଲେ । କହିଲେ, ମତେ ଏ କଥା ଆଜିଯାଏ କେହି କହି ନଥିଲା । ଏପରିକି ମୁଖ୍ୟମନ୍ତ୍ରୀ ଆସିଲେ, ସେ ମଧ୍ୟ ମୋ ପାଦ ତଳେ ବସନ୍ତି । ଏତିକି କହି ନିଜ ବସିବା ଜାଗାରୁ ଟିକିଏ ଘୁଞ୍ଚିଯାଇ ସେ ସୁହାସିନୀ ପାଇଁ ଜାଗା କରିଦେଲେ । ସେଠାରେ ବସି ସୁହାସିନୀ ଜାଣିଲା ଯେ, ଏଇ ଛୋଟ ଆସନଟି ଉପରେ ସ୍ୱାମୀଜୀଙ୍କର ଏତେ ପାଖରେ ଲାଗିହୋଇ ବସିବା ତଳେ ବସିବା ଠାରୁ ବିଶେଷ ସୁଖଦ ନଥିଲା ।

ଏଥରକ ତା ମୁହଁକୁ ସପ୍ରଶଂସ ଦୃଷ୍ଟିରେ ଅନାଇ ସ୍ୱାମୀଜୀ କହିଲେ, ତୋର ନାଁ କ'ଣ ମା ? ନା, ସେ ତାକୁ ଅସମ୍ମାନଜନକ ଭାବରେ ଡାକିଥିବାର କହି ଆପତ୍ତି କରିହେବ ନାହିଁ, ସୁହାସିନୀ ଠିକ୍ କଲା । ସ୍ୱାମୀଜୀମାନଙ୍କର ଏପରି ଏକ ଅଧିକାର ଥାଏ । ତା ବ୍ୟତୀତ ମା'ମାନଙ୍କୁ ତୁ କହିବାର ପ୍ରଚଳନ ଅଛି । ସେଥିପାଇଁ ସେ ଆଉ କୌଣସି ପ୍ରତିବାଦ ନକରି ନିଜର ନାଁ କହିଲା । ସ୍ୱାମୀଜୀ କହିଲେ, ସୁନ୍ଦର ନାଁ । ମୁଁ କିନ୍ତୁ ତତେ ଗୋଟିଏ ନୂଆ ନାଁ ଦେବି । ତୁ ହେଉଛୁ ସ୍ୱାହା । ସ୍ୱାହା ହେଉଛନ୍ତି ଅଗ୍ନି ଦେବତାଙ୍କର ପତ୍ନୀ ଏବଂ ଷୋଡ଼ଶ ମାତୃକାରୁ ଜଣେ । ସୁହାସିନୀ ମନେ ମନେ ଭାବିଲା, ଠିକ୍ କଥା । ମୁଁ ତତେ ଜାଳିପୋଡ଼ି ଦେବି ।

ମୁଁ ତୋ ମୁହଁକୁ ଦେଖି ତୋ ବିଷୟରେ ସବୁ ଜାଣିପାରୁଛି, ସ୍ୱାମୀଜୀ କହିଲେ । ତୁ ବିବାହିତ ଜୀବନରେ ଏତେ ଅସୁଖୀ କାହିଁକି ମା ?

ଜୀବନରେ କିଏ ଅସୁଖୀ ନୁହେଁ ? ଯାହାର ମୁହଁକୁ ଦେଖିଲେ ବି ଏ କଥା କହିହବ ।

କିନ୍ତୁ ଖାଲି କାହାର ମୁହଁକୁ ଦେଖିଲେ କଣ କହିହେବ ତାର ସ୍ୱାମୀର ନାଁ ପ୍ରଭାକର ବୋଲି ?

ହାର ମାନିଲା ସୁହାସିନୀ । ସ୍ୱାମୀଜୀଙ୍କୁ ଯେତିକି ଚାଲାକ ଚତୁର ଲୋକ ବୋଲି ଭାବିଥିଲା ସୁହାସିନୀ, ତା'ଠାରୁ ଆହୁରି ଗଭୀର ଥିଲେ ସେ । ନିଶ୍ଚୟ ସେ ଜାଣନ୍ତି ତା ବିଷୟରେ ବେଶ୍‌କିଛି । ଏଥର ତାକୁ କଥାବାର୍ତ୍ତାରେ ସତର୍କ ହେବାକୁ ପଡ଼ିବ । ସେ ସ୍ୱାମୀଜୀଙ୍କ ମୁହଁକୁ ଚାହିଁ ଦେଖିଲା ଯେ, ସେ ସେଇଭଳି ପରମ ଆତ୍ମବିଶ୍ୱାସର ସହିତ ତା ଆଡ଼କୁ ଅନାଇଥିଲେ ଏବଂ ତାଙ୍କ ଆଖିରେ ସାମାନ୍ୟ ବ୍ୟଙ୍ଗର ବି ଆଭାସ ଥିଲା ବର୍ତ୍ତମାନ । ସ୍ୱାମୀଜୀ ତାର ମୁଣ୍ଡ ଉପରେ ହାତ ରଖିଲେ; କହିଲେ, ମୁଁ ତୋର ଦୁଃଖକୁ ଦୂର କରିଦେବି । ନିଜର ଆଙ୍ଗୁଳିରେ ସେ ସୁହାସିନୀର ଆଖି ପତାକୁ ବନ୍ଦ କରିଦେଲେ ।

ଅଳ୍ପ ଆଲୁଅ ଓ ଧୂପ ଚନ୍ଦନର ବାସନାରେ କୋଠରି ଭିତରେ ଏକ ଭାରହୀନ ମୃଦୁ ବାତାବରଣ ଥିଲା । ବର୍ତ୍ତମାନ ଆଖି ବନ୍ଦ କରିନେବା ପରେ ନିଜକୁ ଆହୁରି ସ୍ୱଚ୍ଛନ୍ଦ ଅନୁଭବ କଲା ସୁହାସିନୀ । ତାର ବାଳ ଉପରେ ସ୍ୱାମୀଜୀଙ୍କର ହାତର ଚାପ ପ୍ରୀତିକର ଥିଲା । ତାଙ୍କ ହାତର ଆଙ୍ଗୁଳି ତାର ବାଳ ଉପରେ ଖେଳି ବୁଲୁଥିଲେ । ଯେତେବେଳେ ଦୁଇ ପାପୁଲିରେ ସେ ତାର ଗାଲକୁ ଛୁଇଁଲେ, ସୁହାସିନୀ ଆଖି ଖୋଲି ତାଙ୍କ ଆଡ଼କୁ ଚାହିଁଲା । ସ୍ୱାମୀଜୀ କିନ୍ତୁ ତାର ମୁହଁରୁ ହାତ ବାହାର କରିନେଲେ ନାହିଁ । ନିଜ ବୟସ୍କ ଜୀବନରେ ପ୍ରଭାକର ବ୍ୟତୀତ ଆଉ କେହି ତାକୁ ଏତେ ଘନିଷ୍ଠ ଭାବରେ ଛୁଇଁଥିବାର ସୁହାସିନୀକୁ ମନେ ପଡ଼ିଲା ନାହିଁ । ତାକୁ ହୁଏତ କେହି ଲୁଚାଛପାରେ, ଅନ୍ୟମନସ୍କ ଭଳି ବା ଆକସ୍ମିକତାର ଛଳନା କରି ଛୁଇଁଥିଲେ କେବେ କେବେ, କିନ୍ତୁ ସ୍ୱାମୀଜୀ ତାର ମୁହଁକୁ ହାତରେ ଧରିଥିଲେ ସଂପୂର୍ଣ୍ଣ ସତ୍‌ସାହସ ଓ ଆତ୍ମପ୍ରତ୍ୟୟର ସହିତ । ପରିସ୍ଥିତି କିପରି ନିଜର ନିୟନ୍ତ୍ରଣରୁ ବାହାରି ଯାଉଥିବା ଦେଖି ସୁହାସିନୀ କହିଲା, ଆପଣ ମତେ ମନ୍ତ୍ର ଦେବେ । ସ୍ୱାମୀଜୀ ତାକୁ ଛାଡ଼ି ଉଠିଲେ ଓ ପୂଜା ଜାଗାରୁ କାଗଜଟିଏ ଆଣି ନିଜ ସ୍ଥାନରେ ବସିଲେ । କାଗଜଟିକୁ ସେ ସୁହାସିନୀର ହାତ ଉପରେ ରଖିଲେ, କିନ୍ତୁ ସୁହାସିନୀର ହାତ ଉପରୁ ନିଜର ହାତ ଉଠାଇ ନେଲେ ନାହିଁ । ଏଥରକ ସୁହାସିନୀ ନିଜର ଅନ୍ୟ ହାତଟିକୁ ଆଣି ତାଙ୍କ ହାତ ଉପରେ ରଖିଲା ।

ମୁଁ ତତେ ଗୋଟିଏ ବିଶେଷ ମନ୍ତ୍ର ଦେବି, ସ୍ୱାମୀଜୀ କହିଲେ; ତା ପୂର୍ବରୁ କିନ୍ତୁ ପୂଜା କରିବାକୁ ହେବ । ସେ ପୂଜା ଜାଗାକୁ ଉଠିଲେ ଏବଂ ସୁହାସିନୀ ତାଙ୍କ ପଛେ ପଛେ ଯାଇ ତାଙ୍କ ପାଖରେ ବସିଲା । ସ୍ୱାମୀଜୀ କହିଲେ, ପୂଜା ଆଗରୁ ସବୁ ଆଭରଣ ଖୋଲି ରଖିଦେବାକୁ ହେବ । ସୁହାସିନୀ ଆଙ୍ଗୁଳିର ମୁଦି ଖୋଲିଲା, ହାତରୁ ଚୁଡ଼ି ଓହ୍ଲାଇଲା, କାନରୁ କାନଫୁଲ ବାହାର କଲା । ତାର ଦେହ ମୁହଁ ବର୍ତ୍ତମାନ ଯେପରି ନିଆଁର ଉତ୍ତାପରେ ଜଳୁଥିଲା । ସେ ସ୍ୱାମୀଜୀଙ୍କ ଆଡ଼କୁ ଅନାଇଲା ଏବଂ ସେଥିରେ ମଧ୍ୟ ସେ ତାର ଧାସ ଦେଖିବାକୁ ପାଇଲା । ଗମ୍ଭୀର ହୋଇ ସ୍ୱାମୀଜୀ କହିଲେ, ସବୁ ଆଭରଣ । ସୁହାସିନୀ ଭାବିଲା ସେ ଉଠିପଡ଼ି ଘର ଭିତରୁ ବାହାରିଯିବ, କିନ୍ତୁ ସେ କଥା ନକରି ସେ ଅସହାୟ ଆଖିରେ ଆଉଜା ହୋଇଥିବା କବାଟ ଆଡ଼କୁ ଅନାଇଲା । ସ୍ୱାମୀଜୀ ଉଠିଯାଇ କବାଟଟିକୁ ବନ୍ଦ କରିଦେଲେ ।

ସୁହାସିନୀ ଲକ୍ଷ୍ୟ କରି ନଥିଲା ଯେ କେତେବେଳୁ ସ୍ୱାମୀଜୀ ଆବୃତ୍ତି କରିଥିବା ଶ୍ଳୋକର ଟେପ୍ ବାଜୁଥିଲା । ସେ ଆଗଭଳି ଦିବାନ ଉପରେ ବସିଥିଲା ଏବଂ ସ୍ୱାମୀଜୀ ତା ପାଖରେ ବସିଥିଲେ । ଦେହରୁ ସବୁ ଉତ୍ତାପ ଓହ୍ଲାଇ ଯାଇଥିଲା ଏବଂ ଚାରିଆଡ଼ ଶାନ୍ତ ଓ ସମନ୍ୱିତ ଜଣା ପଡୁଥିଲା । ତା ହାତରେ ଏ ପର୍ଯ୍ୟନ୍ତ କାଗଜର ଟୁକୁଡ଼ାଟି ଥିଲା । ତାକୁ ସ୍ୱାମୀଜୀଙ୍କୁ ଦେଖାଇ ସୁହାସିନୀ କହିଲା, ଆପଣ କ'ଣ ସମସ୍ତଙ୍କୁ ଏଭଳି ବିଶେଷ ମନ୍ତ୍ର ଦିଅନ୍ତି ? ସ୍ୱାମୀଜୀ ହସିଲେ, କହିଲେ, ଯେଉଁମାନେ

ମତେ ଭଲ ଲାଗନ୍ତି. କେବଳ ସେଇମାନଙ୍କୁ । ସୁହାସିନୀ କହିଲା, ତମେ ଜଣେ ଠକ । ସ୍ୱାମୀଜୀ କହିଲେ, ତୁ ଆଜି ଦୁଇଟା ଜିନିଷ କରି ଦେଖାଇଲୁ, ଯାହା ଏ ପର୍ଯ୍ୟନ୍ତ କେହି କରି ନଥିଲେ । କେହି ଆଜିଯାଏ ମୋ ପାଦ ପାଖରେ ବସିବାକୁ ମନା କରି ନଥିଲା ଏବଂ କେହି ମତେ ତମେ ବୋଲି କହିବାର ସାହସ କରି ନଥିଲା ।

ମୁଁ ଭୁଲ୍ କହିଥିଲି, ସୁହାସିନୀ କହିଲା ଏବଂ ସ୍ୱାମୀଜୀଙ୍କର ଆହୁରି ପାଖକୁ ଘୁଞ୍ଚି ବସିଲା । ହାତରେ ତାଙ୍କ ଗାଲରେ ମୃଦୁ ଆଘାତ କରି କହିଲା, ମୋର କହିବା ଉଚିତ ଥିଲା, ତୁ ଗୋଟିଏ ଅସଲ ଠକ, ବୁଝିଲୁ ?

ଠିକ୍ କହିଚୁ । ପୁଣି କେତେବେଳେ ଠକ ପାଖକୁ ଠକିଯିବାକୁ ଆସିବୁ ?

ଆଉ ନ ଆସି ବି ପାରେ । ତେବେ ତୋ ସଭାକୁ ନିଶ୍ଚେ ଆସିବି । ତୁ ଆଉ ଯାହା ହୋଇଥା ପଛେ, ଭାଷଣ ଭଲ ଦଉଚୁ; ମନେରଖିବା ଭଳି ।

ତାହେଲେ ମୁଁ ତୋ ପାଇଁ ଗୋଟାଏ କାମ ବି ଠିକ୍ କରିଦଉଛି । ମୋର ଭାଷଣର ଟେପ୍‌କୁ କାଗଜରେ ଲେଖି ତାକୁ ବହି ଛପାଇବାକୁ କହୁଛନ୍ତି । ତୁ ଯଦି ଏ କାମଟା କରିଦିଅନ୍ତୁ, ଭଲ ହୁଅନ୍ତା । ଏଇ ଆଳରେ ଦେଖା କରିବାକୁ ବି ଅସୁବିଧା ହୁଅନ୍ତା ନାହିଁ ।

ତୁ ସତରେ ଗୋଟିଏ ଠକ; ଠକ ଆଉ ଲମ୍ପଟ । ସୁହାସିନୀ ଉଠି ଠିଆ ହେଲା, ପର୍ସରେ କାଗଜଟିକୁ ରଖିଲା ଏବଂ ଯିବାକୁ ବାହାରିଲା । ସ୍ୱାମୀଜୀ ତାକୁ ଜଡ଼ାଇ ଧରି କହିଲେ, ପୁଣି ଶୀଘ୍ର ଆସିବୁ । ସୁହାସିନୀ କହିଲା, ଦେଖିବା ।

ବାହାରକୁ ବାହାରି ତାର ଭେଟ ହେଲା ଚିଫ୍ ଇଞ୍ଜିନିୟର୍‌ଙ୍କ ଶାଳୀ ସହିତ । ମନକୁ କିପରି ସଂକୋଚ ଓ ଲଜ୍ଜା ଆସିଲା ତାର । କିନ୍ତୁ ସେ ସହଜରେ ମନରୁ ସେସବୁ କଥା ଦୂର କରିଦେଲା ଏବଂ ଠିକ୍ କଲା ଯେ ଘରେ ପହଞ୍ଚି ଦିନଟି କଥା ଭାବିବ ।

ଘରେ ପହଞ୍ଚି କିନ୍ତୁ ପିଲାଙ୍କ କଥା ବୁଝିବାରେ, ଅତିଥି ସତ୍କାର କରିବାରେ ଏବଂ ଅନ୍ୟ ଛୋଟ ଛୋଟ କଥାରେ ସେ ପୂରାପୂରି ବ୍ୟସ୍ତ ରହିଲା । ସନ୍ଧ୍ୟା ନନେଉଣୁ ପ୍ରଭାକର ଆସି ଘରେ ପହଞ୍ଚିଲା; କହିଲା, ଆଜି ମୋ ଫାଇଲ୍‌ରେ ଅର୍ଡ଼ର ହୋଇଗଲା । ମୋ ନାଁରେ ଯାହାସବୁ ଆପତ୍ତି ଅଭିଯୋଗ ଥିଲା, ସବୁ ବାତିଲ୍ । ସୁହାସିନୀ ପଚାରିଲା, କେମିତି ହେଲା ଏ କାମଟା ? ପ୍ରଭାକର କହିଲା, ସ୍ୱାମୀଜୀ ନିଶ୍ଚୟ କିଛି କରିଥିବେ । ନହେଲେ ଏତେବର୍ଷ ଧରି ପଡ଼ିଥିବା ଫାଇଲ୍ ମୁକୁଳିଲା କେମିତି ? ମୁଁ ଯାଉଛି ସ୍ୱାମୀଜୀଙ୍କୁ କିଛି ଟଙ୍କା ଦେଇଆସିବି । ତମେ ଚାଲ ମୋ ସାଙ୍ଗରେ ।

ତାର ଯିବାକୁ ମନ ହେଉଥିଲା, କିନ୍ତୁ କହିଲା, ମୁଁ ଖରାବେଳେ ଯାଇଥିଲି । ଆଉ ଇଚ୍ଛା ହେଉନାହିଁ ଯିବାପାଇଁ ।

ସାଧୁସନ୍ଥଙ୍କ ପାଖକୁ କଣ ଦିନରେ ଦି ଥର ଯିବା ମନା ? ତମର ତ ଆଜିଯାଏ ବି ସ୍ୱାମୀଜୀଙ୍କ ଉପରେ ବିଶ୍ୱାସ ଆସିଲା ନାହିଁ । ତମକୁ ଯଦି କିଛି ଚମତ୍କାର କରି ଦେଖାନ୍ତି, ତାହେଲେ ହୁଏତ ତମେ ମାନିବ । ପାରିବାର ଲୋକ କିନ୍ତୁ ସ୍ୱାମୀଜୀ । ଦେଖୁନାହଁ କେମିତି ଅସାଧ କାମ କରି ଦେଖାଉଛନ୍ତି ?

ସୁହାସିନୀ ପ୍ରଭାକରକୁ ଜଣାଇଲା କିପରି ସେ ମଧ ସ୍ୱାମୀଜୀଙ୍କ ପାଖରୁ ଅଧାମନ୍ତ ପାଇଛି ଏବଂ ପୂରା-ମନ୍ତଟି ପାଇଁ ତାକୁ ପୁଣି ଯିବାକୁ ହେବ । ସ୍ୱାମୀଜୀଙ୍କ ଭାଷଣକୁ ଟେପ୍‌ରୁ ଲେଖିବା କଥା ମଧ ସେ ତାକୁ ଜଣାଇଲା । ପ୍ରଭାକର ଖୁସିହେଲା ଏ ସବୁ ଶୁଣି । ଯାହାହେଉ, ସ୍ୱାମୀଜୀଙ୍କ ପାଖରେ ଟିକିଏ ତ ମନ ଲାଗୁଛି ସୁହାସିନୀର । ସୁହାସିନୀ କିନ୍ତୁ ସେ ଦିନ ସନ୍ଧ୍ୟାରେ ଆଉ ପ୍ରଭାକର ସହିତ ଗଲା ନାହିଁ । ତା ଆରଦିନ ଖରାବେଳେ ସ୍ୱାମୀଜୀଙ୍କ ପାଖକୁ ଯିବ କି ନାହିଁ ଭାବୁଛି, ତା ପାଖରେ

ସ୍ୱାମୀଜୀ ପଠାଇଥିବା ଟେପ୍ ସବୁ ଆସି ପହଞ୍ଚିଥିଲା । ସୁହାସିନୀ ଘରେ ବସି ସେ ଟେପ୍ ସବୁକୁ ଶୁଣିଲା ଏବଂ କାଗଜ ଆଣି ତା ଦେହରୁ ଲେଖିବାକୁ ଚେଷ୍ଟା କଲା ।

ଏଥରକ ସେ ଆଉ ସ୍ୱାମୀଜୀଙ୍କ ସଭାକୁ ନଯାଇ ଟେପ୍‌ରୁ ଯାହା ସବୁ ଲେଖୁଥିଲା, ତାକୁ ସାଙ୍ଗରେ ନେଇ ଅଲଗାରେ ସ୍ୱାମୀଜୀଙ୍କ ସହିତ ଆଲୋଚନା କରୁଥିଲା । ସ୍ୱାମୀଜୀ ମଧ୍ୟ ତାଙ୍କ ଭାଷଣର ନିର୍ଘଣ୍ଟ ବଦଳାଇ ବେଶ୍ ସମୟ ଦେଉଥିଲେ ବହିଟି ପାଇଁ । ସ୍ୱାମୀଜୀଙ୍କ ସହିତ ନିରୋଳାରେ ବସି କଥାବାର୍ତ୍ତା କରିବାରେ ତାର କୌଣସି ସମସ୍ୟା ନଥିଲା ବର୍ତ୍ତମାନ । ପ୍ରଭାକର ମଧ୍ୟ ଖୁସି ହେଉଥିଲା ସୁହାସିନୀ ସ୍ୱାମୀଜୀଙ୍କର ଏଭଳି ଭକ୍ତ ହୋଇଯାଉଥିବାରୁ । ଆଜିକାଲି ଏକା ଥିଲାବେଳେ ସ୍ୱାମୀଜୀ ନିଜ କଥା ଶୁଣାଉଥିଲେ ସୁହାସିନୀକୁ । ଦିନେ ସୁହାସିନୀ ପର୍ସରୁ ମନ୍ତ୍ର କାଗଜଟି ଖୋଲି ସ୍ୱାମୀଜୀଙ୍କୁ ଦେଇ କହିଲା, ତୁ ପରା କହୁଥିଲୁ ଏଥିରୁ ଲେଖା ବାହାର କରିବୁ ? ଏଥର ତୋର ଚମତ୍କାର ଦେଖା । ସ୍ୱାମୀଜୀ ଉଠିଯାଇ ପୂଜା ଜାଗା ପାଖରୁ ଥଳିଟିଏ ଆଣି ସୁହାସିନୀର ହାତକୁ ନେଇ ତା ଭିତରେ ପୂରାଇଲେ । ଥଳି ଭିତରେ ଆଉ ଗୋଟିଏ ଗୁପ୍ତ ପକେଟ୍ ଥିଲା ଏବଂ ସେଥିରେ ଏକା ଭଳି ଆଉ ଗୋଟିଏ କାଗଜ ଥିଲା । ତାକୁ ଆଣି ଖୋଲି ସୁହାସିନୀ ପଢ଼ିଲା; ଏଥିରେ ଖାଲି ଓଁ ଶ୍ରୀ ଲେଖା ହୋଇଥିଲା । ସୁହାସିନୀ କହିଲା, ଏମିତି କେତେଦିନ ଆଉ ଲୋକଙ୍କୁ ଠକିବୁ ? ଦିନେ ନା ଦିନେ ଧରାପଡ଼ିବୁ ।

ସ୍ୱାମୀଜୀ କହିଲେ, କାଗଜରେ ଯେ ମନକୁ ମନ କିଛି ଲେଖାହେବା ଅସମ୍ଭବ, ଏ କଥା କିଏ ନଜାଣେ ? କିନ୍ତୁ ସେମାନେ ବିଶ୍ୱାସ କରିବାକୁ ଚାହାନ୍ତି ଚମତ୍କାରରେ । ଯଦି ଏଭଳି ଠକାମିରେ କିଛି ଲୋକ ଉପକୃତ ହେଉଛନ୍ତି, କ୍ଷତି କଣ ? ଡାକ୍ତରମାନେ ରୋଗୀଙ୍କ ମନ ବୁଝାଇବାକୁ ମିଛ ଔଷଧ ଦେଇ ରୋଗ ଭଲ କରିଦେବାର ଉଦାହରଣ ଅଛି ।

କିନ୍ତୁ ତୁ ଲୋକଙ୍କର କାମ ବି ତ କରାଇ ଦେଉଛୁ ! ଚିଫ୍ ଇଞ୍ଜିନିୟର୍‌ଙ୍କ ବଦଳି ବନ୍ଦ କରାଇଦେଲୁ; ମୋର ସ୍ୱାମୀଙ୍କର ଫାଇଲ୍ ବାହାର କରିଆଣିଲୁ ।

ଏ ତ ଆହୁରି ସହଜ କଥା । ଏତେ ବଡ଼ ବଡ଼ ଲୋକ ଯେତେବେଳେ ମୋ ପାଖକୁ ଭକ୍ତ ହୋଇ ଆସୁଛନ୍ତି, ତାଙ୍କ ପାଖରେ ଏଇ ଛୋଟ ଛୋଟ କାମ କରାଇ ହବନି ?

ଆଉ ଡାକ୍ତରଖାନା ନାଁରେ ଏ ଯୋଉ ଟଙ୍କାପଇସା ସଂଗ୍ରହ କରୁଚୁ ?

ତୁ ବିଶ୍ୱାସ କର, ମୋର ଜୀବନରେ ବୋଧହୁଏ ଏଇଟା ହିଁ ସବୁଠାରୁ ବେଶି ନିଷ୍କପଟ କାମ । ସବୁ ଟଙ୍କା ସତରେ ଯିବ ହସ୍‌ପିଟାଲ୍ ପାଇଁ । ମୋର ନିଜ ପାଇଁ କିଛି ଅସୁବିଧା ନାହିଁ ଭକ୍ତଙ୍କ ଦୟାରୁ । ଭାବିଲି ଅନ୍ତତଃ କିଛି ଭଲ କାମ କରାଯାଉ ।

ସ୍ୱାମୀଜୀ ଉଠିଯାଇ ଗୋଟିଏ ବାକ୍ସ ଆଣି ଦେଖାଇଲେ । ସେଥିରେ ଟଙ୍କା ଓ ଅଳଙ୍କାର ଭର୍ତ୍ତି ହୋଇଥିଲା । ସୁହାସିନୀ ନିଜ ହାତରୁ ପଟେ ଚୁଡ଼ି ଖୋଲି ସେଥିରେ ପକାଇଲା । କହିଲା, ହେଲା, ମୁଁ ତୋ କଥା ବିଶ୍ୱାସ କଲି । ଏଇଟା ହେଲା ତୋ ହସ୍‌ପିଟାଲ୍ ପାଇଁ ମୋର ଦାନ । କଣ ହସ୍‌ପିଟାଲ୍ ଖୋଲିଲେ ମତେ ଡାକିବୁ କି ନାହିଁ ?

ସ୍ୱାମୀଜୀ ଗମ୍ଭୀର ହୋଇଗଲେ । କହିଲେ, ସବୁ ଠିକ୍ ଚାଲିଥିଲା; କିନ୍ତୁ ଏବେ ମୁଁ ଗୋଟାଏ ସମସ୍ୟା ଭିତରେ ପଡ଼ିଯାଇଛି । ଜାଣେନା କଣ ହବ । ପୁଣି କେବେ ସୁବିଧା ହେଲେ ତତେ କହିବି ।

ଏହା ପରେ କିନ୍ତୁ ସ୍ୱାମୀଜୀ ତାକୁ ଦେଖା କରିବା ପାଇଁ ଆଉ ବିଶେଷ ସମୟ ଦେଲେ ନାହିଁ ଏବଂ ଯେତେବେଳେ ତାଙ୍କ ସାଙ୍ଗରେ ଦେଖା ହେଉଥିଲା, ସେଠାରେ ବହିର ପ୍ରକାଶକ ନହେଲେ

ଆଉ କେହି ରହୁଥିଲେ । ପ୍ରଥମେ କିଛିଦିନ ସୁହାସିନୀ ଅସ୍ଥିର ହେଲା, ସ୍ୱାମୀଜୀଙ୍କୁ ମନେ ମନେ ଗାଳିଦେଲା, କିନ୍ତୁ ପୁଣି ଭାବିଲା ଯେ ନିଶ୍ଚୟ କିଛି ସମସ୍ୟା ଉପୁଜିଛି । ଏଇଭଳି କେତେଦିନ ପରେ ଦିନେ ଅଫିସ୍‌ରୁ ଫେରି ପ୍ରଭାକର ସମ୍ବାଦ ଦେଲା ଯେ କାହାକୁ କିଛି ନକହି ସ୍ୱାମୀଜୀ ସହର ଛାଡ଼ି ଚାଲିଯାଇଛନ୍ତି ।

ମୁଁ ଜାଣିଥିଲି ଏମିତି ଗୋଟାଏ କିଛି ନିଶ୍ଚୟ ହେବ ବୋଲି, ପ୍ରଭାକର ମନ୍ତବ୍ୟ କଲା ।

ସୁହାସିନୀ ଏ କଥା ଶୁଣି ବିରକ୍ତ ହୋଇ କହିଲା, କାହିଁ ଆଗରୁ ତ କିଛି କହୁ ନଥିଲ ଏମିତି ହବ ବୋଲି ।

ଏ ସାଧୁ ସନ୍ନ୍ୟାସୀମାନେ ସମସ୍ତେ ଏମିତି । ଉପରେ ଯେତେ ଯାହା ଭଲ କଥା କହନ୍ତୁ ପଛେ, ଭିତରେ ଟଙ୍କା ପଇସା, ସ୍ତ୍ରୀ କାରବାର ।

ପ୍ରଭାକର ଭାବିଥିଲା ଏ କଥା ଉପରେ ସୁହାସିନୀ ସ୍ୱାମୀଜୀଙ୍କ ପକ୍ଷ ନେଇ ଯୁକ୍ତି କରିବ । ତାକୁ ଚୁପ୍ ରହିବା ଦେଖି କହିଲା, କାହିଁକି, ତମେ ତ ପ୍ରଥମେ ପ୍ରଥମେ ଯିବାକୁ ଅମଙ୍ଗ ହେଉଥିଲ ତାଙ୍କୁ ଠକ ବୋଲି କହି । ପରେ କେମିତି ପୁଣି ତାଙ୍କଆଡ଼କୁ ଢ଼ଳିଲ ?

ପ୍ରଭାକର ତାକୁ ବାଦ ବିସମ୍ବାଦ ଭିତରକୁ ଟାଣିବାକୁ ଚେଷ୍ଟା କରୁଥିଲା, କିନ୍ତୁ ସୁହାସିନୀ ଚାହୁଁ ନଥିଲା ବର୍ତ୍ତମାନ ତା ଭିତରେ ପଶିବା ପାଇଁ । ସେ କହିଲା, ମୁଁ ତାଙ୍କର ପ୍ରବଚନ ଶୁଣି ଜାଣିଲି ଯେ, ତାଙ୍କର ଅନେକ ଜ୍ଞାନ ଅଛି । ତାଙ୍କ ସାଙ୍ଗରେ ଯେତେବେଳେ କଥାବାର୍ତ୍ତା କଲି, ବୁଝିଲି ଯେ ସେ ସଚ୍ଚୋଟ ଲୋକ ।

ପ୍ରଭାକର ଯେତେବେଳେ କହିଲା ସ୍ୱାମୀଜୀ ସ୍ତ୍ରୀଲୋକମାନଙ୍କୁ ମନ୍ତ୍ର ଦେବା ବିଷୟରେ ଲୋକେ ନାନା କଥା କହୁଛନ୍ତି, ସୁହାସିନୀ ସେଠାରୁ ଉଠି ଚାଲିଗଲା ।

ପରଦିନ ସକାଳର ଖବରକାଗଜରେ ଏ ବିଷୟରେ ପ୍ରଥମ ପୃଷ୍ଠାରେ ସମ୍ବାଦ ବାହାରିଲା 'ଟଙ୍କା ସୁନା ନେଇ ବାବାଜି ଚମ୍ପଟ୍' ଶିରୋନାମରେ । ଏଥିରେ ସ୍ୱାମୀଜୀଙ୍କ କ୍ରିୟାକଳାପର କଟୁ ସମାଲୋଚନା କରାହୋଇଥିଲା ଏବଂ ସେ ରାଜନୀତିକ ନେତାମାନଙ୍କର ବାହୁଛାୟା ତଳେ ରହି ଲୋକମାନଙ୍କୁ ଠକିଥିବାର ବିବରଣୀ ଥିଲା । ଏକ କାଳ୍ପନିକ ଡାକ୍ତରଖାନା ତିଆରି କରିବା ପାଇଁ ବ୍ୟବସାୟୀମାନେ ସ୍ୱାମୀଜୀଙ୍କୁ ଟଙ୍କା ଦେଇଥିଲେ ଏବଂ ଅନେକ ସ୍ତ୍ରୀଲୋକ ମଧ ଏଥିପାଇଁ ନିଜର ଅଳଙ୍କାର ଦେଇଥିଲେ; ପୋଲିସ୍ କୁଆଡ଼େ ତା'ର ବିଶଦ ବିବରଣୀ ସଂଗ୍ରହ କରୁଥିଲେ । ଶେଷରେ ଏ କଥା ଲେଖା ଥିଲା ଯେ, ସ୍ୱାମୀଜୀଙ୍କ ଫେରାର୍ ହୋଇଯିବା ସଙ୍ଗେ ସଙ୍ଗେ ସହରର ଗୋଟିଏ ସମ୍ଭ୍ରାନ୍ତ ପରିବାରର ଜଣେ ମହିଳା ମଧ ନିଖୋଜ ହୋଇଯାଇଛନ୍ତି ।

ସେଦିନ ଅଫିସ୍‌ରୁ ଫୋନ୍‌କରି ପ୍ରଭାକର ସୁହାସିନୀକୁ କହିଲା, ତମକୁ ଯଦି ପୋଲିସ୍ ଆସି ପଚାରନ୍ତି, ତମେ କହିଦେବ କିଛି ଜାଣ ନାହିଁ ବୋଲି । ସୁହାସିନୀ କହିଲା, କୋଉ ବିଷୟରେ ? ପ୍ରଭାକର ବିରକ୍ତ ହୋଇ ଜବାବ୍ ଦେଲା, ସେଇ ବାବାଜି କଥା, ଆଉ କୋଉ ବିଷୟରେ ? ମୁଁ ସଞ୍ଜବେଳେ ଆସି ସବୁ କଥା କହିବି। ପୋଲିସ୍ ଅବଶ୍ୟ ତା ଘରକୁ ଆସିଲେ ନାହିଁ କିନ୍ତୁ ସେଦିନ ଅଫିସ୍‌ରୁ ଫେରି ଚା' ପିଉ ପିଉ ପ୍ରଭାକର ଅନେକ ତଥ୍ୟ ଦେଲା । ଡାକ୍ତରଖାନା ପାଇଁ ସଂଗ୍ରହ କରିଥିବା ଟଙ୍କାପଇସା, ଅଳଙ୍କାର ସହିତ ଚିଫ୍ ଇଞ୍ଜିନିୟର୍‌ଙ୍କ ଶାଳୀକୁ ନେଇ ସ୍ୱାମୀଜୀ ପଳାଇ ଯାଇଛନ୍ତି । ଅଫିସର୍ ଓ ବ୍ୟବସାୟୀମାନେ ନିଜର କଳାଧନ ଦେଇଥିବାରୁ ପୋଲିସ୍‌ରେ ସେ କଥା କହିପାରୁ ନାହାନ୍ତି, କିନ୍ତୁ କେତେ ସ୍ତ୍ରୀଲୋକ କୁଆଡ଼େ ବୟାନ ଦେଲେଣି ଯେ, ସ୍ୱାମୀଜୀ ମନ୍ତ୍ରକରି ତାଙ୍କ ଦେହରୁ ଅଳଙ୍କାର ବାହାର କରି ନେଇଛନ୍ତି । ଏତିକି କହି ପ୍ରଭାକର ସୁହାସିନୀ କାନରେ ଓ ହାତରେ ଲଗାଇଥିବା ଅଳଙ୍କାର

ଆଡ଼କୁ ଚାହିଁଲା । ପଚାରିଲା, ତମ ପାଖରୁ ସେ କିଛି ନେଇ ଯାଇନାହିଁ ତ ? ସୁହାସିନୀ କହିଲା, ମୁଁ ତାଙ୍କୁ ପଟେ ସୁନାଚୁଡ଼ି ଦେଇଥିଲି । ପ୍ରଭାକର ଆଉ କ'ଣ କହିବାକୁ ଯାଉଥିଲା, ଏଇ ସମୟରେ ପିଲାମାନେ ପହଞ୍ଚିଯିବାରୁ କଥାବାର୍ତ୍ତା ବନ୍ଦ ରହିଲା । କିନ୍ତୁ ଶୋଇଲାବେଳେ ପୁଣି ସେ କଥା ଉଠାଇ ପ୍ରଭାକର ପଚାରିଲା, ଲୋକଟା କ'ଣ ମନ୍ତ୍ର କରି ଚୁଡ଼ି ନେଇଗଲା ? ସୁହାସିନୀ କହିଲା, ନା, ମୁଁ ନିଜ ଇଚ୍ଛାରେ ତାଙ୍କୁ ସେଇଟି ଦେଇଥିଲି । ବିରକ୍ତ ହୋଇ ପ୍ରଭାକର କହିଲା, ତମ ଭଳି ବୋକା କେହି ନାହାନ୍ତି । ଅନ୍ୟମାନେ ସିନା ମନ୍ତ୍ର ଯୋଗୁଁ ବାଧ୍ୟହୋଇ ଟଙ୍କା, ସୁନା ଦେଲେ, ତମେ କ'ଣ ନା ନିଜେ ତା' ହାତକୁ ଅଳଙ୍କାରଟା ବଢ଼ାଇ ଦେଲ । ସୁହାସିନୀ କହିଲା, ସେ ଚୁଡ଼ି ମୁଁ ବାପଘରୁ ଆଣିଥିଲି ।

ସ୍ୱାମୀଜୀଙ୍କ ବିଷୟରେ ପ୍ରଭାକର ପ୍ରତିଦିନ ନୂଆ ନୂଆ ଖବର ଆଣୁଥିଲା । ତାର କିଏ ପୋଲିସ୍ ଅଫିସର୍ ସାଙ୍ଗ ତାକୁ ଏ ଭିତରେ ସ୍ୱାମୀଜୀଙ୍କର କୋଉ କୋଉ ସ୍ତ୍ରୀଲୋକଙ୍କ ସହିତ ସଂପର୍କ ଥିଲା ତାର ତାଲିକା ଦେଇଥିଲା । ପ୍ରଭାକର ଖୁସି ହୋଇଥିଲା ଯେ, ଏଥିରେ ସୁହାସିନୀର ନାଁ ନଥିଲା, ଯଦିଓ ସମସ୍ତେ ଜାଣିଥିଲେ ସେ ସ୍ୱାମୀଜୀଙ୍କ ସହିତ ମିଶି ତାଙ୍କର ବହିର କାମ କରୁଥିଲା । ତା'ର ଅବଶ୍ୟ ସନ୍ଦେହ ହେଉଥିଲା ଯେ ପୋଲିସ୍ ଅଫିସର ହୁଏତ ସଂକୋଚ ବଶତଃ ବନ୍ଧୁପତ୍ନୀର ନାଁଟି ତାକୁ କହିନାହିଁ । ତେବେ ସୁହାସିନୀ ଉପରେ ପ୍ରଭାକରର ସଂପୂର୍ଣ୍ଣ ଆସ୍ଥା ଥିଲା, ଯଦିଓ ବାବାଜିଙ୍କୁ ଚୁଡ଼ିପଟେ ଦେଇଥିବା କଥାକୁ ସେ କ୍ଷମା କରିପାରୁ ନଥିଲା ।

ଶେଷରେ ଦିନେ ପୋଲିସ୍ ସ୍ୱାମୀଜୀଙ୍କୁ ଧରି ଆଣିଲେ, ଟଙ୍କା ସୁନା ଜବତ ହେଲା ଏବଂ ଚିଫ୍ ଇଞ୍ଜିନିୟର୍‌ଙ୍କ ଶାଳୀ ଘରକୁ ଫେରିଆସିଲା । ଶାଳୀ ପୋଲିସ୍‌କୁ ବୟାନ ଦେଲା ଯେ, ମନ୍ତୁରା ଔଷଧ ଖୁଆଇ ସ୍ୱାମୀଜୀ ତାକୁ ବଶୀଭୂତ କରି ନେଇଯାଇଥିଲେ । ଏ ପର୍ଯ୍ୟନ୍ତ ଯେଉଁ ସ୍ତ୍ରୀଲୋକମାନେ ଲୋକନିନ୍ଦା ଭୟରେ ଚୁପ୍ ରହିଥିଲେ, ସେମାନେ ମଧ୍ୟ ନିଜ ନିଜର ଅଳଙ୍କାର ଫେରିପାଇବାକୁ ଥାନାରେ ଯାଇ ପହଞ୍ଚିଲେ ଏବଂ ସ୍ୱାମୀଜୀ ସେମାନଙ୍କୁ ମନ୍ତ୍ର କରିଥିବାର ଦୁହାଇ ଦେଲେ । ପ୍ରଭାକର ଯେତେବେଳେ ସୁହାସିନୀକୁ ଚୁଡ଼ି ଫେରାଇ ଆଣିବା କଥା କହିଲା, ସୁହାସିନୀ କହିଲା, ମୁଁ ଦାନ କରିଥିବା ଜିନିଷ ଫେରାଇ ନେବି କାହିଁକି ? ପ୍ରଭାକର କିନ୍ତୁ ସୁନାଚୁଡ଼ିର ଲୋଭ ଛାଡ଼ି ପାରିଲା ନାହିଁ ଏବଂ ତାର ପୋଲିସ୍ ସାଙ୍ଗକୁ ପଚାରିଲା, କୋଉ ଅଳଙ୍କାର ସନାକ୍ତ ନ ହୋଇ ପଡ଼ି ରହିଚି କି ବୋଲି । ସେ କିନ୍ତୁ ଆସି ଖବର ଦେଲା ଯେ ସବୁ ଅଳଙ୍କାରର ମାଲିକାଣୀ ମିଳି ସାରିଲେଣି ।

ପୋଲିସ୍ ତଦାରଖ ସହିତ କିଛିଦିନ ପର୍ଯ୍ୟନ୍ତ ସହରର ସ୍ୱାମୀଜୀଙ୍କର ଅପକୀର୍ତ୍ତି ଓ ବିଶେଷରେ ଯୌନ ବ୍ୟଭିଚାରର ଚର୍ଚ୍ଚା ଚାଲିଲା । ହୁଏତ ଜିନିଷଟି ଆପେ ଆପେ ଥଣ୍ଡା ପଡ଼ିଯାଇଥାନ୍ତା କିନ୍ତୁ ଏଇ ସମୟରେ ପ୍ରକାଶକ ସ୍ୱାମୀଜୀଙ୍କ ପ୍ରବଚନ ବହିଟି ବାହାର କରିଦେଲେ । ଏଥିରେ ମୁଖବନ୍ଧରେ ସ୍ୱାମୀଜୀ ସୁହାସିନୀକୁ ଧନ୍ୟବାଦ ଦେଇଥିଲେ ତାଙ୍କୁ ସାହାଯ୍ୟ କରିଥିବା ପାଇଁ । ପ୍ରଭାକର ଯୋଉଦିନ ଜଣେ ସାଙ୍ଗ ପାଖରେ ଏ ବହିଟି ଦେଖିଲା, ତାର ମୁହଁ ଲାଲ୍ ପଡ଼ିଗଲା । ଲୋକେ ଭିତରେ ଭିତରେ ସ୍ୱାମୀଜୀଙ୍କ ସାଙ୍ଗରେ କୋଉ ସ୍ତ୍ରୀ କଣ ସଂପର୍କ ସେ ବିଷୟରେ ଚୁପ୍‌ଚାପ୍ କଥା ହେଉଥିବା ଅଲଗା କଥା ଥିଲା । ଏବେ କିନ୍ତୁ ଛପା ବହିରେ ସ୍ୱାମୀଜୀଙ୍କ ନାଁ ସାଙ୍ଗରେ ତାର ସ୍ତ୍ରୀର ନାଁ ଯୋଡ଼ା ହୋଇ କଥା ବଜାରରେ ।

ସେଦିନ ଘରକୁ ଫେରି ସୁହାସିନୀ ଆଡ଼କୁ ବହିଟି ଫିଙ୍ଗିଦେଇ ପ୍ରଭାକର କହିଲା, ଆମ ନାଁ ଏବେ ଦାଣ୍ଡରେ ପଡ଼ି ହାଟରେ ଗଡ଼ିବ ।

ସୁହାସିନୀ ବହିଟିକୁ ଓଲଟାଇ ଦେଖିଲା । କହିଲା, ସୁନ୍ଦର ହୋଇଚି ବହିଟି ।

ତମ ନାଁ ସେଥିରେ ଲେଖାହୋଇଚି, ଦେଖିଲ ତ ?

ହଁ, ମତେ ଏ ମୁଖବନ୍ଧ ବି ସ୍ୱାମୀଜୀ ଦେଖାଇଥିଲେ ପ୍ରେସ୍‌କୁ ପଠାଇବା ପୂର୍ବରୁ । ଠିକ୍ ଲେଖା ହୋଇଚି ଏଥିରେ । ମୁଁ ତ ସାହାଯ୍ୟ କରିଥିଲି ଏ ପ୍ରବଚନ ସବୁକୁ ଟେପ୍‌ରୁ ଉତାରିବାରେ ।

ତମେ ତ ସେତେବେଳେ କହୁଥିଲ ଏ ଗୋଟିଏ ଭଲ କାମ କରୁଚି ବୋଲି ।

ସେତେବେଳ ଆଉ ଏତେବେଳ କଥା ଅଲଗା । ସେତେବେଳେ କିଏ ଜାଣିଥିଲା ବାବାଜି ବେଶଭୂଷା ଭିତରେ ଏମିତି ଗୋଟିଏ ବଦମାସ୍ ଲୋକ ଅଛି ବୋଲି ? ଏବେ ସମସ୍ତେ ବୁଝିଗଲେଣି ସ୍ୱାମୀଜୀ ପ୍ରକୃତରେ କ'ଣ ।

ତା ବୋଲି କଣ ଏଇ ପ୍ରବଚନ ସବୁ ଭୁଲ୍ ହୋଇଯିବ ? ଅନେକ ଭଲ କଥା ଅଛି ଏଥିରେ । ମୁଁ ଭାବୁଛି ସମସ୍ତେ ଏ ବହିଟିକୁ ପଢ଼ିବା ଉଚିତ ।

ତମେ ଆଜିକାଲି କଥା କଥାକେ ସ୍ୱାମୀଜୀଙ୍କର ପକ୍ଷ ନଉଚ । ଅନ୍ୟ ମାଇକିନାଙ୍କ ଭଳି ତମର ବି କଣ ତା ସାଙ୍ଗରେ ସଂପର୍କ ଥିଲା ନା କଣ ?

ହଁ, ସହଜ ଭାବରେ ସୁହାସିନୀ ଉତ୍ତର ଦେଲା ।

ତମେ ମତେ ଏ କଥା ଆଗରୁ କହି ନଥିଲ, ସାମାନ୍ୟ ଚଡ଼ା ଗଳାରେ କହିଲା ପ୍ରଭାକର ।

ତମେ କେବେ ଏ କଥା ପଚାରି ନଥିଲ, ସେଥିପାଇଁ ।

ସେ ବାବାଜି ତମକୁ ନିଶ୍ଚୟ ମନ୍ତ୍ରକରି ଦେଇଥିଲା ।

ନା, ମତେ କେହି ମନ୍ତ୍ର କରି ନଥିଲା । ମୁଁ ଯାହା କଲି ଭାବିଚିନ୍ତି ସ୍ୱଇଚ୍ଛାରେ କଲି । ସୁହାସିନୀ ବେଶ୍ ଜୋର୍‌ରେ କହିଲା ଏଇ କେତେପଦ ।

ପ୍ରଭାକର ହଠାତ୍ ସେଠାରୁ ଉଠି ଚାଲିଗଲା ଏବଂ ସେଦିନ ଅଫିସ୍‌ରୁ ଫେରିଲା ଅନେକ ଡେରିରେ । ତାପରେ ଗୋଟିଏ ପୂରା ଦିନ ସେ ସୁହାସିନୀ ସହିତ କଥାବାର୍ତ୍ତା ବନ୍ଦ କରିଦେଲା । ତା ଆରଦିନ ଯେତେବେଳେ ପ୍ରଭାକର ଅଫିସ୍‌ରୁ ଫେରିଲା, ପିଲାମାନେ ଘରେ ନଥିଲେ । ସୁହାସିନୀ ହାତରୁ ଚା' କପ୍ ନେଇ ପିଉ ପିଉ ପ୍ରଭାକର କହିଲା, ତମେ ସିନା ଜାଣି ପାରୁନାହଁ, ତମକୁ ନିଶ୍ଚୟ ବାବାଜି କଣ ମନ୍ତ୍ର କରି ଦେଇଥିଲା । ଏତେ ସ୍ତ୍ରୀଲୋକଙ୍କୁ ଯେତେବେଳେ ମନ୍ତ୍ରକଲା, ତମକୁ କଣ ଛାଡ଼ି ଦେଇଥିବ ? ସୁହାସିନୀ କିଛି ଜବାବ ନଦେଇ ଚୁପ୍ ରହିଲା ।

ପ୍ରଭାକର କହିଲା, ଶଳା ବାବାଜିକୁ ତନ୍ତ୍ରମନ୍ତ୍ର, ଗୁଣିଗାରେଡ଼ି ସବୁ ଭଲ ଭାବେ ଜଣା । ହଁ, ମନେପଡ଼ିଲା । ତମେ ତ ନିଜେ କହୁଥିଲ ତମକୁ ସେ କଣ ମନ୍ତ୍ର ଲେଖି ଦେଇଥିଲା ବୋଲି । ଶଳା ମତେ ବି ଖଣ୍ଡେ କାଗଜରେ ମନ୍ତ୍ର ବୋଲି କଣ ଲେଖି ଦେଇଥିଲା । କହିଥିଲା କଣ ନା ମନ୍ତ୍ରକୁ ଗୁପ୍ତ ରଖିବ; କାହାକୁ କହିଲେ କ୍ଷତି ହେବ । ପ୍ରଭାକର ଉଠିଯାଇ ଆଲମାରି ଭିତରୁ ଛୋଟ କାଗଜଟିକୁ ଆଣି ସୁହାସିନୀ ଆଗରେ ଖୋଲି ଧରିଲା । କହିଲା, ମୁଁ ସମସ୍ତଙ୍କୁ ଏଇ କାଗଜ ନେଇ ଦେଖାଇବି । ଦେଖିବି ଶଳା ମୋର କଣ କ୍ଷତି ହବ । ସୁହାସିନୀ କିଛି ନକହି ଚୁପ୍ ରହିଲା ।

ପ୍ରଭାକର କହିଲା, କାଇଁ, ତମକୁ କଣ ମନ୍ତ୍ର ଲେଖି ଦେଇଥିଲା ପରା, ଦେଖି । ତମକୁ ବି କହିଥିବ କାହାକୁ ନ ଦେଖାଇବାକୁ । କିଛି ମାନିବା ଦରକାର ନାହିଁ ତା କଥାକୁ । ଆଣ ଦେଖିବା ସେ କାଗଜ । ଚୁପ୍‌ଚାପ୍ ଉଠିଯାଇ ସୁହାସିନୀ ସେଇ କିଛି ବି ଲେଖା ନଥିବା ସାଦା କାଗଜ ଟୁକୁଡ଼ାଟିକୁ ଆଣି ପ୍ରଭାକର ହାତକୁ ବଢ଼ାଇଦେଲା ।

# ତ୍ରିଶଙ୍କୁ

**ଉମାଶଙ୍କର ମିଶ୍ର**

କାହିଁକି ସବୁ ରସରଙ୍ଗ ଦିନେ ଫିକା ପଡି ଆସିବାକୁ ବାଧ ? କାହିଁକି ଘର ଭାଙ୍ଗି ଘର ପୁଣି ତିଆରି କରିବାର ସାହସ ଆଉ ଧୈର୍ଯ୍ୟ ଆଦୌ କା'ର ନାହିଁ କହିଲେ ଚଳେ । କାହିଁକି ଥାକମରା ସ୍ମୃତି. ନିର୍ଯ୍ୟାତିତ କାମନା ସଙ୍କଳ୍ପ ଆଉ ଅତୀତର ବୋଝ ଅଧୁନା ଆଉ ଆଗନ୍ତୁକ ଦିନମାନଙ୍କର ସପତ୍ନୀ ଭଳି ଆମ ଅଣ୍ଟାକୁ ଟାଣି ଧରେ ପଛରୁ । କାହିଁକି ଅନେକ ନିଶ୍ଚିତ ଘଟିବା କଥା ଜମାରୁ ଘଟେନାହିଁ । ଯେମିତିକି ସର୍ବେଶ୍ୱର ଏଭଳ ମରିବାକୁ ବଦ୍ଧପରିକର - ତା'ର ମରିଯିବା ଭାରି ଦରକାର ଆଉ ଉଚିତ । ତାର ଆଗ ନାହିଁ । ଭବିତବ୍ୟ ନାହିଁ ! ହାତଗୋଡ ବପୁ ସବୁ ଅଥର୍ବ ହୋଇ ମାଦଳପରି ସେ ଘୁସୁରୁଚି ମୁହଁଟା କିନ୍ତୁ କଥା କହୁଛି; ଆହାର ଗ୍ରହଣ କରୁଛି । ମଥା ଭିତରେ ଚିନ୍ତା କରିବାର ମେସିନ୍ ଶତକଡା ଶହେଗୁଣ ସଜାଗ । ସେ ଭାବୁଚି ମରିଯିବା ଏକଇ ନିସ୍ତାରର ପନ୍ଥା । କିନ୍ତୁ ହାତ ଚଳିଲେ ବା ଗୋଡ ଚଳିଲେ ତ ନିଜକୁ ନିଜେ ମାରି ପାରିବ । ମନ ଚିରହରିତ ଅଥଚ ଦେହ ସମ୍ପୂର୍ଣ୍ଣ ପକ୍ଷାଘାତଗ୍ରସ୍ତ, ଅଥବା ଯା' ସେ ଚାହୁଚି ଓ ହବା ଉଚିତ ଘଟିପାରୁନି । କାଇଁକି ଏମିତି ହେଲା ବା ହଉଚି କିଏ ଉତ୍ତର ଦେବ ? ପଚାର ପଚାର ସେଇ ଦିନରାତି କରୁଥିବା ଲୋକକୁ । ତାକୁ ବି କୌପୁନି ପିନ୍ଧେଇ ଦେଇ କମଣ୍ଡଳୁ ଧରେଇ ଶୂନ୍ୟମାର୍ଗରେ ରଥରେ ଚଢେଇ ଅନ୍ତରୀକ୍ଷର ସୀମା ପାର କରେଇ ଦେଇଛନ୍ତି ଏଇ ସର୍ବେଶ୍ୱରମାନେ । ସଂସାରରେ କ'ଣ ସବୁ ଘଟି ଯାଉଚି ଘଟୁ । କେହି ବୁଝା ସୁଝା କରିବା ଲୋକ ଥାଉ ବା ନଥାଉ । ସିଏ ଏମିତି ବସିଥିବ ଦାରୁଭୂତ ଠାଣୀରେ ।

ଝଡବତାସର ଏମିତି ଭୟଙ୍କର ରାତି ଯେ ବସ୍ତି ରାସ୍ତାଘାଟ, ଦୋକାନ ବଜାର ଦିଶୁଚି ଶ୍ମଶାନ ଭଳି । ଅଥଚ ଏତାଦୃଶ ମଶାଣିରୁ ସତ ମଶାଣିକୁ ମୂର୍ଦ୍ଧାର ବୁହା ଠେଲା ଗାଡିଟିରେ ଡାକ୍ତରଖାନା ମେହେନ୍ତର ବୋହି ଆଣିଲେ ସ୍ତ୍ରୀ ଲୋକଟିର ଶବଟିଏ । ସେହି ଶବଧାରର ପାଖେ ପାଖେ ସୁକୁ ସୁକୁ କାନ୍ଦୁଛନ୍ତି ତା'ର ଗେରସ୍ତ ଆଉ ବାପ । ମେହେନ୍ତର ମାଗିଲା - ଶବକୁ ଡାକ୍ତରଖାନାରୁ ଏଠାଯାକେ ବୋହି ଆଣିବା ଖର୍ଚ୍ଚ ଚାରିଟଙ୍କା ଆଉ ତା ବାଦେ ବକ୍‌ସିସ । ନ ହେଲେ ମଡାକୁଇଁକୁ ଉତାରିବନି । କ'ଣ କରିବ ବିଚରା ନିପଟ ମଫସଲି ଆଉ ଦରିଦ୍ର ଶୋକାକୁଳ ସ୍ୱାମୀ, ଆଉ ତଦ୍ରୂପ କନ୍ୟାପିତା ।

'ହଉ ଭାଇ । ଓଳିଟାଏ ଅପେକ୍ଷା କର । ମୁଁ ଯାଇ ପଇସା ମାଗି ଆଣୁଚି ଗାଁରୁ' ଏତକ କହି ଦିଇଜଣଯାକ ଶ୍ୱଶୁର, କ୍ୱାଇଁ ଗାଁକୁ ଗଲେ । ତା ଆରଦିନ ସକାଳୁ ଆସି ପହଞ୍ଚିଲେ ସେଇଠି । ଆଉ ଦେଖିଲେ ଠେଲା ଗାଡି ନାହିଁ କି ତାର କନିଆଁର ଶବ ବି ଉଭାନ । ସେଇଠି ତଳେ ପଡିଚି ଖାଲି ତା'ର ପିନ୍ଧାଶାଢୀ ଆଉ ହାଡରୁ ଛେଲା ହୋଇଥିବା ଚମ ମାଉଁସ ପୁଳାଏ । ହାତଗୋଡ ଚଳୁ ନଥିବା ଯୋଗୀ ପରି ବସିଥିବା ଲୋକଟିକୁ ଦେଖି ପଚାରିଲେ 'କୁଆଡେ ଗଲା ଭାଇ ମୋ' ସ୍ତ୍ରୀର ମଡା ?' ସର୍ବେଶ୍ୱର ମୁରୁକି ହସିଲେ । 'ଚିନ୍ତା କରନା ଧନମଣି । ତା'ର ସଂସ୍କାର ସରିଚି । ତୁ ଗଲା ପରେ ମେହେନ୍ତର ମଡାର ଚମ ମାଉଁସତକ ଉତାରି ହାଡତକ ଡାକ୍ତରୀ ପାଠପଢା ଗବେଷଣାଗାରକୁ ବିକ୍ରି କରି ଦେଇଚି । ଭଲ ପଇସା ବି ପାଇଥିବ । ସିଏ ବି ତ ଗରିବ ଲୋକ - ଉଦ୍ଧାର ହୋଇଗଲା ।

ନା'କଣ ? ମନ କଷ୍ଟ କରନା । ମୁଁ ବା କ'ଣ କରିଥାନ୍ତି ? ହାତ ଗୋଡରେ ତ ଗତି ନାହିଁ ।'

ବିରଟା ଲୋକ ମୁଣ୍ଡପୋତି ଗାଁ ମୁହଁରେ ଆଗେଇଲାବେଳେ ଲାଗୁଥିଲା ଯେମିତି ତାଙ୍କର ଗୋଡସବୁ ବାଉଁଶ ପାତିଆରେ କଣ୍ଢାମରା କଣ୍ଢେଇ ଭଳି ତିଆରି । ସିଏ ଚାଲୁନାହାନ୍ତି ଆପେ । ତାଙ୍କୁ କିଏ ମଞ୍ଚାନ୍ତରାଳରୁ ସୂତା ଡୋରରେ ଟାଣି ଟାଣି ନଉଚି ।

କାହିଁକି ସର୍ବେଶ୍ୱର ଏମିତି ଅଣ-ଅକ୍ରିଆର ଅବସ୍ଥାକୁ ଆସିଲା । ବୁଝାଯାଉ । ଦିନେ ସଞ୍ଜବେଳେ କିଛି ଲୋକ ଦେଖିଲେ ରାଜଧାନୀର ପ୍ରଖ୍ୟାତ ଫେସନି କପଡା ଦୋକାନ ଆଗରେ ଏକ ଅଦ୍ଭୁତ୍ ଦୃଶ୍ୟ । ବେଶ୍ ଡେଙ୍ଗା ଯୁବକଟିଏ । ହାତଗୋଡ ଯେମିତି ଲୁହା ଦଉଡିବଳା ହେଇ ତିଆରି ହେଇଚି । ମୁହଁରେ ନିଶଦାଢ଼ୀ ଖଇରିଆ ତମ୍ୱାତାର ପରି ପ୍ରକ୍ଷିପ୍ତ ଆଉ ଭୟାନକ । ବଡ ବଡ ଆଖି । କିନ୍ତୁ ସେଥିରେ ଖୁବ୍ କରୁଣ ଅବିଶ୍ୱାସର ଚାହାଣୀ । ଫଡେଇ ଆଉ ଜିନ୍‌ପିନ୍ଧା ଏଇ ଲୋକଟି ପାର୍ଟି ଅଫିସକୁ ଯୁବନେତା ପଶିଲାଭଳି ଖୁବ୍ ଥାଟ୍‌ରେ ପଶିଲା ଦୋକାନ-ସୋ' ରୁମର ସଦର ଦରଜା ଦେଇ, ଆଉ ମୁଖ୍ୟ ସେଲସ୍ କାଉଣ୍ଟରର ପରିଚାଳକଙ୍କୁ ପଚାରିଲା - 'ମୁଁ ଯେଉଁ ଶାଢୀଟା କିଣିଥିଲି ଦି'ଦିନ ତଳେ - ତମର ସେଇ କାଚଘରର 'ମାନେକ୍ୱିନ୍' କଣ୍ଢେଇଟା' ତାକୁଇ ପିନ୍ଧିଚି କାହିଁକି ?'

'ଆଜ୍ଞା, ସେମିତିକା ଶାଢୀ ତ ମୋଟେ ଦି'ଖଣ୍ଡ ଥିଲା । ଖଣ୍ଡେ ତ ସେଇ ବିଜ୍ଞାପିକା ତରୁଣୀ କଣ୍ଢେଇ ପିନ୍ଧିଚି, ସବୁଠୁଁ ଆଖିଦୃଶିଆ ଡିଜାଇନର ନମୁନା ବୋଲି ତାକୁଇ ଦେଖି ତ ଆପଣ ସେମିତି ଖଣ୍ଡେ ନେଲେ ।'

'ନାଁ ସେ ଶାଢୀ ଆଉ କେହି ପିନ୍ଧି ପାରିବେନି - ଏ କଣ୍ଢେଇ ବି ନୁହେଁ ।' ଦୋକାନ ପରିଚାଳକ ଆଶ୍ଚର୍ଯ୍ୟ ହେଲେ ।

'କ'ଣ ଆପଣଙ୍କ ହୁକୁମ । ନା ତାଗିଦ୍ ?'

ଲୋକଟା କିଛି ଉତ୍ତର ନ ଦେଇ ସେଲସ୍‌ମ୍ୟାନ ଆଉ ଦି'ଜଣ ଦରୁଆନଙ୍କୁ ସିନେମା ଢାଞ୍ଚାରେ ଦି' ଚାରିଟା ଘୁଷା ମାରି ପଶିଲା କାଚଘର ସୋ-ରୁମ୍‌ର ପଛ ଦରଜାରେ । ଗୋଟାଏ ମୁଥିରେ ଛିନ୍ନଛତ୍ର ହୋଇ କାଚ କବାଟ ଗଳି ପଡିଲା । ତା ପେଣ୍ଟର ଉପର ସିଆଁ ଲମ୍ୱା ପକେଟ୍‌ରୁ ଏବେ ସେ ଛୁରିଟାଏ ବାହାର କଲା ଆଉ ଫଡ ଫଡ କରି ଚିରି ପକାଇଲା ସେ କଣ୍ଢେଇର ପିନ୍ଧା ଶାଢୀଟାକୁ । ଯା'ପର ମୋଟେ ଓଠ ନ ଫିଟାଇ କଲିଜା ଭିତରୁ କଥା କହିଲା ପରି ଗମ୍ଭୀର ସ୍ୱରରେ ପଚାରିଲା ।

'ଏ ମ୍ୟାନେ-କ୍ୱିନ୍'ର ଦାମ୍ କେତେ ? ମୁଁ କିଣିବି ।'

''ଏ ବାବୁ, ମୁଣ୍ଡ ଖରାପ  ନା କ'ଣ ? ଏଇଟା ବିକ୍ରି ପାଇଁ ନୁହେଁ ।

'ତାହେଲେ ତ ଏକୁ ମାରିବାକୁ ହବ' । ଏତକ କହିଦେଇ ଝକ୍ କରି ବୋତାମ ଟିପି ସ୍ପ୍ରିଂ ଚାକୁର ଦି' ଧାରୁଆ ଲମ୍ୱ ମୁନ ବାହାର କରିଦେଲା ଆଉ କଣ୍ଢେଇଟାକୁ ଆକ୍ରମଣ କରି ତା ' ଦେହରୁ ଆଠ ଦଶ ଜାଗାରେ ଛୁକ୍ ଛୁକ୍ - ଛୁରି ଭୁଷିଦେଲା । ମ୍ୟାନେ-କ୍ୱିନଟା ତଳେ ତିନି ଖଣ୍ଡ ହୋଇ ଗଡୁଥିବା ଅବସ୍ଥାରେ ସେ ଲୋକ ଦୋକାନ ଭିତରୁ ଦଉଡି ପଳାଇବାର ଦୃଶ୍ୟ ଲୋକେ ଦେଖିଲେ ଓ ସ୍ତମ୍ଭୀଭୂତ ହେଲେ ।

ଏଇ ଲୋକ ହେଲା ସର୍ବେଶ୍ୱର ।

ଏଇ ଘଟଣାର କିଛିଦିନ ପୂର୍ବର କଥା କୁହାଯାଉ । ସର୍ବେଶ୍ୱର ବିନା ନୋଟିସ୍‌ରେ ତା'ର ଜୀବନବୀମା ଅଫିସର ଜଣେ ସହକର୍ମୀ ବିନ୍ଧ୍ୟାଦେବୀଙ୍କ ପ୍ରେମରେ ପଡିଲା । ତଡିତ୍ ବେଗରେ ମାତ୍ର ତିନି ଦିନର ଆଳାପ ଏବଂ ଆଙ୍ଗୁଠି ଛନ୍ଦି ଦେବା ପର୍ଯ୍ୟନ୍ତ ପ୍ରାଥମିକ ଗୌଣ ନାଟିଶାଂତୋଷ ଆତ୍ମନିବେଦନ ମୁରୁ ହେଉ ନ ହେଉଣୁ ବାହାହେଇ ପଡିଲା । ବିବାହର ବର୍ଷ ପୂରାଣି ଦିନ ଭବିଷ୍ୟନିଧିରୁ ଆଗୁଆ

ଉଠାଣରେ ଟଙ୍କା ଡ୍ର କରି ପତ୍ନୀଙ୍କ ସଙ୍ଗରେ ଏଇ ଲୁଗା ଦୋକାନର ମ୍ୟାନେକ୍ୱିନ୍ ପିନ୍ଧିଥିବା ଶାଢୀ ଭଳି ଠିକ୍ ତାଙ୍କ ଫେସନ୍‌ର ଶାଢୀଟିଏ ତାର ପତ୍ନୀଙ୍କ ପସନ୍ଦରେ କେତେ ସରାଗରେ କିଣି ପକାଇଲା । ବିନ୍ଧ୍ୟାଦେବୀ ଏଇ ଶାଢୀଟି ଦିନାକେତେ ସଞ୍ଜବେଳେ ପିନ୍ଧି ଦର୍ପଣ ଆଗରେ ଏ ପାଖ ସେପାଖ ହଲିଲେ ଓ ସମସ୍ତେ ଶାଢୀଟିକୁ ଭୁରିଭୁରି ପ୍ରଶଂସା କରୁଛନ୍ତି ବୋଲି କହି ସର୍ବେଶ୍ୱରଙ୍କୁ ଚୁମ୍ବନ ଦେଲେ । ଏସବୁ କଥା ଏ ପର୍ଯ୍ୟନ୍ତ ଯେମିତି ଘଟିବା ଉଚିତଥିଲା ସେମିତି ଘଟିଲା । ଅବଶ୍ୟ ତାଙ୍କ ମହଲଟିଏ ଗଢି ଦେବା ଅଥବା ପ୍ରତିଦିନ ଭଳିକି ଭଳି ବିନ୍ଧ୍ୟା ପିନ୍ଧୁଥିବା ଶାଢୀ ରଙ୍ଗକୁ ମ୍ୟାଚ୍ କରି ନୂଆ ନୂଆ ମଟରଗାଡି ପରିବର୍ତ୍ତନ କରିବାର ସାଧ କାହାର ବା ଅଛି ଯେ - ତାଙ୍କର ନ ଥିଲା । ସମସ୍ତେ ଜାଣନ୍ତି ଯେ ସର୍ବେଶ୍ୱର ତା'ର ପତ୍ନୀଙ୍କୁ ଅତି ଭଲ ପାଏ ।

ଏଇ  କାଲି ରାତିର କଥା । ସର୍ବେଶ୍ୱର ବଜାର ସଉଦା ସାରି ଫ୍ଲାଟ୍‌ରେ ପହଞ୍ଚି ଦେଖେ ଯେ ବିନ୍ଧ୍ୟା ସେଇ ଶାଢୀଟିଏ ପିନ୍ଧି  ଖିଲ୍ ଖିଲ୍ ହସୁଛନ୍ତି ଆଉ ତାଙ୍କ ଦେହର ଉପର ଅର୍ଦ୍ଧାଂଶରୁ ଅପସାରିତକାନିଫାଳେକେନି଼ଜଣେଅର୍ବାଚୀନରମୁହଁକୁଉହାଡକରିଚି ।ଝାପ୍‌ସାଝାପ୍‌ସାଆଲିଙ୍ଗନର ସତ୍ୟ ନା କଳ୍ପ-ରୂପ ? ଏଇ ଦୃଶ୍ୟଟି  ଦେଖିସାରି ତା'ର ଜିନ୍‌ପେଣ୍ଟ ପଛ ପକେଟ୍‌ର ଛୁରୀଟା ବାହାରି ଆସିଥିଲା । କିନ୍ତୁ କ'ଣ ହେଲା କେଜାଣି ସିଏ ଆଉ ଘର ଭିତରେ ନ ପଶି ସିଧା ଫେରିଥିଲା ସେଇ ଶାଢୀ କିଣିଥିବା କପଡା ଦୋକାନକୁ ।

ଫେସନ୍ ପ୍ରଜ୍ଞାପିକା କଣ୍ଢେଇକୁ ହତ୍ୟା କରିବା ପରେ ଗାଁକୁ ପଳେଇ ଆସିଲା ସିଧା ସର୍ବେଶ୍ୱର । ସେଠି ବି ସ୍ୱାଭାବିକ କଥା ସବୁ ଘଟିଲା । ଦଦେଇ ପୁଅ ଭାଇମାନେ ତାର ପୈତୃକ ସମ୍ପତ୍ତିକୁ ନିଜ ନାମରେ ରେକର୍ଡ କରାଇ ନେଇଥିଲେ, ତା'ର ଗଲା ଦଶବର୍ଷର ଅନୁପସ୍ଥିତିରେ ଓ ସ୍ୱକୁଟୁମ୍ବ ରକ୍ତ ସମ୍ପର୍କର ଅତୁଟ ପ୍ରତ୍ୟୟଜନିତ ଭଣ୍ଡାମିର ସୁଯୋଗରେ । ଭାତହାଣ୍ଡିର ହକ୍‌ରୁ ବଞ୍ଚିତ ହୋଇ ସର୍ବେଶ୍ୱର ଉତ୍ତ୍ୟକ୍ତ ହେଲା । ପିଟା ପିଟି ଗାଳି ଗୁଲଜ ଆରମ୍ଭ କଲା, ଦି'ଟା ଭାଇ ଆଉ ଜଣେ ଦଦେଇଙ୍କ ଶଳାକୁ ଛୁରୀରେ ଜଖମ୍ କରି ତିନିବର୍ଷ ଜେଲ ଭୋଗିଲା । ଜେଲ୍ ଭିତରେ କ'ଣ ହେଲା କେଜାଣି-ତା'ର ବିଚିତ୍ର  ରୋଗସବୁ ଆରମ୍ଭ ହେଲା-ପ୍ରଥମେ ଦି' ପାଦରେ ସ୍ପର୍ଶ ଚେତନା ଉଭେଇଗଲା । କ୍ରମେ ପକ୍ଷାଘାତ ଉଠିଲା ପାଦଠୁଁ ଉପରକୁ ବେକ ପର୍ଯ୍ୟନ୍ତ । ଦି'ହାତ ଦି' ଗୋଡ ପୂରା ଶରୀର ହୋଇଗଲା ନିଶ୍ଚଳ, ଜଡ ସମ୍ପୂର୍ଣ୍ଣ; ଗତି ରହିତ । ଖାଲି ମୁଣ୍ଡଟା ରହିଲା ଆଗପରି । କାନ,  ନାକ, ଆଖି, ମସ୍ତିଷ୍କ ସବୁ ଠିକ୍ କାମ କରି ଚାଲିଲେ । ସବୁ ଶୁଣିଲା,  ସବୁ ଦେଖିଲା, ସବୁ ଜାଣିଲା, ସବୁ ଚିହ୍ନିଲା, ଘ୍ରାଣ କଲା, ଚିନ୍ତା କଲା, ସମାଧିସ୍ଥ ପର୍ଯ୍ୟନ୍ତ ହେଲା, କିନ୍ତୁ ଆଉ କୌଣସି ଅଙ୍ଗ ଚଳିଲାନି । ଜେଲରୁ ମୁକ୍ତିଳିବା ଦିନ ତାକୁ ଜଗୁଆଳୀମାନେ  ମାଦଳ ପରି ଟେକି ଆଣି ବାହାରେ ଗଡେଇ ଦେଇ ଚାଲିଗଲେ । ବିନ୍ଧ୍ୟା ଆସିଥିଲା ତାକୁ ପାଛୋଟି ନେବା ପାଇଁ । ଯେତେବେଳେ ଦେଖିଲା ଯେ ଏ ଲୋକର କୌଣସି ଅଙ୍ଗରେ ତଡିତ ନାହିଁ, ଗତି ନାହିଁ, ସଙ୍କୋଚନ ପ୍ରସାରଣ କିଛି ହିଁ ନାହିଁ,  ସିଏ ତାକୁ ରିକ୍ସାରେ ବୋହି ନେଇ ଏଇ କାଳିଆବୋଦା ବାବାଜିମାନଙ୍କ ସାମ୍ରାଜ୍ୟ ଜଙ୍ଗଲ ଦାଢରେ ତଳକୁ ଖସେଇ ଦେଇ ଚାଲିଗଲା । ବିନ୍ଧ୍ୟା ଏପରି ଏକ ନିଷ୍ପ୍ରାଣ ଲଣ୍ଡା ପାହାଡ ଶ୍ରେଣୀର ନାମକୁ ବୁଝାଏ ବୋଲି ପ୍ରମାଣିତ ହେଲା ।

ଭଲ ମଶାଣିଟିଏ । ଏଇଠି ପାଖକୁ ଲାଗି ଛୋଟିଆ କାଠ-କୁପ୍ ଭଳି ନଡା  ଛପର ତଳେ ସୁରକ୍ଷିତ କାଠ ଗଦା । ସେଇ ପାଖରେ ମଝିଆଁ ଆକାରର ପୋଖରୀଟିଏ - ନେଳି ନେଳି ଦଳୁଆ ଗୋଳିପାଣି । ପଦ୍ମ ପତ୍ର କଇଁ ନାଡ ବିଭାସୁଚି ଅସୁମାରୀ । ବଗ ମାଛରଙ୍କାମାନଙ୍କ ଆକ୍ରମଣ ବିନସାରା ଚାଲିଥାଏ । ରାତିରେ ନିଆଁ ଜଳେ ମଡା ପୋଡା ହେଲାବେଳେ ଶହେରେ ନବେ ଦିନ । ଫୁଟ୍‌କୁଟିଆ

ଧୂଆଁ ଗନ୍ଧ ତାକୁ ଏଣିକି ଭଲ ଲାଗିଲାଣି । ମଡାଚଣ୍ଡିଆ ଜଣେ ଥରେ ତାକୁ କମଳ ଖଣ୍ଡେ ଦେଇଥିଲେ । ସେଇଟା ମଡା ଦେହରୁ ଓଟାରି ଆଣିଥିଲା ଶୀତରାତିରେ ସର୍ବେଶ୍ବର ଘୋଡିହେବେ ବୋଲି । କାଠବିକାଳୀ ଟା ଛପର ତଳୁ ଚାରିହାତ ଜାଗା ଛାଡି ଦେଇଥିଲା ସର୍ବେଶ୍ବର ଆଶ୍ରା ପାଇବେ ବୋଲି । ବେଳେବେଳେ ବାବାଜି ଜଣେ ଜଣେ ମଠର ବ୍ୟବହାର ଉଦ୍‌ବୃତ୍ତ କିଛି କିଛି ଖାଦ୍ୟ ତା ଆଗରେ ପକେଇ ଦେଇ ଯାଆନ୍ତି । ମେଇ କଣାଚାଳର ଓଳିତଳେ ଝାଟିମାଟିର ଚାରିଫୁଟ ଚତ୍ୱରର ଅଧୀଶ୍ୱର ସର୍ବେଶ୍ୱର ରାୟ ବସି ରହିଛି । ବିଧାତାଠୁ ମାଗି ଆଣିଥିବା ଉଧାର ସମୟକୁ ଭିଡି କରି ହେଇଛି- ଆଉ ବେଶ୍ ଭଲ କରି ଜାଇଚି ଗଲା ଅଠର ବର୍ଷର ନିଷ୍ଫଳ ଶରୀରକୁ ଆଶ୍ରା କରି । କେବେ ତ କହିନି 'ମୃତ୍ୟୁ ମତେ ବାଟ ଛାଡିଦିଅ' ବୋଲି ! ସବୁ ଦେଖୁଚି । ଏତେ ଏତେ ଜଳନ୍ତା କୋଇଲାର ଗୋଳ ଆଖିରେ କିଛି ଏଡାଇ ଯାଇନି । ସବୁ ଶୁଣୁଚି । କାନ ଦିଇଟା କ୍ରମେ ଶିକାରୀ କୁକୁରର ସମର୍ଥ କାନ ପରି ଉଠ୍‌ପଡ୍ ବି ହେଲାଣି । ମୁଣ୍ଡକୁ ଆଗପଛ ବା ଡାହାଣ ତଳ ଉପରକୁ ହଲାଇ ସେସବୁ ଦେଖେ, ଶୁଣେ, ଘ୍ରାଣ କରେ, କିନ୍ତୁ କିଛି କରି ପାରିବାର ଶକ୍ତି ନାହିଁ । ବାକିଟା ପୂରା ଅବୟବ ଅଥର୍ବ । ସେ ଅବଶ୍ୟ ଚିରାଚରିତ ମନସ୍ତତ୍ତ୍ୱସମର୍ଥିତ ହା-ହୁତାଶରେ ମରିଯିବା ଶ୍ରେୟସ୍କର ଭାବି ମରି ଯିବାକୁ ସ୍ଥିର କରିଥିଲା ଅନେକ ଥର, ଯେତେବେଳେ ଥିଲା ପ୍ରଥମେ ଏଇ ଉତ୍କଟ ଦୟନୀୟ ପଙ୍ଗୁ ଅବସ୍ଥା ଅତି ଅସହ୍ୟ, କିନ୍ତୁ ନିଜକୁ ମାରିବାକୁ ତ କମ୍‌ସେ କମ୍ ଗୋଟାଏ ହାତ ଚଳିବା ଦରକାର କିମ୍ବା ପୋଖରୀ ପାଣିରେ ବୁଡି ମରିବାକୁ ଯେ ଯାଏ ପହଞ୍ଚିବାକୁ ଚାଲୁ ଅବସ୍ଥାରେ ଗୋଡ ଦି'ଟା ତ ଦରକାର ! ସମ୍ପୂର୍ଣ୍ଣ ଅପାରଗ ପଙ୍ଗୁ ଇଚ୍ଛା କରି ମଧ୍ୟ ମରି ପାରିବ ନାହିଁ, ମଣିଷର ଅସହାୟତାର ଏମିତି ସମ୍ପୂର୍ଣ୍ଣ ଉଲଙ୍ଗ, ଉଗ୍ର, ବୀଭତ୍ସ, କରୁଣ, ଅକିଞ୍ଚନ ରୂପ ତାକୁ ନିସ୍ପୃହ କରି ଚାଲିଲା ଧୀରେ ଧୀରେ ଏଇ ମରଣର ପ୍ରମତ୍ତ ସ୍ବଗତିକ ଇଚ୍ଛାବିଳାସରୁ । ଏଥର ଦେଖାଯାଉ ସେ କେମିତି ବଞ୍ଚୁଛି ; ରାତି ଗଭୀର ହେଲେ ସେ ଡାକିଚି, 'ଯେତେ ପିଶାଚ ଡାଆଣୀ ଚିରଗୁଣୀ ଅଛ ଆସି ମତେ ଖାଅ ।' କେହି ଆସିଲେନି । ବିଚରଣ କରୁଥିବା ବାଘ, ଭାଲୁ, ଗଧିଆ, ସାପ, ଝିଙ୍କ ସବୁକୁ ଡାକିଚି ପାଟିକରି 'ମତେ ମାରିଦିଅ, ଖାଇଦିଅ' । ସବୁ ନିରର୍ଥକ । କଦବା କେମିତି ଜନ୍ତୁକୁତା ଦି'ଟା ଆସି ତା କୁଡିଆରେ ପଶିଛନ୍ତି, ତା ମୁହଁରେ ଘଷିହେଇ ଶୁଙ୍ଘିଛନ୍ତି, ଆଞ୍ଚୁଡିଛନ୍ତି, କିନ୍ତୁ କ'ଣ ଭାବି ଫେରି ଯାଇଛନ୍ତି ନିଜ ବାଟରେ । ତାର ପ୍ରାର୍ଥନା କିଏ ହେଲେ ଶୁଣି ନାହାନ୍ତି । ସିଏ କିନ୍ତୁ ଶୁଣି ଚାଲିଚି - ମଲା ଲୋକର କୁଟୁମ୍ବ ପରିବାର ମଡା ପୋଡି ସାରିବା ପରେ ପୃଥିବୀ ଆଉ ମଣିଷ ଜୀବନର ଅଳୀକତା ଅସାରତା ଉପରେ ଅଜାଡୁଥିବା ଢେର ବାଚନିକ ଶ୍ମଶାନ ବୈରାଗ୍ୟ । ତା'ପରେ ଦେଖିଛି ସଧବା ମଡାର ହାତ, ବେକ, ନାକ, କାନରୁ ଅଳଙ୍କାର ଓଟାରି ନେଇ ମୁଣିରେ ପୁରେଇବାର ନିର୍ଲ୍ଲଜ ଲୋମହର୍ଷଣକାରୀ ଦୃଶ୍ୟ । ଘ୍ରାଣରେ ପାଇଚି ସେ ଜଙ୍ଗଲୀ ଫୁଲ ପତ୍ରର ଓଦା ଶିଉଳି ପରି ମହୁଲି ବାସ୍ନା; ତା ସାଙ୍ଗକୁ ସବୁ ରାତିରେ ମଣିଷର ମାଉଁସ-ଚମ ପୋଡୁଥିବା ସର୍ବଭକ୍ଷ ଚିତାଗ୍ନିର ଫୁରୁକଟିଆ ଗନ୍ଧ । ବେଦମ ଖରାରେ ସିଝିଚି, ବେଦମ୍ ବର୍ଷାରେ ଭିଜିଚି । ନିର୍ଘାତ ଶୀତରେ ଥରିନି । ବସି ବସି ସେଇ ଗୋଟାଏ ଭଙ୍ଗୀରେ ଶୋଇଛି, ସେଇ ଭଙ୍ଗୀରେ ପୁଣି ଉଠିଛି, ସକାଳ ଦେଖିଛି, ମଧ୍ୟାହ୍ନ ଦେଖିଛି, ସୂର୍ଯ୍ୟାସ୍ତ ଦେଖିଛି - ଦେଖିଛି ଢୁଲୁକୁଥିବା ଗଭୀର ରାତ୍ରିର ଝିଙ୍କାରି ଆଉ ବେଙ୍ଗ ରଡି ସାଙ୍ଗକୁ ସଂସାରର ମହାକାଳରୂପୀ ଏଇ ନିଃସଙ୍ଗ, ନିକାଞ୍ଚନତା ଆଉ ଝଡରାତ୍ରିର କେତେ ଭଳିକିର ଭୀମକାନ୍ତ ପଟୁଆର । ତାକୁ କିନ୍ତୁ ଏମିତି ଅବସ୍ଥାରେ ଅଠର ବର୍ଷକାଳ କଟେଇବାକୁ ପଡିବ ତାର ସମ୍ପୂର୍ଣ୍ଣ ଅନିଚ୍ଛା, ଅବଜ୍ଞା ଆଉ ଅରଣ୍ୟ ଚିତ୍କାର ସତ୍ତ୍ୱେ - ସେ କ'ଣ ଜାଣିଥିଲା !

ଯା'ହଉ, ଏମିତି କାଳରାତ୍ରି ପରି ରାତ୍ରିରେ ସମ୍ପୂର୍ଣ୍ଣ ଅତନ୍ଦ୍ର ଲାଲ୍ ଟହ ଟହ ଇସ୍ପାତ ଚେତନାର

ନେପଥ୍ୟରେ ବଉଳ ଗଛର ପେଛି ପେଛି ରୂପା ଫୁଲର ଗରାକୁ ଘଷିମାଜି କିଛି କିଛି କହରିଆ ଝାପ୍‌ସା ସ୍ମୃତିର ଅନ୍ୱୟ କରୁଥିଲା ସେ ।

କୁଆଡେ ଏମିତି ଚନ୍ଦ୍ରସମ୍ଭବା ଗୈରିକ ରାତ୍ରିର କଳ୍ପନା ବିଳାସରେ ହଠାତ୍ ଦିବ୍ୟଜ୍ଞାନର ଉପୋଦ୍‌ଘାତରେ ଉଦ୍ଦାଳକ କହିଥିବେ ''ତତ୍ତ୍ୱମସି ଶ୍ୱେତକେତୋ ।'' ସର୍ବେଶ୍ୱର ଯେ କ'ଣ କହିବ କହିବ ବୋଲି ହଉଚି ଶୁଣାଯାଉ ।

ବିନ୍ଧ୍ୟା ସଙ୍ଗେ ବାହାଘରର ଅଳ୍ପଦିନ ପରେ ସୁଖର ଅନ୍ୱେଷରେ ବିଚକ୍ଷଣ ଘଟଣାଟିଏ ଘଟିଲା । ସେଇଥିରୁ ତାର ଜ୍ଞାନ ପ୍ରସାରିତ ହେଲା ଓ ସତ୍ୟ ଉଦ୍‌ଘାଟିତ ହୋଇଗଲା ପରି ଲାଗିଲା । ଦୈହିକ ସୁଖ ଖୋଜି ଖୋଜି ନୟାନ୍ତ ହୋଇ ସେ ଏକଦା ମନସ୍ଥ କଲା ଯେ ଏମିତି ଏକ ମୃତ୍ୟୁର କଟିତଟକୁ ଆଲିଙ୍ଗନ କରିବ, ଯାହାକି ଋଷି ଓ ମନୀଷୀମାନଙ୍କ ନିର୍ବାଣ ଲାଭ ପରି ପରମ ରସାନୁଭୂତିକୁ ଟପିଯିବ । ଜୀବନଯାପନର ଆନନ୍ଦ ଓ ସଂପୂର୍ଣ୍ଣ ଉତ୍ସର୍ଗ ଓ ତ୍ୟାଗର ମୃତ୍ୟୁ କେତେ ପାଖାପାଖି ତା ପରଖିବାକୁ ଯେତିକି ମାନସିକ ପ୍ରସ୍ତୁତି ଆଉ ହିମ୍ମତ୍ ଦରକାର, ତାହା ତାଠି ଥିଲା ଅଳବତ । କେତେ ଅହଙ୍କାରୀ ସୌକୁମାର୍ଯ୍ୟ ଲାବଣ୍ୟ ଆଉ ବୀର୍ଯ୍ୟ ଭରପୂର ଥିଲା ତା'ର ଦେହରେ ପ୍ରେମ, ପ୍ରଣୟ, ସମର୍ପଣ ଯେକୌଣସି ଉଚ୍ଛୃଙ୍ଖଳତାର ପରମାୟୁ ଯେ ବିଳମ୍ବିତ ନୁହେଁ, ଏହା ଜାଣିଥିବା ସତ୍ତ୍ୱେ ବି ସେ ଧରି ନେଇଥିଲା ଚିତାପଟ ତା'ର ଇ ହେବ ।

ମନ-ମୁକୁରରେ ଗୋଟାଏ କଦାକାର ଶ୍ୱାପଦର ଛାଇ । ଲାଗୁଚି ଯେମିତି ସେ ଦ୍ୱନ୍ଦ୍ୱକୁ ପ୍ରଥମ କରି ଚିହ୍ନୁଚି । କାମନାର ପ୍ରଥମ ବସନ୍ତର ପୁଷ୍ପ ଏଇ ବିନ୍ଧ୍ୟା । ତାପରେ ମନେ ପଡୁଚି ସାଥୀ ସହୋଦର, ବନ୍ଧୁ ସୋଦର ସମସ୍ତେ କ୍ରମେ କ୍ରମେ ଦୂରେଇ ଯିବାର ଦୁଃଖାନ୍ତ ଚଳଚ୍ଚିତ୍ରର ସିନେରି ଓ ସ୍ୱପ୍ନପରି ଲାଗୁଥିଲେ ବି ଏଇ ଘଟଣାଟି ଯେ ଗୋଟିପଣ ସତ୍ୟ, ଅଥଚ ସିଏ ଯାହାକୁ କହିଛନ୍ତି ସିଏ ହସିଚି । ଶୁଣନ୍ତୁ । କଥାଟା ଏମିତି ହେଲା ଏତେ ବଡ ଡଙ୍ଗାଟାଏ କେବେହେଲେ ସେ ଦେଖି ନଥିଲା । ଡଙ୍ଗା ଉପରେ ହାତୀଦାନ୍ତର କମକୁଟ ଆଉ କଇଁଆ ପାଣିରେ ମଜା ପିଉଳର ଚକଚକିଆ ଛାତ । ତା' ଉପରେ ବସିଛନ୍ତି ମୌନ ହୋଇ ସାତୋଟି କଣ୍ଢେଇ । ସେମାନେ ମୁହଁ ତଳକୁ କରିଛନ୍ତି । ଡଙ୍ଗା ଘର ତକତା ଉପରେ ପଡିଛି ବାଘମନ୍ଦାରି ପାଲି, ଆଗ୍ରହ ନ ଥିଲା ଭଳି କଣ୍ଢେଇ ଦି'ଟା ବାଘ-ଗୋଟାଳି ଆଉ ଛେଳି-ଗୋଟାଳିକୁ ଏପାଖ ସେପାଖ ବିଣି ଆଙ୍ଗୁଠିରେ ଠେଲୁଛନ୍ତି, ଡଙ୍ଗା ଉପରେ ଚାହୁଁଆ ତଳକୁ କେତେ ସୁନ୍ଦର ଘର ବଖୁରାଟିଏ । ସେ ଭିତରକୁ ସର୍ବେଶର ପଶିବ ପଶିବ ବୋଲି ହେଲା । ଦେଖିଲା କେହି ତାକୁ ଅନେଇ ନାହାନ୍ତି । ଖୋଦ ଡଙ୍ଗା ଯେ ଚାହିଁଚି ଅନ୍ୟମନସ୍କ ହୋଇ କୂଳହୁଡା ଉପର ବର ଓହଳକୁ । ଓହଳରେ ଝୁଲୁଛନ୍ତି ନାଉରୀମାନେ । ଏଇମାନେ ଡଙ୍ଗା ଚଳେଇ ବିଦେଶୀ ପର୍ଯ୍ୟଟକମାନଙ୍କୁ ଆଣି ନଈପାରି କରାଉଥିଲେ । ଅଣ୍ଟାରେ ବରଓହଳ ବନ୍ଧା ହୋଇ ଝୁଲୁଥିବା ଏଇ ନାଉରୀମାନଙ୍କର ରୋଗିଣା ପପ୍‌ସା ମୁହଁସବୁ କଣ୍ଢେଇମାନଙ୍କୁ ଆଖି ମିଟିକା ମାରି ଜିଭ ହଲେଇ ଖତେଇ ହଉଚନ୍ତି । ସର୍ବେଶ୍ୱରକୁ ଦେଖି ଝିଅଟି ଡଙ୍ଗା ଘର ଭିତରେ ପଶି ଦୁଆର କିଳିଦେଲା । ଭିତରେ ଚାରିଆଡେ ଆଖି ପକେଇ ଦେଖନ୍ତି ଯେ ଶହେ ପାଖାପାଖି ବିଭିନ୍ନ ରକମର ଘଣ୍ଟା ଝୁଲୁଚି କାନ୍ଥରେ । ଲଟକିଚି କବାଟ ଝରକାର ହୁଗୁଳା ପେଚରେ, ତରଳି ବୋହି ପଡୁଚି ଟେବୁଲ ଦାଢରେ ଓ ତଉକିର ହାତ ଦାଢରେ ଇତ୍ୟାଦି । କେଇଟା ଘଣ୍ଟାର ପେଣ୍ଡୁଲମ ଦୋହଲୁଚି । ବହୁପ୍ରକାର ଶବ୍ଦର ସ୍ୱରସଞ୍ଚାର ହେଉଚି, ଏକାବେଳକେ ଶହେଟା ଘଣ୍ଟାର ଟିକ୍ ଟିକ୍ ରୁନୁଝୁଣୁ ଟୁକ୍‌ଟାକ୍‌ର ଅସଂହତ ସ୍ୱର ତରଙ୍ଗ, ବିଚିତ୍ର ଏ କ୍ୟାକ୍‌ଫୋନି । କେତେ ସୁନ୍ଦର ସୁନ୍ଦର ଡିଜାଇନ୍ କାରିଗରୀ କୁଶଳତାର ନମୁନା ଏଇ ଅସୁମାରୀ ମଧ୍ୟ ଯୁଗୀୟ ଘଣ୍ଟାଗୁଡିକ ଆହା !

ମୁଣ୍ଡ ଉପରେ କାଚର ଚନ୍ଦ୍ରାତପ । ତା'ଉପରେ ଘାଗୁଡିଇଗା ଲହୁଣି ପରି ପାହୁଲଗୁଡିଏ ଝମ୍ ଝମ୍ କରି ପଡିଲା । ହେଇ ଦେଖୁନା, ତା ଉପରେ କଣ୍ଢେଇମାନେ ଛିଡା ହେଇ ନାଚିଲେଣି । ଢାଏଁଢାଏଁକରି ପ୍ରକାଣ୍ଡତମ ଢେଙ୍କେବାପାଙ୍କ ଅମଳର ସ୍ମାରକୀ ପେଣ୍ଡୁଲମ୍ ଘଣ୍ଟାରେ ବାରଟା ବାଜିଲା । ପରେଡ କମାଣ୍ଡାଣ୍ଡଙ୍କ ଆଦେଶ ତାଲିମ୍ କିଲାଭଳି ବାକି ସବୁ ଘଣ୍ଟା ଝାଏଁ ଝାଏଁ କରି ବୋବାଳି ଛାଡିଲେ ଓ ସମଗ୍ର ପରିସରକୁ ଜଣାଇ ଦେଲେ ଯେ ପୃଥିବୀର ଅଣ୍ଟାର ଘାଗୁଡି ମାଳରେ ଥରୁଟିଏ 'ଯାବୁଳିଯା' - ଆହ୍ନିକ ଗତି ସମାପ୍ତ ହେଲା । ଏତିକିବେଳେ ସର୍ବେଶ୍ୱର ଆତଙ୍କ ସବୁଗୁଡିକ ଘଣ୍ଟା ଚାରିପଟୁ ପରେଡ୍ କରି ଘେରିଆସି ତାର ଅବୟବକୁ ଚାପି ଧରିଲେଣି ସେତେବେଳକୁ ସିଏ ପୁରା ଅଣନିଶ୍ୱାସୀ ହେବା ଉପରେ - ସେଇ ସମୟରେ ଡଙ୍ଗାର ଡୋର ଫିଟିଗଲା ବରଗଛ ଗଣ୍ଡିରୁ । ଚାହୁଁ ଚାହୁଁ ଡଙ୍ଗା ଧାଇଁଚି ପାଣି କାଟି ବଙ୍କେଇ ସର୍ ସର୍ ସାପ ପରି ।

ଝରକାବାଟେ ପାହାନ୍ତି ପବନ ଢୁକଚି । ଗୁଡିଏ ଯୁଗ ହାଲୁକା ନିଆଁରେ ସିଝି ସିଝି ଖୁଆପିଣ୍ଡ ପରି ମିଠା ଅନ୍ଧାରର ମନ୍ୱନ୍ତର ପାଲଟିଛନ୍ତି ଆଉ ତାରି ଭିତରୁ ବହୁଦିନରୁ ଅନାଘ୍ରାତ କାଷ୍ଠତଣ୍ଟୀର ମୁକୁଳା ବାସ୍ନାକୁ ଉଦ୍ଧାର କରି ଖୁବ୍ ଆଟ୍‌ରେ ସିଏ ଏକ କ୍ଷେପା ମାଇଲେ ନଈକୂଳକୁ । ଯେଉଁ ଦି'ଜଣ ସେଠି ବାଲି ଉପରେ ଜାକିଜୁକି ହୋଇ ବସିଥିଲେ ଓ ମୁହଁରେ ମୁହଁ ଲଦି ଲାଜରକ୍ତ ଆବେଗରେ ଓ ସାରା ବିଶ୍ୱକୁ ଆତଙ୍କିତ କରିଥିଲେ, ତାଙ୍କରି ଆଗରେ ଠିଆହୋଇ ସର୍ବେଶ୍ୱର ସେଇ ଆଦିମ ପ୍ରଶ୍ନଟି ପଚାରି ଦେଲେ 'ମୋ ସ୍ତ୍ରୀ ଏଠି କ'ଣ କରୁଚି ?

ସମୁଦ୍ର ଗର୍ଭରେ ବୁଡି ଯାଉଥିବା ଡଙ୍ଗାକୁ କାତର ଚାହାଣୀରେ ଚାହୁଁ ଚାହୁଁ ସେ ଝପଟି ଆସିଲେ ଏଇ ଦି'ଜଣଙ୍କ ଦିଗରେ ଆଉ କୁଣ୍ଢେଇ ଧରିଲେ ଦିଓଟି ଛାଇକୁ ଦି' ବାହୁରେ । ଗୋଟିଏ ତ ଅଲବଦ୍ ବିନ୍ଧ୍ୟା, ଅନ୍ୟଟି କିଏ ! ଶୁଆ ନା ଶାରୀ ନା କୁଆ ନା କୋଇଲି, ନା ପ୍ରେତ ନା ପିଶାଚ, ନା ଦାରୁ ନା ଦେବତା ! କିମ୍ଭୁତ ଏ ଖଣ୍ଡିତ ଓ ଭୟାର୍ତ୍ତ ବିଶ୍ୱରୂପ ।

ଯେହେତୁ ଡଙ୍ଗାଟି ସମୁଦ୍ର ଭିତରେ ବୁଡୁଚି ଓ ସେ ନିଜେ ଡଙ୍ଗା ଭିତରେ ନାହାନ୍ତି ଓ ଡଙ୍ଗା ବୁଡିବାର ଆତଙ୍କ ସ୍ୱତନ୍ତ୍ର ପଠା ଉପରେ ଉପବିଷ୍ଟ ଲୋକକୁ ଛୁଇଁବାର କୌଣସି ଯୁକ୍ତି ବା ସମ୍ଭାବନା ନାହିଁ ଓ ତାଙ୍କର ଭବପାରାବାରରେ ଅନୁଗାମିନୀ ଅଲିଅଳୀ ପତ୍ନୀ ଯାହା ସାଙ୍ଗରେ ବସି ସନ୍ଦେହଜନକ ଭାବେ ଟୁପୁରୁ ଟାପୁରୁ ହେଉଛନ୍ତି ସିଏ ଏକ ଅବିଶ୍ୱାସ୍ୟ ଅଣାକାର ଅର୍ବାଚୀନ 'ସମ୍ବନ୍ତି' - ଏଇ କଥା ତାଙ୍କ ମନରେ ପ୍ରକଟିତ ହୁଅନ୍ତେ ସେ ବୋକାଙ୍କ ଭଳି ହିଃ ହିଃ ହିଃ ହିଃ ହସି ଉଠିଲେ । କେହି କିନ୍ତୁ ଏମିତି କଥାକୁ ସତ ବୋଲି ଭାବିବେ ନାହିଁ । ନ ଭାବନ୍ତୁ ।

ବଢିପାଣି ଘରଦ୍ୱାର ହିଡଜମି ହାଣ୍ଡିକୁଣ୍ଢେଇ ସବୁକୁ ଆବୋରି ଭସେଇ ନେଇଚି ନଈଗର୍ଭକୁ । ତାଙ୍କ କମଳତଳେ ସୁଅପାଣି ଚାଲିଯାଇଛି । ସିଏ କିନ୍ତୁ ଭାସିଯାଇ ନାହାନ୍ତି । ସଂସାରର ଲୀଳା ଖେଳା ସରିଲା ପରେ ଆମ୍ଭମାନେ ଭୂତ ହୋଇ ବୋଧେ ତାଙ୍କ ପରି ମନସର୍ବସ୍ୱ କାମନା ଆଉ ଦର୍ଶନସର୍ବସ୍ୱ ହୁଅନ୍ତି ।

ଅଠର ବର୍ଷ ଏଇ ଗୋଟାଏ ଠାଣିରେ ଉପବିଷ୍ଟ ସର୍ବେଶ୍ୱର । ଢେର ରାତିରେ ଦିନେ ପୋଖରୀ କୂଳରୁ ଶୁଖିଲା ପତ୍ର ଖସ୍ ଖସ୍ ଶବ୍ଦ ଆସିଲା, ଆଉ ସେଇଆଡୁ ଧାଇଁ ଧାଇଁ ଆସିଲେ ଚୋର ତିନିଟା । ଜଣେ ନିଶୁଆ ବାଙ୍ଗରା ଚୋର ତାକୁ ତାଗିଦ୍ କରି କହିଲା, ''ଦେଖ ସାବଧାନ, କାହାକୁ କହିବୁନି । ଏଇ କମଳ ତଳେ ଟଙ୍କା ଆଉ ଗହଣା ରହିଲା । ପୁଲିସ୍ ଖୋଜୁଚି । କୁକୁର ଲଗେଇଚି । ଆମେ ଆସି ଚାରି ଛଅ ଦିନ ପରେ ନେଇଯିବୁ । ଯଦି କାହାକୁ କହିବୁ ମୁଣ୍ଡ ଫଟେଇ ଦେବି ।'' ଘଣ୍ଟାକ

ମରେପୁଲିସ୍ଆସିପଚାରିଲା- ''ଦେଖିଚୁରେନିନିଟାଲୋକଏଇବାଟେଗଲେ,କ'ଣଧରିଥିଲେ ?'' ମୁଣ୍ଡ ଟୁଙ୍ଗାରୀ ସର୍ବେଶ୍ୱର କହିଲେ - ସେ କିଛି ଜାଣନ୍ତି ନି, କିଛି ଦେଖି ନାହାନ୍ତି । ପୁଲିସ ଗଲା । କିଛିଦିନପରେଚୋରମାନେଆସିତାଙ୍କମସିଆକମଳତଳୁଟଙ୍କାସୁନାନେଇକରିଗଲେ ।ଗଲାବେଳେ ତା ପାଟିରେ ମୁଠେ କୋରା ଖଇ ଭର୍ତ୍ତିକରି ଦେଇଗଲେ ତାଙ୍କର ବାଧ ସଚ୍ଚୋଟପଣିଆର ପରୀକ୍ଷା ପାଇଁ ।

ମଠର ଟୋକା ବାଆଜି ଦି'ଜଣ ଓ ଆଉ ଜଣେ ଘୋଡାସବାର ଲୋକ ଦିନେ ରାତିରେ ଗୋଟିଏ ଅଳ୍ପ ବୟସ୍କ ମାଇପିକୁ ବାନ୍ଧିଆଣି ତା'ର ଆଗରେ ଉଲଗ୍ନ କଲେ । ତା'ର କନ୍ଦାକଟା ସତ୍ତ୍ୱେ ତାକୁ ଧର୍ଷଣ କରିବାରେ ଲାଗିଲେ । ତା'ରି କୁଡିଆ ଖୁଣ୍ଟରେ ବନ୍ଧା ହୋଇଥିବା ଘୋଡା ଏଇ ଦୃଶ୍ୟ ଦେଖି ଓ ସ୍ତ୍ରୀ ଲୋକଟିର ବିକଳ ଚିତ୍କାର ଶୁଣି ଦାନ୍ତୁରୀ ହସିବା ଓ କାନ୍ଦିବା ସମାନ ପ୍ରମାଣ କରି, ଖୁବ୍ ହ୍ରେଷା ରାଗ କଲା ଓ ଚମ ଦଉଡିକୁ ଓଟାରି ତା' କୁଡିଆଟିକୁ ଦୋହଲାଇ ଦେଲା । ସେମାନେ ପଳେଇଗଲା ପରେ ମାଇପିଟି ସେମିତି ତଳେ ପଡି ରହି କିଛି ସମୟ ଛଟପଟ ହେଲା । ସକାଳ ହେଲାରୁ ସର୍ବେଶ୍ୱର ଦେଖିଲେ ଯେ ସେ ମାଇପିଟି ପୋଖରୀରୁ ଗାଧୋଇ ପାଧୋଇ ଓଦା ଲୁଗା ପିନ୍ଧି ଆସିଲା ତା' ପାଖକୁ, ଆଉ କହିଲା - ''ହଇରେ ଅଳପେଇସା କୋଡି, ଯା' ଦେଖିଲୁ କା'କୁ କିଛି କହିବୁ ନି । ନଇଲେ ଦେଖିଚୁଟି ଏଇ ଖଡ୍ଗ, ତାକୁ କଣା କରିଦେବି ।''

ସର୍ବେଶ୍ୱର ଏକୁ ଚିହ୍ନିଲା ପରି ହେଲେ । ପାଖ ଗାଁର ସବୁଠୁଁ ପଇସାବାଲା ଖାଉନ୍ଦର ବୋହୂ । ତା'ର ଗେରସ୍ତ ଆଗ ସ୍ତ୍ରୀର ପୁଅକୁ ସବୁ ଜମି ଲେଖିଦେବ କହିଲାରୁ ଏଇ ମାଇକିନା ତାକୁ ବିଷ ଦେଇ ମାରିଦେଲା ବୋଲି ଲୋକେ କୁହାକୁହି ହୁଅନ୍ତି । ହେଲେ, ସବୁ ଯନ୍ତାଳ ରୋଜି ଦିନ ସିଏ ମୁଠାଏ ଖେଚୁଡି ତା' ବେକରେ ବନ୍ଧା ହୋଇଥିବା ଥଳିରେ ଥୋଇ ଦେଇଯାଏ, ଆଉ କହେ - 'ନେରେ ଅଳପେଇସା - ଖା-ମର କ'ଣ ଏମିତି ଚୂଲୀରଡ ପରି ଅନଉଚୁ ।'

ଆଉରି ବି ଦେଖିଚି କେତେଥର ରାତିରେ ଲୋକ ଧସ୍ତାଧସ୍ତି ହୋଇ ତା'ରି ଆଗରେ ଗଡିଆତଡିଆ ହେଇଛନ୍ତି । ଛୁରୀମାଡ ଠେଙ୍ଗାମାଡରେ ଜଖମ ହୋଇ ମରିଛନ୍ତି । ମଡାକୁ ଫିଙ୍ଗି ଦେଇଛନ୍ତି ଅଣ୍ଟାରେ ପଥର ବାନ୍ଧି ଏଇ ପୋଖରୀ ଭିତରେ । ତା'ପରେ ପୋଲିସ ହାକିମ, କେତେ କେତେ ବାବୁ ସାଇବ ଆସି ପଚାରିଛନ୍ତି - 'କ'ଣ ଦେଖିଚୁ, ଠିକ୍ ଠିକ୍ କହ ।'

''କିଛି ମୁଁ ଦେଖିନି । କିଛି ମୁଁ ଶୁଣିନି । କିଛି ମୋ' ସ୍ମୃତିରେ ନାହିଁ । ବାହାରର ଏ ବିଶ୍ୱ ମତେ ଦିଶେନି । ଯା' ଦିଶେ ସେସବୁ ଭେଲିକି । ମୋର ଦୃଷ୍ଟି ପୁରାପୁରି ଅନ୍ତର୍ମୁଖୀ ।'' ସମସ୍ତଙ୍କୁ ସେଇ ଏକା ଉତ୍ତର ।

ଯେ ବି ଏକ ଦୃଶ୍ୟ । କେତେ ନା କେତେ ଫୁଲମାଳ ମଣ୍ଡେଇ ଚକଚକିଆ ଖୋଲା ଗାଡିରେ ଶବଟିଏ ଆସିଲା ସଂସ୍କାର ଦେବାକୁ । ଆଉ ତା' ପଛେ ପଛେ ଅସୁମାରି ଲୋକ । ସୁଦ୍ଧ ଚନ୍ଦନ କାଠରେ ଏଇ ସମାଜପତିଙ୍କ ଶବ ପୋଡା ହେଲା, ଆଉ ଗାଡିଏ ଫୁଲ ପଡିଲା । ଫଟୋ ଉଠିଲା । ସମବେତ ନେତାମାନଙ୍କର ଦୁଃଖଶୋକ ମନ୍ତବ୍ୟ ସବୁ ପ୍ରେସ୍‌ବାଲା ଟିପିଲେ । ସମସ୍ତେ ଯାଇସାରିଲା ପରେ ଦି'ଜଣ ବେଶ୍ ହୃଷ୍ଟପୁଷ୍ଟ ଚିକ୍‌କଣ ବାବୁ - ଚାଳିପିଣ୍ଡା ତଳକୁ ଆସି ଫୁସୁରୁଫାସର ହେଲେ ।

'ଜୀବନଟା ସତରେ କଅଣ ?'

'କିଛି ନାହିଁ - ସବୁ ଖାଲି ମାୟା । କୋଉ କଥା ଆରମ୍ଭ ହୁଏ ନାହିଁ । କାହିଁକି ଲାଗିଛି ମଣିଷ- ପିଲାପିଚିକା ଘରଦ୍ୱାର ସମ୍ମାନ ସମ୍ପତ୍ତି ଅର୍ଜିବାକୁ ଛେଃ ।'

'ସତରେ ଏତେ ବଡ ଲୋକଟା ଚାଲିଗଲା ?'

'ତା' ଦସ୍ତଖତ ଥିବା ଷ୍ଟାମ୍ପ କାଗଜ ଡାଗଡିଆରରେ ରଖିଛଚି ? ଦରକାର ହେବ ।'

'ଆମ ଲୋକ ତ ଏବେ ମନ୍ତ୍ରୀ ହେଇଯିବା କଥା । କିନ୍ତୁ ପୁରୁଣା କାଗଜ ପୋଡିବାକୁ ହେବ । ପ୍ରମାଣ କରିବାକୁ ହେବ ଯେ ଏଇ ମହାତ୍ମା ତାକୁଇ ଦାୟାଦ ବୋଲି ଗ୍ରହଣ କରିଥିଲେ ଓ କହିଥିଲେ ରାଜ୍ୟଭାର ତା'ରି ହାତରେ ହିଁ ପ୍ରମାଦମୁକ୍ତ ରହିବ ।'

'କିନ୍ତୁ ଯୋଗାଡ କର । ସେ ଆର ଲୋକଟାକୁ ଯା ଆଗରୁ ନିପାତ କରିବାକୁ ହେବ ।'

'ତା ତ ହବ । ଯାହା ହଉ ଆମ ହାତରେ ଏଗାର ଶହ ଟନ୍ ଗହମ ରହିଯାଇଚି । ଯୋଗକୁ ମଲାଲୋକର ପାଟି ଫିଟେନି ।'

ଚାପା ଗଳାରେ ହାଲୁକା ହାଲୁକା ହସି ଏଇ ଦି'ଜଣ ବ୍ୟକ୍ତି କ୍ରମେ ଅପସୃତ ହେଲେ । ଗଲାବେଳେ ସର୍ବେଶ୍ବର ଆଡକୁ ଚାହିଁଦେଇ ବାଙ୍ଗରା ଲୋକଟି କହିଲା, 'ଘୁଙ୍ଗାଟା' ପରବାଏ ନାଇଁ । ତା' କମଳ ଉପରେ ସିଉକିଟିଏ ପଡିଲା । ସେଇଟିକୁ ଉଠେଇ ଥକିରେ ଭର୍ତ୍ତି କରିବାକୁ ହାତରେ ପ୍ରାଣ କାଇଁ !

ମୃତ୍ୟୁକୁ କି କେମିତି ଆଉ ଥରେ ମରାଯାଇପାରେ ! ଅସୁମାରୀ ଦୃଶ୍ୟ, ସ୍ବର, ଶବ୍ଦ, ଅସୁମାରୀ ଅନୁଭୂତି । ଦେହରେ ଅବୟବରେ ସିନା କାହାକୁ ସ୍ପର୍ଶ କରି ପାରିନି, କିନ୍ତୁ 'ବେଲାଢ ସେନ' ପରି ସେ ସବୁ ଦୃଶ୍ୟପଟ ସବୁ ଅନୁଭୂତିର ରୋମାଞ୍ଚକୁ, ସମଗ୍ର କୁରୁକ୍ଷେତ୍ର ଅଙ୍ଗନର ଜୀବନ-ଯୁଦ୍ଧକୁ ଅଙ୍ଗୀକାର କରିଛି । ଅଙ୍ଗେ ଲିଭାଇବା ପାଇଁ ଖାଲି ଆଖି କାନ ଆଉ ମନଷ୍କଷୁଟିଏ କ'ଣ ଯଥେଷ୍ଟ ନୁହେଁ ?

ଶେଷ କଥାଟି ହେଉଚି ସବୁଠୁଁ ତାଜୁବ୍ କଥା । ଇଏ ବି ଗୋଟିଏ ରାତି । ଝାପ୍‌ସା ଝାପ୍‌ସା ଚନ୍ଦ୍ରର ତ୍ବକ୍ । ଖାଲି ସିଲହଟ୍‌ରୁ ବାରି ହେଲା ଭଳି କ୍ଷୀଣ ଚନ୍ଦ୍ରିକାର ଆତରୁଷା-ପ୍ରଲେପ ଭୂଇଁ ଆକାଶ ଗଛ ବୃକ୍ଷ ପାଣି ପବନ ସବୁରି ତ୍ବକ୍‌ରେ । ଅସରାଏ ବର୍ଷାହେଇ ଛାଡି ଯାଇଚି । ଓଦା ମାଟିର ବାସ୍ନା ଝାଳୁଆ ଲୋମଶ ଦେହର ଗନ୍ଧ ପରି ମଟାଳ ଆଉ ମତୁଆଳ । ହେଲେ ଟୋପା ଟୋପା ପାଣିର ତରାଫୁଲ ଗଛ ଡାହିରେ ପତ୍ରରେ, ଫୁଲରେ, ପଥର, ମାଟି, ଗୋଡି, ସବୁଥିରେ ଝୁଲୁଚନ୍ତି । ଜଙ୍ଗଲର ଅଙ୍କା ବଙ୍କା ସରୁ ଚଲା ରାସ୍ତାଟିଏ ଆସି ଲାଗିଚି ଏଇ ଅରାଏ ଖୋଲା ଭୂଇଁକୁ, ଯେଉଁଠି ମରଣୋଉର ମଣିଷର ମଡା ପୋଡାହୁଏ । ସେଇ ରାସ୍ତାରେ ସାଇକେଲ ଚଡି ପାଞ୍ଚୋଟି ଛାଇ ତାରି ଆଡକୁ ଆସୁଛନ୍ତି । ସେମାନେ ପହଞ୍ଚିବା ମାତ୍ରେ ସାଇକେଲଗୁଡା ଧଡ ଧୁ ଦ୍ ପୋପାଡି ଦେଲେ, ଆଉ ବେଙ୍ଗ ଡେଇଁଲା ପରି କ୍ଷେପିବାକୁ ଲାଗିଲେ ମଶାଣି ଭୂଇଁରେ । ତାପରେ ସେମାନଙ୍କ ମୁଣିରୁ କ'ଣ ସବୁ ଲମ୍ବ ଲମ୍ବ ଡେଲଙ୍ଗୀ ପିଙ୍କା ପରି ଜିନିଷ ବାହାର କରି ସେଥିରେ ନିଆଁ ଧରେଇ ଶୋଷିବାରେ ଲାଗିଲେ କେତେ ରକମ୍ ଇଂରାଜୀ, ହିନ୍ଦି, ଓଡିଆ ଗୀତ ସବୁ ବେସୁରା ଲହରୀରେ ଗାଇଲେ । ତା' ସାଙ୍ଗକୁ ଦୂରବାଟରୁ ବିଲୁଆ କୋକିଶିଆଳଙ୍କ ରଡି ଓ ବେଙ୍ଗ କୁମ୍ଭାଟୁଆଙ୍କର ଚିତ୍କାର ଏକ ନୂଆ ବାଚାଳ ବାଙ୍ମୟତାରେ ଭରପୂର କରିଦେଲା ଏଇ ମଶାଣିଟିର ଅନ୍ୟଥା ବିବର୍ଣ୍ଣ କାହୁରା ପରିବେଶକୁ । ପୁଣି ବାହାରିଲା ସେମାନଙ୍କର ମୁଣିରୁ କେତେ ରକମର ବାଜା-ଲମ୍ବା କାହାଳୀ, ଯୋଡିନାଗାରା, ମସ୍ତବଡ ଏକତାର-ଯନ୍ତ୍ର ଓ ସୂତାରେ ଓହଳିଥିବା ଝାଞ୍ଜ ପରି ବାଜା ଇତ୍ୟାଦି । ସେସବୁ ବି ଉଚ୍ଛୃଙ୍ଖଳ ଭାବେ ବାଜିଲେ ଆଉ ଏକ ପାଞ୍ଚୋଟି ଛାଇ ଗୋଡ ହାତ ଛାଟି ବେଦମ୍ ନାଚିବାରେ ଲାଗିଲେ । ନିଠେଇ ଦେଖିବାରେ ଜଣାପଡିଲା ଯେ ଏଥିରୁ ଦି'ଜଣ ଝିଅପିଲା ଆଉ ତିନିଜଣ ପୁଅ । ପ୍ରାୟ ଘଣ୍ଟାଏ ହଟଗୋଳ ପରେ ଚକାଭଉଁରୀ ଖେଳରେ

ମୁଣ୍ଡ ଘୁରିଲା ପରି ସମସ୍ତେ ଏପାଖ ସେପାଖ ବୁଲି ବୁଲି ଭୂଇଁରେ ଚୌକାଦ୍ ମେଲି ଶୋଇଗଲେ । ଏତିକିବେଳେ ପୁଣି ଖଣ୍ଡେ ଭସାମେଘ ଅସରାଏ ବର୍ଷି ଦେଲା । ପାଞ୍ଚଜଣଯାକ ଚିହିକି ଠିଆ ହେଲେ ଆଉ ଚାରିଦମ୍ ପିକା ଟାଣିଲେ ଓ ପୁଣି ଖିଲ୍ ଖିଲ୍ ହସିଲେ । ଯା ପରେ ଜଣଙ୍କ ପଛେ ପଛେ ଜଣେ ଗୋଡିଆ ଗୋଡି ହେଲେ ଗଛଲତା ସନ୍ଧିରେ । ପୁଣି ଦେଖିଲାବେଳକୁ ଦିଇଟା ପୁଅ ଝିଅ ଅଦ୍ଭୁତ ଲଙ୍ଗଳା ହୋଇ କୁଜି ଆମ୍ବଗଛ ଡାହିରେ ଚଢିଛନ୍ତି ଆଉ ବାକି ତିନିଜଣ ମଶାଣି ପାଉଁଶ ଦାନ୍ତରେ ପଡିଥିବା ଖଣ୍ଡିଆ ଛାଞ୍ଚୁଣୀ, କୁଲା, ହାଣ୍ଡି ଖପରା, ଦରପୋଡା ହାଡଖଣ୍ଡ ଫୋପାଡୁଛନ୍ତି ତାଙ୍କରି ଉପରକୁ । କେଡେ ନିର୍ମାୟା ଆନନ୍ଦରେ ହସି ହସି ଗଡି ଯାଉଛନ୍ତି ସମସ୍ତେ ।

ଦିନ ରାତି ଭିତରେ ଏଇ ପ୍ରହରରେ ଘଣ୍ଟାଏ ଖଣ୍ଡେ ଆଖି ବୁଜି ବସନ୍ତି ସର୍ବେଶ୍ୱର । ସେତିକି ତାଙ୍କର ଶୟନ ବା ବିଶ୍ରାମ । ବଡ ବେଖାପ୍ ଲାଗୁଛି ତାଙ୍କୁ ଏ ସବୁ ଅଜବ ଦୃଶ୍ୟପଟ୍ଟର ନୀରବ ଦର୍ଶକ ଭାବେ ସେ ମଞ୍ଚରେ ଆଡଯାତ ଅଭିନେତା ଆଉ ଦର୍ଶକ ସମାନ ଭାବରେ ନାଟକ ହଲ୍ଲୀଷକରେ ନିବଦ୍ଧ ହେଲାପରି ମଜ୍ଜି ଯାଉଥିଲେ । ଏଥର କିନ୍ତୁ ସେ ହତବାକ୍ । ଜ୍ଞାନ-ଲିପସୁ ଓ ଜ୍ଞେୟର ଗୋଟିଏ ବୋଲି ମିଶାମିଶି ତଟସ୍ଥ ରୂପ । କ'ଣ ଖୋଜୁଛନ୍ତି ଏ ପିଲାମାନେ ? କ'ଣ ନ ପାଇ ଏ ମଶାଣି ପଦାକୁ ଧାଇଁ ଆସିଛନ୍ତି !

ତାଙ୍କର ଅଠର ବର୍ଷର ସ୍ଥାଣୁ ଅବରୋହୀ ସମୟର କରୁଣତମ ମୁହୂର୍ତ୍ତ ଆସିଗଲା ।

''ହଇରେ ପିଲାଏ - କାହିଁକି ଏମିତି ଉତ୍ପାତ ହଉଚ ?''

ତାଙ୍କ ସ୍ୱର ପୁଣି ପାଞ୍ଚଟିଯାକ ପିଲା ଚମକି ପଡିଲେ । ଆଉ ଲାଗି ଆସିଲେ ପାଖକୁ ସମସ୍ତେ ଦିଗମ୍ବର ଅଥଚ ପୂରା ଯୁଆନ; ସମ୍ଭବତଃ ଗଞ୍ଜେଇ କିମ୍ବା ତଦ୍‌ତୁଲ୍ୟ କିଛି ପ୍ରଗାଢ ନିଶାର ମାଦକତାରେ ଚୁର୍‌ଚୁର୍ ଓ ଟଳମଟଳ ।

''କିଓ ମଉସା । ତମେ କେତେବେଳୁଁ ?''

''ମୁଁ ଏଠି ବସିଚିରେ ବାପ ଅଠର ବର୍ଷ ।''

'ବସିଚ - ଆମ ସମସ୍ତଙ୍କୁ ବି ଅଠର ବର୍ଷ । କିନ୍ତୁ ଖାଲି ବସି ବସି ତମେ ଘୁମୋଉଚ କିଆଁ ? ନାଚୁନ ଆମ ସଙ୍ଗେ ?'

'ଆରେଗୋଡହାତସିନାଚଳୁନି, ମୁଁକିନ୍ତୁତମେନାଚିଲାବେଳେନାଚିଚିତମେହସିଲାବେଳେ ହସିଚି, ତମେ ନଙ୍ଗଳା ହେଲାବେଳେ ନଙ୍ଗଳା ହେଇଚି । ତମର ସଙ୍ଗେ ଗୀତ ଗାଇଚି, ଶୋଇ କିନ୍ତୁ ପାରୁନି ।'

'ଆମେ ବି ଶୋଇ ପାରୁନୁ ମଉସା । ନିଦ ହଉନି ।'

'ଯଦି ନ ହଉଚି, ପଳେଇ ଆସିଲ ମଶାଣିକି ଶୋଇବାକୁ ?'

'ଦେଖ ଅସଲ କଥାଟା ବୁଝ । କଲେଜରେ ମନ ଲାଗିଲାନି । ସିନେମା ଗଲୁ । ସିନେମାରେ ମନ ଲାଗିଲାନି । ଘରୁ ପଳେଇଗଲୁ ପୁରୀ । ସେଠି ବି ମନ ଲାଗିଲାନି, ପଳେଇ ଆସିଲୁ ହୋଟେଲକୁ - ମଦ ପିଇଲୁ - ଡିସ୍‌କୋ ଶୁଣିଲୁ ଓ ନାଚିଲୁ । ସେଠି ବି 'ବୋର' ସେଠୁଁ ପଳେଇ ଗଲୁ ହାଡ଼ୀ ଜଏଣ୍ଟକୁ । ବଟିକା ଆଣିଲୁ, ଗ୍ରାସ୍ ଆଣିଲୁ, ଗଞ୍ଜେଇ ଆଣିଲୁ । ଖୁବ୍ ଟାଣିଲୁ । ହେଲେ ନାଚ ଘରଗୁଡା କେମିତି କାନ ଅତଡା ପଡିଲା ପରି ଆଉ ରୁନ୍ଧି ହେଲା ପରି ଲାଗିଲା । ସବୁଠୁଁ ପଳେଇ ଆସିଲୁ । ସବୁଠୁ ଖସି ଆସିଲୁ । ବାପାଙ୍କ ପକେଟ୍ ମାରିବାକୁ ଗଲୁ, ପଇସା ନାହିଁ । ବୋଉର ହାତବାକ୍‌ସ ଅଣ୍ଡାଳିଲୁ - ଅଳଙ୍କାର ସବୁ ବନ୍ଧା ପଡିଚି । ନିରୁପାୟ ହୋଇ ପାର୍ଟି ଅଫିସକୁ ଗଲୁ । ନିର୍ବାଚନ ପ୍ରସ୍ତୁତି

ଓ ପ୍ରଚାର ପାଇଁ ବା କାହାର ସଭାରେ କ୍ଷଣ ପୂରାଇବା ପାଇଁ ଆଗତୁରା ପଇସା ମିଳିଗଲା । ମାଳ କିଣିଲୁ । ଘର ଛାଡିଲୁ, ହୋଟେଲ ଗଲୁ । ହୋଟେଲ ଛାଡିଲୁ, ମଶାଣିକୁ ଆସିଲୁ । ସବୁଠୁଁ ପୋଖତ 'ଏ' କ୍ଲାସ ମସ୍‌ଗୁଲ ଜାଗା ଇଏ । କ'ଣ ବୁଝିଲ ! ହେଲେ ନିଦ କାଇଁ !'

ଖୁବ୍ ପ୍ରବଳ ଉତ୍ତରଳ ଉଦ୍ଦାମ ଜୀବନୀ ଶକ୍ତିର ନିଦ କାଇଁ ।

'ନିଦ ଖୋଜି ଖୋଜି ଘରୁ ଛାଡିଲ, ଭାଡି ଶୁଆ ପାଇଁ ଆସିଗଲା । ହେଇ ଦେଖ , ମୁଁ ଅଠର ବର୍ଷ ଶୋଇନି । ସମ୍ପୂର୍ଣ୍ଣ ଜାଗ୍ରତ ଆଉ ଆତ୍ମସ୍ଥ । ସତରେ କିନ୍ତୁ ମୁଁ ଶୋଇଚି ପୂରା ନିଦରେ, ପୂରା ଶୋଇ ବି ଶତକଡା ଶହେ ଜୀବନ୍ତ ଆଉ ପ୍ରାଣବନ୍ତ । ମୃତ୍ୟୁ ମୋ ପାଇଁ ଆଦୌ ଏକ ଅନ୍ୟ ଜଗତ ନୁହେଁ । ମରନ୍ତି କାହିଁକି ନିର୍ବୋଧମାନେ ! ମୃତ ବ୍ୟକ୍ତିମାନେ ପୁଣି ମରିବା କ'ଣ ଦରକାର ? କୁମ୍ଭକର୍ଣ୍ଣ ନିଦରେ ଟଳୁଥିବା ଲୋକ ପୁଣି ନିଦ କାହିଁକି ଖୋଜେ ରେ ପିଲାଏ ?'

ପୁଣି ସେ ତାଙ୍କୁ କହିବ ବୋଲି ହଉଚି, ତମ ପରି ମୋର ବି ଏବେ ସାଂସାରିକ ସବୁ ଭୋଗ ବିଳାସରେ ହାହୁତାଶରେ ସମାନ ଭାଗ, ସବୁ ସୁନ୍ଦର ତୃପ୍ତିର ଆଖି ଝଲସା ରୂପ, ସବୁ ମନମତାଣିଆ ବାସ୍ନାର ଘ୍ରାଣ, ସବୁ ଲେହ୍ୟ, ପେୟ ଚର୍ବ୍ୟ, ଚୋଷ୍ୟର ସ୍ୱାଦ, ସବୁ ପାଶବିକ କ୍ଷୁଧାର ପ୍ରଶମନ ଏଇ ଚିନ୍ତନସର୍ବସ୍ୱ ମନ-ମୁକୁରରେ ବିମ୍ବିତ, ପ୍ରଖର ବେଗବାନ ଅବୟବ-ବିମୁକ୍ତ ମନ ଚାରି ଦିଗରେ ଏବେ ମଧ୍ୟ ବ୍ୟାପି ପାରୁଛି । ତେବେ ଚିରନ୍ତନ ଚେତନାର ଜୀବନ ଆଉ ଚିରନ୍ତନ ଦେହାତୀତ କାମନା ସଂବୃତ୍ତ ମୃତ୍ୟୁ ଭିତରେ ତଫାତ୍ କ'ଣ !

ପିଲାମାନେ ତଥାପି ତଟସ୍ଥ ହେଇ ଠିଆ ହେଇଥିଲେ । ତାଙ୍କ ଭିତରେ ବିସ୍ମୟରେ ତୁହାଁ ତୁହାଁ ଠରା ଠରି ହେଲେ । ଝିଅଟିଏ ପଚାରିଲା ଚାପୁଡା ମାରିଲା ଭଳି, 'ସତରେ ତମେ ଅଠର ବର୍ଷ ଏମିତି ଦାରୁଭୂତ ମୂରାରି ପରି ବସିଚ ?'

'ହଁ ଲୋ ଝିଅ ।'

'ତମେ ବଞ୍ଚିନ କି ମରିନ ?'

'ହଁ ଲୋ ଝିଅ ।'

'ତମେ ଶୋଇନ କି ଜାଗିନ ?'

'ଠିକ୍ କଥା ।'

'ତମକୁ ଉଠାଇ ପାଣିରେ ବୁଡାଇ ଦେଲେ କ'ଣ ହେବ ?'

'ଏଇ ମଶାଣିର ଅଙ୍ଗନରେ ବିଦେହୀ ନିଶାଚର, ପ୍ରେତ ପିଶାଚଙ୍କ ଭଳି ମୁଁ ବି ସବୁଦିନ ଉନ୍ନିଦ୍ର ରହିବି ଆଉ ଖୋଜୁଥିବି -'

'ନିଦ-ଏଇଆ ନା ?' ଝିଅଟି ତାଙ୍କ ମୁହଁରୁ କଥା ଛଡେଇ ନେଇ ହୋ ହୋ ହୋଇ ହସିବାରେ ଲାଗିଲା, ଆଉ ସମସ୍ତେ ନଈବନ୍ଧ ଅତଡା ଖସିଲା ଭଳି ହସ ଲହଡିରେ ଲୋଟିଗଲେ ।

ଏଇ କାବ୍ୟିକ ମୁହୂର୍ତ୍ତଟିରେ କିନ୍ତୁ ସର୍ବେଶ୍ୱରଙ୍କ ଆଖି ପ୍ରଥମ ଥର ପାଇଁ ଜକେଇ ଆସିଲା, ଆଉ ଲୁହ ଦି' ବୁନ୍ଦା ଝରି ପଡିଲା ତାଙ୍କ ତୁଣ୍ଡିବନ୍ଧା ଖାଦ୍ୟ ପାତ୍ରରେ ।

'ହେଲା ପିଲାଏ, ଏତିକି ହେଲେ ଧର୍ମ୍ମକର । ମୋତେ ପୋଖରୀ ଭିତରକୁ ଫୋପାଡି ଦିଅ । ଥରେ ମୁଁ ବିଶ୍ୱର ଆରପାଖଟା ହେଲେ ଦେଖେ ।'

ପିଲାଏ କେହି କିଛି ନ ଶୁଣି ସେତେବେଳକୁ କଳରୋଳ କରି ସାଇକେଲ ଚଢି ଖୁବ୍ ବେଗରେ ଉଭାନ୍ ହେଇ ସାରିଥିଲେ ।

# ରାଜକନ୍ୟାର ଦୁଃଖ

ବିଭୂତି ପଟ୍ଟନାୟକ

ପ୍ରଥମ ଦେଖାରେ ତାକୁ ଚିହ୍ନିପାରି ନଥିଲି । ଚିହ୍ନିବା ସହଜ ନଥିଲା । ସାତ-ଆଠ ବର୍ଷର ବିସ୍ମୃତିର ଧୂଳି ମାଟି ଜମିଯାଇ ସବୁ ଅସ୍ପଷ୍ଟ, ଅଦୃଶ୍ୟ କରି ଦେଇଥିଲା ।

ସେ ଖୁବ୍ ଲମ୍ବା ହୋଇଯାଇଥିଲା । ତରଙ୍ଗିତ ଯୌବନର ମାଂସଳ ଲାବଣ୍ୟତାକୁ ପରିପୂର୍ଣ୍ଣ ଯୁବତୀ କରିଦେଇଥିଲା । ଈଷଦ୍ ନୀଳ ଆଖି ଡୋଳା ଆଉ ଗହଳ ଭ୍ରୂଲତାର ଅସ୍ଥିର ଆଲୋଡନରେ ଏପରି ଏକ ବନ୍ୟହରିଣୀର ଚଞ୍ଚଳତା ଫୁଟି ଉଠୁଥିଲା ଯେ ମୁଁ ସ୍ଥିର ଭାବରେ କିଛି ସମୟ ତା' ମୁହଁକୁ ଚାହିଁ ଚିହ୍ନିବାର ଚେଷ୍ଟା ମଧ୍ୟ କରିପାରୁ ନଥିଲି ।

ବର୍ଣ୍ଣ୍ୟଝରଣା ଭଳି ଥିଲା ତା'ର ହସ । ମୁଁ ଯେ ତାକୁ ଚିହ୍ନିପାରୁ ନାହିଁ, ଏଇଟା ଯେପରି ଥିଲା ତା'ପାଇଁ ଖୁବ୍ ବିସ୍ମୟ ଆଉ କୌତୂହଳର କଥା !

ତା'ପଛପଟେ ଠିଆ ହୋଇଥିବା ଲଜ୍ଜା-କୁଣ୍ଠିତ, ଅପ୍ରତିଭ ତରୁଣଟି ଆଡକୁ ମୁହଁ ବୁଲାଇ ସେ ମତେ ତା'ର ଗଭାରେ ଖୋସି ଥିବା ଲାଲ୍ ଫୁଲ ଗୁଚ୍ଛର ସୌନ୍ଦର୍ଯ୍ୟ ଦେଖାଇଲା ।

ତା'ପରେ ସେଇ ଯୁବକକୁ ଲକ୍ଷ୍ୟକରି କହିଲା - ଦେଖ୍, ବାବୁ ମତେ ଚିହ୍ନି ପାରୁ ନାହାଁ. କି ମଜା !

ତା'ପଛରେ ଠିଆହୋଇଥିବା ଯୁବକକୁ ମଧ୍ୟ ମୁଁ କେବେ ଆଗରୁ ଦେଖିଥିବା ଭଳି ମନେ ପଡୁନଥିଲା ।

ମୁଁ କହିଲି - ଚିହ୍ନା ଅଚିହ୍ନାରେ କ'ଣ ଅଛି ? ମତେ କହ - ମୋ ପାଖରେ ତୋର କ'ଣ କାମ ?

ଏଥର ସେ ଶ୍ୟାମାଙ୍ଗୀ ଯୁବତୀ ଅର୍ଦ୍ଧ-ମୁକୁଳିତ ହସର ଗୋଟିଏ ସ୍ତବକ ତା' ତଳଓଠରେ ଧରିରଖି ଚୁପ୍ ହୋଇ ଠିଆହୋଇ ରହିଲା ।

ଯୁବକଟି ଗଳାଝାଡି କହିଲା - ସାର୍ ! ମାଳ ମୋର ସ୍ତ୍ରୀ । ତା'ର ମାଆ କୁଆଡେ ଆପଣଙ୍କ ଘରେ ବାସନ ମାଜୁଥିଲା । ତା' ବାହାଘରକୁ ଆପଣ ଗୋଟାଏ ଶାଢୀ ଦେଇଥିଲେ ...... କାଳେ ଆପଣ ତାକୁ ଚିହ୍ନି ପାରିବେ ନାହିଁ ବୋଲି ସେ ସେଇ ଶାଢୀ ପିନ୍ଧି ଆସିଛି ।

ମାଳ !

ଇଏ ଅପର୍ତ୍ତି ମାଝୀର ଝିଅ ମାଳ !

ମୁଁ ଏକ ମୃଦୁ ଧକ୍କା ଖାଇଲା ଭଳି ଚମକି ଉଠି ତା'ପରେ ନିଜକୁ ସମ୍ଭାଳି ନେଲି । ମୋ ମୁହଁର ଭାବାନ୍ତର ଦେଖି ମାଳର ଓଠରେ ସ୍ଥିର ବିଦ୍ୟୁତ୍ ରେଖା ଭଳି ଅଟକି ରହିଥିବା ସେଇ ଅର୍ଦ୍ଧ-ମୁକୁଳିତ ହସ ଧୀରେ ଧୀରେ ତା'ର ସାରା ମୁହଁକୁ ସଂପ୍ରସାରିତ ହୋଇଗଲା ।

ସେ ଚଟ୍‌କିନି ମୋ ପାଦତଳେ ଗୋଟାଏ ମୁଣ୍ଡିଆ ମାରି ତା' ବରକୁ କହିଲା :

- ଗଛ ଭଳି ଠିଆହୋଇ ରହିଲୁ କ'ଣ, ବାବୁକୁ ପ୍ରଣାମ କର ।

ମୁଁ ଥାଉ ଥାଉ କହୁ କହୁ ଚିପା ପ୍ୟାଣ୍ଟ୍ ପିନ୍ଧିଥିବା ସେଇ ରୋଗା ଚେହେରାର ଯୁବକ ମୋ ପାଦ ଛୁଇଁ ପ୍ରଣାମ କଲା ।

ସେତେବେଳକୁ ବୋଉ ଆସି ମୋ ପଛପଟେ ଠିଆ ହୋଇଥିଲା ।

ମୁଁ ତାକୁ କିଛି କହିବା ଆଗରୁ ସେ କହିଲା -

- କିଏ ? ସାବୀର ଝିଅନା ! କେତୁଟାଏ ହୋଇଗଲୁଣି ଲୋ ! ତୋ ପାଖରେ କିଏ ? ତୋ' ବର ? ପାଖକୁ ଆଇଲୁ - ମୋ ଆଖିକୁ ଭଲ କରି ଦେଖାଯାଉନି ।

- ଦେଖିଲ ବାବୁ ! ମାଆ ଆଖିକୁ ଦେଖାଯାଉନି - ତଥାପି ସେ ମୋ ଗଳାର ସ୍ୱର ବାରି ଚିହ୍ନି ପାରିଲା - ଆଉ ତମେ ?

ତା'କଣ୍ଠରେ କିଛି ପରିମାଣରେ ଅଭିମାନ, କିଛି ପରିମାଣରେ ଦୁଃଖର ଅବଶୋଷ ।

ମୁଁ ଅପ୍ରତିଭ ହୋଇ କହିଲି

ତୋର ସାତ ଆଠ ବର୍ଷ ହେଲା ଦେଖାନାଇଁ - ଚିହ୍ନିବି କେମିତି ?

- ବୋଉ ତ ଚାଲିଗଲା ଦୁଇ ବର୍ଷତଳେ । ଆମେ ନୂଆପଲ୍ଲୀରେ ରହୁଛୁ । ସେ ପାଖରେ ଗୋଟାଏ ବଡ ହୋଟେଲ ହୋଇଛି । ସେମାନେ ଯା'କୁ କାମରେ ରଖିବେ । ଇଲେକ୍ଟ୍ରି ମିସ୍ତ୍ରୀ କାମ । ତମେ ଗୋଟାଏ ସାର୍ଟିଫିକେଟ ଲେଖିଦିଅ ।

ମାଳ କଥା କହିସାରି ଚକାମାଡି ସିମେଣ୍ଟ ଖୁଣ୍ଟକୁ ଆଉଜି ବସିପଡିଲା ।

- କି ସାର୍ଟିଫିକେଟ ? ମୋ ସାର୍ଟିଫିକେଟ ହୋଟେଲ ଚାକିରୀ ପାଇଁ କ'ଣ ଦରକାର ?

- ଆମକୁ ତ କେହି ଚିହ୍ନି ନାହାନ୍ତି । ଅଜଣା ଲୋକକୁ ଚାକିରୀ ଦେବ କିଏ ? ଯାର ଚରିତ୍ର ଯେ ଭଲ .... ତମେ ତାକୁ ଚିହ୍ନିଛ.......... ଯା'ର ସ୍ୱଭାବ ଚରିତ୍ର ସମ୍ପର୍କରେ ସୁପାରିଶ କରି ଗୋଟାଏ କାଗଜ ଲେଖିଦିଅ -

ତା'ପରେ ତା'ର ବରକୁ ଲକ୍ଷ୍ୟ କରି କହିଲା - ଖୁଣ୍ଟ ଭଳିଆ ଠିଆହୋଇ ରହିଲୁ କାହିଁକି ? ବାବୁକୁ କହୁନୁ .........

ମୋର ଧାରଣା ହୋଇଥିଲା, ସମ୍ଭବତଃ ସେ ଇଲେକ୍ଟ୍ରି ମିସ୍ତ୍ରୀ ଭାବରେ ତା'ର କର୍ମ-ଦକ୍ଷତା ସମ୍ପର୍କରେ ଗୋଟାଏ ସୁପାରିଶପତ୍ର ଚାହୁଁଛି । ଇଲେକ୍ଟ୍ରି ମିସ୍ତ୍ରୀ ଭାବରେ ସେ ଭଲ କାମ ଜାଣେ କି ନାହିଁ; ତା' ମୋର ଜାଣିବାର କଥା ନୁହେଁ । ତେଣୁ ସେଭଳି ସାର୍ଟିଫିକେଟ୍ ଦେବା ମୋର ପକ୍ଷରେ ସମ୍ଭବ ନ ଥିଲା । କିନ୍ତୁ ମାଳର କଥାରୁ ବୁଝିଲି ସେ ତା'ର ସ୍ୱାମୀ ସମ୍ପର୍କରେ ଗୋଟାଏ କ୍ୟାରେକ୍ଟର ସାର୍ଟିଫିକେଟ୍ ଚାହୁଁଛି ।

ମୋର ଦ୍ୱିଧାଭାବ କମିଗଲା ।

ତଥାପି ତା'ର ଚରିତ୍ର ସମ୍ପର୍କରେ ସୁପାରିଶପତ୍ର ଲେଖିବା ଆଗରୁ ମୁଁ ତାକୁ ଲଘୁ ପରିହାସରେ କହିଥିଲି - ତୋ' ବର ଯାଦବର ସ୍ୱଭାବ ଚରିତ୍ର ଭଲ କି ନୁହେଁ; ଏକଥା ମୁଁ କେମିତି ଜାଣିବି ? ମଦ ତ ନିଶ୍ଚୟ ପିଉଥିବ - ଆଉ ଚୋରୀ-ନାରୀ....

ଜିଭ କାମୁଡ଼ିପକାଇ ମାଳ କହିଲା - ନାଇଁ ବାବୁ ! ଆଖି ଛୁଉଁଛି, ସେ ମଦପିଆ ବି ଛାଡ଼ିଦେଇଛି - ଥରେ ପିଇ କରି ଆସିଥିଲା ଯେ, ମୁଁ ତାକୁ ଘରେ ପୂରାଇଲି ନାହିଁ - ଭିତରପଟୁ ଟାଟି ଦେଇ ଦେଲି...

ତା'ର ଜିଭ କାମୁଡ଼ା ଆଉ ଆଖି ଛୁଆଁର ଭଙ୍ଗୀ ଭିତରେ ସାତ ଆଠ ବର୍ଷ ତଳର କିଶୋରୀ ମୂର୍ତ୍ତି ମତେ ଦିଶିଗଲା ।

ବାସନମଜା, ଘରପୋଛା, ଲୁଗାକଚା କାମ କରିବାକୁ ଆସୁଥିବା ତା'ର ମାଆର ଶାଢ଼ୀ କାନି ଧରି ସେ ଯେମିତି ଡରି ଡରି ଆମ ଘର ଭିତରକୁ ପଶୁଛି - ମୁଣ୍ଡରେ ଝାମ୍ପୁରା ଝାମ୍ପୁରା ବାଳ - ଆଖିର ଡୋଳା କଳା ରଙ୍ଗ ବଦଳରେ ଈଷତ୍ ନୀଳ - ବାମ ହାତରେ ଚିତାକୁଟା - ମାଆ ତା'ର ବାସୀକାମ କଲାବେଳେ ସେ ବୋଉ ପାଖରେ ବସି ରୁଟି କି ପାଉଁରୁଟି ଖାଉଛି.. ଗଲାବେଳେ ପଚାରୁଛି, ମତେ ତ ରୁଟି ଦେଲ - ଆଉ ମୋ ବୋଉପାଇଁ ?

ଅପର୍ତ୍ତି ମାଝି ଫୁଲବାଣୀର ଆଉ ଦଶଜଣ ଆଦିବାସୀଙ୍କ ଭଳି ଜୀବିକା ଅନ୍ୱେଷଣରେ କ୍ୟାପିଟାଲ୍ ଆସିଥିଲା । ସେତେବେଳକୁ ସାବୀର କୋଳ ଖାଲି । ମାଳ ଜନ୍ମ ହୋଇନି, ତା' ସାଙ୍ଗରେ ଆସିଥିବା ଆଉ ଅନ୍ୟ ଧାଂଡାଙ୍କ ଭଳି ସେ ରିକ୍ସା ଟାଣିବାକୁ କି ମାଟିକାମ କରିବାକୁ କ୍ୟାପିଟାଲ ଆସି ନଥିଲା । ଫୁଲବାଣୀରେ ସେ କିଛିଦିନ ବସ୍‌ର କଣ୍ଡକ୍ଟର ଥିଲା । ଅଚ୍ଚ ଅଚ୍ଚ ଡ୍ରାଇଭିଂ ଶିଖିଥିଲା । ଭୁବନେଶ୍ୱରରେ ସେ ହୋଇଗଲା ଗୁପ୍ତା ଟ୍ରାନ୍ସପୋର୍ଟ କମ୍ପାନୀ ମାଲିକ ସତୀଶ ଗୁପ୍ତାଙ୍କ ଜିପ୍ ଚାଳକ !

ସତୀଶ ଗୁପ୍ତା ଅପର୍ତ୍ତିକୁ ମୋଟା ଟଙ୍କାର ଦରମାରେ ଜିପ୍ ଡ୍ରାଇଭର ଭାବରେ ନିଯୁକ୍ତି ଦେଇଥିଲେ; କାରଣ ସେ ଥିଲା ଏକାନ୍ତ ବିଶ୍ୱାସୀ ଏବଂ ପ୍ରଭୁଭକ୍ତ । ତାର ଚରିତ୍ରର ଏହି ସୁଗୁଣ ପାଇଁ ତାକୁ ଯଥେଷ୍ଟ ମୂଲ୍ୟ ଦେବାକୁ ପଡ଼ିଥିଲା । ମିଷ୍ଟର ଗୁପ୍ତା ଥିଲେ ଜଣେ କୁଶଳୀ ଚୋରା ବ୍ୟବସାୟୀ । ଥରେ ଜିପ୍‌ରେ ବେଆଇନ୍ ଅଫିମ ଆଉ ଗଞ୍ଜେଇ ପ୍ୟାକେଟ୍ ଭର୍ତ୍ତି କରି ସେ ତାକୁ ଓ୍ୱାଲଟିୟର ପଠାଇଥିଲେ । ଚୋରା ଅଫିମ୍ କଥା ହୁଏତ ଅପର୍ତ୍ତିକୁ ଜଣା ନ ଥିଲା । କିନ୍ତୁ ତା'ର ମାଲିକର କଡ଼ା ନିର୍ଦ୍ଦେଶ କଥା ମନେଥିଲା । ଯେ କୌଣସିମତେ ଜିପ୍‌ରେ ଥିବା ପ୍ୟାକେଟ୍ ଓଡ଼ିଶା ସୀମାନ୍ତ ଅତିକ୍ରମ କରି ଓ୍ୱାଲଟିୟର ପହଞ୍ଚାଇ ଦେବାକୁ ହିଁ ହେବ । ପୋଲିସ୍ ବାଧା ଦେଲେ ମଧ ସେ ଯେପରି ଅଟକି ନ ରହେ ।

ପଲାଶାରେ ପହଞ୍ଚିବା ପୂର୍ବରୁ ହିଁ ସନ୍ଦେହ କରି ସଶସ୍ତ୍ର ପୋଲିସ୍ ସର୍ଚ୍ଚ କରିବା ପାଇଁ ଜିପ୍ ଅଟକାଇବାକୁ କହିଥିଲେ । ମାଲିକର ଆଦେଶ କଥା ସ୍ମରଣ ରଖି ସେ ପୋଲିସ୍ ଆଦେଶ ଅମାନ୍ୟ କରି ଜିପ୍ ଚଳାଇନେବାକୁ ଚେଷ୍ଟା କରିଥିଲା । ଫଳରେ ପୋଲିସ୍ ଗୁଳିରେ ପ୍ରାଣ ହରାଇଥିଲା ଅପର୍ତ୍ତି ମାଝି ।

ସେତେବେଳକୁ ବ୍ରାଉନ୍ ସୁଗାର କିମ୍ୱା ସେହିଭଳି ଅନ୍ୟ ମାଦକଦ୍ରବ୍ୟ ଓଡ଼ିଶକୁ ଆସି ନଥିଲା । ଅଫିମ, ଗଞ୍ଜାର ଥିଲା ବେଆଇନ ଅବକାରୀ ନିଶା ଦ୍ରବ୍ୟ । ମାଳର ବୟସ ସେତେବେଳ ପାଞ୍ଚ କି ଛଅ !

ସେଇ ମାଳ ତା'ର ସ୍ୱାମୀ ପାଇଁ ଗୋଟାଏ କ୍ୟାରେକ୍ଟର ସାର୍ଟିଫିକେଟ୍ ଚାହୁଁଛି ।

ଯାଦବକୁ ଜାଣି ନ ଥିଲେ ମଧ ମୁଁ ତାକୁ ଗତ ପାଞ୍ଚବର୍ଷ ଧରି ଜାଣେ ଏବଂ ସେ ଜଣେ ସତ୍, କର୍ମନିଷ୍ଠ, ସଚ୍ଚରିତ୍ର ଯୁବକ ବୋଲି ଉଲ୍ଲେଖ କରି ମୁଁ ଗୋଟାଏ ସୁପାରିଶ ପତ୍ର ଲେଖି ଦେଇଥିଲି ।

ଆନନ୍ଦରେ ସେ କାଗଜ ନିଜ ବର ହାତକୁ ବଢ଼ାଇ ଦେଇ ମାଳ କହିଥିଲା - ଦେଖିଲୁ, ମୁଁ କ'ଣ କହୁଥିଲି ! ବାବୁ ମୋ କଥା ଭାଙ୍ଗିଦେବେ ନାହିଁ । ଯା, ବାବୁଙ୍କ ପାଦତଳେ ଆଉ ଗୋଟିଏ ମୁଣ୍ଡିଆ ମାର୍ ।

ମାଳ ଆଉ ତା'ର ସ୍ୱାମୀ ଚାଲିଗଲା ପରେ କେଜାଣି କାହିଁକି ଅପର୍ତ୍ତି ଆଉ ସାବୀ କଥା

ମୋର ବାରମ୍ବାର ମନେ ପଡ଼ିଥିଲା । ଅନ୍ୟ କାମରେ ମନ ଦେବାକୁ ଚେଷ୍ଟା କରି ମଧ୍ୟ ମୁଁ ପାରୁ ନଥିଲି ।

ବୋଉ କହିଲା - ମାଳ ତା' ମାଆର ଠିକ୍ ଓଲଟା ଗୁଣ ପାଇଛି ! ସାବୀ ଯେତିକି ଶାନ୍ତ ଥିଲା, ମାଳ ସେତିକି ତେଜୀୟାନ୍ । ବରକୁ କାନ ଧରି ବସ୍ ଉଠ୍ କରାଉଛି । ଆଦିବାସୀ ଝିଅ ବୋଲି ମୋଟେ ଜାଣି ହେଉନି ।

ବୋଉର ଅନୁମାନ ଅନେକାଂଶରେ ସତ୍ୟ । ସାବୀ ଥିଲା ଅପର୍ତ୍ତିର ସେବା ଦାସୀ ଭଳି । ସ୍ୱାମୀକୁ ବୁଝାଉଥିଲା, କ'ଣ ଦରକାର ଜାତିଭାଇଙ୍କୁ ଛାଡ଼ି ଟ୍ରକ୍ କମ୍ପାନୀରେ ଚାକିରୀ କରିବା । ଅନ୍ୟମାନେ ମାଟିକାମ କରି ଭଲରେ ଚଳିଯାଉଛନ୍ତି । ଯଦି ନିହାତି ଡ୍ରାଇଭର ଚାକିରୀ କରିବା କଥା - ସରକାରୀ ବସ୍‌ରେ ଡ୍ରାଇଭର ହୁଅ । ମଟର କମ୍ପାନୀ ବାବୁ ମତେ ଭଲ ମଣିଷ ଭଳି ଜଣାପଡୁନି ।

ଅପର୍ତ୍ତି ସ୍ତ୍ରୀର କଥା ଶୁଣି ନଥିଲା । ସତୀଶବାବୁ କେବଳ ତାକୁ ଭଲ ଦରମା ଦେଉ ନ ଥିଲେ, ରହିବା ପାଇଁ ଘର ଆଉ ପିଇବା ପାଇଁ ମଦ ନିୟମିତ ଯୋଗାଇ ଥିଲେ । ଲୋଭରେ ପଡ଼ିଯାଇଥିଲା ଅପର୍ତ୍ତି । ସ୍ତ୍ରୀର କଥାରେ କାନ ଦେଇନଥିଲା । ତା'ର ଫଳ ତାକୁ ହିଁ ଭୋଗ କରିବାକୁ ହେଲା ।

ବାପା ବୋଉଙ୍କ ଜୀବନ ଇତିହାସରୁ ସମ୍ଭବତଃ ଶିକ୍ଷା ନେଇଛି ମାଳ । ସ୍ୱାମୀ ମଦ ପିଇ ଆସିଲେ ତାକୁ ଘରେ ନ ପୂରାଇ ଭିତରୁ ତାଟି ବନ୍ଦ କରିଦେଉଛି । ଯାଦବକୁ ନିଜ ହାତ ମୁଠାରେ ରଖି ଉଠ୍ ବସ୍ କରାଉଛି ।

ଜାଣି ନଥିବା ଲୋକ ମାଳର ବେଶପୋଷାକ ଦେଖି ଆଦିବାସୀ ଝିଅ ବୋଲି ଅନୁମାନ କରିବା କଷ୍ଟ । ପ୍ରିଣ୍ଟ ଶାଢ଼ୀ, ଶାୟା, ବ୍ଲାଉଜ୍, ବ୍ରେସିୟାର ପିନ୍ଧି ସେ କଲେଜ ଛାତ୍ରୀ ଭଳି ଦେଖାଯାଉଛି । ସେଥିପାଇଁ ତାକୁ ଏତେ ବର୍ଷ ପରେ ଦେଖି ମୁଁ ଆଦୌ ଚିହ୍ନି ପାରିନଥିଲି ।

କିନ୍ତୁ ମୁଁ ଲକ୍ଷ୍ୟ କରିଥିଲି ବାପ ଝିଅଙ୍କ ଭିତରେ ଗୋଟିଏ କଥାରେ ଖୁବ୍ ମେଳ ଅଛି - ଅତିରିକ୍ତ ଉଚ୍ଚାକାଙ୍‌କ୍ଷା ! ଅପର୍ତ୍ତି ଚାହିଁଥିଲା, ଫୁଲବାଣୀରୁ ଆସିଥିବା ଅନ୍ୟ ଆଦିବାସୀ ଯୁବକଙ୍କୁ ପଛରେ ପକାଇ ବେଶୀ ବେଶୀ ଟଙ୍କା ରୋଜଗାର କରି ସେ କ୍ୟାପିଟାଲ୍‌ର ବାବୁ ହୋଇଯିବ; ମାଳ ମଧ୍ୟ ଚାହୁଁଛି ତା'ର ବର ପଞ୍ଚତାରକା ଚିହ୍ନିତ ହୋଟେଲ୍‌ରେ ମିସ୍ତ୍ରୀ ଚାକିରୀ କରି ବେଶୀ ଟଙ୍କା ରୋଜଗାର କଲେ ସେ ରାଜଧାନୀର ରାଜକନ୍ୟା ହୋଇଯିବ !୨

ସାବି କିନ୍ତୁ ଥିଲା ଅଲଗା ଉପାଦାନରେ ଗଢ଼ା ମଣିଷ । କାମ ଥିଲା ତା'ର ଖୁବ୍ ପରିଚ୍ଛନ୍ନ, ଅଭାବ ତା'ର ସ୍ୱଭାବ ନଷ୍ଟ କରି ପାରି ନ ଥିଲା । ଆମ ଘରେ ଯେତେ ଦିନ ସେ କାମ କରିଥିଲା, କୌଣସି ଦିନ ଛୋଟ ଜିନିଷଟିଏ ସୁଦ୍ଧା ଆମ ଘରୁ ଏପାଖ ସେପାଖ ହୋଇ ନ ଥିଲା । ସେଥିପାଇଁ ଝିଅ ବାହାଘର ବେଳେ ଆମ ଘରକାମ ଛାଡ଼ି ଦେଇଥିଲେ ମଧ୍ୟ ଯେତେବେଳେ ଶାଢ଼ୀ ଖଣ୍ଡେ ମାଗିବାକୁ ଆସିଥିଲା, ବୋଉ ବିନା ଦ୍ୱିଧାରେ ଖଣ୍ଡେ ପ୍ରିଣ୍ଟ୍ ସିଲ୍‌କ ଶାଢ଼ୀ କିଣି ଦେଇଥିଲା ।

ବର ହୋଟେଲରେ ଚାକିରୀ ପାଇଲା ପରେ ଥରେ ଖବର ଦେବାକୁ ଆସିଥିଲା ମାଳ । ମୁଁ ଘରେ ନ ଥିଲି । ଦେଖା ହୋଇ ନ ଥିଲା ତା' ସହିତ ।

ବୋଉ କହିଲା - ଜାଣୁ, ତୋ' ସୁପାରିଶ ଯୋଗୁଁ ତା' ବର ଚାକିରୀ ପାଇଛି ବୋଲି

ମାଳ ଖୁବ୍ ଖୁସି । ବାରମ୍ବାର ରାଣ ନିୟମ ପକାଇ କହି ଯାଇଛି - ମତେ ନେଇ ତୁ ଥରେ ସେ ହୋଟେଲ୍‌କୁ ଯିବୁ । ସେ ଆମ ଦୁହିଁଙ୍କୁ ନିଜ ଖର୍ଚ୍ଚରେ ଖୁଆଇବ, କେବେ ଯିବା କହିଲେ ସେ ଆସି ନେଇଯିବ ।

ପ୍ରସ୍ତାବକୁ ହସି ହସି ମୁଁ ଏଡାଇ ଯାଇଥିଲି । ତା'ର ସାଙ୍ଗ ସାଥିମାନେ ବାହାଚୋରା ହୋଇ କାହାଘରେ ବାସନ ମାଜି, ଲୁଗା କାଚି ନିଜର ଗୁଜୁରାଣ ମେଣ୍ଟାଉଥିବାବେଳେ ସେ ଯେ ଆମକୁ ପଞ୍ଚତାରକା ହୋଟେଲ୍‌ରେ ଲଞ୍ଚ୍ - ଡ଼ିନର ଖାଇବାକୁ ନିମନ୍ତ୍ରଣ କରିବା ଅବସ୍ଥାରେ ପହଞ୍ଚିପାରିଛି; ସେ କଥା ଜାଣି ମୁଁ ଖୁବ୍ ଉଲ୍ଲସିତ ହୋଇଥିଲି ।

ତା'ପରେ ଅପର୍ଣ୍ଣି ଆଉ ସାବୀ ଭଳି ମାଳ ଆଉ ଯାଦବର କଥା ଧୀରେ ଧୀରେ ମୁଁ ଭୁଲିଗଲି । ଆମ ଘରେ ଯେଉଁ ନୂଆ ସ୍ତ୍ରୀ ଲୋକଟି ବାସୀକାମ କରେ ସେ ଥରେ ଥରେ କହେ - ତାଙ୍କ ସହରତଳି ଅଞ୍ଚଳକୁ ମଝିରେ ମଝିରେ ବୁଲି ଆସେ ମାଳ । ରାସ୍ତା ଉପର ଦୋକାନରୁ ଲଜେନ୍‌ସ କିଣି ବସ୍ତିର ପିଲାମାନଙ୍କୁ ଖୁଆଏ ସାଙ୍ଗସାଥିମାନଙ୍କ ସହ ଗପ କରି ଫେରିଯାଏ । ରାସ୍ତାରୁ ଓହ୍ଲାଇ କାହାରି ଝାଟିମାଟି ଘରର ତାଟି ଖୋଲି ଭିତରକୁ ଯାଏ ନାହିଁ

ବୋଉ ପଚାରେ - ହଇଲୋ ଶାରି ! ବାହାଘର ତ ଚାରି ପାଞ୍ଚ ବରଷ ହୋଇଗଲାଣି । ମାଳର ପିଲାପିଲି କ'ଣ ?

ଆମ ଘରର ନୂଆ କାମବାଲୀ ଶାରୀ ଆକାଶରୁ ପଡ଼ିଲା ଭଳି ବିସ୍ମିତ ହୋଇ କହେ - ଛୁଆପିଲା ! ମାଳ ତ ରାସ୍ତାରେ ଚାଲିଗଲେ ଚାରିଆଡ଼ ମହ ମହ ବାସୁଛି - ପିଲାଛୁଆଙ୍କ ଘୁଅ ମୂତରେ ସେ ଘାଣ୍ଟି ହେବ କାହିଁକି ?

ବୋଉ ଶାରୀର କଥାର ରହସ୍ୟ ବୁଝିପାରେ ନାହିଁ । ମୁଁ ବୁଝେ ମାଳର ସୌଭାଗ୍ୟରେ ସହରତଳି ଅଞ୍ଚଳର ତା'ର ପୂର୍ବତନ ପଡୋଶିନୀମାନେ ଈର୍ଷାର ନୀଳ ଅନଳରେ ଜଳୁଛନ୍ତି ।

ଆଉ ଦିନେ ମୁଁ ସକାଳୁ ବସି ଚା ପିଉଛି, ଖବରକାଗଜ ଉପରେ ଆଖି ବୁଲାଉଛି, ବୋଉ ଆସି କହିଲା - ତତେ କାହିଁକି ମାଳ ଖୋଜୁଛି ।

ମାଳ ମତେ କାହିଁକି ଖୋଜୁଛି । ପଞ୍ଚତାରକା ହୋଟେଲ୍‌ରେ ମଧ୍ୟାହ୍ନ ଭୋଜନର ନିମନ୍ତ୍ରଣ ।

ମୁଁ ଖବର କାଗଜ ଓ ଚା' କପ୍ ହାତରେ ଧରି ଉଠିଗଲି ।

ଆମ ଘର ବାରଣ୍ଡାରେ ଆଣ୍ଠୁମାଡ଼ି ବସିଥିଲା ମାଳ । ସକାଳର ହଳଦୀରଙ୍ଗର ଖରା ତା'ର ଘନ ମୁକୁଳା କେଶ ଆଉ ମୁହଁର ଗୋଟିଏ ଅଂଶରେ ବିଛାଡ଼ି ହୋଇ ପଡ଼ିଥିଲା । ଭାରି ବିଷର୍ଣ୍ଣ, କରୁଣ ଦେଖାଯାଉଥିଲା ତା'ର ମୁହଁ । ଆଖି ତଳେ ଲୁହର ଦାଗ ।

- ତୋର କ'ଣ ହୋଇଛି ? କାନ୍ଦୁଛୁ କାହିଁକି ?

ମୋ କଥା ଶୁଣି ସୁଦ୍ଧା ସେ ଦୃଷ୍ଟି ଟେକି ମତେ ଚାହିଁଲା ନାହିଁ ମୋ ମୁହଁକୁ ଚାହିଁଦେଲେ ସେ କାନ୍ଦି ପକାଇବ - ଏହିପରି ଥିଲା ତା'ର ଚାହାଣୀର ଭଙ୍ଗୀ ।

କିଛି ସମୟ ଚୁପ୍ ଚାପ୍ ବସି ରହିବା ପରେ ନିଜକୁ ସମ୍ଭାଳି ନେଇ ସେ କହିଲା ବାବୁ ! ମତେ ଆଉ ଗୋଟାଏ କାଗଜ ଲେଖିଦିଅ ।

କ'ଣ ଲେଖିବି ?

ଲେଖିଦିଅ ତା'ର ଚରିତ୍ର ଭଲ ନୁହେଁ । ବାରଶ ଟଙ୍କା ଦରମା ତାକୁ ଅଣ୍ଟୁ ନାହିଁ । ମତେ ହୋଟେଲ ବାବୁମାନଙ୍କ ପାଖରେ ଭଡ଼ା ଲଗାଇ ସେ ଆହୁରି ବେଶୀ ଟଙ୍କା ରୋଜଗାର କରିବାକୁ

ଚାହୁଁଛି । ମଦ ପିଇ ମାତାଲ ହେଉଛି । କାଲି ରାତିରେ ଜଣେ ବାବୁଙ୍କ ଘରକୁ ଯୋର୍ କରି ମତେ ପଠାଉଥିଲେ । ମୁଁ ଗଲି ନାହିଁ ବୋଲି ମତେ ମାରିଛି - ଦେଖ ।

ମାଳ ବୁଲିପଡ଼ି ଶାଢ଼ୀ ଘୁଞ୍ଚାଇ ମତେ ତା' ପିଠିର ମାନର ଦାଗ ଦେଖାଇଲା ।

ଏ କ'ଣ କହୁଛ ମାଳ ?

ପଞ୍ଚତାରକା ହୋଟେଲରେ ରହୁଥିବା ବାବୁମାନଙ୍କ ପାଖରେ ନିଜର ସ୍ତ୍ରୀର ଦେହକୁ ବିକ୍ରିକରି ତା'ବର ଟଙ୍କା ରୋଜଗାର କରିବାକୁ ଚାହୁଁଛି ! ସ୍ତ୍ରୀ ରାଜି ହେଉନି ବୋଲି ତାକୁ ଏମିତି ଅମଣିଷଙ୍କ ଭଳି ମାଡ଼ ଦେଇଛି !

ମୁଁ ତାଙ୍କ ପିଠିକୁ ଆଉ ଚାହିଁ ନ ପାରି ଆଖି ବୁଜିଦେଲି । ସକାଳର ଉଜ୍ଜ୍ୱଳ, ହଳଦି ରଙ୍ଗର ଖରା ହଠାତ୍ ମଳିନ ପଡ଼ିଗଲା । ଚା କପ୍ ଥଣ୍ଡା ହୋଇଗଲା । ଖବରକାଗଜ ହାତରୁ ଖସିପଡ଼ି ପବନରେ ଏଣେତେଣେ ଉଡ଼ିବାକୁ ଲାଗିଲା ।

ମାଳ ରହିରହି ସକେଇ ସକେଇ କାନ୍ଦି କାନ୍ଦି କହୁଥିଲା - ବାବୁ ! ତମେ ଲେଖିଦିଅ - ସେ ଭଲଲୋକ ନୁହଁ । ତା'ର ସ୍ୱଭାବ ଚରିତ୍ର ଖରାପ । ସେଇଟା ପୁରୁଷ ନୁହଁ, ପାଷାଣ୍ଡ । ସ୍ୱାମୀ ନୁହଁ-ଶଇତାନ୍ । ଯଦି ତମେ କାଗଜ ଲେଖି ନ ଦବ - ତା ଚାକିରୀ ନ ଯିବ - ମୁଁ ଏକାଠି ରହିବି - ବାସନ ମାଜିବି - ଘର ପୋଛିବି ଲୁଗା କାଚିବି - ମୁଁ ଆଉ ତା' ପାଖକୁ ଯିବି ନାହିଁ -

ଚିକ୍ ଚିକ୍ ଛାପା ଶାଢ଼ୀ, ବ୍ଲାଉଜ୍, ବ୍ରେସିୟାର ପିନ୍ଧି, ମୁହଁରେ ପାଉଡର ଲଗାଇ ରାଜଧାନୀର ରାଜକନ୍ୟା ସାଜିଥିବା ମାଳ ଭିତରୁ ତା'ର ଆଦିବାସୀ ଆତ୍ମା ହଠାତ୍ ପଦାକୁ ବାହାରି ଆସିଲା ।

ଚିହ୍ନି ହୋଇଗଲା ସେ ସାବାର ଝିଅ; ସରଳତା ପବିତ୍ରତାର ଆଦିମ ପ୍ରତିମୂର୍ତ୍ତି ।

ଅନେକଦିନ ଧରି ମୁଁ ରାଜଧାନୀର ରାଜକନ୍ୟାମାନଙ୍କ ମୁହଁର ହସ ଦେଖିଥିଲି, ସେ କୃତ୍ରିମ ହସର ଅନ୍ତରାଳରେ ଥିବା ଦୁଃଖର ଲୁହ ମତେ ଏଇ ପ୍ରଥମ ଦେଖାଇଦେଲା ମାଳ ।

# ଅଦିନିଆ ସପୁରି

**ବିଜୟ ପ୍ରସାଦ ମହାପାତ୍ର**

ବୁଢ଼ୀ ଜାଣନ୍ତି ସେମାନେ କ'ଣ ଭାବୁଛନ୍ତି-ମିଥିର ମା' ବାପା, ଭାଇ ଭଉଣୀ, ଯିବାଆସିବା ଭାଇବନ୍ଧୁ ଲୋକ, ପଡ଼ିଶା ଅଡ଼ିଶା । ବୁଢ଼ୀ ମଲେ ମିଥି ବଞ୍ଚିବ । ଏଣିକି ଏଣିକି ଦିନ ଯେତିକି ଗଡୁଛି, ସେମାନେ ସେତିକି ଅସମ୍ଭାଳ ହୋଇପଡୁଛନ୍ତି । ସେମାନେ ବୁଢ଼ୀଙ୍କ ମୁହଁ ଉପରେ ଖୋଲାଖୋଲି ଭାବେ ନ କହିଲେ ବି ପିଲାମାନଙ୍କୁ ଶିଖାଇଛନ୍ତି ବୁଢ଼ୀଙ୍କ କାନ ପାଖରେ ବଡ଼ପାଟିରେ କହିବାକୁ କାଳେ ବୁଢ଼ୀ ଶୁଣି ପାରୁନଥିବେ ବୋଲି । 'ବୁଢ଼ୀମା, ଦିଅଁଙ୍କୁ ଡାକ । ଏତେ ଦିଅଁ ଦେବତାଙ୍କୁ ତ ତୁମେ ପୂଜା କର । ସେଇମାନଙ୍କୁ ଡାକ, ତୁମକୁ ନେଇଯିବେ । ଲୋକନିର ବଡ଼ ଝିଅଟା କାଲି ତା ଇତିହାସ ବହିରୁ ପଢ଼ି ବୁଢ଼ୀଙ୍କୁ ଶୁଣାଉଥିଲା । କହୁଥିଲା - ଜାଣିଛ ବୁଢ଼ୀମା, ଆଗ କାଳରେ ଲୋକେ କଣ କରୁଥିଲେ ? ବୁଢ଼ାବୁଢ଼ୀ ମରୁ ନଥିଲେ ତାଙ୍କୁ ଗୋଟେ ମାଟି ଘୂମରେ ପୂରାଇ, ସେଥିରେ ଖାଇବା ପଦାର୍ଥ ଦେଇ, ପାଣି ଦେଇ ଲୁଗାପଟା ଦେଇ ତାଙ୍କୁ ବେକ ପର୍ଯ୍ୟନ୍ତ ମାଟିରେ ପୋତି ଦେଉଥିଲେ । ତତେ କିଏ କହୁଥିଲା ? - ବୁଢ଼ୀ ପଚାରନ୍ତି । 'ସେ ଘୂମ ପରା ସବୁ ଏବେ ବାହାରୁଛି ମାଟି ଖୋଳାହେବାରୁ । ବୁଢ଼ୀ ହସେ ପିତା ଓଠରେ - 'ଭଲ କରୁଥିଲେ । ବୁଢ଼ାବୁଢ଼ୀ ଗୁଡ଼ାକ ମନକୁ ନମଲେ ଆଉ କ'ଣ କରିବେ ? ବୁଢ଼ାବୁଢ଼ୀ ଗୁଡ଼ାକ କାହାର କେଉଁ କାମର ? ମଣିଷ ଗୁଡ଼ାକ ବୁଢ଼ାବୁଢ଼ୀ ହୋଇଗଲେ ମରିଯିବା ଭଲ ।'

ରାତିରେ ଖାଇବା ପିଇବା ସରିଲେ ମିଥିର ମା' - ବୁଢ଼ୀଙ୍କର ବୋହୂ, ନିଶ୍ଚେ ଦେଖିବାକୁ ଆସନ୍ତି ବୁଢ଼ୀଙ୍କୁ । ହାତକୁ ଗୁଣ୍ଡଗୁଆ ଆଉ ଧାପେ ମାତ୍ରକ ପଡ଼ିଥିବା ଧୂଳିଗୁଣ୍ଡିର ଟିକି ପାନଖିଲ ଖଣ୍ଡିକ ବଢ଼େଇ ଦେଉ ଦେଉ ପଚାରନ୍ତି - 'ବୋଉ,ଟିକିଏ ହାତ ବୁଲାଇ ଦେବି କି ଗୋଡ଼ରେ ?' ବୁଢ଼ୀଙ୍କ ଉତ୍ତରକୁ ଅପେକ୍ଷା ନ କରି ସେ ବୁଢ଼ୀଙ୍କ ଖଟଦାଢ଼ରେ ବସି ତାଙ୍କ ଗୋଡ଼ ଦୁଇଟା ଉଠାଇ ଥୁଅନ୍ତି ନିଜ ଜଙ୍ଘ ଉପରେ । ଆସ୍ତେ ଆସ୍ତେ ମଟାଳି ଦିଅନ୍ତି । ଦୁଇ କି ଚାରି ମିନିଟ୍ ପରେ ଆସନ୍ତି ବୁଢ଼ୀଙ୍କ ପୁଅ । ପଚାରନ୍ତି, 'ବୋଉ, ଶୋଇଲୁଣି ? ସପୁରି ଖାଇଲୁ ? ଏ ଅଦିନିଆ ସପୁରି ତ, ଟିକିଏ ଖଟାଅଂଶ ଥିବ । ତୁ ଥରେ କହୁଥିଲୁ ବୋଲି ଖାଲି ମୁଁ ଆଣିଲି ।'

'ମୁଁ କେବେ କହୁଥିଲି କିରେ ତତେ ସପୁରି ଖାଇବି ବୋଲି ?' - ବୁଢ଼ୀ ଛାଇନିଦରୁ ଉଠି ପଚାରନ୍ତି ।

'ତୋର ବୋଧେ ଆଉ ମନେ ନାହିଁ '- 'ବୁଢ଼ୀଙ୍କ ପୁଅ କହନ୍ତି । 'ତୁ ବୋଧହୁଏ ପାସୋରି ଯାଉଛୁଣି ।'

'ନାଇଁରେ ବାପ, ମୁଁ ପାସୋରି ନାହିଁ ।' ବୁଢ଼ୀ କହନ୍ତି । 'ଗୋଟିଏ ଆଶା ଥିଲା ମୋ ମନରେ ଏଇ ଖଟା ସପୁରିରୁ ଦି'ଗଡ଼ ଖାଇବାକୁ । ମୋ ଆଶା ମିଟିଗଲା । ମୁଁ ଏଥର ମରିଯିବି ଯେ ।'

'ଛି ବୋଉ, କାହିଁକି ରାତିଟାରେ ଏଡ଼େ ଅମଙ୍ଗଳ କଥାଗୁଡ଼ାକ ତୁଣ୍ଡରେ ଆଣୁଛ ? - ବୁଢ଼ୀଙ୍କ ବୋହୂ କହନ୍ତି ।

'ନାହିଁ ଲୋ ବୋହୂ, ତୁ ଜାଣିନାହୁଁ । ବୁଢ଼ାବୁଢ଼ୀ ଗୁଡ଼ାଙ୍କର ଆଶା ସାରୁପତ୍ରରେ ବର୍ଷା ପାଣି ପରି । ଯେତେଦିନ ସେ ଆଶା ନପୂରିଛି, ସେ ପାଣି ଗଡ଼ିବ ନାହିଁ । ସେଇମିତି ଢ଼ଳଢ଼ଳ ହେଉଥିବ ସିନା, ଗଡ଼ିବ ନାହିଁ ଦେଖିଲୁନି ମୋ ଅଜାଶଶୁରଙ୍କ ବେଳକୁ ? କେତେ ଦିନ ନ ପଡ଼ିଲେ କତରାଇଗା ହୋଇ ? ହାତଗୋଡ଼ ରହିଗଲା, ସର୍ବାଙ୍ଗ ଶରୀର ଛଡି ଫୁଟିଗଲା ପରି ହୋଇଗଲା, କଳାକଳା ରକ୍ତଗୁଡ଼ାକ ପଡ଼ିଲା ପାଟିରୁ ନାକରୁ । ବୁଢ଼ା ମଣିଷ ଚିହ୍ନିପାରୁ ନ ଥାନ୍ତି କି ସ୍ୱର ବାରିପାରୁ ନ ଥାନ୍ତି । ଘଡ଼ିକୁ ଘଡ଼ି ଚେତା ବୁଡ଼ିଯାଉଥାନ୍ତି ହେଲେ ଜୀବ ଛାଡୁ ନ ଥାଏ । ଯିଏ ଦେଖୁଥାଏ କହୁଥାଏ ବୁଢ଼ାଙ୍କ ଦେହରେ ଆଉ ଜୀବନ ନାହିଁ । ଆମେ ସବୁ ଦୌଡ଼ିଯାଇ ବୁଢ଼ାଙ୍କ ପାଟି ପାଖରେ ଦର୍ପଣ ଧରିଲା ବେଳକୁ କେତେବେଳକେ, ଘଡ଼ିକେ କି ପହରକେ ଦର୍ପଣ ଉପରେ ବାମ୍ଫଆ ଛାଇ ଟିକିଏ ପଡ଼େ । 'ଆଲୋ ବଞ୍ଚିଛନ୍ତି ଲୋ' କହି ଆମେ ସମସ୍ତେ ଟିକିଏ ସୁଁ ସୁଁ ହୋଇ କାନ୍ଦୁ । ବୁଢ଼ା ପାଟି ପାକୁପାକୁ କରନ୍ତି ଯେମିତି କଣ କହିବେ । ଜାଣିବା ଶୁଣିବା ଲୋକେ କହନ୍ତି ପୁଅମାନଙ୍କୁ - 'ଯାଅ, କାନ ଡେର ।' ବୁଢ଼ା ଯିବାବେଳକୁ କ'ଣ କହିବେ ବୋଧେ । କ'ଣ ମାଗୁଛନ୍ତି ବୋଧେ । ଯାଇପାରୁ ନାହାନ୍ତି ନନେବା ଯାଏ । ବଡ଼ପୁଅ ଯାଇ କାନ ଡେରନ୍ତି ପାଟି ପାଖରେ । ପଚାରନ୍ତି ବଡ଼ପାଟିରେ - 'କ'ଣ କହିବ ? କ'ଣ ନେବ ?' ବୁଢ଼ାଙ୍କ ଓଠ ପୁଣି ଦୁଇଥର ପାକୁପାକୁ ହୁଏ । ପୁଅ କହନ୍ତି ମୁଣ୍ଡ ହଲାଇ କିଛି ବୁଝି ହେଉନାହିଁ । କହୁଛନ୍ତି ଜାମୁକୋଳି । ଜାଣିଲା ଶୁଣିଲା ଲୋକେ କହନ୍ତି - ହଁ, ସେୟା ହୋଇଥିବ । ଜାମୁକୋଳି ମାଗୁଛନ୍ତି । ଜାମୁକୋଳି ଖୋଜାଚାଲିଲା ଖଣ୍ଡମଣ୍ଡଳ । ପୁଷ ମାସରେ ଜାମୁକୋଳି କେଉଁଠି ମିଳିବ ? ସେ ବୁଢ଼ା ସେମିତି ପଡ଼ିରହିଲେ କତରାରେ - ମାଘ ଗଲା, ଫଗୁଣ ଗଲା । ବକ୍ସା ତିନିମାସ । । ଜ୍ୟେଷ୍ଠ ମାସରେ ଜାମୁକୋଳି ପାଚିବା ପର୍ଯ୍ୟନ୍ତ । ଯେଉଁଦିନ ପୁଅମାନେ ଜାମୁକୋଳିଟିଏ ଆଣି ବୁଢ଼ାଙ୍କ ପାଟିରେ ଦେଲେ, ଗିଳି ସୁଦ୍ଧା ନାହାନ୍ତି - ଜୀବ ଛାଡ଼ିଗଲା ଘଟରୁ ।' ବୁଢ଼ୀ ଆଉ କିଛି କହିଲେ ନାହିଁ ବୋହୂ ବୁଢ଼ୀଙ୍କ ପାଦ କାଢ଼ି ଜଙ୍ଘରୁ ଖଟ ଉପରେ ଶୁଆଇ ଦିଅନ୍ତି । ପୁଅ ବେକ ପର୍ଯ୍ୟନ୍ତ ଟାଣିଦିଅନ୍ତି ଚାଦର । ଦୁହେଁ ବସିରୁହନ୍ତି ଦୁଇଟି କୁଜି ଅସରପା ପରି - ମିଥିର ମା' ଆଉ ବାପା ।

ସେ ଘରେ ମିଥି ଶୋଇଛି - ରୋଗିଣା ବିରାଡ଼ି ପିଲାଟିଏ ପରି । ଏଇ ଫଗୁଣ ଚତୁର୍ଥୀକୁ ଉଣିଶ ପୂରିଯିବ । କିଏ କହିବ ଉଣିଶ ବର୍ଷର ପଦୁଆ ଝିଅ ବୋଲି । ହାଡ ଦି'ଖଣ୍ଡ ଝୁଲୁଛି । କି ରୋଗ ହେଲା ତାକୁ ଯାହା କାନ ଶୁଣିନଥିଲା କି ଆଖି ଦେଖିନଥିଲା । ମିଥିର ମା' ପଣତ ପାଟିରେ ଦେଇ ସୁଁ ସୁଁ ହୁଅନ୍ତି - 'କି ପାପ କରିଥିଲି କେଉଁ ଜନ୍ମରେ ? କାହା ଘର ବୁଡ଼ାଇଥିଲି କି କାହା ଖାଇବା ଅନ୍ନରେ ବିଷ ମିଶାଇଥିଲି । ଉଣିଶ ବର୍ଷର ଝିଅ ଦେହରୁ - ଯିଏ ଚାଲିଗଲେ ପଦ୍ମଫୁଟିଯାଉଥାନ୍ତା, ତା'ର ହାଡ଼ ଥାଉ ଥାଉ ମାଂସ ମିଳାଇପଡୁଛି ।' ମିଥି ସେ ଘରେ ଶୋଇଛି ବେମାରିଆ ବିରାଡ଼ି ପିଲାଟିଏ ପରି । ଏଠି ବାପ ମା' ଦୁଇଟି କୁଜି ଅସରପା ପରି ଜଗି ବସିଛନ୍ତି ବୁଢ଼ୀଙ୍କୁ । ଚାଲିଗଲେ କି ବୁଢ଼ା ? କହୁ ତ ଥିଲେ ସପୁରି ଖାଇଲେ ତାଙ୍କ ଆଶା ପୂରିଯିବ ବୋଲି । ପୂରିଗଲା କି ମାଣକ ? ସାରୁପତ୍ରରୁ କି ବର୍ଷାପାଣି ଗଡ଼ିପଡ଼ିଲା ମାଟିକୁ ? ବୋହୂ ଉଠି ପାଦ ଚିପିଚିପି ଯାଇ ବୁଢ଼ୀଙ୍କ ପାଟି ପାଖରେ ଦର୍ପଣ ଧରନ୍ତି । ବାମ୍ଫୋଇଉଠେ ଦର୍ପଣ କାଚ ବୁଢ଼ୀଙ୍କ ଦରଚୋବା ପାନର ବାଇଗଣି ପତ୍ର ଛାଇରେ । ପୁଅ ବୋହୂ ଦୀର୍ଘଶ୍ୱାସ ପକାଇ ଉଠନ୍ତି ଶୋଇବାକୁ ଯିବାକୁ । ପୁଣି ଗୋଟାଏ ଦିନ । ମିଥି କି ଆହୁରି ଗୋଟାଏ ଦିନ ସମ୍ଭାଳି ପାରିବ ?

ଡାକ୍ତର କହିସାରିଛନ୍ତି ମିଥିର ଦୁଇଟିଯାକ କିଡ଼ନି ନଷ୍ଟ ହୋଇଗଲାଣି । ଆଉ ବେଶି ଦିନ

ନୁହେଁ । ଯେତିକି ଯେତିକି ଦିନ ଯିବ, ସେତିକି ବିଷାକ୍ତ ହୋଇଉଠିବ ତା' ରକ୍ତ । ଅସ୍ତ୍ରୋପଚାର ଛଡ଼ା ଆଉ ଉପାୟ ନାହିଁ । ଦେଖିବା ଗୋଟେ ଚେଷ୍ଟା ନେବା । ଭାରି ବଡ଼ ଅପରେସନ୍ । ରୋଗୀର ଯଦି ଭାଗ୍ୟ ସେତିକି ତେଜ ଥିବ ବଞ୍ଚିଲେ ବଞ୍ଚିଯାଇପାରେ ।

'କେତେ ଟଙ୍କା ଲାଗିବ ?' - ମିଥିର ବାପା ମା' ପଚାରନ୍ତି ସର୍ଜନଙ୍କୁ ।

'ପଇସା ଆଗ ନୁହେଁ । ଆଗ ଯାଇ ଗୋଟାଏ କିଡ୍‌ନି ଯୋଗାଡ଼ କର ଝିଅ ପାଇଁ - ଯଦି କେହି ଗୋଟାଏ କିଡ୍‌ନି ଦାନ କରେ ନିଜ ଦେହରୁ । ଆମେ ଅସ୍ତ୍ରୋପଚାର କରି ରୋଗୀ ଦେହରେ ଯୋଡ଼ିବାକୁ ଚେଷ୍ଟା କରିବୁ । ଯଦି ଲାଗିଯାଏ ତ ରୋଗୀ ବଞ୍ଚିଯିବ ।'

ବାପମା' ଯେତେବେଳେ ଶୁଣିଲେ କିଡ୍‌ନି କିଛି ବିଚିତ୍ର ବସ୍ତୁ ନୁହେଁ, ସବୁ ମଣିଷଙ୍କ ଭିତରେ କିଡ୍‌ନି ଅଛି - ଯାହାର କାମ ହେଉଛି ମଣିଷ ରକ୍ତକୁ ପରିଷ୍କାର ରଖିବା, ଯାହା ଅଭାବରେ ମଣିଷ ରକ୍ତ ବିଷାକ୍ତ ହୋଇଯାଏ, ମୃତ୍ୟୁ ତିଳତିଳ କରି ବହନ କରେ । ସମସ୍ତେ ବାଟଭାଙ୍ଗି ଚାଲିଯାଆନ୍ତି । ଏ କଣ ଆଙ୍ଗୁଠି ନଖ ହୋଇଛି ନା ମୁଣ୍ଡର ବାଳ କେରାଏ ହୋଇଛି ଯେ କାଟିଦେଲେ ପୁଣି କଅଁଳିଯିବ । ବଞ୍ଚିଥାଉ ଥାଉ କିଏ କିଡ୍‌ନିଟାଏ ନିଜ ଦେହରୁ ଦେଇଦେବ -ଯେତେ ବାପ ହେଉ ଯେତେ ମାଁ ହେଉ, ଭାଇ ହେଉ କି ଭଉଣୀ ହେଉ । ଡାକ୍ତର କହିଲେ - କେହି ଯେତେବେଳେ ରାଜି ନ ହେଉଛି ଝିଅକୁ ଗୋଟେ କିଡ୍‌ନି ଦେବା ପାଇଁ ରୋଗୀକୁ ଘରକୁ ନେଇଯାଅ । ଦେଖ ତା ଭାଗ୍ୟ ଯଦି ଟାଣ ଥାଏ । ଦେଖ ବୁଢ଼ାବୁଢ଼ୀ ଯଦି କେହିଥାଏ, ଯଦି ଦୈବାତ୍ କାହାର ମୃତ୍ୟୁ ହୋଇଯାଏ, କେହି ଯଦି ଦୁର୍ଘଟଣାରେ ମରାପଡ଼େ, ସାଙ୍ଗେ ସାଙ୍ଗେ ଯଦି ଆମ ପାଖରେ ଖବର ପହଞ୍ଚେ ମଲା ଦେହରୁ କିଡ଼ନି କାଟି ଆମେ ଝିଅ ଦେହରେ ଯୋଡ଼ିବୁ । ଦେଖିବା ଗୋଟେ ପରୀକ୍ଷା କରି । ଅନେକ ଜାଗାରେ ଡାକ୍ତରମାନେ ତ କରୁଛନ୍ତି । ଦେଖିବା ମିଥିର ଯଦି ଆୟୁଷ ଟାଣ ଥାଏ । ବାପା ମା ମିଥିକୁ ଗାଡ଼ିରେ ପକାଇ ଫେରିଲେ ଡାକ୍ତରଖାନାରୁ । ଆଖିରୁ ଲୁହ ଶୁଖୁନଥାଏ ।

ସମସ୍ତେ ଆସି ବସିଲେ ବୁଢ଼ୀଙ୍କ ଘରେ । କାହାରି ପାଟିରୁ କଥା ବାହାରୁ ନ ଥାଏ । କାଳିମା ଛାଇଯାଇଥାଏ ସମସ୍ତଙ୍କ ମୁହଁରେ । ଖଟ ଉପରୁ ବୁଢ଼ୀ ପଚାରିଲେ - 'କଣ ହେଲା ମିଥିର ? ଡାକ୍ତର କ'ଣ କହୁଛନ୍ତି ? ମିଥିର ମା' କହିଲେ - ଡାକ୍ତର କହୁଛନ୍ତି ତା' କିଡ୍‌ନି ନଷ୍ଟ ହୋଇ ଗଲାଣି । କେହି ଯଦି ଦାନ କରେ, କିଡ଼ନି ଡାକ୍ତରମାନେ ତା' ଦେହରେ ଯୋଡ଼ି ତାକୁ ଭଲ କରିବେ । ମୁଁ କହିଲି, ମୋ ଦେହରୁ ନିଅ । ସେ ନାହିଁ କରୁଛନ୍ତି । କହୁଛନ୍ତି, ତୁମେ କେମିତି ଦେବ ? ପିଲାଗୁଡ଼ାକ ଛୋଟ ଛୋଟ । କହୁଛନ୍ତି ନିଜେ ଦେବାକୁ । ସେ କେମିତି ଦେବେ, ଘରର ମୁରବିଟା ! ଆଉ ଭାଇଭଉଣୀଙ୍କ କଥା । ତାଙ୍କୁ କେମିତି ପଚାରିବୁ, ସାରା ଜୀବନଟା ଯାହାଙ୍କର ଆଗରେ ପଡ଼ିଛି ।' ସମସ୍ତେ ବସିଲେ ଚୁପ୍ ହୋଇ । ଶେଷକୁ ବୁଢ଼ୀ ପଚାରିଲେ - ''ମୋ ଦେହରୁ ଦେଲେ ହେବ ନାହିଁ ?''

ମିଥିର ମା ସୁଁ ସୁଁ ହୋଇ କାନ୍ଦିଲେ - ତୁମର ଯାହା ଅବସ୍ଥା ବୋଉ, ତୁମେ ଦେଲେ କି ଆଉ ବଞ୍ଚିବ ? ଆମେ କେଉଁ ମୁହଁରେ ତୁମକୁ ଡାକ୍ତରଙ୍କ ପାଖକୁ ନେଇକରି ଯିବୁ ? ଡାକ୍ତର କହୁଛନ୍ତି - ଯଦି କେହି ସେମିତି ଚାଲିଯାଏ, ତା' ଦେହରୁ କିଡ୍‌ନି ନେଇ ଲଗାଇଲେ ମିଥି ବଞ୍ଚିଯାଇପାରେ । ପୁଣି ସମସ୍ତେ ନୀରବ ହେଲେ ।

କେତେବେଳକେ ବୁଢ଼ୀ କହିଲେ - 'ଆଲୋ ମା, ମୁଁ ତ ଶୁଖିଲା ପତର, କେଉଁ ଦଣ୍ଡରେ ଖସିପଡ଼ିବି । ଆଜି ଅଛି କାଲିକୁ ନାହିଁ । ଏତେ ଭାବନା କାହିଁକି ପଡ଼ିଛି ? ମୁଁ କଣ କାଲିକୁ ଥିବି ? ମୋ ଆୟୁଷ ନେଇ ମିଥି ବଞ୍ଚୁ ।

ସମସ୍ତେ ମୁହଁ ଉଠାଇ ଚାହିଲେ ବୁଢ଼ୀଙ୍କୁ । ସେଇ ଗୋଟିଏ ଶୁଖିଲା ପତର । ସତେ ଯେମିତି ସେଇ ପତରଟିରେ ମିଥିର ଜୀବ ଲଟକିଛି । ସେଇ ପତର ଖସିଲେ ସତେ ଯେମିତି ମିଥି ବଞ୍ଚିଯିବ ! କିନ୍ତୁ କିଏ ଜାଣେ କେତେଦିନ ପରମାୟୁ ଶୁଖିଲା ପତରରେ ? ମିଥି କି ସେତେଦିନ ରହିପାରିବ ? ତଥାପି ସମସ୍ତଙ୍କ ମନରେ ଆଶା ସଞ୍ଚାର ହେଲା । ସମସ୍ତେ କେମିତି ଗୋଟିଏ ଭିନ୍ନ ଆଖିରେ ଚାହିଁଲେ ବୁଢ଼ୀଙ୍କୁ - ସତରେ ଯେମିତି ବୁଢ଼ୀଙ୍କ ହାତରେ ସବୁ ଅଛି। ବୁଢ଼ୀ ଏଇନା ଚାହିଁଲେ କି ଏଇନା ଚାଲିଯିବେ । ଆର କ୍ଷଣରେ ତାଙ୍କ ଆୟୁଷ ନେଇ ଜୀଇଉଠିବ ମିଥି - ପୋଡୁଆ ଝିଅ ମିଥି - ପଦ୍ମ ଫୁଟିଯାଉଥାନ୍ତା ଯିଏ ଚାଲିଯାଉଥିଲେ । ପିଲାମାନେ ଯେମିତି କହୁଛନ୍ତି କାନପାଖରେ - ବୁଢ଼ୀମା, ଦିଅଁକୁ ଡାକ । ଏତେ ଦିଅଁକୁ ତ ପୂଜା କର । ସେଇମାନଙ୍କୁ ଡାକ । ତୁମକୁ ନେଇଯିବେ ।

ବୁଢ଼ୀ ଚାହିଁଲେ କିଛିକ୍ଷଣ ସମସ୍ତିଙ୍କୁ । କ'ଣ ସେ ଜବାବ ଦେବେ ? ଭାବିଲେ - ସେ ଶୋଇପଡ଼ିବେ । କାଲି ସକାଳୁ ଉଠିଲାବେଳକୁ କାହାରି ଆଉ କିଛି ପଚାରିବାକୁ ନ ଥିବ । ସେ ଚାଲିଯାଇଥିବେ । କିନ୍ତୁ ସକାଳକୁ ସେ ଉଠିଲେ ଭଲ ମଣିଷ ପରି ସବୁଦିନ ଯେମିତି ଉଠନ୍ତି । ବୁଢ଼ୀ ବୁଝି ପାରିଲେ ନାହିଁ ସେ ମରିନାହାନ୍ତି କାହିଁକି ? ସପୁରି ତ ଖାଇଲେ, ସବୁ ତ ଖାଇଲେ, ପୁଣି ବଞ୍ଚିଛନ୍ତି କାହିଁକି ? ପିଲାମାନେ ତାଙ୍କୁ ଘେରିଗଲେଣି ତାଙ୍କୁ ହୁଏତ ପଚାରିବେ ବୋଲି-ସେ କାହିଁକି ମରିନାହାନ୍ତି ? ତାଙ୍କ ନିଜ ପୁଅ ବି ଆସି ଠିଆହେଲାଣି । ସେ ସମସ୍ତଙ୍କୁ ଶୁଣାଇ ଶୁଣାଇ କହିଲେ ଶେଷକୁ - 'ଏ ନିଆଁଲଗା ବୁଢ଼ାବୁଢ଼ୀଙ୍କ ଜୀବନ ସାରୁପତ୍ରରେ ବର୍ଷାପାଣି ପରି । ସେମିତି ଢଳଢ଼ଳ ହେଉଥିବ ସିନା, ଗଡ଼ିବ ନାହିଁ ଆଶା ନପୂରିଲା ପର୍ଯ୍ୟନ୍ତ । ଦେଖିଲନି ମୋ ଅଜାଶଶୁରଙ୍କ ବେଳକୁ ?

ସମସ୍ତେ ଚାଲିଗଲେ ମୁହଁ ଶୁଖାଇ । ସେଦିନ ସନ୍ଧ୍ୟାବେଳକୁ ପୁଅ ଆସି ତାଙ୍କୁ ପୁଣି ଅଦିନିଆ ସପୁରି ଦେଲେ । ପଚାରିଲେ - 'ବୋଉଁ କହୁଥିଲୁ ପରା ସପୁରି ଖାଇବୁ ବୋଲି ?''

ବୁଢ଼ୀଙ୍କ ଆଖି ଛଳଛଳାଇ ଆସିଲା । 'ସତେ ତ !' - ସେ ଭାବିଲେ । ତାଙ୍କର ସପୁରି ଖାଇବାକୁ ଭାରି ଆଶା ଥିଲା । ସେ ଛଳଛଳ ଆଖିରେ ଟାଉଟାଉ କରି ଗିଳି ପକାଇଲେ ତିନି ଚାରି ଖଣ୍ଡ । ତାଙ୍କ ବୋହୂ କେଡ଼େ ସୁନ୍ଦର ଲୁଣ ରାଗଗୁଣ୍ଡ ଗୋଳାଇ ନିଜ ହାତରେ ଆଣିଥିଲା ସପୁରିକଟା । ତାଙ୍କ ଅଜାଶଶୁର ମନେପଡ଼ିଲେ ଯାହାଙ୍କର ପ୍ରାଣ ଅଟକିଥିଲା ଜାମୁକୋଳିରେ । ବୁଢ଼ୀ ଶୋଇବାକୁ ଗଲେ । ଭାବିଲେ, ସେ ସପୁରି ଖାଇସାରିଛନ୍ତି । କାଲି ସକାଳକୁ ସେ ଚାଲିଯାଇଥିବେ । କିନ୍ତୁ ତାଙ୍କର ଯେତେବେଳେ ନିଦ ଭାଙ୍ଗିଲା, ସକାଳକୁ ଭଳାଲୋକ ପରି ପିଲାଏ ଆସି ତାଙ୍କୁ ପୁଣି ଘେରିପଲେ । ବୁଢ଼ୀ ଦୋଷୀ ମନେକଲେ । କାନ୍ଦ ମାଡ଼ିଆସିଲା ତାଙ୍କୁ । କହିଲେ ଶେଷକୁ - ମିଥିକୁ ଟିକିଏ ମତେ ଦେଖାଅ । ମୁଁ ଟିକିଏ ଦେଖିବି ମିଥି କେମିତି ଅଛି !

'କ'ଣ ଆଉ ଦେଖିବାର ଅଛି ମିଥିକୁ ବୋଉ ?' - ପୁଅ ବୋହୂ କହିଲେ ସୁଁ ସୁଁ ହୋଇ । ମିଥି କ'ଣ ଆଉ ମିଥି ହୋଇଅଛି ? ବୁଢ଼ୀ ବଳାଇବାରୁ ଶେଷକୁ ପୁଅ ବୋହୂ ଟେକି ଟେକି ନେଲେ ବୁଢ଼ୀଙ୍କୁ ମିଥିର ଖଟ ପାଖକୁ । ମିଥି ଆଖିଖୋଲି ଚାହିଁଲା ବୁଢ଼ୀମା'କୁ । ଦୁହେଁ ଦୁହିଁକୁ ଚାହିଁ ଟିକିଏ ହସିଲେ । ବୁଢ଼ୀ କହିଲେ - 'ମତେ ଏଥର ନେଇଯାଅ । ଝିଅଟାକୁ ଟିକିଏ ଦେଖିଲି, ମୋ ମନ ବୁଝିଗଲା । ନିଅ, ମୋତେ ଏଥର ନେଇ ଶୁଆଇଦିଅ ।

ଦଶଟା ବେଳକୁ, ମିଥିର ବାପା ଯେତେବେଳେ ବାହାରିବେ ଅଫିସ୍‌କୁ, ବୁଢ଼ୀ ବୋହୂକୁ ଡକାଇଲେ - 'ଆଲୋ ମା, ନାଳାୟର ଅଫିସ୍ ବାହାରିଲାଣି କି ? ତା'କୁ କହିବୁ ପାଇବ ଯଦି ଅଫିସ୍ ଲେଉଟାଣି ମୋ ପାଇଁ ଗୋଟିଏ ଧୋନପଟ ଆଣିବ ।'

ପୁଅ ବୋହୂ ମୁହଁ ଚାହାଁଚହିଁ ହେଲେ । ନୀଳାମ୍ବରବାବୁଙ୍କର ଆଖି ଛଳଛଳ ହୋଇଆସିଲା - 'ଏ ଅଦିନରେ ତାଳସଜ ମୁଁ କେଉଁଠୁ ପାଇବି ? କିନ୍ତୁ ଯେମିତି ହେଲେ ତ ଆଣିବାକୁ ହେବ ।' ସେ ଅଫିସ୍ ବାହାରିଲେ ।

ନୀଳାମ୍ବରବାବୁ ସେଦିନ ଦେଢ଼ଟା ବେଳକୁ ଅଫିସରୁ ଚାଲିଆସିଛନ୍ତି । ହାତରେ ତାଳପତ୍ରର ପୁଡ଼ାଟିଏ । ମିଥିର ମା ଦୁଆର ଖୋଲିଦେଇ ତାଟକା ହୋଇଗଲେ - ତମେ ? ତାପରେ ଚାହିଁଲେ ହାତର ତାଳପତ୍ର ପୁଡ଼ାକୁ - ପାଇଲ ତାଳସଜ ?' ନୀଳାମ୍ବରବାବୁ ମୁଣ୍ଡ ଟୁଙ୍ଗାରିଲେ - ଦୀନା ପିଅନକୁ ପଠାଇ ତା' ଗାଁ'ରୁ ଅଣାଇଛି । ଏ ଦିନରେ କି ମିଳେ ତାଳସଜ ?

ପୁଅ ବୋହୂ ଗଲେ ବୁଢ଼ୀଙ୍କ ଘରକୁ । ଖଟ ପାଖକୁ ଆଗେଇଯାଇ ବୋହୂ ଡାକିଲେ - 'ବୋଉ ଉଠ ତାଳସଜ ପାଇଁ କହିଥିଲ ଆଣିଛନ୍ତି । ନିଅ, ବୁଢ଼ା ହୋଇଯିବ ।' ବୁଢ଼ୀ ଉଠିଲେ ନାହିଁ । ସାରୁପତ୍ରରୁ ଚର୍ମପାଣି ବୁନ୍ଦାକ ଗଡ଼ିପଡ଼ିଥିଲା ମାଟିକୁ ।

# ଦେବକୀ

ପ୍ରତିଭା ରାୟ

ଜଙ୍ଗଲେ ଜଙ୍ଗଲେ ହାଟରୁ ଫେରୁଛି ଝୁମୁଟି ଗହରା । ଥାକ ଥାକ ଦୁଃଖର ପାହାଚରେ ଠୁକୁ ଠୁକୁ ପାଦ ପକାଇ ସେ ଯେମିତି ଜୀବନର ପାହାଡ଼ି ରାସ୍ତା ଚଢ଼ି ଚଢ଼ି ଚାଲିଛି । କ'ଣ ଖଣ୍ଡେ ଅମୂଲ୍ୟ ନିଧି ଭଳି ଅତି ଯତ୍ନରେ ଗୁଡ଼େଇ ଧରିଛି ଛାତିରେ । ସତେ କି କଅଁଳା ଛୁଆଟିଏ ଛାତିରୁ ତା'ର କ୍ଷୀର ଖାଉଛି ।

ତିନିଟି ନାଳ ଆଉ ଗୋଟିଏ ନଈ ପାରି ହୋଇ ଜଙ୍ଗଲ ରାସ୍ତାରେ ପନ୍ଦର ମାଇଲ୍ ବାଟ ଚାଲି ଚାଲି ଗଲେ ପଡ଼ିବ ତା'ର ଗାଁ । ଦୁଇଦିନ ତଳେ ନିଜ ଗାଁରୁ ଚାଲି ଚାଲି ସେ ଆସିଥିଲା ଖଡ଼ିଆର ହାଟକୁ । ଆସିଲାବେଳେ ଏମିତି ଛାତିରେ ଗୁଡ଼େଇ ଧରିଥିଲା-ଅମୂଲ୍ୟ ନିଧି, ତା'ର ପାଞ୍ଚ ମାସର ପୁଅକୁ । ହାଟରୁ ବିକା କିଣା ସାରି ସେ ଗୋଟିଏ ଗୋଟିଏ ଫେରୁଛି । ହାଟରେ କ'ଣ ବିକିଲା, କ'ଣ କିଣିଲା ସେ କଥା ଝୁମୁଟି ଭାବୁନାହିଁ ସେ ଭାବୁଛି କେମିତି ପହଞ୍ଚିବ ତା'ର ଭିଟାମାଟିରେ । ଅନାହାର ଆଉ ରୋଗ ଦାଉ ସମ୍ଭାଳି ନ ପାରି ଗାଁ ଛାଡ଼ି ପଳାଇବାକୁ ବସିଥିବା ତା ସ୍ୱାମୀ ଘନା ଗହରା ମୁହଁରେ ଆହାର ଦବ, ତାକୁ ବଞ୍ଚାଇବ, ନିଜେ ଢୋକେ ପିଇ ଦମ୍ ନେବ, ବଞ୍ଚିବ, ଜୀବନ ଘରେ ପଶିବ ।

ଘନା ଗହରା ସେ କାଲରୁ କହୁଥିଲା-''ଚାଲ୍ ଗାଁ ଛାଡ଼ି ଚାଲିଯିବା । ଏ ଗାଁରେ କାମ ନାହିଁ, ଖାଦ୍ୟ ନାହିଁ, ଇନ୍ଦ୍ର ଦେବତାର ଦୟା ନାହିଁ, ଫସଲ ନାହିଁ । ମରୁଡ଼ି, ଦୁର୍ଭିକ୍ଷ, ରୋଗ, ମରଣ ଏ ଗାଁର ପିଛା ଛାଡ଼ିବ ନାହିଁ - ଚାଲ୍ କୁଆଡ଼େ ହେଲେ ପଳେଇବା ।''

ଝୁମୁଟି ଅମଙ୍ଗ ହେଲା । କୋଳରେ ତା'ର ଉତାଣି ପିଲା । ପୁଣି ଆଉ ଗୋଟିଏ ପେଟରେ ରହିଲାଣି । ଭିଟାମାଟି ଛାଡ଼ି ଯିବ କୁଆଡ଼େ ? ଏ ଗାଁରେ କିଛି ନ ଥିଲେ ବି ମୁଣ୍ଡ ଉପରେ ଚାଳ ଅଛି, ଅଛି ପିତୃ ପୁରୁଷର ଡ଼ିହ ଉପରେ ଭଙ୍ଗାରୁଜା ବାସ ଖଣ୍ଡିଏ । ଆଗକୁ ଝଡ଼ ବରଷାର ଦିନ । ମାଟି କାମୁଡ଼ି ପଡ଼ିରହିଲେ ପୁଣି କାମ ମିଳିବ, ଭାତ ମିଳିବ, ଜୀବନ କାଟିବ ପି ବରଷ ପରି । ଘନା ଗହରା ଝୁମୁଟି କଥାରେ ମାଟି କାମୁଡ଼ି ପଡ଼ିରହିଲା ଆପଣା ଭିଟାମାଟିରେ । ତା'ରି ଭଳି କେତେ ଭୋକିଲା ମଣିଷ ମାଟି କାମୁଡ଼ି ଭିଟାମାଟିରେ ପଡ଼ିରହିଛନ୍ତି । ଯେତେ ଅକାଳ ପଡ଼ିଲେ ବି ସମସ୍ତେ କ'ଣ ଦେଶ ଛାଡ଼ି ପଳାନ୍ତି ।

ଏଇ ସାନ ଗାଁଟିରେ କୁମ୍ଭାର, ଗଉଡ଼ ଆଉ ମାଝୀକେଇ ଘର ପ୍ରତି ବର୍ଷ ଜୀବନ, ମରଣ, ରୋଗ, ଭୋକ, ମରୁଡ଼ି, ଦୁର୍ଭିକ୍ଷ ସହ ଛକାପଞ୍ଝା ଖେଳନ୍ତି । ଗାଁରେ କୂଅ, ପୋଖରୀ ନାହିଁ - ସ୍କୁଲ, ଡାକ୍ତରଖାନା, ଦୋକାନ ବଜାର ନାହିଁ । ଦୂର ନାଳରୁ ଗୋଳି ପାଣି ଆଣିଲେ ଭାତ ବସେ, ଗୋରୁ ମୁହଁ ଧୁଏ, ଶୋଷ ମେଣ୍ଟେ । ପ୍ରତିବର୍ଷ ଲୋକେ ମରୁଡ଼ି ବେଳେ ମରି ହଜି ଯା'ନ୍ତି-ମଣିଷ ହାଉଯାଉ ଗାଁଟା ଛିଣ୍ଡି ଛିଣ୍ଡି ଅଛନ୍ତି ଆଉ ଅଢ଼େଇଶହ ସରିକି ଭୋକିଲା ରୋଗଣା ମଣିଷ । ଘନା ଗହରା ଆଉ ଝୁମୁଟି ଗହରା ପର ବିଲରେ କାମ କରି ହାଣ୍ଡି ମାଠିଆ ମଜୁରି ପା'ନ୍ତି । ସେଇ ହାଣ୍ଡ ମାଠିଆ ବିକ୍ରିକରି ବହୁ କଷ୍ଟରେ ଓଳିଏ ଖାଇ ଓଳିଏ ଉପାସ ରହି ଆଜିଯାଏ ବଞ୍ଚିଛନ୍ତି । ସତରବର୍ଷ ହେଲା ଘନା ଗହରା

ଘରକୁ ଆସିଲାଣି ଝୁମୁଟି, ଆଠଟି ପିଲାର ମା' ବି ହୋଇଛି । ହେଲେ କେହି ତା'ର ହୋଇ ରହି ନାହାନ୍ତି । ସମସ୍ତେ ଯିଏ ଯାହା ଖଞ୍ଜାରେ ଦଗାଦେଇ ଖସି ଯାଇଛନ୍ତି । ବଡ଼ ପୁଅଟି ପାଖରେ ଥିଲେ ତାକୁ ହୋଇଥାନ୍ତା ପନ୍ଦର ବର୍ଷ । ଦୁଇବର୍ଷ ତଳେ ମରୁଡ଼ି ପଡ଼ିଲା । ଗାଁରୁ ବହୁଲୋକ ମଧ୍ୟପ୍ରଦେଶ, ପଞ୍ଜାବ ପଳାଇଲେ କାମ ଆଶାରେ, ବଞ୍ଚିବା ଆଶାରେ । ସେତିକିବେଳେ ମୋତି ବି କାହାସଙ୍ଗେ ମଧ୍ୟପ୍ରଦେଶ ପଳାଇଲା । ଆଉ ଫେରି ନାହିଁ କି ତାର ଖବର ଆସିନାହିଁ । ଗାଁ ଛାଡ଼ି ଯିଏ ଯାଇଥିଲେ ଆଉ କେହି ଗାଁକୁ ଫେରିନାହାନ୍ତି । କୁହୁଡ଼ି ଆୟକଷିକୁ ଝାଡ଼ିଦେବା ଭଳି, ମରୁଡ଼ି ଗାଁର ମଣିଷମାନଙ୍କୁ ଝାଡ଼ିଦେଇ ଗାଁଟାକୁ ପଦା କରି ଦେଉଛି ପ୍ରତିବର୍ଷ । ମୋତି ନ ଫେରି ଭଲ କରିଛି । ସେ ବଞ୍ଚିଛି କି ନାଁ ସେକଥା ଝୁମୁଟି ଜାଣେନି । ତେବେ ବି 'ମୋତି ମୋର ବଞ୍ଚିଛି' ଏଇ ଭାବନା ନେଇ ଝୁମୁଟି ଏତେ ଦୁଃଖ ଭିତରେ ବି ସୁଖୀ ହୁଏ, ମା' ବୋଲି ତା'ର ବୁକୁ ଭରିଉଠେ । ''ଯୋଉଠି ଥାଉ, ବଞ୍ଚିଥାଉ-ହାତୀ ବନସ୍ତରେ ବୁଲିଲେ ବି ରାଜାର ।'' ଯାଠାରୁ ବଳି ବଡ଼ ଆଶ୍ୱାସନା ଝୁମୁଟି ଭଳି ନିରୂପାୟ ଜନନୀର ଆଉ ବା କ'ଣ ଅଛି ।

ମୋତି ପରେ ପରେ ଯେତୋଟି କୋଳକୁ ଆସିଲେ, ସମସ୍ତେ ଆସୁ ଆସୁ ବାହୁଡ଼ିଗଲେ । କେହି ବର୍ଷ ପୂରିବାଯାଏ ଜିଇ ରହିଲେନି । ଛ' ଛ'ଟା ଭାଇ-ଭଉଣୀଙ୍କ ମରଣ ଦେଖି ଦେଖି 'ମୋତି'ଟା କେମିତି ଥକ୍‌କାମରା ହୋଇଯାଏ, ଭୟ ପାଇଯାଏ । ହେଲେ ଘନା ଗହଗାର କିଛି ଭାବନା ନ ଥାଏ । ନିଜ ହାତରେ ମଲା ଛୁଆକୁ ଛିଣ୍ଡା କନାରେ କୁଡ଼େଇ ମଶାଣିରେ ଗଡ଼େଇ ଦେଇ ଆସେ - ନାଳରେ ବୁଡ଼ଟାଏ ମାରିଦେଇ ଆସି ଭାତ ଖାଏ, କାମକୁ ଯାଏ । ବଡ଼ ପୁଅ ମୋତି ପିଠିରେ ହାତ ଥାପୁଡ଼େଇ ସାହସ ଦିଏ - ''ମରଣକୁ ଏତେ ଭୟ କ'ଣ ? ମରଣ କ'ଣ ଗୋଟାଏ କାବ୍‌ବା କଥା ? ସମସ୍ତେ ବଞ୍ଚନ୍ତିନିରେ-ଗଛର ସବୁ କଷି କ'ଣ ପାକଲ ହବାଯାଏ ରହେ ? ମଣିଷ ଜୀବନ ବି ସେମିତି-'' ବେଶି ନୁହେଁ, ଦିନେ ଅଧେ ଝୁମୁଟି ବାହୁନେ । ଘନା ପୁରୁଷପଣିଆ ଦେଖେଇ କହେ - ''ତିଳକୁ ତାଳ କରୁଛୁ କାହିଁକି ? ଏ ଗାଁରେ କାହାଘରେ ପାଞ୍ଚ ସାତ ଛୁଆ ମରନ୍ତି ନାହିଁ ଯେ ତୋ'ରି ଛୁଆ ଏକା ମଲାଭଳି କାମଧନ୍ଦା ଛାଡ଼ି କାନ୍ଦଣା ଲଗେଇଛୁ - ଯା, କାମକୁ ଯା' - ସେମାନେ ତୋର ନୁହନ୍ତି, ଏତିକି ଭାବି ମନକୁ ବୁଝେଇ ଦେ' -''

ଝୁମୁଟି ମନକୁ ବୁଝେଇଦିଏ । ଘନାର କଥା ମିଛ ନୁହେଁ । ଦେବତା କିଏ ଶାପ୍ୟ ପାଇଁ ତା' ପେଟରେ ମଣିଷ ଜନମ ନେଇଥିଲେ - ଶାପମୋଚନ ହେଲା, ସ୍ୱର୍ଗ-ରାଜ୍ୟକୁ ଚାଲିଗଲେ, ଛୋଟିଆ ଜଙ୍ଗଲି ଗାଁରେ ରୋଗ ଭୋକରେ ପାଣ୍ଡି ହେବାପାଇଁ ଦେବତାଏ ବଞ୍ଚି ରହିଥାନ୍ତେ କାହିଁକି ? ଯିଏ ଚାଲିଯାଏ ସେ ଦେବତା - ସେ ଦୁଃଖ, ଭୋକ ଜାଣେ ନାହିଁ । ଯେ ବଞ୍ଚିରହେ ସେ ମଣିଷ; କାରଣ ସେ ଦୁଃଖ, ଭୋକ, ଶୋକରେ ସଢୁଥାଏ । ଦୁଃଖର ପାହାଡ଼କୁ ଅତିକ୍ରମ କରି ଜୀବନର ଉଜାଣି ସୁଅ କାଟି ଆଗକୁ ଭାସି ଯିବାପାଇଁ କେଡ଼େ ସହଜ, ସୁନ୍ଦର, ନିଜସ୍ୱ ସାନ୍ତ୍ୱନାଟିଏ !

ପ୍ରତିଥର ପିଲାଟିଏ ହେଲେ ଝୁମୁଟି ଭାବେ, ଏଇଟିକୁ ଠାକୁରେ କୃପା ଦୃଷ୍ଟିରେ ଦେଖିବେ । ଝୁମୁଟିର ଖାଇ ଗୋଡ଼ାଉଥିବା ଖଞ୍ଜାରେ ମା' ମା' ଡାକ ଶୁଭିବ । ହେଲେ ବଡ଼ ପୁଅ ପରେ ଆଉ କେହି ମା' ଡାକିବା ଯାଏ ତା' କୋଳରେ ରହି ନାହାନ୍ତି । କେତେବର୍ଷ ହେଲା ଆଖପାଖ ପାଞ୍ଚଖଣ୍ଡ ଗାଁରେ କଂସାସୁର ଭଳି ମରୁଡ଼ି ଜଗିବସିଛି । ମା'କୋଳ ଖାଲି କରି ଛୁଆମାନଙ୍କୁ ଶେଷ କରିଦେଉଛି । ଭୋକ, ଅନାହାରରେ ମୋଡ଼ିମାଡ଼ି କଅଁଳାଛୁଆଙ୍କ ତଣ୍ଟି ଚିପିଦେବାପାଇଁ ଟାକିବସିଛି କଂସ ମରୁଡ଼ି ।

ଏ ବର୍ଷର ମରୁଡ଼ି ଖାଲି ଛୁଆ ନୁହେଁ, ବଡ଼ ମଣିଷ, ବୁଢ଼ା ବୁଢ଼ୀ, ଗାଇ ଗୋରୁଙ୍କୁ ବି ଗାଁରୁ ନିପାତ କରିଦବାକୁ ବସିଲାଣି । ଗାଁଟା ମଶାଣି ଭଳି ଖାଇଗୋଡ଼ାଉଛି । ଶହେ ସରିକି ଲୋକ ଗାଁ

ଛାଡ଼ି ଦୂର ସହରକୁ କୁଲିକାମ କରିବାପାଇଁ ଚାଲିଗଲେଣି । କିଏ ଗୋତି ଖଟୁଛି, କିଏ ଦାଦନ ଶ୍ରମିକ ହୋଇ ଚାଲିଯାଇଛି । ଗାଁରେ ଯୋଉ ପାଞ୍ଚ ଦଶ ଘର ଚଳିବାବାଲା ଅଛନ୍ତି ତାଙ୍କ ଘରେ ବି ଓଳିଏ ଖାଇଁଲେ ଓଳିଏ ଉପାସ । ଯାହାକିଛି ବିହନ ରଖିଥିଲେ ତାକୁ ବି ପେଟ ବିକଳରେ ଖାଇ ସାରିଲେଣି । ଜମିବାଡ଼ି, କଂସାବାସନ, ଗୋରୁ ଗାଈ, ଛେଳି ମେଣ୍ଢା ସବୁ ବିକ୍ରି କରି ଲୋକମାନେ ସର୍ବସ୍ୱାନ୍ତ । ବିକି ଖାଇବା ପାଇଁ ବାସନ ଖଣ୍ଡେ ବି ଘରେ ନାହିଁ । ଜଙ୍ଗଲର କନ୍ଦା ଆଉ କଡବା ଖାଇ କେତେଦିନ ବଞ୍ଚିହେବ ? ବିଷାକ୍ତ କୁହଲିହା କନ୍ଦା ମଧ ସିଝେଇ ପାଣି ନିଗାଡ଼ି ଲୋକମାନେ ପ୍ରାଣ ବିକଳରେ ଖାଇଯାଉଛନ୍ତି । କନ୍ଦା କଡ଼ବା ବି ଆଉ ଜଙ୍ଗଲରେ ନାହିଁ । ଏବେ ଟୋଇ ଛାଲି, ଚାକୁଣ୍ଡା ପତ୍ର ସିଝାରେ ପ୍ରାଣ ଟିକକ କେଜାଣି କେମିତି ପିଞ୍ଜରା ଭିତରେ ଠାକି ରହିଛି । ଝୁମୁଟି ଗହରା ଆଉ ଘନା ଗହରାଙ୍କର ସମ୍ପତ୍ତି ଭିତରେ ଥିଲା ଆପଣାର ଚାରି ଚାରିଟି କାମିକା ହାତ । ଜମିରେ ଫସଲ ନାହିଁ, ଗାଁରେ କାମ ମିଳୁନି । କାମ ନ ଥିଲେ ଭାତ ନାହିଁ କି ଭାତ ବିନା ହାତ ବି କାମିକା ହୋଇ ନାହିଁ ।

ଯେଉଁ କେତେଜଣ ଅସ୍ଥିସାର ମଣିଷ ଗାଁରେ ପଡ଼ିହରିଛନ୍ତି, କିଏ ଯୁବା କିଏ ବୁଢ଼ା ଜାଣି ହେଉନାହିଁ । ସମସ୍ତେ ଦିଶୁଛନ୍ତି ଏକାପରି - ଡେଙ୍ଗା ଗେଡ଼ାରୁ ସାନ ପିଲା କି ବଡ଼ ମଣିଷ ସେତିକି ଯାହା ବାରି ହେଉଛନ୍ତି । ସମସ୍ତଙ୍କର କୋଟରଗତ ଆଖି, ଅସ୍ଥିସାର ଦେହ, ଠାକରା ଗାଲ । ଖାଦ୍ୟ ଅଭାବରେ ଛୁଆମାନଙ୍କର ମୁଣ୍ଡର କେଶ ବୁଢ଼ାମାନଙ୍କପରି କହରା ପଡ଼ିଯାଇଛି । ପଶୁ, ମଣିଷ, ନଈ, ନାଳ, କ୍ଷେତ, ଖମାର ସବୁଠି ବାର୍ଦ୍ଧକ୍ୟର ଏକଛତ୍ର ରାଜତ୍ୱ ।

କୁହୁଡ଼ି ମାଡ଼ଖିଆ ଆମ୍ବ କଷିଭଳି ମା' କୋଳରୁ ଗୁଳୁଗାଳ ଖସିପଡୁଛନ୍ତି ଛୁଆଗୁଡ଼ାକ । ଝୁମୁଟି ବି ପିଲାଟା ଉପରୁ ଆଶା ଛାଡ଼ିଦେଲାଣି । ନିଜ ପେଟରେ ତ ଦାନା ନାହିଁ - ପିଲାପାଇଁ ଥନରେ କ୍ଷୀର ଆସିବ କୋଉଠୁ ? ଚାକୁଣ୍ଡା ପତ୍ର ସିଝାରେ କେତେ ଦିନ ତା'ର ଘନାର ସିନା କଟିଯିବ - ପିଲାଟା ବଞ୍ଚିବ କେମିତି ? ଛୁଆକୁ ଛାତିରେ ଯାକି ଯେଉଁଦିନ ହାଟକୁ ବାହାରିଲା ଝୁମୁଟି, ଘନା ପଚାରିଲା - କ'ଣ ବିକିବୁ ହାଟରେ ? ବାରିଘରେ ତ କିଛି ନାହିଁ - ଛେଳି, କୁକୁଡ଼ା ଡ଼ିମ୍ବ, ଜହ୍ନି, ଭେଣ୍ଡି, କଂସା ବାସନ କ'ଣ ଅଛି ଯେ ହାଟକୁ ବାହାରିଛୁ । ଅସଜ ମଣିଷଟା - ଭୋକ ପେଟରେ ନଈ, ନାଳ ପାରି ହେଇ ପନ୍ଦର ମାଇଲ ବାଟ ଚାଲି ଚାଲି ଗଲେ ଜୀବନ ରହିବ ତ ! ଯଦି ବା ଭାଗ୍ୟ ବଳରେ ଖଡ଼ିଆଳରେ ପହଞ୍ଚିବୁ, ତୋ ମୁହଁ ଦେଖି କ'ଣ ତତେ କିଏ ଟଙ୍କା କି ଚାଉଳ ଦେଇଦେବ ?

ଝୁମୁଟି ଉଦାସ ହୋଇଯାଇ କହିଲା - ମୁଁ ମରିବି କି ବଞ୍ଚିବି ସେ କଥା ପଛ କଥା, ଭାବୁଛି ଛୁଆଟାକୁ କେମିତି ବଞ୍ଚେଇବି । ଏ ଗାଁରେ ମରୁଡ଼ି କଂସ ଜଗି ବସିଛି । ମୋ'ରି କୋଳରେ ଛୁଆଟିଏ ଦେଖିଲେ ଚାକିବସିଛି ଝାଂପି ନେବାପାଇଁ । ହାଟକୁ କେତେ ଲୋକ ଯାଉଛନ୍ତି । ଦେଖେ, କିଛି ଯଦି ବାଟ ମିଳିଯାଏ -'' କ'ଣ କହିବ କହିବ ହୋଇ ଝୁମୁଟି କାନ୍ଦୁଣୁ ମାନ୍ଦୁଣୁ ହୋଇଗଲା । ଝୁମୁଟିର ସାତସିଆ ଶାଢ଼ୀକୁ ଚାହିଁ ଘନା କହିଲା - 'ଭୋକ ଦାଉରେ ଲାଜ ସରମକୁ ବି ପୋଡ଼ି ଖାଇଲୁ ? ଫୁଙ୍ଗୁଳା ଦିହରେ ହାଟକୁ ଯିବୁ ।'' ଝୁମୁଟି ରାଗ, ଦୁଃଖ, ନିରାଶାରେ ଝିଙ୍କାରୀ ହୋଇଯାଇ କହିଲା ''ଲାଜ ସରମ ଜୀବନ୍ତ ଛାଇର କଥା, ପେଟ ଦାଉରେ କୋଉଦିନ ନିଜ ମାଉଁସ ନିଜେ ଖାଇଯିବି, ସେତିକି ବାକି ଅଛି । ମୋ ହାଡ଼ କଙ୍କାଳ ଦିହଟାକୁ କିଏ ଚାହିଁ ବସିଛି ହାଟରେ ? ଦେଖେ, ଶାଢ଼ୀ ଖଣ୍ଡେ ଯଦି ମିଳିଯାଏ .... ।''

ଝୁମୁଟି ପଥକୁ ଛାତିରେ ଜାକି ହାଟକୁ ବାହାରିଲା । ଘନା କହିଲା - ''ଯାଉଛୁ ଯଦି ଯା'

- ମୁଁ ଆଉ ଏ ଗାଁରେ ରହିବି ନାହିଁ କହୁଛି - ଟିକିଏ ବଳ ପାଇଲେ ତୋ କଥା ନ ମାନି ରାୟପୁର ପଳେଇବି । ରିକ୍ସା ଟାଣିଲେ କି ଦାଦନ କାମରେ ଗଲେ ଭାତ ମୁଠାଏ ତ ମିଳିବ-''

ଝୁମୁଟି ପୁଅ ଦିହ ଛୁଆଇଁ କହିଲା - ''ପିଲା ଦିହ ଛୁଇଁ କହ, ଗାଁ ଛାଡ଼ିଯିବା କଥା କହିବୁନି । ହାଟରୁ ଯାହାହେଲେ ମୁଁ ଆଣିବି । ରିକ୍ସା ଟାଣିବାକୁ ତୋର କ'ଣ ବଳ ବଅସ ଆସୁଛି ।''

ଘନା ଚହଁକିଉଠି ପୁଅ ଦିହରୁ ହାତ ଝାଡ଼ି ନେଇ କହିଲା - ''ମଲା, ଛୁଆଟା ଦିହ କାହିଁକି ଛୁଆଉଁଛୁ । ସମସ୍ତଙ୍କୁ ତ ମରୁଡ଼ି ଖାଇଲା - ଏଇ ବକଟକ ହାଟକୁ ଯିବା ବାଟରେ ଯାଉଛି କି କ'ଣ ଦେଖ -''

''କାଳତୁଣ୍ଡିଆ ମିଣିପିଟା ଅନୁକୂଳ ବେଳରେ ସବୁବେଳେ ଅମଙ୍ଗଳ କଥା କହିବ - ଗାଁ ଛାଡ଼ି ଯିବ ବୋଲି ଦିନ ରାତି ମତେ ଧମକ ଦଉଛି, ସତେକି ମୋ ଭୋକିଲା ମୁହଁରେ ଦାନା ଦଉଛି କି ମୋ ଛୁଆଙ୍କ ଥଣ୍ଟରେ ଆହାର ଦଉଛି -'' ଝୁମୁଟି କାନ୍ଦିପକାଇଲା ।

ଘନା ପୁଅର ହାଡୁଆ ମୁହଁଟିକୁ ସାଉଁଳିଦେଇ କହିଲା - ''ହଉ ଯା ପିଲାଟାକୁ ହେପାଜତରେ ନବୁ, ରାସ୍ତା ଖରାପ - ତୁ ବି ଅସଳ ମାଇପିଟା -''

ବହୁ କଷ୍ଟରେ ଝୁମୁଟି ଜଙ୍ଗଲ ରାସ୍ତାରେ ପାଦ ବଢ଼ାଇ ପୁଅକୁ କୋଳରେ ଜାକି ଚାଲିଥାଏ । ନଈନାଳ ପାରିହୋଇ ଯାଉଥାଏ ଗୋଟାଏ ନିଶାରେ । ଝୁମୁଟିର ପ୍ରତିଜ୍ଞା ବେଳୁବେଳ ଦୃଢ଼ ହେଉଥାଏ । ସେ ବଞ୍ଚିବ, ଘନା ବଞ୍ଚିବ, ତା' ପୁଅ ବଞ୍ଚିବ । ବଞ୍ଚିବା ପାଇଁ ମଣିଷ ଜନମ ନିଏ । ସେଦିନ ଏମିତି ବସୁଦେବ, ଦେବକୀ ଧରି ନଦୀ, ନାଳ, ଅରଣ୍ୟ ପାରିହୋଇ ଗୋପପୁରକୁ ପାଦ ବଢ଼ାଇଥିଲେ । ପଣ କରିଥିଲେ - ପୁଅ ତାଙ୍କର କଂସ କବଳରୁ ବଞ୍ଚିବ, ବଞ୍ଚିବ -'' ଦେବକୀ ସେଦିନ ଛାତିରେ ପଥର ନଦି କୃଷ୍ଣଙ୍କୁ ଟେକି ଦେଇଥିଲେ ବସୁଦେବଙ୍କ ହାତରେ - ପୁଅ ଯୋଉଠି ଥାଉ ଜିଇଁ ବଞ୍ଚି ଥାଉ । ଏତକି ଦେବକୀର ମନକଥା । ଝୁମୁଟିର ମନ କଥା ଦେବକୀଠୁ ଅଲଗା ନୁହେଁ । ଦେବକୀ ମା । ଝୁମୁଟିର ମା ପଣିଆ କଣ ଦେବକୀଠାରୁ କମ୍ । ଝୁମୁଟି କୋଳରୁ ବି ଛଅ ଛଅଟି ପିଲା କଂସ ମରୁଡ଼ି ଛଡ଼ାଇ ନେଇଛି । ତା କୋଳରୁ ଛୁଆକୁ ଟାଣିନେବ ବୋଲି ମେଘ ବତାସ ହେଇ ତା ପଛେ ପଛେ ଯେମିତି ଗୋଡ଼ାଇଛି କଂସାସୁର ।

ଚିରା ଫଟା ଲୁଗା ଭିତରେ ପୁଅକୁ ଅତି ଯତ୍ନରେ ଘୋଡେଇ ଛାତିରେ ଜାକି ଧରିଥାଏ ଝୁମୁଟି । ପିଲାଟା ଝୁମୁଟିର ଶୁଖିଲା ଥନରେ ମୁହଁ ରଖି ନିସ୍ତେଜ ହୋଇ ମା' ଛାତିରେ ମିଶିଯାଇଥାଏ । ସେ ଜିଇଁଛି କି ନାହିଁ ବୋଲି ଝୁମୁଟିର ବେଳେବେଳେ ଶଙ୍କା ହେଉଥାଏ । ଦୁର୍ବଳତା ଯୋଗୁଁ ପିଲାଟା କ୍ଷୀର ଟାଣି ପାରୁନାହିଁ- ପାରିଲେ ବି କ୍ଷୀର ବୁନ୍ଦାଏ ଝୁମୁଟି ଛାତିରେ ପୁଅ ପାଇଁ ନାହିଁ । ଝୁମୁଟି ମେଘ ପବନକୁ ଖାତିର ନ କରି ବାଟ ଚାଲୁଥାଏ । ନିଚ୍ଚୋରିଆ ପାଦରେ ଏତେ ବଳ ତା'ର ଆସୁଥାଏ କୋଉଠୁ ?

ଖଡିଆଳ ହାଟରେ ହାଣ୍ଡି ମାଠିଆ ବିକିଛି ଝୁମୁଟି । କେବେ କେମିତି ବାରିଘରୁ ପନିପରିବା, ଡିମ୍ବ, କୁକୁଡ଼ା ବିକିଛି । ହେଲେ ଆଜି ଯାହା ବିକିବାପାଇଁ ଯାଉଛି ସେ କଥା ଆଉ କେବେ ସାତ ଜନ୍ମରେ ବିକ୍ରି କରିବାକୁ ନ ପଡୁ । ଜଗତ ସେକଥା ନ ଜାଣୁ । ସେକଥା ଜାଣିଲେ ଜଗତ କହିବ, ଝୁମୁଟି ମା'ନାଁ ରାକ୍ଷାଶୁଣୀ ? ହେଲେ ଝୁମୁଟିର ଦୁଃଖ କୋଉଠି ବୁଝିବ କିଏ ?

ତାଙ୍କ ଗାଁରେ କେତେ ମଣିଷ ହାଟ ବଜାରରେ ବିକ୍ରି ହେଲେଣି । ଯୁବତୀ ସ୍ତ୍ରୀକୁ ସ୍ୱାମୀ ବିକ୍ରି କରିଛି, ବାହାଯୋଗ୍ୟା ଝିଅକୁ ବାପା ବିକିଛି, ଝିଅ, ପୁଅ, ସ୍ତ୍ରୀକୁ ଛାଡି ସ୍ୱାମୀ ପଳେଇଛି ଦୂରକୁ । ତାଙ୍କ ଗାଁର ରମା ମାଟିଆର ଗେରସ୍ତ ଖାଇବା ବିନା କୁଆଡେ ପଳାଇଲା । ରମା ଘରେ ଯୁବତୀ

ଝିଅ, ପୁଣି କୋଳରେ ପୁଅଟିଏ, ତା' ଉପରେ ଠୁକୁ ଠୁକୁ ଚାଲୁଥିବା ଝିଅଟିଏ । ଋମା ବେଶି ପଇସା ପାଇବ ବୋଲି ଯୁବତୀ ଝିଅକୁ ବିକି ଦେଲା । ସାନ ଝିଅକୁ ବିକିଥିଲେ ବେଶି ପଇସା ମିଳି ନଥାନ୍ତା । କେଇଦିନ ପାଇଁ ଚଳିଯିବେ ମା' ଛୁଆ ତିନି ପ୍ରାଣୀ । ତାଙ୍କ ଗାଁର ଫାନସପୁଞ୍ଜି ତା' ବାହାଯୋଗ୍ୟା ନଣନ୍ଦକୁ ଶହେ ଟଙ୍କାରେ ବିକିଛି । ଝୁମୁଟିର ଯୁବତୀ ଝିଅ ଥିଲେ ସେ ବି ପୁଅକୁ ନ ବିକି ଝିଅକୁ ବିକିଥାନ୍ତା । ଝୁମୁଟି ଯାହା କରିବାକୁ ଯାଉଛି, ସେଥିରେ କିଛି ପାପ ନାହିଁ । ସେ ବଞ୍ଚିବ, ପିଲାଟି ବଞ୍ଚିଯିବ । ଏତିକି ପାଇଁ ସେ ଅମଡା ମାଡ଼ି ଚାଲିଛି । ଦେବକୀ ଯୋଉଦିନ କୃଷ୍ଣଙ୍କୁ ଗୋପପୁର ପଠେଇଦେଲା, ପୁଅର ଜୀବନ ରକ୍ଷା ସଙ୍ଗେ ନିଜ ଜୀବନ ରକ୍ଷା କଥାଟା ବି ତା'ମନରେ ନଥିଲା କି ? ଆଜିକାଲି ବେଶି ପିଲା ଚଳେଇ ପାରିବେ ନାହିଁ ବୋଲି ମା' ମାନେ ଗର୍ଭ ନଷ୍ଟ କରି ଦଉଛନ୍ତି । ସେଥିରେ କୁଆଡେ ଜୀବହତ୍ୟା ପାପ ଲାଗେ ନାହିଁ । ବରଂ ଦେଶର କଲ୍ୟାଣ ହୁଏ ସେଥିରେ । ସେ ତ ଜୀବହତ୍ୟା କରିବାକୁ ଯାଉନି - ଜୀବନ ବଞ୍ଚେଇବା ପାଇଁ ରାହା ନ ପାଇ ଏଇ ବାଟ ବାଛି ନେଇଛି ।

ବାଟ ସାରା ଝୁମୁଟି ନାନା ଭାବରେ ମନକୁ ପ୍ରବୋଧନା ଦେଉଥାଏ । କରିବାକୁ ଯାଉଥିବା କାମର ଯଥାର୍ଥତା ପ୍ରତିପାଦନ କରି ଚାଲିଥାଏ । ପିଲାଟାର ମଲା ଦେହକୁ କିଆ ବୁଦାରେ ଗଡେଇ ଦେଇ ଆସବାଠୁ ଯଶୋଦା ମା' ହାତକୁ ଟେକି ଦେବା ଭଲ ବୋଲି ବାରବାର ମନକୁ ସାନ୍ତ୍ୱନା ଦେଉଥାଏ ।

ଖଡିଆଳ ହାଟ ପାଖରେ କୋଉ ବାବୁ ପୁଅଟିଏ ପାଇଁ ତହଳ ବିକଳ ହଉଛନ୍ତି । ଭଗବାନ୍ ତାଙ୍କ କୋଳରେ ପିଲା କବଟେ ଦେଇନାହାନ୍ତି ! ଅନାଥ ଛୁଆଟିଏ ଖୋଜୁଛନ୍ତି ପୋଷ୍ୟପୁତ୍ର କରିନେବେ ବୋଲି । ତାଙ୍କ ଗାଁର ହାଟ ଫେରନ୍ତି ଲୋକଙ୍କ ଠାରୁ କେତେଥର ଶୁଣିଛି ଝୁମୁଟି । ବାବୁ କୁଆଡେ ଖଡିଆଳ ମିସନାରୀ ଡାକ୍ତରଖାନା ଆସି ଅନାଥ, ଅଲୋଡା ଛୁଆ ଖୋଜନ୍ତି । ଏଯାଏ ତାଙ୍କର ଆଶା ପୂରଣ ହୋଇନାହିଁ । ବାବୁର ପୁଅ ଦରକାର, ଝୁମୁଟିର ବଞ୍ଚିରହିବା ଦରକାର । ସେଇ ଆଶାରେ ଖଡିଆଳ ହାଟକୁ ଆସିଛି ଝୁମୁଟି । ଆଉ କେଇଟା ମାସ ପରେ ସେ ପୁଣି ମା'ହେବ । ମା' ହେବା ତା'ପାଇଁ କିଛି ଅପୂର୍ବ କଥା ନୁହେଁ । ମା' ଡାକ ଶୁଣିବା ଯାଏ ଛୁଆଙ୍କୁ ବଞ୍ଚାଇ ରଖିବା ହଉଛି ଅପୂର୍ବ କଥା । ଝୁମୁଟି ବେଳୁବେଳ ମନକୁ ଦମ୍ଭ କରୁଥାଏ ।

ସୁରୁଖୁରୁରେ କାମ ତୁଟିଗଲା । ପୁଅକୁ ବାବୁଆଣି ହାତକୁ ଟେକି ଦେଲାବେଳେ ଝୁମୁଟିର ପେଟ ଭିତରଟା ଥରେ ଚକଟି ମଂଛି ହୋଇଗଲା । ଆଉ ପିଲାଟା ବୋଧେ କହୁଥିଲା, ''ମା'ଲୋ ମତେ ବି ଏମିତି ଅନ୍ତର କରିଦବୁ ପରା !''

ବାବୁଆଣୀ ସମବେଦନାଭରା ସ୍ୱରରେ କହିଲେ - ''ମନ ଦୁଃଖ କରିବୁନି । ତୋ ପୁଅ ଭଲରେ ରହିବ । ଆଜିଠୁ ସେ ମୋର ପୁଅ ।'' ପୁଅକୁ ଗେଲ କରି ବାବୁଆଣୀ ଚଟ୍‌କିନା ଘର ଭିତରକୁ ନେଇ ଯାଇଥିଲେ । ସତେ କି ଝୁମୁଟିର ଅଶୁଭ ଦୃଷ୍ଟି ତାଙ୍କ ପୁଅ ଉପରେ ପଡିଯିବ ।

ମୋଟାଶାଢ଼ୀ ଖଣ୍ଡେ, ଅଶିଟଙ୍କା ଝୁମୁଟି ହାତକୁ ବଢାଇଦେଲେ ବାବୁ । ଏତେ ଟଙ୍କା ଏକାବେଳେ ଆଗରୁ ହାତରେ ଧରି ନଥିଲା ଝୁମୁଟି । ତେବେ ବି ସେ ଭାବିଲା ବାବୁଟା ମାଇପି ମଣିଷ ଦେଖି ତାକୁ ଠକି ଦେଲା । ଗାଈ, ଗୋରୁ, ଛେଳି, ମେଣ୍ଢା କେତେ କେତେ ଟଙ୍କାରେ ବିକ୍ରି ହେଉଛନ୍ତି । କୁକୁଡାଟାର ଦାମ୍ ହେଲାଣି ଚାଳିଶ ଟଙ୍କା । ଅଥଚ ମଣିଷ ପିଲା, ସେ ପୁଣି ପୁଅ, ତା'ର ଦାମ୍ ଅଶିଟଙ୍କା ଆଉ ଖଣ୍ଡେ ଶାଢ଼ୀ ! ପୁଅକୁ ନେଇ ବାବୁ ସଙ୍ଗେ ଦର କଷାକଷି ହେବାକୁ ମନ ଟେକିଲା ନାହିଁ । ବାବୁଟା ଯଦି ପୁଅକୁ ଫେରାଇ ଦିଏ, ତେବେ ଫେରନ୍ତି ବାଟରେ କିଆ ବୁଦାରେ ଶୋଇଦେବାକୁ

ବାବୁଟା ଝୁମୁଟିର ଥଙ୍ଗ ଥଙ୍ଗ ଭାବ ଦେଖି କହିଲା - ''ପିଲାଟା ଏକ୍‌ବାର ରୋଗଣା । ଗୁଡ଼ାଏ ଔଷଧ ଖର୍ଚ୍ଚ କରିବାକୁ ହେବ । ହାତରେ ଆଉ ଟଙ୍କା ନାହିଁ, ପିଲାଟାର ଚିକିତ୍ସା ପାଇଁ ଅନ୍ତ କେତେ ଟଙ୍କା ତ ହାତରେ ରଖିବାକୁ ହେବ ?''

ପୁଅର ଚିକିତ୍ସା ହେବା କଥା ଶୁଣି ଝୁମୁଟି ବ୍ୟାକୁଳ ହୋଇ କହିଲା - ''ନାଇଁ ବାବୁ, ଏତିକି ମୋର ଢେର୍ । ମୋ ଧନକୁ ଚିକିତ୍ସା କରିବ ଆଉ ପେଟ ପୂରା ଖାଇବାକୁ ଦବ, ଏତିକି ଜବାବ ଦେଲେ ମୁଁ ନିଶ୍ଚିନ୍ତ ହୋଇ ଫେରିଯିବି ।''

ବାବୁଆଣୀ ଭିତରୁ ଥାଇ କହିଲେ - ''ମୋ ପୁଅ ପାଇଁ ତୋର ଆଉ ମୁଣ୍ଡ ଭାଙ୍ଗି କରିବା ଦରକାର ନାହିଁ । ଭାବିଛୁ ମୁଁ କ'ଣ ତାକୁ ଅଣହେଳା କରିବି ? ଯା, ଯା- ଏତେ ବାଟ ପୁଣି ମେଘ ପବନରେ ଫେରିବାକୁ ହେବ । ପୁଅ କଥା ଆଉ ମନରେ ଗୁଣି ହେବୁନି । ସେଥିରେ ତା'ର ଭଲ ହେବନି । ଆଉ ଶୁଣ୍, ଏଠିକି ଆଉ ଆସିବୁନି ।''

ଝୁମୁଟି ଫେରିଆସିଲା । ଆଉଥରେ ପୁଅକୁ ଦେଖିବା ପାଇଁ ଇଚ୍ଛା ହେଉଥିଲେ ବି କହିବାକୁ ସାହସ ହେଲାନି । ପର ପିଲା ଉପରେ ତା'ର ଆଉ କି ଅଧିକାର ? ବାବୁଆଣୀ ତାକୁ ବିଦା କରିବାକୁ ତରବର ହେଉଛନ୍ତି ବୋଲି ତା'ର ବୁଝିବା ପାଇଁ ବାକି ନ ଥିଲା । ବିଚାରୀ ଡରୁଥିବେ, କାଳେ ଝୁମୁଟି ତା' ଛୁଆକୁ ଫେରସ୍ତ ମାଗିବ !

ମୁହଁ ଫେରାଇ ଚାଲି ଆସିବାବେଳେ ଭିତରୁ କ୍ଷୀଣ ହୋଇ କାନ୍ଦଣାର ସ୍ୱରଟିଏ ଶୁଭିଗଲା । ଛାତିରେ ଛନକା ପଶିଗଲା ଝୁମୁଟିର । ପଛକୁ ପାହୁଣ୍ଡେ ଫେରି ପୁଣି ଭ୍ରମ ବୁଝିପାରିଲା । ପରର କାହୁରା ଛୁଆ ପାଇଁ ତା' ଛାତିରେ ଛନକା ପଶିବା ଠିକ୍ ନୁହେଁ । ମା'ଠାରୁ ଅଧିକ ଯିଏ ଭଲପାଏ ସେ ଡାହାଣୀ, ଝୁମୁଟି ଆଉ ତା' ପୁଅର ମା' ନୁହେଁ ।

ବାଟସାରା ଛୁଆର ସେଇ ଶେଷ କାନ୍ଦଣାର ସ୍ୱର ଝୁମୁଟି କାନରେ ଶୁଭି ଯାଉଥାଏ । ଝୁମୁଟି ଭାବୁଥାଏ ଛୁଆଟା ନିଶ୍ଚେ ମାଟି ବାରୁଛି, ହାତ ବାରୁଛି, ପାଟି ବାରୁଛି, ଥନ ବାରୁଛି, ମଣିଷ ବାରୁଛି, ଆଉ ମା' ବାରୁଛି । ନ ହେଲେ କାନ୍ଦିଥା'ନ୍ତା କାହିଁକି ? ଆଖିର ଲୁହକୁ ଆଉ ଅଟକାଉ ନଥାଏ ଝୁମୁଟି । ତା'ଛାଏଁ ସେ ଝୁରୁଥାଏ, ଶୁଖିଯାଉଥାଏ । ମନେ ମନେ ସେ ଭାବୁଥାଏ, ବରଂ ଭୋକ ଶୋଷରେ ଛୁଆକୁ କୋଳରେ ଜାକି ତା'ର ପ୍ରାଣବାୟୁ ଉଡିଯାଇଥା'ନ୍ତା, ଏକାଠି ମା' ଛୁଆ ଶୋଇ ଯାଇଥାନ୍ତେ ଅଚିନ୍ତା ନିଦରେ, ଏ ବୁଦ୍ଧି କାହିଁକି କଲା- ସାରା ଜୀବନ ପାଇଁ ଚିନ୍ତାର କଣ୍ଟାଟିଏ ଛାତି କଲିଜାରେ ପୋତି ଦେଲା ! ପୁଣି ଭାବୁଥାଏ, ପିଲାଟାକୁ କାହିଁକି ଶୁଖେଇ ମାରିଥା'ନ୍ତା ? ବରଂ ରହୁ ଆଉ କାହା ପାଖରେ-ମଣିଷରେ ଗଣା ହେଉ - ଶ୍ରୀକୃଷ୍ଣଙ୍କ ଭଳି କଂସ କବଳରୁ ବଞ୍ଚିଯାଇ ମଣିଷ ଭଳି ମଣିଷଟିଏ ନହେବ ବୋଲି କିଏ କହିବ !

ବାଟ ସରୁନାହିଁ - କି ଝୁମୁଟିର ଗୋଡ ଆଗକୁ ପଡୁନାହିଁ, ସେକଥା ବୁଝିପାରୁନାହିଁ ଝୁମୁଟି । ପେଟ ଭିତରଟା କୋରି ହୋଇଯାଉଛି ଗୋଟାଏ ଯନ୍ତ୍ରଣାରେ । ଭିତରେ ଗୋଟିଏ ଅବୁଝା କ୍ରୋଧ- ନିଜ ପରେ କି ନିୟତି ଉପରେ ବୁଝିହେଉ ନାହିଁ । ବାବୁଆଣୀ ପ୍ରତି ମନଟା ଈର୍ଷାରେ ବିଦୀର୍ଣ୍ଣ ହୋଇଯାଉଛି ବେଳେବେଳେ । ବାବୁଘରେ ଖାଇବାକୁ ଅଛି ବୋଲି ଗର୍ଭବେଦନା ନ ସହି ମଧ୍ୟ ବାବୁଆଣୀ ଆଜି ପୁଅର ମା' । ଅଥଚ ଗରିବ ବୋଲି ସାତ ସାତଟା ପିଲାକୁ ରକ୍ତ ମାଂସ ଦେଇ ଗଢି, ବେଦନା ସହି ଜନ୍ମଦେଇ ଝୁମୁଟିର କୋଳ ଶୂନ୍ୟ ।

ପରକ୍ଷଣରେ ଝୁମୁଟି ମନ ଭିତରେ ନାରୀତ୍ୱର ଅଭିମାନ ଗୁମୁରି ଉଠିଲା । ତା'ଗର୍ଭରେ ଖେଳୁଛି ଅଷ୍ଟମ ସନ୍ତାନ । ଦିନ କେଇଟାରେ ସେ ପୁଣି ମା'ହେବ । ଅଷ୍ଟମ ଗର୍ଭରୁ ଯିଏ ଜନ୍ମହେବ

ସେ ନିଶ୍ଚୟ ଦେବଅଂଶରେ ଜାତ ହେବ । ଅନାହାର, ମରୁଡି, ଦାରିଦ୍ର୍ୟର କଂସକୁ ସେ ବିନାଶ କରିବ । ତା'ଜନ୍ମ ପରଠୁ ତାଙ୍କ ଗାଁରେ ଆଉ ଅକାଳ ପଡିବ ନାହିଁ- କେହି ଆଉ ପେଟ ବିକଳରେ ସ୍ତ୍ରୀ ପିଲାଙ୍କୁ ବିକିବେ ନାହିଁ । ପିଲାଟା ପେଟରେ ରହିବା ଦିନଠୁ ତା'ମନ କହୁଛି, ଏଣିକି ତା'ର ଦୁଃଖ ଯିବ- ତାଙ୍କ ଗାଁରେ ଭାତ ଲୁଗାର ଅଭାବ ରହିବ ନାହିଁ । ଅଷ୍ଟମ ଗର୍ଭର ସନ୍ତାନଟିକୁ କେମିତି ବଞ୍ଚାଇ ରଖିବ, କେମିତି ଯତ୍ନରେ ବଢାଇବ ଭାବି ଭାବି ଝୁମୁଟି ପୁଅ ବିକିବାର ଦୁଃଖକୁ ଭୁଲିଯାଉଥାଏ । ସେ ବାରବାର ପଣ କରୁଥାଏ, ଯେତେ ଅକାଳ ପଡିଲେ ବି ମରିବ ପଛକେ, ଆଉ ଏଇ ପୁଅକୁ ବିକ୍ରି କରିବ ନାହିଁ । ଅନାଗତ ସୁଖର କଳ୍ପନାରେ କି କ'ଣ ଝୁମୁଟିର ସାରାଦେହ ଝିମ୍ ଝିମ୍ ହୋଇଗଲା । ଯନ୍ତ୍ରଣାଟା ଧୀରେ ଧୀରେ ତୀବ୍ରତର ହୋଇ ସାରା ଶରୀରକୁ ଖେଳେଇ ହୋଇଯାଉଛି । ପାଦ ଦିଓଟି ଜଙ୍ଘଇ ପଥରେ ଥର ଥର କମ୍ପୁଛି । ଯେମିତି ଚେତାହୀନ ହୋଇଯିବ ମୁହୂର୍ତ୍ତକେ । ତଳିପେଟ ଆଉ ଅଣ୍ଟାପାଖ ମେରୁଦଣ୍ଡ ହାଡ ଭିତରେ କିଏ ଯେମିତି ବିଦ୍ରୋହ ଘୋଷଣା କରୁଛି । - ଏ ବିଦ୍ରୋହର ଅର୍ଥ ଝୁମୁଟିକୁ ଅଛପା ରହିଲା ନାହିଁ । ନାରୀ ଜୀବନର ତୀବ୍ରତମ ବେଦନାରେ ଅସ୍ଥିର ହୋଇ ସେ ଏଥର ମାଟିରେ ଚିତ୍ ହୋଇ ଶୋଇପଡିଲା । ତା'ର ଚକ୍ଷୁର ଦୃଷ୍ଟି ଅସ୍ପଷ୍ଟ ହୋଇଆସୁଥାଏ । ଦୁଇ ହାତରେ ନିଜର ଈଷତ୍ ପୃଥୁଳ ଉଦରକୁ ସେ ଆଉଁସିବାକୁ ଲାଗିଲା । ମନେ ମନେ କହିଲା - ''ନାଁ, ଏପରି ହେବାର ନୁହେଁ - ଅଷ୍ଟମ ଗର୍ଭର ସନ୍ତାନ ବିଜୁଳି କନ୍ୟା ଭଳି ଏମିତି ଶୂନ୍ୟରେ ମିଳାଇଯିବାର କଥା ତ ନୁହେଁ । ଦେବଶିଶୁ ଅବତରିବାର ସମୟ ତ ଏବେ ହୋଇ ନାହିଁ । କାହିଁକିରେ ଧନ ଅବୁଝା ହେଉଛୁ । ଏବେ ବି ଗାଁରେ କଂସ ମରୁଡି ଜଗି ବସିଛି - ତୋର ଆସିବାର ବେଳ ହୋଇ ନାହିଁ......''

ଯନ୍ତ୍ରଣାରେ ଯେତେଟା ନୁହେଁ, ଆଶଂକାରେ ଝୁମୁଟିର ଅସ୍ଥିମଜ୍ଜା କମ୍ପି ଉଠିଲା । ତା'ର ଆଖି ଦୁଇଟି ବିସ୍ତାରିତ ହୋଇଗଲା ଏବଂ ଗୋଟାଏ ଆଲୋଡନ ଭିତରେ ବେଦନାର ଭାବ ମୁହୂର୍ତ୍ତକରେ ଅପସରିଗଲା । ଝୁମୁଟିର ଆଖି ଦୁଇଟି କ୍ଳାନ୍ତି ଭାରରେ ମୁଦି ହୋଇଗଲା । କ୍ଷଣକ ପାଇଁ ସେ ଏକପ୍ରକାର ନିଶ୍ଚିନ୍ତ ହୋଇଗଲା । ସେ ଆଶା କରୁଥିଲା ସବୁଥର ପରି ଗୋଟାଏ ଅସ୍ପଷ୍ଟ କୋମଳ ଶିଶୁର କ୍ରନ୍ଦନ ଯେକୌଣସି ମୁହୂର୍ତ୍ତରେ କୁହୁରି ଉଠିବ ଏବଂ ପୁନର୍ବାର ମା' ହେବାର ଗୌରବରେ ତା'ର ବୁକୁ ଭରି ଉଠିବ ।

କିନ୍ତୁ ସେପରି କିଛି ହେଲା ନାହିଁ । ସଦ୍ୟଜାତ ଶିଶୁର କ୍ରନ୍ଦନ ବଣବୁଦାଙ୍କୁ ପବିତ୍ର କଲା ନାହିଁ; ବରଂ ହୃଦୟ ଭିତରୁ ଶୁଭୁଥିବା କରୁଣ କ୍ରନ୍ଦନର ସ୍ୱରରେ ଝୁମୁଟି କ୍ଳାନ୍ତି ଭୁଲି ଉଠିବସିଲା । ତା'ର ପାଦ ତଳେ ରକ୍ତର ଝରଣା ଝରିଯାଇଛି । ଆଉ ତା' ଭିତରେ ନିର୍ଜୀବ ମାଂସପିଣ୍ଡୁଳାଟିଏ ପଡିରହିଛି ଝୁମୁଟିର ସମସ୍ତ ସ୍ୱପ୍ନକୁ ଛିନ୍ନ ଭିନ୍ନ କରି - ତା'ର ବିକଳ ମାତୃତ୍ୱକୁ ଉପହାସ କରି । ଅଷ୍ଟମ ଗର୍ଭର ସେଇ ଦେବଶିଶୁ ମାତୃ ଗର୍ଭର କାରାଗାରକୁ ଛିନ୍ନ କରି ମୁକ୍ତ ହୋଇଯାଇଛି । ନିର୍ଜୀବ ମାଂସ ପିଣ୍ଡୁଳାଟା ଭିତରେ ଥାଇ ଶୂନ୍ୟବାଣୀ କରୁଛି - ''ମାନବ ଶିଶୁର ଜନ୍ମ ମା' କୋଳରେ ଲାଳିତ ପାଳିତ ହେବାପାଇଁ, ଶାଢୀ ଖଣ୍ଡେ ଆଉ ଅଣିଟଙ୍କା ବିନିମୟରେ ବିକ୍ରି ହେବା ପାଇଁ ନୁହେଁ । ପନିପରିବା, ଛେଳି ମେଣ୍ଢା, ଗୋରୁ କୁକୁଡା ଠାରୁ ମଣିଷ ଶିଶୁର ମୂଲ୍ୟ ଯେଉଁ ପୃଥିବୀରେ ଏତେ କମ୍, ଏତେ ନଗଣ୍ୟ, ସେ ପୃଥିବୀ ମୋର ଲୋଡା ନାହିଁ -''

ଦେବ ଶିଶୁର ଗହନ କଥା ଝୁମୁଟି ବୁଝିପାରିଲା ନାହିଁ । କରୁଣ ବିହ୍ୱଳ ଦୃଷ୍ଟିରେ ମାଂସ ପିଣ୍ଡୁଳାଟାକୁ ଥରେ ଚାହିଁଦେଇ ଝୁମୁଟି ରକ୍ତ ଜୁଡୁବୁଡୁ ପାଦ ଦୁଇଟି ଘୁଞ୍ଚାଇ ଆଣିଲା । ଶାଢୀ ଖଣ୍ଡକ ଏବଂ ତା' କାନିରେ ବନ୍ଧା ଅଣିଟଙ୍କାକୁ ଛାତିରେ ପୂର୍ବପରି ଜାବୁଡି ଧରି ଧୀରେ ଧୀରେ ଉଠିବସିଲା ।

ଗୋଟିଏ ଗୋଟିଏ ପାଦ ପକାଇ ସେ ଏଥର ଚାଲିଲା । ଦେହଟା ଉଶ୍ୱାସ ହୋଇଯାଇଛି । ସେ ଭାବିଲା, ତା'ଗର୍ଭର ଅଷ୍ଟମ ସନ୍ତାନ ଭଳି ଏ ସଂସାରରେ ସବୁ ମିଥ୍ୟା - ସତ୍ୟ କେବଳ ଭାତ, ଲୁଗା, ବଞ୍ଚିରହିବା ।

କର୍ଥିଳା ଛୁଆଭଳି ଶାଢୀ ଆଉ ଟଙ୍କାକୁ ଛାତିରେ ଜାବୁଡି ଧରି ଝୁମୁଟି ଶୀଘ୍ର ଶୀଘ୍ର ପାଦ ପକାଇଲା । ସନ୍ତାନ ହରାଇ ସେ ଭାଙ୍ଗିପଡିଲା ନାହିଁ, କାରଣ ସେ ଜାଣେ ତା'ଗାଁରେ ବର୍ଷକ ବାରମାସ ପେଟପୂରା ଭାତ ଖାଇବାକୁ ପାଇବା ଅପେକ୍ଷା ବର୍ଷକୁ ଥରେ ମା' ହେବା ବେଶି ସହଜ ।

# କୋଣାର୍କର ମୁଖଶାଳା

ପ୍ରଫୁଲ୍ଲ କୁମାର ତ୍ରିପାଠୀ

କୁମାରୀ ଡଲ୍‌ଫିନ୍ ପଚାରିଲେ- 'ଏଠୁ କୋନାରକ୍ କେତେ ବାଟ ?'

ମୁଁ ଦୂରତ୍ୱ ନ ଜଣାଇ, ସେଇ ଦୂରତ୍ୱକୁ ଅତିକ୍ରମ କରିବା ନିମନ୍ତେ ସାଧାରଣତଃ ଯେତେ ସମୟ ଦରକାର, ତାହା କହିଦେଲି- 'ଦୁଇଘଣ୍ଟା ।'

ସେ ପୁଣି ପଚାରିଲେ- 'ସେଠୁ ପୁଉରୀ ?'

ତାଙ୍କ ମୁହଁରୁ 'ପୁରୀ'ର କିମ୍ଭୂତ ଉଚ୍ଚାରଣ ଶୁଣି ମୋର ହସିବାକୁ ମନ ହେଉଥିଲା, ମାତ୍ର ସେଇ ଉଠିଆସୁଥିବା ଢେଉ-ଢେଉକା ହସକୁ ଭିତରେ ଭିତରେ ଚାପିଦେଇ କହିଲି- 'ଦୁଇଘଣ୍ଟା ।'

ଏହା ପରେ ସେ ମୋତେ ଶୁଣାଇ ଶୁଣାଇ ସମୟ ହିସାବ କରିବାରେ ଲାଗିଲେ- 'ଏଠୁ କୋନାରକ୍ ଯିବା ଦୁଇଘଣ୍ଟା, ଧରିନିଅ ସେଠି ରହିବା ଦୁଇଘଣ୍ଟା, ସେଠୁ ପୁଉରୀ ଯିବା ଦୁଇ ଘଣ୍ଟା, ପୁଉରୀରେ ମଧ ରହିବା ଦୁଇଘଣ୍ଟା; ଆଉ ସେଠୁ ଫେରିବା ?'

ମୁଁ କହିଲି- 'ଦୁଇ ଘଣ୍ଟା' ।

ସେ ଈଷତ୍ ହସିଲେ । ମୋର ମନେହେଲା- ସମ୍ଭବତଃ ଏଥିଯୋଗୁ ଯେ ମୁଁ ତାଙ୍କର ସବୁ ପ୍ରଶ୍ନର ଉତ୍ତର 'ଦୁଇଘଣ୍ଟା'ରେ ହିଁ ଦେଉଥାଏ । ସେ ପୁଣି କହିଲେ- 'ତା' ଅର୍ଥ ଏପରି ଏକ ପ୍ରୋଗ୍ରାମ୍ କଲେ ସର୍ବମୋଟ ଦରକାର ଦଶଘଣ୍ଟା ?

ମୁଣ୍ଡ ହଲାଇ କହିଲି- ହଁ ।

- 'ତା'ହେଲେ କାଲି ସକାଳ ସାତଟାରେ ବାହାରିବା । ନାଁ କିଛି ଅସୁବିଧା ହେବ ?'

ମୁଁ କହିଲି- 'ଯାହା ତମର ଇଚ୍ଛା ।'

ମୋ ଉଦ୍ଦେଶ୍ୟରେ ଡାହାଣ ହାତ ଟେକି ସେ କହିଲେ- 'ହଉ ତେବେ, ଗୁଡ୍ ନାଇଟ୍ । କାଲି ସକାଳୁ.....

ମୁଁ କହିଲି- 'ନିଶ୍ଚୟ ।'

ସେ ଗେଟ୍ ଠେଲି ଭିତରକୁ ଚାଲିଗଲେ । ତାଙ୍କର ଗୋଲାପୀ ଗାଉନ୍ ମୋ ଆଖି ଆଗରୁ ଅଦୃଶ୍ୟ ହୋଇଗଲା ।

ଗୋଟିଏ କ୍ଲାନ୍ତିକର ଦିନ । ଭୁବନେଶ୍ୱର । ନୂଆ ରାଜଧାନୀ । ଧାଡ଼ିବନ୍ଧା କୃଷ୍ଣଚୂଡ଼ା । ବାଣୀବିହାର । ପ୍ରଚୁର ପବନ । ଲିଙ୍ଗରାଜ ମନ୍ଦିର । ଜଗତ ପ୍ରସିଦ୍ଧ ଖଇ ଓ କୋରା । ରାଜରାଣୀ । ଓଡ଼ିଶା ମ୍ୟୁଜିୟମ୍ । ଖଣ୍ଡଗିରି । ଉଦୟଗିରି । ପଇଡ଼ପାଣି । ନନ୍ଦନ କାନନ ।

ସବୁକିଛି ଗୋଟିଏ 'ଗୁଡ୍ ନାଇଟ୍' ଭିତରେ କେଉଁଠି ଲୋପ ପାଇଗଲା । ସେମିନାର ଆହୁରି ଦୁଇଦିନ ଚାଲିବ । ପଅରଦିନ- ଶେଷଦିନ । ସନ୍ଧ୍ୟା ଅଧିବେଶନରେ ମୋର ପ୍ରବନ୍ଧ- ପାଠ କାର୍ଯ୍ୟକ୍ରମ; ଅଥଚ ଆଜିଯାଏଁ ତାହା ଟାଇପ୍ କରାହୋଇ ନାହିଁ ।

ସକାଳୁ ସନ୍ଧ୍ୟା ଯାଏ ସେଇ ଗୋଟିଏ ହଳ ପ୍ୟାଣ୍ଟଜାମା ପିନ୍ଧି ରହିଯାଇଥିବାରୁ ମୋତେ ବଡ଼ ମସିଆ ମସିଆ, ଝାଳୁଆ ଝାଳୁଆ ଲାଗୁଥାଏ । ତା' ବ୍ୟତୀତ ସକାଳୁ ସନ୍ଧ୍ୟାଯାଏ ଜୋତା ଭିତରେ ପାଦ ଦୁଇଟି ବାନ୍ଧି ହୋଇ ରହିଯାଇଥିବାରୁ ମୋତେ ବଡ଼ ବିରକ୍ତ ମଧ ଲାଗୁଥାଏ ।

ସେ ଯା'ହେଉ.... ମୁଁ ଫେରିଲି ।

କୁମାରୀ ଡଲ୍‌ଫିନ୍ ଗେଷ୍ଟ୍ ହାଉସ୍‌ରେ ରହିଗଲେ ଓ ତାଙ୍କ ସହିତ ରହିଗଲା ତାଙ୍କର କ୍ୟାମେରା । ଆଜି ଦିନ ଭିତରେ ସେ ନିଶ୍ଚୟ ଚାଳିଶ-ପଚାଶଟି ଫଟୋ ନେଇଛନ୍ତି । ନନ୍ଦନ-କାନନରେ ଡଙ୍ଗା ଉପରେ ହିଁ ପଚାରିଥିଲେ- 'ଏଠି ଫିଲିମ୍ ମିଳିବ ?'

ମୁଁ କହିଥିଲି- 'ଆଇ ଆମ୍ ସରି ।'

ତା'ପରେ ତାଙ୍କ କଣ୍ଠରୁ ବାହାରି ପଡ଼ିଥିଲା ଏକ ଧ୍ୱନି- 'ଓଃ' । ସେଥିରୁ ମନେ ହେଲା, ସତେ ଯେପରି ସେ କିଛି ଗୋଟିଏ ଅତି ମୂଲ୍ୟବାନ ପଦାର୍ଥ ହଜାଇ ଦେଇଛନ୍ତି କିମ୍ବା ସତେ ଯେପରି ସେ ନିଜର ଏକାନ୍ତ ବଳବତୀ ଇଚ୍ଛାକୁ ପୂରଣ କରି ନପାରି ପରାଜିତ ଅନୁଭବ କରୁଛନ୍ତି । ତାଙ୍କର ସେଇ ହତାଶାର 'ଓଃ' ଶୁଣି ମୁଁ ପଚାରି ଦେଇଥିଲି- 'କ'ଣ ହେଲା ?'

ଏହାର ଉତ୍ତରରେ ସେ ମୃଦୁ ତରଙ୍ଗାୟିତ ଜଳର ଫର୍ଦ୍ଦ ଉପରେ ପହଁରି ଯାଉଥିବା ଏକ ହଂସଯୁଗଳ ପ୍ରତି ଆଙ୍ଗୁଳି ନିର୍ଦ୍ଦେଶ କରି କହିଥିଲେ- 'ହେଇ ଦେଖନ୍ତୁ.... କି ସୁନ୍ଦର.... ମୁଁ ଗୋଟିଏ ଦୁଇଟା ଫଟୋ ନେବାକୁ ଚାହୁଁଥିଲି ।'

ତାଙ୍କର ନୀଳ ନୀଳ ଆଖି ଦୁଇଟା ଭିତରେ କ'ଣ ଅଛି କେଜାଣି, ସାମାନ୍ୟ ହଂସଯୁଗଳ, ପଥରମୂର୍ତ୍ତି ଓ ହରିଣ ଛୁଆ ମଧ ତାଙ୍କୁ ଭଲ ଲାଗୁଛି । ବେଳେ ବେଳେ ତ ସେ ସାମାନ୍ୟ ଗଛ, ଫୁଲ ଓ ପଥରଖଣ୍ଡ ଦେଖି ମଧ ମୁଗ୍ଧ ସମ୍ମୋହିତ ହୋଇପଡୁଛନ୍ତି । ନନ୍ଦନକାନନରୁ ଆଜି ଫେରିଲା ବେଳେ କହୁଥିଲେ- 'ଏତେ ଅଳ୍ପଦିନ ରହି ଭାରତ ବିଷୟରେ ମନ୍ତବ୍ୟ କରିବା ମୋ ପକ୍ଷରେ ଠିକ୍ କି ଭୁଲ୍ ଜାଣେନା, ମାତ୍ର ବିଶ୍ୱାସକର, ଏଠି ଜୀବନରେ, ପ୍ରକୃତିରେ ଯେତେ ଭେରାଇଟି ଦେଖିଲି, ଅନ୍ୟ କୌଣସି ଠାରେ ତାହା ପାଇପାରି ନାହିଁ ।'

ମୋତେ କିନ୍ତୁ ଭାରତର କୁମାରୀ ଡଲ୍‌ଫିନ୍-କଥିତ ବୈଚିତ୍ର୍ୟ ନୁହେଁ, ତାଙ୍କର ସଫା ଦାନ୍ତ, ଗୋଲାପୀ ଓଠର ଦାଗହୀନ ତ୍ୱକ୍ ଓ ତନ୍ଦ୍ରାଚ୍ଛନ୍ନ ଆଖି ଦେଖି କିପରି ଏକ ପ୍ରକାର ନୂଆ ନୂଆ ଭଲ ଭଲ ଲାଗୁଛି ।

କୁମାରୀ ଡଲ୍‌ଫିନ୍ ଅନ୍ୟାନ୍ୟ ଆମେରିକାନ୍‌ମାନଙ୍କ ଠାରୁ ଅନେକ ଦୃଷ୍ଟିରେ ଭିନ୍ନ ମନେହୁଅନ୍ତି । ସେମିନାର୍ ଆରମ୍ଭ ହେବା ଦିନ 'ବଫେ' ବେଳେ ହିଁ ମୁଁ ତାଙ୍କୁ ପ୍ଲେଟ୍ ଉପରେ ଥୋଇ ଦେଇଥିଲି ଦୁଇଖଣ୍ଡ ବର୍ଫି । ସେଥିରୁ ଖଣ୍ଡେ ପାଟିରେ ପକାଇ, ସେ ପରମ ତୃପ୍ତିରେ କହିଥିଲେ- 'ଓଃ, ଇଟ୍ ଇଜ୍ ୱାଣ୍ଡର୍‌ଫୁଲ୍ ।'

ଏତକ କହିଦେଲା ପରେ ମୁଁ ତାଙ୍କ ମୁହଁକୁ ସିଧାସଳଖ ଚାହିଁବାର ସାହସ ମଧ ଠୁଳ କରିପାରିଲି ନାହିଁ । ମୁଖରୁ ଥରେ ଉଚ୍ଚାରିତ ଶବ୍ଦ ସବୁ ଫେରାଇ ନେବା ଅସମ୍ଭବ । ମାତ୍ର ମୁଁ ତାଙ୍କ ନିକଟରୁ ମୋର ଏ ପ୍ରକାର ବ୍ୟବହାର ପାଇଁ ଦୁଃଖ ପ୍ରକାଶ କରି କ୍ଷମା ମାଗିନେବା ବିଷୟ ଚିନ୍ତା କରୁଥାଏ । ସେ କହିଲେ- 'ଆଜି ଅଧିବେଶନରେ ଆପଣଙ୍କର ଯୁକ୍ତିଯୁକ୍ତ ମନ୍ତବ୍ୟମାନ.....'

ସେ ନିଜର ବାକ୍ୟ ପୂରଣ କରିବା ପୂର୍ବରୁ ମୁଁ କହିପକାଇଲି- 'ଧନ୍ୟବାଦ ।'

ସେ ଈଷତ୍ ହସିଲେ ।

ପଚାରିଲେ- 'ଆପଣ ମୋତେ ଓଡ଼ିଶା ଦେଖାଇଦେବେ ?'

ପୁଣି ଥରେ ମୋର ପାଟିରୁ ବାହାରି ପଡ଼ିଲା- 'ଓଃ, ନିଶ୍ଚୟ । ସେ ତ ମୋର ଭାଗ୍ୟ ।'

ଏବଂ ଏହା ପରେ ସେ ହୋଇଗଲେ ମୋର ବାନ୍ଧବୀ ।

ଇଂଲିଶ୍ ରେ 'ୟୁ' ବୋଇଲେ 'ତୁ', 'ତୁମେ', 'ଆପଣ' ସବୁ ବୁଝାଏ । ମାତ୍ର ଏହା ପରେ ତାଙ୍କର 'ୟୁ' ମାନ ମୋତେ କେବଳ 'ତମେ' ପରି ଶୁଭିଲା ।

ପ୍ରଥମ ଦିନର ଅଧିବେଶନ ଶେଷ ହେବା ସଙ୍ଗେ ସଙ୍ଗେ ସେ ଆସି କହିଥିଲେ- 'ଏଣିକି ଏ ସନ୍ଧ୍ୟାଟା ନୀରସ ବୋଧହେବ । ଚାଲ କୁଆଡ଼େ ଯିବା ।'

ମୁଁ ଥତମତ ହୋଇପଡ଼ିଲି ।

ପଚାରିଲି- 'କୁଆଡ଼େ ଯିବା ?'

କୁମାରୀ ଡଲ୍‌ଫିନ୍ କହିଲେ- 'କଟକ' ।

- 'ଦେଟ୍ ଇଜ୍ ଏ ଡାର୍ଟି ଟାଉନ୍ ।'

- 'ବଟ୍ ୟୁ ଆର୍ ଟୁ ମେକ୍ ଇଟ୍ ଲଭ୍‌ଲି ।'

ତା'ପରେ ତାଙ୍କର ସେଇ ବିଶେଷତ୍ୱଭରା ହସ ।

ତା'ପରେ ସିଧା କଟକ ଡ୍ରାଇଭ୍ ।

ତା'ପରେ ସେ ମୋର ଛାଇ ହୋଇଗଲେ ।

ତା'ପରେ ?

ଆମେ ଦୁହେଁ ଯୋଡ଼ି ହୋଇଗଲୁ କି ?

କଟକ । କଟକ ଏକ ଗୁମ୍ଫା । ସେ ଦୁଇହଳ ତାରକସି ଇୟର୍ ରିଂ କିଣିଲେ । କଟକ ଏକ ଜଙ୍ଗଲ । ସେ ଖଣ୍ଡେ ସମ୍ବଲପୁରୀ ଶାଢ଼ି ଘୋଡ଼େଇ ହୋଇ ନିଜ ଦେହକୁ କିପରି ମାନୁଛି ଦେଖିଲେ; ମାତ୍ର କିଣିଲେ ନାହିଁ । କଟକ ଏକ ଗୋଲକ ଧନ୍ଦା । ତା'ପରେ ଆମେ ଦହେଁ ଯାଇ ବାରବାଟୀ ଷ୍ଟାଡ଼ିୟମ୍‌ରେ ଏକ ସାଂସ୍କୃତିକ ଉତ୍ସବ ଦେଖିଲୁ । କଟକ ଏକ ଛନ୍ଦାଛନ୍ଦି ନର୍ଦ୍ଦମା କଡ଼ରେ ଠିଆ ହୋଇଥିବା ଅସଂଖ୍ୟ ଘର । କୁମାରୀ ଡଲ୍‌ଫିନ୍ ବକ୍ସିବଜାରରେ ଖଣ୍ଡେ ପାନ ଖାଇଲେ । କଟକ ଏକ ଶବ୍ଦ ।

ବିଦାୟ କଟକ.... ବିଦାୟ ।

ଫେରିଲାବେଳେ.....

ସେ ପଚାରିଲେ- 'ତେମେ କୋଉ ବିଷୟ ପଢ଼ଉଚ ?'

ମୁଁ କହିଲି- 'ତୁମ ଦେଶର ସାହିତ୍ୟ ।'

ଏତେ ଜାଗା ବୁଲିଲୁ, ଦେଖିଲୁ- ଅଥଚ ଏ ସବୁ ଜାଗା ନୁହେଁ, ସେ ହିଁ ମୋତେ ଭଲ ଲାଗୁଥିଲେ । ମନେ ହେଉଥିଲା, କଟକ ଠାରୁ ଭୁବନେଶ୍ୱର ଦୂରତ୍ୱ ଦୁଇଶହ ମାଇଲ୍ ହୋଇଥିଲେ କ'ଣ ବା କ୍ଷତି ହୋଇଥାନ୍ତା ?

ମୁଁ ପଚାରିଲି- 'ତମେ କୋଉ ବିଷୟ ପଢ଼ଉଚ ?'

ଏଥର ସେ ହସିଲେ । କହିଲେ- 'ତମେ ଏ ଦେଶର ପିଲାଙ୍କୁ ମୋ ଦେଶର ସାହିତ୍ୟ ପଢ଼ଉଚ । ମୁଁ ମୋ ଦେଶର ପିଲାଙ୍କୁ ଏ ଦେଶର ଦର୍ଶନ ପଢ଼ାଉଚି । ଆମେ ଦୁହେଁ....'

ସେ ନିଜର ଆରମ୍ଭ କରିଥିବା ବାକ୍ୟ ପୂରଣ କରିପାରିଲେ ନାହିଁ । ମୁଁ ସ୍ପଷ୍ଟ ଲକ୍ଷ୍ୟ କଲି ଆଉ କେତେ ପଦ କଥା ସେ ନିଜର ମନ ଭିତରେ କହିସାରିଛନ୍ତି ।

ମୁଁ କିଛି ସମୟ ନୀରବ ରହି ତାଙ୍କୁ ହିଁ ଲକ୍ଷ୍ୟ କରିବାରେ ଲାଗିଲି; ତା'ପରେ ହୃଦୟ ଭିତରେ

ସାହସ ଠୁଳ କରି ପଚାରିଲି- 'ତା'ହେଲେ ଆମେ ଦୁହେଁ କଣ.... ଆମେ ଦୁହେଁ.... ଆମେ ଦୁହେଁ କ'ଣ ପରସ୍ପର ଆଡ଼କୁ ମୁହାଁଉଛୁ ?'

ସେ ଗେଷ୍ଟ୍ ହାଉସ୍ ପୋର୍ଟିକୋରେ କାର୍ ଅଟକାଇ ଓହ୍ଲାଇପଡ଼ିଲେ । ମୁଁ ମଧ ଓହ୍ଲାଇପଡ଼ିଲି ।

ସେ ଆଗପରି 'ଗୁଡ୍ ନାଇଟ୍' କହି ତରତର ହୋଇ ଭିତରକୁ ଚାଲିଯାଉଥିଲେ । ମୁଁ ପଚାରିଲି- 'ମୋ ପ୍ରଶ୍ନର ଉତ୍ତର ଦେଇନାହଁ ଯେ ?'

ସେ ଯାଉଁ ଯାଉଁ ଅଟକିଗଲେ ଓ ସେଇଠି ଠିଆହୋଇ କିଭଳି ଏକ ରୁଦ୍ଧ କଣ୍ଠରେ କହିଲେ- 'ଅସମ୍ଭବ ନୁହେଁ । ଆଚ୍ଛା ଗୁଡ୍ ନାଇଟ୍ ! କାଲି ସକାଳୁ ନିଶ୍ଚୟ ଆସିବ ।'

ସେ ଦିନ ମଧ, ଆଜି ପରି; ତାଙ୍କ ଆକାଶ ରଙ୍ଗର ଗାଉନ୍ ମୋ ଆଖି ଆଗରୁ ଅଦୃଶ୍ୟ ହୋଇଯାଇଥିଲା ।

ମାତ୍ର ତିନିଦିନ ଭିତରେ ଆମେ ପରସ୍ପରର ଅନ୍ତରଙ୍ଗ ହୋଇପଡ଼ିଛୁ । ଏଇ ତିନିଦିନ ଭିତରେ ଆମେ ବିଭିନ୍ନ ବିଷୟରେ କଥାବାର୍ତ୍ତା କରିଛୁ; ଅଥଚ ଥରେ ବି ସେ ମୋତେ ଆତ୍ମାର ସ୍ୱରୂପ ବା ଶଙ୍କରାଚାର୍ଯ୍ୟ ଦର୍ଶନ ବିଷୟରେ କିଛି ପଚାରି ନାହାନ୍ତି ବା ମୁଁ ମଧ ତାଙ୍କୁ ଥରେ ବି ଅଫ୍-ବ୍ରଡ଼ୱେ ଥିଏଟର ବା ବିଟ୍‌ନିକ୍ ସାହିତ୍ୟ ବିଷୟରେ ପଚାରି ନାହିଁ । ଏଇ ତିନିଦିନ ଭିତରେ ସେ ଅନେକ ଥର ମୋ ଦେହରେ ବାଜି ଯାଇଛନ୍ତି; ଅନେକ ଥର ମୋର କାନ୍ଧ ଉପରେ ନିଜର ପାପୁଲି ଥୋଇ ଦେଇଛନ୍ତି; ମାତ୍ର ଏସବୁ ଏତେ ସହଜ ଭାବରେ, ଏତେ ଦ୍ରୁତ ଭାବରେ ଘଟିଯାଉଛି ଯେ ମୁଁ ଇଚ୍ଛାକଲେ ମଧ ତା'ର ପ୍ରତିରୋଧ କରିପାରୁ ନାହିଁ ।

ସେ ଯେଉଁ ଭୂମିରେ ଆସି ଅତିଥି ହୋଇଛନ୍ତି ତାହା ମୋର- ମୋର ପୂର୍ବପୁରୁଷଙ୍କର । ତାଙ୍କ ପଛରେ ଥିବା ପାହାଡ଼, ତାଙ୍କର ପାଦତଳେ ଥିବା ରାସ୍ତା ଓ ମୁଣ୍ଡ ଉପରେ ଝୁଲୁଥିବା ଆକାଶ ମଧ ମୋର । ମାତ୍ର ଏଇ ତିନିଦିନ ହେଲା ମୁଁ ମୋର ଭୂମି, ମୋର ପୂର୍ବପୁରୁଷ, ମୋର ରାସ୍ତା, ମୋର ପାହାଡ଼ ଓ ମୋର ଆକାଶକୁ ଦେଖୁନାହିଁ, କେବଳ ତାଙ୍କୁ ହିଁ ଦେଖୁଛି ।

ଏବଂ ଏଇ ବର୍ତ୍ତମାନ ତାଙ୍କୁ ଗେଷ୍ଟ୍ ହାଉସ୍‌ରେ ଛାଡ଼ିଦେଇ ମୁଁ ଜନଶୂନ୍ୟ ରାସ୍ତାରେ ଫେରୁଛି ।

ଏଇ ରାସ୍ତା ନେଇ ମୋତେ ଶେଷକୁ କେଉଁଠି ଥୋଇବ ? ମୁଁ ପୁଣି ଭାବୁଛି, ସବୁ ଅଧ୍ୟାୟର ଶେଷ ବିଷୟ ଚିନ୍ତାକରି ଲାଭ କ'ଣ ? ସବୁ ବିଷୟର ପରିଣତି ମୁଁ କ'ଣ ନିଜ ଇଚ୍ଛାରେ ସୃଷ୍ଟି କରିପାରିବି ? ତେଣୁ ଯାହା ଯେମିତି ଚାଲିଛି ଚାଲୁ । ଏଇ ଦ୍ରୁତ, ଏଇ ଅବାଧ ସ୍ରୋତର ପ୍ରତିରୋଧ କଲେ ମୁଁ ହୁଏତ କ୍ଷତବିକ୍ଷତ ହୋଇଯିବି ।

ମାତ୍ର ଗୋଟିଏ କଥା : କେବଳ ତିନିଦିନର ଅତୀତକୁ ଭିତ୍ତିକରି ମୁଁ ଏକ ଦୀର୍ଘ ଭବିଷ୍ୟତର ସ୍ୱପ୍ନ ଦେଖିବା ଉଚିତ ହେବ କି ? ନା । ତା'ହେଲେ ମୁଁ ଭାସିଯାଏଁ ଏଇ ସ୍ରୋତରେ, ମୁଁ ବୋହିଯାଏ- ମୁଁ ପହଁରି ଯାଏ ଏଇ ସ୍ରୋତରେ !

ଏଥିରେ ମୋର ଇଚ୍ଛା ଅନିଚ୍ଛାର ପ୍ରଶ୍ନଇ ନାହିଁ । ଯାହା ହେବାର ଥିବ, ହେବ । ମୁଁ ହଠାତ୍ ଭାଗ୍ୟବାଦୀ ହୋଇପଡୁଛି । ମୋତେ ନେଇ ଘଟିଯାଉଥିବା ଘଟଣାମାନଙ୍କ ଉପରେ ମୋର କୌଣସି ନିୟନ୍ତ୍ରଣ ନାହିଁ । ମୋର ବ୍ୟକ୍ତିସତ୍ତା କୁମାରୀ ଡଲ୍‌ଫିନ୍‌ଙ୍କର ବ୍ୟକ୍ତି-ସତ୍ତାରେ ଲୀନ ହୋଇଯାଉଛି-

କୋଳାହଳ ଭିତରେ ଏକ ଧ୍ୱନି ପରି ।

ଉତ୍ତାଳ ତରଙ୍ଗମାଳାରେ ବୁନ୍ଦେ ଲୁହ ପରି ।

ଯାହା ହେବାର ଥିବ ହେବ । ଏକ ଭବିତବ୍ୟର ଅହେତୁକ ଆଶଙ୍କାରେ ମୁଁ କାହିଁକି ନିଜକୁ

ଏଇ ସୁଖଦ ବର୍ତ୍ତମାନ ଠାରୁ ବିଚ୍ଛିନ୍ନ କରିଦେବି ? ଯାହା ସେମିତି ଚାଲିଛି ଚାଲୁ ।·

ମାତ୍ର ମୁଁ ଜାଗ୍ରତ ରହିବି । ଶୋଇପଡ଼ିବି ନାହିଁ । ଶୋଇପଡ଼ିଲେ, ମୋର ସେଇ ନିଶ୍ଚିନ୍ତ ନିଦ ଭିତରେ ଯଦି ମୋର ଦୀର୍ଘ ଭବିଷ୍ୟତର ଏକ ସ୍ୱପ୍ନ ଛବି ଝଲମଲ୍ କରି ଉଠେ ? ନା, ମୁଁ ଶୋଉଚି ନାହିଁ କି ଚେଇଁବି ନାହିଁ । ଅଥଚ ଶୋଇଥିବି, ଆଉ ଚେଇଁଥିବି ।

ଅର୍ଥାତ୍ ତନ୍ଦ୍ରା ।

ଅର୍ଥାତ୍ ଗୋଟିଏ ଆଖି ଅନ୍ତର୍ମୁଖୀ କରାଇ ଅନ୍ୟ ଆଖିଟିକୁ ବହିର୍ମୁଖୀ କରାଇବାର ସେଇ କଠିନ ଯୋଗ ।

ଆଜିର ରାତି କୁହୁଡ଼ିର ରାତି ।

ଗୁଡ୍ ନାଇଟ୍ କୁମାରୀ ଡଲ୍‌ଫିନ୍ ! ତୁମର ମଙ୍ଗଳ ହେଉ । ଶୁଭରାତ୍ରି ମୋର ମତ୍ସ୍ୟ କନ୍ୟା । ତୁମେ ସଫଳ ହୁଅ; କିନ୍ତୁ ମୋର ତନ୍ଦ୍ରାକୁ ଆଚ୍ଛନ୍ନ କରନାହିଁ; ପ୍ଲିଜ୍, ଦୟାକରି ।

X          X          X

ପରିଦିନ ସକାଳ ।

ନିର୍ଦ୍ଧାରିତ ସମୟର ବହୁ ପୂର୍ବରୁ କୁମାରୀ ଡଲ୍‌ଫିନ୍‌ଙ୍କର ସଦ୍ୟ-ଧୁଆ ମୁହଁ ମୋର ପ୍ରତୀକ୍ଷା କରୁଥିଲା । ନିର୍ଦ୍ଧାରିତ ସମୟର ବହୁ ପୂର୍ବରୁ ମୁଁ ସେଠାରେ ପହଞ୍ଚିଯାଇଥିଲି ।

-ଗୁଡ୍ ମର୍ନି

-ଗୁଡ୍ ମର୍ନି

ଆକାଶ ନିର୍ମେଘ । ରାସ୍ତା ପୂର୍ବ ରାତିପରି ଜନଶୂନ୍ୟ ।

ସେ ପଚାରିଲେ- 'ତମେ ଡ୍ରାଇଭ୍ କରିବ ନା ମୁଁ ?'

ମୁଁ କହିଲି- 'ତମେ କିଛି ବାଟ ଡ୍ରାଇଭ୍ କରିବ, ତା'ପରେ ମୁଁ, ତା'ପରେ ତମେ, ତା'ପରେ ମୁଁ, ତା'ପରେ ତମେ....'

ସେ ହସିଲେ । ସେ ହସି ନଥିଲେ ମୋତେ ଦୁଃଖ ଲାଗିଥାନ୍ତା; କାରଣ ତାଙ୍କୁ ହସାଇବା ଉଦ୍ଦେଶ୍ୟରେ ହିଁ ମୁଁ ଏପରି କହିଥିଲି ।

ତାଙ୍କର ସଫା ଦାନ୍ତ । ପାଖୁଡ଼ା ପରି ଓଠ । ଦାଗହୀନ ତ୍ୱକ୍ ।

କହିଲେ- 'ଏବେ ତା'ହେଲେ ମୁଁ ଡ୍ରାଇଭ୍ କରୁଛି ।'

ମୁଁ ମୁଣ୍ଡ ହଲାଇଲି- 'ବେଶ୍ ଭଲକଥା.... ଲେଡ଼ିଜ୍ ଫାଷ୍ଟ ।'

ସେ ପୁଣି ହସିଲେ ।

ତାଙ୍କର ଏହି ହସ ଯେପରି ଏକ ସ୍ନିଗ୍ଧ ନାରଙ୍ଗୀ ରଙ୍ଗ ହୋଇ ସାରା ସହରରେ ନେସି ହୋଇଯାଇଥିଲା । ଶିରି ଶିରି ପବନ । ମୁକ୍ତ ପଥ । କାର୍ ଗଡ଼ିଚାଲିଲା । ନିର୍ବିରୋଧ । ନିଃଶଙ୍କ । କୁମାରୀ ଡଲ୍‌ଫିନ୍ ସବୁଜ ବିଲ ଓ କିଆବୁଦାମାନ ଦେଖି ମୁଗ୍ଧ ହେଉଥିଲା ବେଳେ ମୁଁ କୁମାରୀ ଡଲ୍‌ଫିନ୍‌ଙ୍କୁ ଦେଖି ମୁଗ୍ଧ ହେଉଥାଏ କିମ୍ବା ରାସ୍ତାକଡ଼ରେ ଲେଖାହୋଇଥିବା ଟ୍ରାଫିକ୍ ନିୟମସବୁ ମୁଖସ୍ଥ କରୁଥାଏ ।

ବାଟରେ ସେ ପଚାରିଲେ- 'କୋନାରକ ଠାରୁ ସମୁଦ୍ର କେତେ ବାଟ ?'

ମୁଁ କହିଲି- 'ବେଶି ବାଟ ନୁହେଁ ।'

- 'ମୁଁ ଟିକେ ଗାଧାନ୍ତି ସେଠି ।'

-'କିନ୍ତୁ ପାଖରେ ଆଉ ଥରେ ଗାଧୋଇବା ଲାଗି ମିଠା ପାଣି ଅଛି ନା ନାହିଁ ଜାଣେନା ।'

-'ତାହେଲେ ?'

-'ଆମେ ପୁରୀରେ ଗାଧୋଇଲେ ଭଲ ହେବ ।'

-'କିନ୍ତୁ ଶୁଣିଛି ପୁଉରୀରେ ଖୁବ୍ ଲୋକ ଭିଡ଼ ।'

ମୁଁ କୌଣସି ମନ୍ତବ୍ୟ ଦେଲି ନାହିଁ । କାର୍ ଗଡ଼ିଚାଲିଥାଏ ।

କିଛି ସମୟ ପରେ...

ସେ ହଠାତ୍ ପଚାରିଲେ- 'ତମେ ବାହାହେଲଣି ନା ?'

ଟିକିଏ ବିଳମ୍ବରେ ମୁଁ ବୁଝିଲି ଯେ କୋଣାର୍କ ଠାରୁ ସମୁଦ୍ରର ଦୂରତ୍ୱ ସେ ପଚାରୁଥିଲେ କେବଳ କଥାବାର୍ତ୍ତା ଆରମ୍ଭ କରିବା ପାଇଁ ।

ମୁଁ ହସିଲି । କହିଲି- 'ମୋତେ ଏ ଯାଏଁ କୌଣସି ଝିଅ ପସନ୍ଦ କରିନାହିଁ ।'

ସେ କହିଲେ- 'ତମେ ମିଛ କହୁଛ । ନହେଲେ କିଛି ଜାଣିନ । ଦେଟ୍ କେନ୍ ନଟ୍ ବି ଟ୍ରୁ ।'

ସେ ପୁଣି ହସିଲେ । ମୋର ଇଚ୍ଛା ହେଉଥିଲା, ମାତ୍ର କହିଲି ନାହିଁ- 'ଯାହା ଏଯାଏଁ ସତ୍ୟ ଥିଲା ତାହା ଏଇ ମୁହୂର୍ତ୍ତରୁ ହୁଏତ ମିଥ୍ୟା ପାଲଟି ଯାଇପାରିଥାଏ ।' ମୁଁ ଏହା କହିଲି ନାହିଁ; କିନ୍ତୁ ଭିତରେ ଭିତରେ ତିନିଚାରି ଥର ଆବୃତ୍ତି କରିପକାଇଲି । ମୁଁ ଏହା କହିଲି ନାହିଁ, କାରଣ ଏହା କହିବାର ଆବଶ୍ୟକତା ହୁଏତ ନଥିଲା ।

ତାଙ୍କର ସଫା ଦାନ୍ତ, ଗୋଲାପୀ ଓଠ ଓ କଜ୍ଜଳହୀନ ଉଜ୍ଜ୍ୱଳ ଆଖି ଦେଖି ମୋର ମନେହେଲା- ସେ ନିଜକୁ ମୋ ଆଗରେ ପ୍ରସ୍ତାବ କରୁଛନ୍ତି, ସେ ନିଜକୁ ମୋ ଆଗରେ ବାଢ଼ି ଦେଉଛନ୍ତି ।

X X X

କୋନାରକ୍ ।

କୋଣାର୍କ । ଅର୍କତୀର୍ଥ । ସୂର୍ଯ୍ୟରଥ । ବାରଶ ବଢ଼େଇ । ଧର୍ମପଦ । ଠୁକ୍ ଠୁକ୍ ନିହାଣ । ବାରବର୍ଷ । ଶାମ୍ବ । ବ୍ଲାକ୍ ପାଗୋଡ଼ା ।

ଏହାକୁ ମୁଁ ଯେତେଥର ଦେଖିଛି, ସେତେ ଥର ନିଜକୁ ଦୁର୍ବଳ ଓ ନ୍ୟୁନ ମନେ କରିଛି । ଏହାର ବିପୁଳ ଆୟତନ ଭିତରେ ମୁଁ ନିଜେ ଯେମିତି କେଉଁ କଣରେ ଗୁଡ଼ି ହୋଇ ଲାଗିଯାଏ । ତଥାପି ଏହାର ଛାଇରେ ଠିଆହେଲେ ମୋର ଆଖି ଲୁହ ଟଳ ଟଳ ହୋଇଯାଏ । ମାତ୍ର ଏଥର ମୁଁ ଏକ ପ୍ରକାର ଗର୍ବ ଅନୁଭବ କରୁଛି । ମୋ ଭିତରେ ଏକ ପ୍ରକାର ନୂଆ ଦମ୍ଭ, ନୂଆ ସାହସ ଠୁଳ ହେଉଛି ।

ସ୍ୱାଭାବିକ ଭାବରେ କେତେଜଣ ଧୋତିପିନ୍ଧା ଗାଇଡ୍ ଆମକୁ ଘେରିଗଲେ । ସେମାନଙ୍କ ମୁହଁରେ ଏକ ପ୍ରକାର ନିରୀହ ସମର୍ପିତ ଭାବ । ତଥାପି ମୁଁ ମନା କରିଦେଲି ।

କୁମାରୀ ଡଲ୍‌ଫିନ୍ ଆଗକୁ ବଢ଼ିଲେ । ଆଉ ଜଣେ ଆସି ତାଙ୍କ ଆଗରେ ଠିଆ ହେଲା । ହାତରେ ରତିଲଗ୍ନ ପ୍ରସ୍ତର ମୂର୍ତ୍ତିମାନଙ୍କର ଥାକେ ଫଟୋଗ୍ରାଫ୍ ଧରି ସେ କହି ଚାଲିଲା- 'ବିଉଟିଫୁଲ୍ ଫଟୋ ମେମ୍ ସା'ବ୍, ବିଉଟିଫୁଲ୍ । ଇଲ୍ ଫଟୋଗ୍ରାଫ୍ । ଥ୍ରୀ ରୁପିଜ୍ ଓନ୍‌ଲି ।' କିଛି ମୁହୂର୍ତ୍ତର ନୀରବତା ପରେ ସେ ପୁଣି କହିଲା- 'ଅଲ୍ ରାଇଟ୍ । ଫର୍ ୟୁ ଓନ୍‌ଲି-ଟୁ ରୁପିଜ୍ ଫିଫ୍‌ଟି ।'

ମୋତେ ବଡ଼ ବିରକ୍ତ ଲାଗୁଥାଏ । ତାକୁ ମନା କରିଦେଲି- 'କାହିଁକି ତାଙ୍କ ସାଙ୍ଗରେ ଲାଗିଛ ? ଯାଅ !'

ସେଇ ଲୋକଟା ଚାଲି ଯାଉ ଯାଉ ଗୁଣୁଗୁଣୁ କରି କ'ଣ ଗୁଡ଼େ କହିପକାଇଲା । ମୋତେ

କେବଳ ଶୁଭିଲା- 'ଶଳା ! ସତେ ଯିମିତି ନିଜର ମାଇପ !'

ମୁଁ କୁମାରୀ ଡଲ୍‌ଫିନ୍‌କୁ ଡାକିଲି- 'ଚାଲ ।'

ସେ ପୁଣି ଆଗକୁ ବଢ଼ିଲେ ।

ସେ ହଠାତ୍ ଠିଆହୋଇପଡ଼ିଲେ । ମନ୍ଦିର ଦିଗକୁ ଦୃଷ୍ଟି ନ ଫେରାଇ ନିଜକୁ ସମ୍ବୋଧନ କଲାପରି କହିଲେ- 'ଏଇଟା ଏତେ ବିରାଟ ହୋଇଥିବ ବୋଲି ମୋର ଧାରଣା ନଥିଲା ।'

ମୁଁ ତାଙ୍କ ନିକଟରେ ଠିଆହୋଇ ଜଣେ ପେଷାଦାର ଗାଇଡ୍ ଭଳି ଏକ ନିଃଶ୍ୱାସରେ କହିଚାଲିଲି- 'ମେମ୍ ସା'ବ୍ ! ଆଗ ଏହାର ଅତି ନିକଟରେ ସମୁଦ୍ର ଥିଲା । ଏହାକୁ ନିର୍ମାଣ କରାଇଥିଲେ ଲାଙ୍ଗୁଳା ନରସିଂହ ଦେବ ନାମଧେୟ ଜଣେ କଳାପ୍ରିୟ ରାଜା । କ୍ଷମାକରିବେ, କେଉଁ ସାଲରେ ଏହା ନିର୍ମିତ ହୋଇଥିଲା, ତାହା ମୋର ମନେ ନାହିଁ । ତେବେ ଏହାର ନିର୍ମାଣରେ ବାରବର୍ଷ ସମୟ, ବାରଶହ ବଢ଼େଇଙ୍କ ଶ୍ରମ ଓ ବାରବର୍ଷର ରାଜସ୍ୱ ଧନ ବ୍ୟୟିତ ହୋଇଥିଲା । କଥିତ ଅଛି ମନ୍ଦିର ଶୀର୍ଷରେ ଏକ ଚୁମ୍ବକ ପଥର ଲାଗିଥିଲା ଓ ସେହି ଚୁମ୍ବକୀୟ ଆକର୍ଷଣରେ ଅନେକ ଜାହାଜ ଟାଣିହୋଇ ଆସୁଥିଲେ । ଆଉ ଜାଣନ୍ତି, ଧର୍ମପଦ ନାମକ ଜଣେ ବାରବର୍ଷବୟସ୍କ ବାଳକ ଏହାର ମୁଣ୍ଡି ମାରିଥିଲା ଓ ମୁଣ୍ଡି ମାରିସାରିଲା ପରେ ସମୁଦ୍ର ଗର୍ଭକୁ ଡେଇଁ ପଡ଼ିଲା । ଆପଣ ପଚାରିପାରନ୍ତି, କାହିଁକି ? ବାରଶହ ବଢ଼େଇଙ୍କ ମାନ ରକ୍ଷା ପାଇଁ, ପ୍ରାଣ ରକ୍ଷା ପାଇଁ ହିଁ ସେ ନିଜର ଜୀବନ ଉତ୍ସର୍ଗ କରିଥିଲା ।'

ଏତକ କହିସାରି ମୁଁ ସାଁ ସାଁ ହୋଇପଡ଼ିଲି । କୁମାରୀ ଡଲ୍‌ଫିନ୍ ମୋ ମୁହଁକୁ ବଲବଲ କରି ଚାହିଁରହିଥାନ୍ତି । ମୁଁ ପୁଣି ଆରମ୍ଭ କଲି- 'କିନ୍ତୁ ଏଇ ଯାହା ଆପଣଙ୍କ ଆଖି ଆଗରେ ଦିଶୁଛି, ତାହା ପୂର୍ଣ୍ଣ ମନ୍ଦିର ନୁହେଁ; ଏହା ମୁଖଶାଳା ମାତ୍ର; ଠିକ୍ ଯେମିତି ଗୋଟିଏ ବିରାଟ ଗ୍ରନ୍ଥର ମୁଖବନ୍ଧ ମାତ୍ର । ଗ୍ରନ୍ଥ ନାହିଁ, ମୁଖବନ୍ଧ ରହିଛି । ମନ୍ଦିର ନାହିଁ, ମୁଖଶାଳା ରହିଛି । ଆଉ କିଛି ?'

କୁମାରୀ ଡଲ୍‌ଫିନ୍ କିଛି ନକହି ଦ୍ରୁତ ପଦକ୍ଷେପ ନେଇ ଆଗକୁ ବଢ଼ିବାକୁ ଲାଗିଲେ । ପ୍ରଚୁର ଖରା ପଡ଼ିସାରିଥାଏ । ମୁଁ ତାଙ୍କ ପଛେ ପଛେ ଚାଲିଲି । ମୋର ମୁଣ୍ଡ ଭିତରଟା ଝିମ୍ ଝିମ୍ କରୁଥାଏ । ମୁଁ ତଥାପି ଚାଲିଲି । ମୋତେ ଭୋକ ମଧ୍ୟ ଲାଗୁଥାଏ । ତଥାପି ଚାଲିଲି ।

ମନ୍ଦିର ଚଉତରାରେ ପହଞ୍ଚିବା ପରେ ମୁଁ କେବଳ ପଦେ କଥା କହିଲି- 'ଏଇଟା ନାଟ୍ୟମନ୍ଦିର ।'

ଏହା ପରେ ମନ୍ଦିର ବିଷୟରେ କୌଣସି ଟିପ୍‌ପଣୀ ଦେବା ଅନାବଶ୍ୟକ ମନେ କରି ମୁଁ ନୀରବ ରହିଲି । କୋଣାର୍କ ନିଜେ ହିଁ ନିଜର ଟିପ୍‌ପଣୀ, ନିଜେ ହିଁ ନିଜର ବ୍ୟାଖ୍ୟା ।

କୁମାରୀ ଡଲ୍‌ଫିନ୍ କେବଳ ଫଟୋ ପରେ ଫଟୋ ନେବାରେ ଲାଗିଗଲେ । ତାଙ୍କର ଚଳପ୍ରଚଳ ହେବାର ଭଙ୍ଗୀରୁ, ତାଙ୍କର ଚାହାଣିରୁ ମୋର ମନେହେଲା, ଯଦି ତାଙ୍କ ଦେଇ ସମ୍ଭବ ହୁଅନ୍ତା, ତା'ହେଲେ ସେ ସମଗ୍ର ମନ୍ଦିରଟାକୁ ନିଜ ସାଙ୍ଗରେ ନେଇଯାଆନ୍ତେ ।

ମୁଁ ପଚାରିଲି- 'ତୁମକୁ ଭୋକ ହେଉନି ?'

ସେ କହିଲେ- 'ପରେ ଖାଇଲେ ବି ଚଳିବ ।'

ଏଇ କଥା ପଦକ ସେ ଏଭଳି ଭାବରେ କହିଲେ ଯେ ମୋର ମନେହେଲା ସେ 'ମୋତେ ବିରକ୍ତ କରନାହିଁ' ବୋଲି କହୁଛନ୍ତି ।

ରଙ୍ଗହୀନ ମୂର୍ତ୍ତିମାଳିକା ।

ତଳେ ବୁଲୁବୁଲୁ ସେ ହଠାତ୍ ମନ୍ଦିର ପଛ ବାଁ ପାଖରେ ଥିବା ରତିଭଗ୍ନ ମୂର୍ତ୍ତିମାଳା ନିକଟରେ

ଅଟକିଗଲେ । କ୍ୟାମେରାଟା ତାଙ୍କ ହାତରେ ଝୁଲି ରହିଥାଏ । ମୁଁ ତାଙ୍କ ପଛରେ ଠିଆହୋଇ ଶୁଣିବାକୁ ଲାଗିଲି ତାଙ୍କ ଶ୍ୱାସପ୍ରଶ୍ୱାସର ଦ୍ରୁତ ଲୟ ।

ପଚାରିଲି- 'ଫଟୋ ନେବ ?'

କହିଲେ- 'ଏଁ ? ନା ।'

ସେ ଏଭଳି ଭାବେ ମନାକଲେ ସେ ମୋର ମନେହେଲା ସେ ନିଜର ଚୈତନ୍ୟ ହରାଇସାରିଛନ୍ତି । ତାଙ୍କର କଜ୍ଜ୍ୱଳହୀନ ଆଖି ଦୁଇଟାରେ ଏକ ଅଜବ ଢଳଢଳ ଭାବ । ତାଙ୍କର ତାରକସି ଛୟଷ୍ଟ ରିଂଖଞ୍ଜା କର୍ଣ୍ଣପଟଳ ରକ୍ତାକ୍ତ । ସେ ଯେପରି ନିଜକୁ ସମ୍ପୂର୍ଣ୍ଣ ବୁଡ଼ାଇ ଦେଇଛନ୍ତି ଏଇ ରତିଲଗ୍ନ ନରନାରୀଙ୍କର ମୂର୍ତ୍ତିମାଳାରେ ।

ସତରେ ଯେପରି ଜୀବନ ଓ ସ୍ଥିତିର ଏକ ଅତି ଗୋପନୀୟ ସତ୍ୟକୁ ଆବିଷ୍କାର କରିସାରି ପ୍ରାପ୍ତିର ଆନନ୍ଦରେ ସେ ଏତେ ବେଶି ଉଲ୍ଲସିତ ଯେ, ସେଇ ଉଲ୍ଲାସ, ସେଇ ଶିହରଣକୁ ବ୍ୟକ୍ତ କରିବା ନିମନ୍ତେ ସେ ଶବ୍ଦ ଖୋଜି ପାଇପାରୁ ନାହାନ୍ତି ।

ସେ ନିର୍ବାକ୍,

ସେ ନିଷ୍ପନ୍ଦ,

ସେ ଜଡ଼ ।

ତାଙ୍କ ଦେହରେ ବର୍ତ୍ତମାନ ଟିପ ମାରିଦେଲେ ହୁଏତ ମୋର ଆଙ୍ଗୁଠି ଜଳିଯିବ କିମ୍ବା ସେ ନିଜେ ତଳେ କଚାଡ଼ି ହୋଇ ପଡ଼ିଯିବେ ।

ମୁଁ ପଚାରିଲି- 'ଉପରକୁ ଚଢ଼ିବା ?'

ଏ ପ୍ରଶ୍ନ ଶୁଣି, ମୁଁ ସ୍ପଷ୍ଟ ଦେଖିଲି, ତାଙ୍କର ସମଗ୍ର ଶରୀର କ୍ଷଣକ ପାଇଁ ଦୋହଲିଗଲା । ସେ ଥରି ଉଠିଲେ ।

କହିଲେ- 'ନା, ଏଇ ମାଟି ଭଲ ।'

ମୁଁ ପୁଣି ପ୍ରସ୍ତାବ କଲି- 'ଚାଲନ୍ତୁ ତାହେଲେ... ଫେରିବା ।'

କାହିଁକି ଜାଣେନା; ମୁଁ ତାଙ୍କୁ ସେଇ ଆଦିମ-କ୍ରୀଡ଼ାର ଦୃଶ୍ୟ ଦେଖିବାରୁ ବଞ୍ଚିତା ନୁହେଁ, ନିବୃତ୍ତ କରିବାକୁ ଚାହୁଁଥିଲି - ସେ ସେଇ ଆଦିମ ପ୍ରବୃତ୍ତି ଦ୍ୱାରା ସଂକ୍ରମିତ ହୋଇ ନପଡ଼ନ୍ତୁ । ମାତ୍ର ସେ ସେଠୁ ଉଠିଲେ ନାହିଁ । ଉଠିପାରିବା ଅବସ୍ଥାରେ ହୁଏତ ସେ ସେତେବେଳେ ନଥିଲେ ।

ମୁଁ ପୁଣି ଥରେ ତାଙ୍କୁ ସଚେତନ କରାଇଦେଲି- 'ଏଠି ଆମର ନିର୍ଦ୍ଧାରିତ ଦୁଇଘଣ୍ଟା ସମୟ ଶେଷ ହୋଇଆସୁଛି ଯେ ।'

ଏଥର ସେ ପଛକୁ ଲେଉଟି ଚାହିଁଲେ । ମୋର ଆଖି ଦୁଇଟାରେ ନିଜର ଆଖି ଦୁଇଟାକୁ ମିଳାଇଦେଇ ସେ କହିଲେ- 'ତୁମେ ଜାଣିଚ ନା ? ଏଠି ଏଇମିତି ଆହୁରି ଆଠଘଣ୍ଟା ବସି ରହିଲେ ବି କ୍ଳାନ୍ତିର ଚାପରେ ମୋର ଅଙ୍ଗ ଅବଶ ହୋଇଯିବ ନାହିଁ । ମୁଁ ଥକିଯିବି ନାହିଁ ।'

ମୁଁ ପଚାରିଲି- 'କିନ୍ତୁ ଏ ଖରା ? ଭୋକ ?'

ତାଙ୍କର ଦୃଷ୍ଟିରେଖା ଅନେକ ଦୂରକୁ ଲମ୍ବିଗଲା । ସେ ହାରିଲେ ନାହିଁ । କହିଲେ- 'ଆଉ କିନ୍ତୁ କ'ଣ ? ଏତେ ଦିନ ଧରି ଯାହା ଖୋଜୁଥିଲି, ତାହା କେବଳ ଏଇଠାରେ ହିଁ ପାଇଲି ।'

ମୁଁ ପଚାରିଲି- 'କ'ଣ ଖୋଜୁଥିଲ ?'

ସେ ସାମ୍ନାର ରତିଲଗ୍ନ ପ୍ରସ୍ତର ମୂର୍ତ୍ତି-ମାଳା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି କହିଚାଲିଲେ- 'ଏଇ

ଦେଖ... ଜୀବନ୍ତ ପ୍ରସ୍ତର । ସେମାନଙ୍କର ପଥୁରିଆ, ନିର୍ଜୀବ ଦେହରେ ଭରି ରହିଛି କେତେ ଜୀବନ । ଏମାନେ କେତେ ଉଦ୍ଦାମ, କେତେ ମତ୍ତ ! ହେଇ ଦେଖ.... ଏମାନେ କେତେ ଚଞ୍ଚଳ, ଅଥଚ କେତେ ସଂଯତ !'

ତା'ପରେ ମୋ ଆଡ଼କୁ ମୁହଁ ବୁଲାଇ ସେ ସ୍ୱୀକାରୋକ୍ତି କରିବା ଭଙ୍ଗୀରେ କହିଲେ- 'ମୁଁ ଅନେକ ବ୍ଲୁ ଫିଲ୍ମ ଦେଖିଛି, ଅନେକ ଷ୍ଟ୍ରୀପ୍ ଟିଜ୍, ଅନେକ କାବ୍ୟରେ ଦେଖିଛି । ମାତ୍ର ଏଇ ନିର୍ଜୀବ ପଥରର ମୂର୍ତ୍ତିମାଳା ମୋର ଅଙ୍ଗଅଙ୍ଗରେ ଯେଉଁ ଉତ୍ତାପ ଓ ଉତ୍ତେଜନା ଭରିଦେଇପାରିଲା, ତାହା ଅନ୍ୟ କୌଣସି ମାଧ୍ୟମ ଜରିଆରେ ସମ୍ଭବ ହୋଇପାରିନଥିଲା ।'

କୁମାରୀ ଡଲଫିନଙ୍କର ଗୋଲାପୀ ଗାଲ କ୍ରମଶଃ ଲାଲ ହୋଇ ଆସିଲା । ତାଙ୍କର ଆଖି ମୁଦି ହୋଇ ଆସୁଥାଏ, ଓଠ ଥରିଯାଉଥାଏ, କପାଳରେ ବିନ୍ଦୁ ବିନ୍ଦୁ ଝାଳ ।

X X X

ଫେରିବା ବାଟରେ ମୁଁ ଡ୍ରାଇଭ୍ କରୁଥାଏ ।

ପଚାରିଲା - 'କୋଣାର୍କ କିମିତି ଲାଗିଲା ?'

ସେ କହିଲେ - 'ଗାଡ଼ି ରଖ '

ମୁଁ ରାସ୍ତାର ଗୋଟିଏ କଡରେ ଗାଡ଼ି ଅଟକାଇଦେଲି । ମୋ ଆଡକୁ କିଭଳି ଏକ ନିରୀହଭାବରେ ଚାହିଁ ସେ ପଚାରିଲେ - 'ଡୁ ୟୁ ଲଭ୍ ମି ?'

ମୁଁ ହଠାତ କୌଣସି ଉତ୍ତର ଯୋଗାଡ କରିପାରିଲି ନାହିଁ ।

ସେ ପୁଣି ମୋ ଆଡକୁ ଆଗେଇ ଆସି, ମୋ କାନ୍ଧ ଉପରେ ତାଙ୍କର ବାହୁ ଥୋଇ ଦେଇ କହିଲେ - 'ପ୍ଲିଜ୍ ପ୍ଲିଜ କିସ୍ ମି ।'

ତାଙ୍କର ଥରିଲା ଥରିଲା କଣ୍ଠସ୍ୱର ହିଁ ସ୍ପଷ୍ଟ ସୂଚାଇଦେଉଥିଲା ଯେ ସେ ଅତି ବିଶ୍ୱସ୍ତଭାବରେ ନିଜର ସମଗ୍ର ଶରୀର, ନିଜର ସମଗ୍ର ସତ୍ତାକୁ ମୋ ନିକଟରେ ସମର୍ପଣ କରିଦେଉଛନ୍ତି ।

ତାଙ୍କ ପିଠି ଉପରେ ମୋର ଦୁଇହାତ ଘୁଞାଇ ଆଣି ତାଙ୍କ ଓଠ ଉପରେ ମୁଁ ମୋର ଓଠ ଥୋଇଦେଲି । ମୋର ମୁଣ୍ଡ ଭିତରଟା ହଠାତ୍ ଓଜନିଆ ହୋଇପଡିଲା-ଯେମିତିକି ଏକ ପାରଦର ହ୍ରଦ । ମୁଁ ତାଙ୍କର ତଳ ଓଠଟିକୁ ମୋର ପାଟି ଭିତରକୁ ଟାଣି ନେଲି । ମୋର ଛାତି ତଳେ ତାଙ୍କ ଛାତିର ସ୍ପନ୍ଦନ ଓ ମୋ ପିଠି ଉପରେ ତାଙ୍କର ବାହୁ ଚାପ ମୁଁ ବେଶ୍ ଅନୁଭବ କରୁଥାଏ । ଆମେ ଦୁହେଁ ପରସ୍ପରକୁ ଏତେ ଜୋର୍‌ରେ ଭିଡି ଧରିଲୁ ଯେ କ୍ଷଣକପାଇଁ ମୋର ମନେହେଲା, ଆମେ ହୁଏତ ରୁଦ୍ଧଶ୍ୱାସ ହୋଇପଡିବୁ, ଆମର ପିଞ୍ଜରାହାଡମାନେ ହୁଏତ ଗୁଣ୍ଡହୋଇଯିବେ ।

ମୁଁ ତାଙ୍କଠାରୁ ଏଇୟା ଆଶା କରୁଥିଲି କି ?

ତାଙ୍କ ନିକଟରୁ ନିଜକୁ ମୁକ୍ତ କରି ମୁଁ ମୁହଁରୁ ଝାଳ ପୋଛିବାକୁ ଲାଗିଲି । ଆଖି ଆଗରେ ମୋର ଆଲୋକର ସମ୍ଭାକୁଆ ।

ପଚାରିଲି - 'ଅଳ୍ପ ଦିନ ରହି ତୁମେ ଏଠୁ ଚାଲିଯିବ । ମୋତେ ପାସୋରିଦେବ ନାହିଁ ତ ?'

ସେ ଓଲଟି ମୋତେ ପଚାରିଲେ - 'ତା କେବେ ସମ୍ଭବ ?'

ମୁଁ କହିଲି - 'ଏ ପୃଥିବୀରେ ଅନେକ କିଛି ସମ୍ଭବ ଡଲି ! କୋଣାର୍କ ପରି ଏକ ବିରାଟ ମନ୍ଦିର ଧୂଳିସାତ୍ ହୋଇଯିବା ମଧ୍ୟ ସମ୍ଭବ ।'

ସେ ଦଣ୍ଡେ ନୀରବରହିଲେ ।

ତା'ପରେ କହିଲେ - 'ତୁମେଇ ତ ଟିକିଏ ଆଗରୁ କହୁଥିଲି, ମୁଖଶାଳା ଅଛି ମନ୍ଦିର ନାହିଁ, ମୁଖବନ୍ଧ ଅଛି ଗ୍ରନ୍ଥ ନାହିଁ - ନୁହେଁ ?

ମୁଁ ସ୍ୱୀକାରକଲି - 'ହଁ' କହିଥିଲି ।

ସେ ମୋର କାନ୍ଧ ଉପରେ ନିଜର ମୁଣ୍ଡ ଲଦିଦେଇ କହିଚାଲିଲେ - 'ପ୍ରେମ ଯଦି ଏକ ମନ୍ଦିର ହୁଏ , ପରିଚୟ ତାର ମୁଖଶାଳା । ପ୍ରେମ ଯଦି ଏକ ଗ୍ରନ୍ଥ ହୁଏ, ପରିଚୟ ତା'ର ମୁଖବନ୍ଧ ।'

ତାଙ୍କ ଆଖିରୁ ଧାର ଧାର ଲୁହ ଖସିପଡୁଥାଏ । ତଥାପି ସେ କହିଚାଲିଥାନ୍ତି-''ମନ୍ଦିର ଓ ଗ୍ରନ୍ଥ ନଥିଲେ ବି ଯେପରି ମୁଖଶାଳା ଓ ମୁଖବନ୍ଧ ରହିପାରେ, ଠିକ୍ ସେହିପରି ଆମେ ପରସ୍ପରଠାରୁ ଦୂର ହୋଇଗଲା ପରେ ମଧ୍ୟ ଆମର ଏ ପରିଚୟର ଅନ୍ତ ହେବ ନାହିଁ, କେବେ ବି ଅନ୍ତ ହେବ ନାହିଁ, କେବେ ବି ଅନ୍ତ ହେବ ନାହିଁ ।''

ମୁଁ ନୀରବ ରହିଥିଲି, କାରଣ ସେଇଠି ଆମର ପରିଚୟର ସମାପ୍ତି ନଘଟି ଆରମ୍ଭ ମାତ୍ର ହେବାକୁ ଯାଉଥିଲା । ମୋର ମନେହୋଇଥିଲା, ହଠାତ୍ ମୋର ବୟସ କମିଯାଇଛି ଓ ମୁଁ ଜଣେ ଅଠର ବର୍ଷର ଯୁବକ ପାଲଟିଯାଇଛି ।

X X X

ସେମିନାର ଆରମ୍ଭ ହୁଏ ଓ ଶେଷ ହୁଏ ।

ଲୋକ ଆସନ୍ତି ଓ ଯାଆନ୍ତି ।

ମାତ୍ର ସେଥର ଭୁବନେଶ୍ୱର ଏରୋଡ୍ରମ୍‌ରେ କୁମାରୀ ଡଇଫିନ୍‌ଙ୍କୁ ବିଦାୟ ଦେଇ ହାତ ହଲାଇବାବେଳେ ଯୁଗପଦ୍ ହଜାଇବାର ଦୁଃଖ ଓ ପାଇବାର ଆନନ୍ଦ ଦୁଇବୁନ୍ଦା ଲୁହ ହୋଇ ମୋ ଆଖିରୁ ଖସିପଡିଥିଲା ।

ଏବଂ ମୋର ମନେହୋଇଥିଲା ଯେ-

ସେମିନାର ସବୁବେଳେ ଆରମ୍ଭ ହିଁ ହୁଏ,

କେବେ ଶେଷ ହୁଏ ନାହିଁ ।

ଲୋକେ କେବଳ ଆସନ୍ତି,

ସେମାନେ କେବେ ଯାଆନ୍ତି ନାହିଁ ।

# ନିରୁଦ୍ଦିଷ୍ଟ

ରାମଚନ୍ଦ୍ର ବେହେରା

ତୁମେ ଜଣେ ଲୋକକୁ ବୁଢ଼ା ହେବା ଦିନଠାରୁ ବୁଢ଼ା ହେବା ପର୍ଯ୍ୟନ୍ତ ଦେଖି ଆସୁଚ । କ'ଣ ଧାରଣା ହେବ ? ତୁମେ ହୁଏତ ଭାବିବ ଯେ ସେ ଲୋକଟା ବୁଢ଼ା ହେବା ପରେ ହିଁ ଆସିଚି ଏ ସଂସାରକୁ । କାନ୍ଥରେ ଡେରି ହୋଇ ବସି ରହିଚି । ଜୁଳୁଜୁଳୁ କରି ଚାହିଁ ରହିଚି ରାସ୍ତା ଉପରକୁ । ତା' ପାଖରେ ସମୟ ସ୍ଥିର ଓ ଅଚଞ୍ଚଳ । କାରଣ, ବର୍ଷ ବର୍ଷ ଧରି ତୁମେ ତାକୁ ଦେଖୁଚ ସେଇ ଗୋଟିଏ ଭଙ୍ଗୀରେ । ଦ୍ୱାରବନ୍ଧ କଡରେ ସେ ବସିଚି କାନ୍ଥକୁ ଆଉଜି । ଜନ୍ମ ହେବା ସମୟର ବାର୍ଦ୍ଧକ୍ୟକୁ ଧରି ରଖିଚି ଆଜି ପର୍ଯ୍ୟନ୍ତ ।

ବୁଢ଼ାହେବା ଦିନଠାରୁ ବୁଢ଼ା ହେବା ପର୍ଯ୍ୟନ୍ତ ଚୁପ୍‌ଚାପ୍ ମନ୍ତବ୍ୟବିହୀନ କେଦାର ମହାରଣା ବସି ରହେ ଦ୍ୱାରବନ୍ଧ କଡରେ । ଦୁଇଫୁଟ ଉଚ୍ଚ ଓ ପାଞ୍ଚଫୁଟ ଓସାରର ଗୋବରଲିପା ପିଣ୍ଡା । ଚାଳଘର । ପନ୍ଦର ଷୋଳଫୁଟ ଲମ୍ବର ଏକ ଘର ମଝିରେ ଦ୍ୱାର । ଗୋଟିଏପାଖରେ ଛୋଟ ବଡ ମାଟିତିଆରି ମୂର୍ତ୍ତି - ଗରାଖମାନଙ୍କ ହାତକୁ ଯିବା ପାଇଁ ମୂର୍ତ୍ତିମାନେ ଅପେକ୍ଷା କରି ରହିଥାନ୍ତି । ଅନ୍ୟ ପାଖରେ ସମସ୍ତ ଧୈର୍ଯ୍ୟ ନେଇ କେଦାର ମହାରଣା ବସି ରହିଥାଏ ଗରାଖମାନଙ୍କ ହାତକୁ ମୂର୍ତ୍ତି ବଢ଼େଇ ଦେବ ବୋଲି । ପିଣ୍ଡାର ଅନ୍ୟ ମୁଣ୍ଡରେ ଗଦାଏ ଗୋବର-ଘସି ଓ କିଛି ଜାଳେଣି କାଠ । ଗୋଟାଏ ଦୁଇଟା ବସ୍ତା ମଧ ପଡିରହିଥାନ୍ତି ବେକରେ ଦଉଡି ଲଗାଇ ।

ଦ୍ୱାରବନ୍ଧର ଗୋଟିଏ ପାଖରେ ମୂର୍ତ୍ତି । ଏ ସଂସାରର ଯାବତୀୟ ଭଲମନ୍ଦ ବୁଝୁଥିବା ଦେବାଦେବୀଙ୍କର ସାନ ବଡ ବିଗ୍ରହ ବିକ୍ରି ପାଇଁ ଅପେକ୍ଷା କରି ରହିଥାନ୍ତି ପିଣ୍ଡା ଉପରେ । ଜଗନ୍ନାଥଙ୍କର ଚକାଆଖି ଓ ଗଣେଶ-ସରସ୍ୱତୀ-ଭାଲୁକୁଣୀ ଓଷା ସମୟରେ ଏମାନଙ୍କର ବିଭିନ୍ନ ଆକାରର ପ୍ରତିମା ବିକ୍ରୟ ପାଇଁ କେଦାର ମହାରଣାର ପିଣ୍ଡା ଉପରେ ଭରା ହୁଅନ୍ତି । ଖାଲି ସେତିକି ନୁହେଁ, ଡ୍ରଇଂରୁମ୍ ସଜେଇବା ପାଇଁ ଏବଂ ପିଲାଙ୍କ ଖେଳନା ପାଇଁ ଗଚ୍ଛିତ ଥାଏ ଆହୁରି ବିଚିତ୍ର ରଙ୍ଗୀନ ସାନ ସାନ ଜଣ୍ଢେଇ । ତେବେ, ଏ ସବୁର ଚାହିଦା ଖୁବ୍ ବେଶି ନଥାଏ, କାରଣ ସେ ଅଞ୍ଚଳରେ ଡ୍ରଇଂରୁମ୍‌ରେ ତାତ୍ପର୍ଯ୍ୟ ଅଧିକାଂଶ ଲୋକ ବୁଝନ୍ତି ନାହିଁ ।

ରୁଦ୍ଧ ମନ୍ଦିର ଭିତରେ ବିଗ୍ରହ ତିଆରିବାର କୌଣସି ଶବ୍ଦ ନ ଶୁଣି ନିର୍ଦ୍ଧାରିତ ସମୟ ପୂର୍ବରୁ ଦ୍ୱାରା ଖୋଲିଦିଆଗଲା । ସାମନାରେ ଅସମାପ୍ତ ବିଗ୍ରହ ତିନୋଟି । କୌଣସି ପରା ନାହିଁ ନିର୍ମାତାଙ୍କର । ରାଜା ରାଣୀ ସଠିକ ଭାବରେ ବର୍ଣ୍ଣନା କରି ପାରି ନଥାନ୍ତେ ତାଙ୍କର ଚେହେରା । ସମସ୍ତ ବାଧାବିଘ୍ନ ଅତିକ୍ରମ କରିବା ସକାଶେ ଶକ୍ତି ଓ ଧୈର୍ଯ୍ୟ ସଞ୍ଚାର କରିପାରୁଥିବା ଗଣେଶଙ୍କର ଜନ୍ମ ବୃତ୍ତାନ୍ତ କେଡେ ରୋମାଞ୍ଚକର ଓ ରହସ୍ୟମୟ ! କିପରି ଭୂମିଷ୍ଠ ହେଲେ ସେ ? କିମ୍ବା ବିଦ୍ୟାଦାୟିନୀ ସରସ୍ୱତୀ ? ଭାଇ ଭଉଣୀ ମଧ୍ୟରେ ଆବେଗମୟ ସମ୍ପର୍କକୁ ଦୃଢ଼ ଓ ଶାଶ୍ୱତ

କରିପାରୁଥିବା ଭାଗ୍ୟକୁଣୀ ? ଏଇ ଦେବାଦେବୀଙ୍କର ସୃଷ୍ଟିର ରହସ୍ୟ ସୀମିତ ହୋଇପଡେ ସୁନିର୍ବାଚିତ ମାଟିପିଣ୍ଡୁଳାରେ, ଉଙ୍ଗରେ ଓ କେଦାର ମହାରଣାର ହାତର କୁହୁକରେ । ସେ ହିଁ ନିର୍ମାତା ସମସ୍ତ ଠାକୁରଙ୍କର, ଯେଉଁମାନେ ନିୟନ୍ତ୍ରଣ କରନ୍ତି ମଣିଷର ଭାଗ୍ୟ ଏବଂ ଯେଉଁମାନଙ୍କର ତଥାସ୍ତୁ ଭଙ୍ଗୀରୁ ଓହ୍ଲାଇ ଆସେ ଅଲୌକିକ ଅଦୃଶ୍ୟ ଶକ୍ତି, ମଣିଷ ପାଖକୁ ।

ମାତ୍ର ଦୁଇ ବର୍ଷ ତଳେ ଗୋଟିଏ ଆମେରିକୀୟ ଦମ୍ପତି ଠିଆ ହୋଇଥିଲେ ତା'ଘର ସାମନାରେ । ଭାରତର ଗାଁ ଗହଳିରେ ତିଆରି ହେଉଥିବା ମୂର୍ତ୍ତି ଉପରେ ସେମାନେ କୁଆଡେ ଗବେଷଣା କରୁଥିଲେ । ସେମାନଙ୍କର ମର୍ସିଡିସ୍‌କାର୍ କିଛି ଦୂରରେ ଅଟକି ରହିଥିଲା । ପେଣ୍ଟ-କମିଜ ପିନ୍ଧିଥିବା ପ୍ରାୟ ସାଢେ-ଛ'ଫୁଟ ଉଚ୍ଚର ଗୋରା ଲୋକଟି ଧରିଥିଲା ଶକ୍ତିଶାଳୀ କ୍ୟାମେରା ଓ ବାଇନୋକ୍ୟୁଲାର । କିଟ୍ ବ୍ୟାଗ୍ ଭିତରେ ଆହୁରି କ'ଣ କେଜାଣି ଥିଲା । ତା'ଠାରୁ ଚାରି ପାଞ୍ଚ ଇଞ୍ଚ କମ୍ ଉଚ୍ଚତା ବିଶିଷ୍ଟ ମହିଳା ଜଣକ ଏତେ ପତଳା ସ୍କର୍ଟ ପିନ୍ଧିଥିଲା ଯେ, ତାକୁ ଥରେ ମାତ୍ର ଦେଖି କେଦାର ମହାରଣା ଦୃଷ୍ଟି ଫେରାଇ ନେଲା ଅନ୍ୟଆଡେ । ତା'ହାତରେ ଥିଲା ଗୋଟାଏ ଫାଇଲ । କାନ୍ଧରୁ ଝୁଲୁଥିଲା କ୍ୟାମେରା, ବାଇନୋକ୍ୟୁଲର ଓ ପାଣି ବ୍ୟାଗ୍ ।

ସେମାନେ ନଇଁ ପଡିଲେ, ବାଙ୍ଗର ଚାଳଘର ସେମାନଙ୍କର ଦୃଷ୍ଟି ସାମନାରେ ପ୍ରତିବନ୍ଧକ ହୋଇ ଠିଆ ହେବାରୁ । ଗୋଟିଏ କୋଣରେ ଅନେକ ଦିନ ହେଲା ଅବହେଳିତ ଓ ଧୂଳିଧୂସରିତ ହୋଇ ଥିବା ମୂର୍ତ୍ତି ଆଡେ ଆଙ୍ଗୁଳି ଚିତ୍କାର କରି ଉଠିଲା - "ଓ, ମାଇ ଗଡ୍ ! ହାଉ ବିଉଟିଫୁଲ୍ ! ଏକ୍ସକ୍ୟୁଇଜାଇଟ୍ ! ଲଭ୍‌ଲି !"

ପ୍ରାୟ ତିନିଫୁଟ ଉଚ୍ଚର ସେଇଟା ଥିଲା ଗୋଟିଏ ମା'ର ମୂର୍ତ୍ତି । ଓଢଣା ଟାଣି ସେ କ୍ଷୀର ଖୁଆଉଥିଲା ଆଖିବୁଜିଥିବା ଛୁଆକୁ । ଛୁଆ ମୁହଁରେ ଥିଲା ଏକ ଅନନ୍ୟ ଏକାଗ୍ରତା । ସେ ଯେମିତି ସମଗ୍ର ବିଶ୍ୱକୁ ଭୁଲିଯାଇଛି ଏବଂ ମା'ସ୍ତନରୁ କ୍ଷୀର ପିଇବା ହିଁ ସୃଷ୍ଟିର ଏକମାତ୍ର ମହାନ୍ ପ୍ରକ୍ରିୟା ବୋଲି ସୂଚେଇ ଦେଉଚି । ମା'ର ଗୋଟିଏ ହାତ ଛୁଆର ମୁଣ୍ଡ ଉପରେ, ଅନ୍ୟଟି ଗୋଡ ଉପରେ । ସେଭଳି ଅତୁଳନୀୟ ସନ୍ତୋଷ ଓ ପ୍ରଶାନ୍ତି ଗୋଟିଏ ମା'ର ସୀମିତ ମୁହଁ ଉପରେ ରହିପାରେ ବୋଲି ବିଦେଶରୁ ଆସିଥିବା ଓ ପ୍ରଗଳ୍ଭ, ଚମକୃତ ହୋଇଥିବା ଦମ୍ପତିଙ୍କର ଧାରଣା ନଥିଲା ।

-'ଟ୍ରୁଲି ଇଣ୍ଡିଆନ୍ !' ମନ୍ତବ୍ୟ ପ୍ରକାଶ କଲା ପୁରୁଷ ଜଣକ । ତା'ପରେ ସେ ଇଂରାଜୀରେ ପଚାରିଲା - ଏ ମୂର୍ତ୍ତିର କଳାକାର ଜଣକ ରୋମ୍‌ରେ ଥିବା ମାଇକାଲୋଞ୍ଜେଲୋଙ୍କର 'ପିଏଟା' ନାମକ ଅସାଧାରଣ ସ୍ଥାପତ୍ୟ ଦେଖିଚି କି ନାହିଁ !

କେଦାର ମହରଣା ବସିଥିଲା ସେମିତି, କୌଣସି ପ୍ରତିକ୍ରିୟା ନ ଦେଖାଇ । ସେ ବୁଝିପାରୁ ନଥିଲା କିଛି, କେବଳ ଅନୁମାନ କରୁଥିଲା ଯେ ବିଚିତ୍ର ମଣିଷ ଦୁହେଁ କାହିଁକି କେଜାଣି ବିସ୍ମିତ ଓ ପୁଲକିତ ହେଉଛନ୍ତି । କେହି ଜଣେ ତାକୁ ବୁଝେଇ ଦେଲା ଗବେଷକଙ୍କ ପ୍ରଶ୍ନ । କେଦାର ମହରଣା କିଛି କହିଲା ନାହିଁ । ମାଇକାଲୋଞ୍ଜେଲୋ ଗୋଟେ କ'ଣ ? ରୋମ୍ ଆଉ ପିଏଟା କି ପ୍ରକାର ଜିନିଷ ?

ଆମେରିକୀୟ ଦମ୍ପତି ସେଇ ଅପାଙ୍କ୍ତେୟ ହୋଇ ପଡି ରହିଥିବା ମୂର୍ତ୍ତିକୁ କିଣି ନେଇଥିଲେ ଅନେକ ଆଗ୍ରହ ଓ ଶ୍ରଦ୍ଧାର ସହିତ । "ଆର୍କିଟାଇପାଲ୍ ଇମେଜ ଅଫ୍ ଇଣ୍ଡିଆନ୍ ମଦରହୁଡ୍ !" ମନ୍ତବ୍ୟ ପ୍ରକାଶ କରିଥିଲା ମହିଳା ଜଣକ ନିଜ ରୁମାଲ୍‌ରେ ମୂର୍ତ୍ତି ଦେହରୁ ଧୂଳି ଝାଡୁଥିବା ଅବସ୍ଥାରେ ।

ତାକୁ ଅନେକ ତାତ୍ପର୍ଯ୍ୟହୀନ ଓ ବିରକ୍ତିକର ପ୍ରଶ୍ନ ପଚରା ଯାଇଥିଲା। ସେ କେବେଠାରୁ ଏ କାମ କରୁଛନ୍ତି ? ତାଙ୍କ ମୂର୍ତ୍ତି ନିର୍ମାଣରେ ମୁଖ୍ୟ ବିଷୟବସ୍ତୁ କ'ଣ ? ସାଧାରଣତଃ କେଉଁ ପ୍ରକାର ଆବେଗ ତାଙ୍କ ମୂର୍ତ୍ତିରେ ପ୍ରତିଫଳିତ ହୁଏ ? ସେ କେଉଁ ବିଦେଶୀ କିମ୍ବା ଭାରତୀୟ ଶିଳ୍ପୀଙ୍କ ଦ୍ୱାରା ପ୍ରଭାବିତ ହୋଇଛନ୍ତି କି ? ବର୍ତ୍ତମାନ ଏଇଭଳି ମୂର୍ତ୍ତି ନିର୍ମାଣ କରୁଥିବା କେଉଁ ଶିଳ୍ପୀ ତାଙ୍କର ସବୁଠାରୁ ପ୍ରିୟ ? ଭାରତରେ ଏଭଳି ମୂର୍ତ୍ତି ନିର୍ମାଣର ଭବିଷ୍ୟତ କ'ଣ ? ସରକାର ତାଙ୍କୁ ଏ ଦିଗରେ କିଛି ପ୍ରୋତ୍ସାହନ ଦେଉଛନ୍ତି କି ? ପ୍ରାଦେଶିକ ଶିଳ୍ପୀଙ୍କୁ ଉତ୍ସାହିତ କରିଛନ୍ତି କି, ତାଲିମ୍ ଦେଉଛନ୍ତି କି ? କ'ଣ କରାଗଲେ ତାଙ୍କ ଶିଳ୍ପକଳାର ମାନ ଆହୁରି ଉନ୍ନତ ହୋଇପାରନ୍ତା ? କୌଣସି ସହରରେ ସେ ନିଜ କୃତିତ୍ୱର ପ୍ରଦର୍ଶନୀ କରିବା ପାଇଁ କାହିଁକି ଆଗ୍ରହୀ ହୋଇନାହାନ୍ତି ? ଶିଳ୍ପକଳା ସମ୍ପର୍କରେ ସେ ବହି ଲେଖିନାହାନ୍ତି କାହିଁକି ? ଇତ୍ୟାଦି ।

ଖାଲି ସେତିକି ନୁହେଁ, ସେମାନେ ତା'ର ଅନେକଗୁଡିଏ ଫଟୋ ଉଠାଇଲେ । ପିଣ୍ଡା ଉପରେ ଥୁଆ ହୋଇଥିବା ଦେବାଦେବୀ ମଧ୍ୟ କ୍ୟାମେରା ଆଖିରୁ ବାଦ୍ ପଡିଲେ ନାହିଁ । କେଦାର ମହାରଣାକୁ ଅନୁରୋଧ କରାଯାଇଥିଲା, ପିଣ୍ଡାରୁ ଓହ୍ଲାଇ ସେମାନଙ୍କ ଆଗରେ ଠିଆହେବା ପାଇଁ । ସେ ବୁଝିପାରୁ ନଥିଲା କିଛି । କିଞ୍ଚିତ ଶଙ୍କିତ ହୋଇପଡିଥିଲା । ମନେ ମନେ ରାଗି ଯାଇଥିଲା । ତଥାପି ସେ ଠିଆହେଲା ସେମାନଙ୍କ ଆଗରେ ।

ଟିକିଏ କୁଜା ହୋଇଯାଇଛି । ଅଣ୍ଟା ବାଙ୍କି ଯାଇଥିବାରୁ ସଳଖ ହୋଇ ଠିଆ ହୋଇପାରୁ ନଥାଏ । ଫଟା ଗୋଇଠି । ଆଣ୍ଠୁ ପର୍ଯ୍ୟନ୍ତ ଓହ୍ଲେଇ ଆସିଥିବା ଈଷତ୍ ମଇଳା,ପୁରୁଣା ଲୁଗା । ଭଙ୍ଗା ଫୁଟ୍‌ବଲ୍ ଭଳି ସଙ୍କୁଚିତ ପେଟ । କାନ୍ଧ ଉପରେ ରଙ୍ଗଛଡା ଗାମୁଛା । ଦାନ୍ତହୀନ ପାଟି ଯୋଗୁଁ ଲୋଚାକୋଚା ଖାଲ । ଆପାତତଃ ଚନ୍ଦା ମୁଣ୍ଡ । ନାଲି ରଙ୍ଗର ଫ୍ରେମ୍ ଥିବା ଚଷମା ।

ସେମାନେ ତାକୁ ଦେଖିଲେ କୌତୂହଳ ଓ ସହାନୁଭୂତିର ସହିତ । ସ୍ତ୍ରୀ ଲୋକ ଜଣଙ୍କ କହିଲା - ଏ ଜିନିଅସ୍ ! ନେଗ୍ଲେକ୍ଟେଡ୍ ଆଣ୍ଡ୍ ଅନ୍‌କେୟାର୍ଡ୍ ଫର୍ । ଯତ୍ନ ନିଆଯାଉ ନଥିବା ଏକ ଅବହେଳିତ ପ୍ରତିଭା ।

ଅନେକ ସମୟ ପରେ ସେମାନେ ଚାଲିଗଲେ । ସେମାନଙ୍କୁ ଘେରି ରହିଥିବା କୌତୂହଳୀ ଲୋକମାନଙ୍କର ଗହଳି ଅଳ୍ପ ସମୟ ମଧ୍ୟରେ ତରଳି ଗଲା । କେଦାର ମହାରଣା ସତେ ଯେପରି ରକ୍ଷା ପାଇଗଲା ଗୋଟାଏ ଅବାଞ୍ଛିତ ଅଭିଜ୍ଞତାରୁ । ଚୁପ୍‌ଚାପ୍ ବସି ରହିଲା ତେଲଚିକିଟା ହୋଇଯାଇଥିବା କାନ୍ଥ ଉପରେ ଡେରି ହୋଇ- ସେ ଯେମିତି ଆବେଗହୀନ, ନିରାସକ୍ତ ଓ ଧୈର୍ଯ୍ୟଶୀଳ ହୋଇବସେ । ଦ୍ୱାରବନ୍ଧର ଆରପାଖରେ ଅଚଞ୍ଚଳ ଓ ତଥାସ୍ତୁମୟ ହୋଇ ରହିଥିବା ମୂର୍ତ୍ତି ଭଳି କେଦାର ମହାରଣା ବସି ରହିଲା । ଏ ଲୋକ ଦୁଇଜଣ କାହିଁକି ଆସିଥିଲେ, ତାକୁ ଏତେ ସମୟ ପର୍ଯ୍ୟନ୍ତ ଅପ୍ରତିଭ ଓ ହରକତ କରିବାର ଅଭିପ୍ରାୟ କ'ଣ ? ଏହାଦ୍ୱାରା ତା'ର କିଛି ମଙ୍ଗଳ ହେବ କି ନାହିଁ ବୋଲି ଜାଣିବା ସକାଶେ ତାର କୌଣସି ଜିଜ୍ଞାସା ନଥିଲା ।

ମୂର୍ତ୍ତି ତିଆରି କରିସାରି ସେସବୁ ବିକିବା ପାଇଁ ସ୍ଥିର ହୋଇ କାନ୍ଥକୁ ଆଉଜି ବସିବାରେ ଅତିବାହିତ ହୋଇଯାଇପାରେ ଗୋଟିଏ ପରମାୟୁ । ରଥଯାତ୍ରା ପାଖେଇ ଆସିଲାଣି, ନୂଆକଥା କ'ଣ ଏଥିରେ ? ମହାପ୍ରଭୁ ମନ୍ଦିରରୁ ଯିବେ କିଛିଦିନ ପାଇଁ । ଶ୍ରୀଧର ରଣାର ବଡପୁଅ ମରିଗଲା

ଇଲେକ୍‌ଟ୍ରିକ୍‌ସକ୍‌ରେ । ଆଚ୍ଛା, ଆଚ୍ଛା, କେତେବେଳ ପୁଅ ? ଦୟାନିଧି ଘରପ୍ରତିଷ୍ଠା ଦିନ ଅବିସ୍ମରଣୀୟ ଭୋଜି ଦେଲା । ସତେ ? କେଜାଣି ?

କେବେ କିପରି ଏମିତି ଖଣ୍ଡିତ ସମ୍ବାଦ ପହଞ୍ଚିଯାଏ ତା'ର ଆଗ୍ରହହୀନ, ବୀତସ୍ପୃହ କାନ ପାଖରେ । ଗୋଟାଏ ବିଚ୍ଛିନ୍ନ ଜୀବନ ସତେ ଅବା ସାଧନାରତ ମାଟି ଓ ରଙ୍ଗ ଭରିଆରେ ଅନୁପମ ଆକାର ଗଢ଼ିବାରେ । ଏହା ହିଁ ତାର ଏକମାତ୍ର ଐକାନ୍ତିକ ତପସ୍ୟା । ଏହା ମାଧ୍ୟମରେ ପୁରୁଣା ଲୁଗା ଓ ରଙ୍ଗଛଡ଼ା ଗାମୁଛା ବଦଳାଇ ହେବ କି ନାହିଁ, ସମୟ କ୍ରମେ ପଡ଼ି ଯାଉଥିବା ଛପରର ମାଂସକୁ ଜୀବନ୍ୟାସ ଦିଆଯାଇ ପାରିବ କି ନାହିଁ, ପିଣ୍ଡାର କ୍ଷୟିଷ୍ଣୁ ଦେହକୁ ପୁନର୍ଜନ୍ମ ଦିଆଯାଇ ପାରିବ କି ନାହିଁ ବୋଲି କୌଣସି ଉଦ୍‌ବିଗ୍ନତା, ତତ୍ପରତା ନଥାଏ ତା'ଠାରେ । ତା'ଦୃଷ୍ଟିରେ ମାଟିର ରୂପାନ୍ତର ହିଁ ଏକମାତ୍ର ସତ୍ୟ, ତା'ଜୀବନର ଏକମାତ୍ର ପରିପ୍ରକାଶ । ଅନ୍ୟ ସମସ୍ତ ଚିନ୍ତା ଓ କାର୍ଯ୍ୟ-କ୍ରମ ଗୁରୁତ୍ୱହୀନ । କୌଣସି ବିନ୍ଧାଣୀ ନିଜ ନିର୍ମିତ ବିଗ୍ରହଠାରୁ କିଛି ଆଶା କରେ କି ? କାକୁସ୍ଥ ପ୍ରାର୍ଥନା କରିପାରେ କି - ତୋତେ ମୁଁ ଗଢ଼ିଛି ହାସ୍ୟାସ୍ପଦ ଉପାଦନ ନେଇ । ତୋର ନିର୍ମାତା ମୁଁ । କହ, ହାତୀ ଦେବୁ ? ଘୋଡା ଦେବୁ ? ଦୁଇଓଳି ନିର୍ଭଜାଳ ଅନ୍ନସଂସ୍ଥାନ କରିଦେବୁ ? ଅଲୌକିକ ଶକ୍ତି ବଳରେ ପରିଣତ କରିଦେବୁ ଦାରିଦ୍ର୍ୟ ଭରପୂର ଏଇ ଘରକୁ ଗୋଟିଏ ଚକ୍‌ଚକ୍ ରାଜପ୍ରାସାଦରେ ? ଠାକୁରମାନଙ୍କର ନିର୍ମାତା କିଭଳି ଆସକ୍ତିହୀନ, ସ୍ୱପ୍ନହୀନ, ଯୋଜନାହୀନ ଜୀବନ ଯାପନ କରିପାରେ, ତାହା କେଦାର ମହାରଣାକୁ ନ ଦେଖିଲେ ଜାଣି ହେବ ନାହିଁ ।

''ବାପା, ବସିଚ ?'' ଶୁଭେ ଗୋଟାଏ ଅନ୍ତରଙ୍ଗ ସ୍ୱର, ମାସରେ ଅନ୍ୟୂନ ପାଞ୍ଚଥର । ଏ ସ୍ୱର ଦୁଇଟି ପରିବର୍ତ୍ତନ ସୃଷ୍ଟି କରେ । କେଦାର ମହାରଣାର ଆବଡା ଖାବଡା ମୁହଁ ତରଙ୍ଗାୟିତ ହୋଇ ପଡ଼େ ଏକ ଆତ୍ମୀୟ ସ୍ମିତ ହସରେ । ସେ ଟିକିଏ ଚଞ୍ଚଳ ହୋଇଯାଏ, ଗାମୁଛାରେ ମୁହଁ ଓ ଦେହ ପୋଛିହୁଏ,ସେଇଭଳି ବସିରହି । ଦ୍ୱିତୀୟତଃ ଘରର ନିଃସଙ୍ଗ ନୀରବତା ଚହଲିଯାଏ ଏଇ ସ୍ୱରରେ ।

ମୁଣ୍ଡ ଉପରର ଓଢ଼ଣା ଆଉ ଟିକିଏ ଆଗକୁ ଟାଣି ଆଣି ସାବିତ୍ରୀ ଭୂମିଷ୍ଠ ପ୍ରଣାମ କରେ ବାପାଙ୍କୁ । ନୀରବତା ସହିତ ବେଶି ପରିଚିତ କେଦାର ମହାରଣାର ଦୁଇ ଓଠ ଖୋଲିଯାଏ, ଜଙ୍କଲଗା ବିସ୍ମିତ ବାକ୍‌ସଟେ ଖୋଲିଗଲା ପରି । ସେ ପଚାରେ-''ଅବିକା ଆସିଲୁକିରେ, ମା' ? କାହିଁ, ତୋ ପୁଅକୁ ତ'ଆଣିଲୁ ନାହିଁ ?''

ସାବିତ୍ରୀ ସେତେବେଳେ ଶିକୁଳି ଖୋଲି ଦରଜା ଠେଲି ସାରିଥାଏ । କୈଫିୟତ ଦିଏ - ''ସେ ଏଥର ସ୍କୁଲକୁ ଗଲାଣି । ମୋ ସାଙ୍ଗରେ ଆସିଲେ ତା'ର ପାଠପଢ଼ା ମାରା ହେବ ''

ନୀରବତା ଭିତରେ ପୁଣି ପୋତି ହୋଇପଡ଼େ କେଦାର ମହାରଣା । ସାବିତ୍ରୀ ଘର ଭିତରେ ଠିଆ ହୋଇ ଆଗ ଚାରିଆଡ଼କୁ ଦେଖେ । ଚିନ୍ତା କରେ, କେଉଁଠୁ କାମ ଆରମ୍ଭ କରିବ । ଚିନ୍ତାଗ୍ରସ୍ତ ଥିବାବେଳେ ହିଁ ସେ ଶାଢ଼ୀର ପଣତ ଗୁଡେଇ ସାରିଥାଏ ଅଣ୍ଟାରେ କାମ କରିବା ପାଇଁ ପ୍ରସ୍ତୁତିର ସୂଚନା ଦେଇ । ପ୍ରଥମେ ଝାଡୁ ଧରି ଘର ଓଳାଇବା ପାଇଁ ଆରମ୍ଭ କଲା ପୂର୍ବରୁ, ତା'ର ମନେପଡ଼େ ଘରୁ ଆଣିଥିବା ବ୍ୟାଗ୍ କଥା ।

ତା'ଭିତରେ ଥାଏ କଦଳି, କିମ୍ବା କିଛି ଚୂଡ଼ା, ନ ହେଲେ ମୁଢ଼ି କିମ୍ବା ଭଖୁରା । ଗୋଟାଏ ଥାଳିଆରେ ସେଇଥିରୁ କିଛି କାଢ଼ି ବାପାଙ୍କ ପାଖରେ ଥୋଇଦିଏ ଏବଂ ସଂକ୍ଷିପ୍ତ ଅନୁରୋଧଟିଏ

କରେ- ''ଏଇ, ନିଅ । ପାଟିରେ ଗଣ୍ଡାଏ ପକାଅ ଏଇଥିରୁ ।''

କେଦାର ମହାରଣା ଝିଅ ଆଣିଥିବା ଜିନିଷକୁ ଉପଭୋଗ କରିବା ଭିତରେ ସାବିତ୍ରୀର ଘର ଓଳାଇବା କାମ ସରିଯାଇଥାଏ । ବେଳାବେଳି ପହଞ୍ଚିଥିବାରୁ ଚୂଲି ସଫା କରି ନିଆଁ ଜାଳେ । ଡେକ୍‌ଚିରେ ପାଣି ଗରମ କରେ ଏବଂ ଚାଉଳ ଧୁଏ ।

ଏ ଘରୁ ଆଠ ବର୍ଷ ହେଲା ଶାଶୁଘରକୁ ଯିବାରେ ମଧ୍ୟ, ସାବିତ୍ରୀ ଆଖିରେ କୌଣସି ଉଲ୍ଲେଖଯୋଗ୍ୟ ପରବର୍ତ୍ତନ ଦେଖାଦିଏ ନାହିଁ ! ସବୁ ଆଗଭଳି ଅଛି । ବାପାଙ୍କ ଚେହେରା ଓ ବସିବାର ଭଙ୍ଗୀ । ରୋଷେଇ ଘର ଓ ତା' ଭିତରର ସମସ୍ତ ଆସବାବ । ଶୋଇବା ଘର । ମଝିରେ ଅଗଣା । ଏଥିପାଇଁ ଏ ଘରେ ପହଞ୍ଚିବା ମାତ୍ରେ ସାବିତ୍ରୀ ଅନ୍ୟ ଗୋଟିଏ ଘରର ବୋହୂ ବୋଲି ନିଜକୁ ଭାବେ ନାହିଁ । ଆଠବର୍ଷର ସମୟ ବ୍ୟବଧାନ ସଙ୍କୁଚିତ ହୋଇପଡେ । ତା'ର ମନେହୁଏ, ସେ ଅଛି ନିଜ ବାପଘରେ ! ହେତୁ ହେବାଦିନୁ ସେ ବାପାଙ୍କର ଯେଉଁ ଯତ୍ନ ନେଉଥିଲା, ଯେମିତି ଘର ଓ ଘର ପଛକୁ ଲାଗିଥିବା ବାରିର ହେପାଜତ କରୁଥିଲା, ତାହା ହିଁ କରିଆସୁଚି ଓ କରୁଥିବ ।

ନିର୍ଦ୍ଧାରିତ ସମୟରେ ସାବିତ୍ରୀର ଝାଳୁଆ ମୁହଁ ଦେଖାଦିଏ, ଦ୍ୱାରବନ୍ଧ ପାଖରେ । ଆଠବର୍ଷ ଅପରିବର୍ତ୍ତିତ ସ୍ୱର ଶୁଭେ-''ବାପା ! ଆସ । ଧୂଆଧୋଇ ହୁଅ । ଏଣେ ବଢ଼ା ହେଲାଣି ।''

ରୋଷେଇ ଘର ସାମନା ପିଣ୍ଡାରେ ଖିଆପିଆ ଚାଲେ ମୁଖ୍ୟତଃ ନୀରବତା ଭିତରେ । କେଦାର ମହାରଣା କେବେ କିପରି ପଚାରେ-''ତୁମ ଦୋକାନ ଏବେ କେମିତି ଚାଲିଚି ? ଅନେକ ଦିନ ହେଲା ହେମନ୍ତ ସାଙ୍ଗରେ ଦେଖା ହୋଇନାହିଁ । କେବେ ଟିକେ ଏଣେ ଆସନ୍ତା ।''

ସାବିତ୍ରୀ ବସି ରହିଥାଏ ଖୁଣ୍ଟକୁ ଆଉଜି ଏବଂ ବାପାଙ୍କର ଖାଇବା ଲକ୍ଷ୍ୟ କରୁଥାଏ । ଦରକାର ମୁତାବକ ଡାଲି କିମ୍ବା ଭାତ ପରଷି ଦେଇ କହେ- ''ତାଙ୍କୁ ବେଳ କାହିଁ ? ଚାଷବାସ ଦେଖିବେ ନା ଦରଜୀ ଦୋକାନରେ ବସିବେ ? ଘରେ ପୁଣି ଝାମେଲା ଯେ କାହିଁରେ କ'ଣ । ଏବେ ଗୋଟେ ଗାଈ କିଣିଚନ୍ତି । କୁଣ୍ଡା-ତୋରାଣୀ-ଘାସ ଦେବା ଜଞ୍ଜାଳ ।'' ସାବିତ୍ରୀ ସବୁକଥା କହିଯାଏ ସଂକ୍ଷେପରେ । ଟିକିଏ ଦମ୍ ନେବାପରେ ପୁଣି କହିଚାଲେ-''ନଣନ୍ଦଟେ ଅଛି ବୋଲି ସିନା ମାସରେ ତିନି-ଚାରିଥର ଏଣେ ପଳେଇ ଆସୁଚି । ସବୁଠୁ ବଡ କଥା ହେଉଚି, ଏଠିକୁ ଆସିବା କଥା କହିଲେ ସେ କେବେ ବି ନାହିଁ କରି ନାହାନ୍ତି । ବରଂ କହନ୍ତି, ହଉ ଯା' । ବାରିର ବାଡ ଯଦି ବୁଜା ହେବାକୁ ଥାଏ କି ଘରକୁ ଛପର ଯଦି ହେବାର ଥାଏ, ତେବେ ଲୋକବାକ ଠିକ୍‌ଠାକ୍ କରି ଆସିବୁ । ଖାଲି ଗଣ୍ଡେ ରୋଷେଇ କରିଦେଇ ପଳେଇ ଆସିବୁ ନାହିଁ ।''

କଥାର ଶେଷଆଡକୁ ସାବିତ୍ରୀର କଣ୍ଠସ୍ୱର କମ୍ପିଉଠେ ଏକ କୃତଜ୍ଞତାପୂର୍ଣ୍ଣ ଆବେଗରେ । କେଦାର ମହାରଣାର ହାତ ଅଟକିଯାଏ ଥାଳି ଉପରେ । ସେ ଚାହେଁ ସାବିତ୍ରୀ ଆଡେ ଏବଂ ଦେଖେ, ସେ ଆଖିର ଲୁହ ପୋଛୁଛି । ସେ ଆଉ କିଛି କହେ ନାହିଁ । ଖାଇବା ଶେଷ କରି ହାତ ଧୋଇହୁଏ ।

ନିଜ ପାଇଁ ବାଢିବାବେଳେ ସାବିତ୍ରୀ କହେ-''ଅଳ୍ପ ଗଣ୍ଡେ ଡାଲି ଆଣିଥିଲି । ହେଇ ଦେଖ, କଣ୍ଡା ଦେହରୁ ଝୁଲାଇ ଦେଇଚି ବ୍ୟାଗ୍ । ଭିତରେ କିଲେ ଖଣ୍ଡେ ଆଳୁ ବି ଅଛି । ଡାଲିରେ ପକେଇ ଖାଇବ ।'' କିଛି ସମୟର ନୀରବତା ପରେ ପୁଣି କହେ-''କ'ଣ ମନେ ରହିଲା, ନା ନାହିଁ ?''

-''ଆଲୋ, ହଁ ମନେ ରହିଲା।'' ସ୍ନେହମିଶା କୃତ୍ରିମ ବିରକ୍ତିର ସହିତ କେଦାର ମହାରଣା କହେ ଏବଂ ପଚାରେ-''ତୋତେ ପରା ହଜାର ଥର କହିଲିଣି, ଏସବୁ ଜିନିଷ କେବେ ଆଣିବୁ ନାହିଁ ବୋଲି ?''

ସାବିତ୍ରୀ କିଛି କହେ ନାହିଁ ଯା'ପରେ। ଖାଉଥାଏ ନୀରବରେ ଏବଂ ମନକୁ ମନ କହୁଥାଏ-ଯା'ଙ୍କର କୁଆଡେ ମନେ ରହିବ ! ବ୍ୟାଗ୍ କିମ୍ବା ପାଛିଆ ଭିତରେ ବାଇଗଣ, ସଜନାଛୁଇଁ ରହି ରହି ଶୁଖିବ। ଜନ୍ଦା-ପିମ୍ପୁଡିମାନେ ଗୋଟି ଗୋଟି ବୋହି ନେବେ ଗୁଡ ମିଶା ଉଖୁଡା, ସେମାନଙ୍କ ଗାତ ଭିତରକୁ। ଆଖି ଆଗରେ ଏଇମିତି ପଚି ଯାଉଥିବ, ହରଣଚାଳ ହୋଇଯାଉଥିବ ଯେତେସବୁ ଦରଦ। କେବେ ନିଘାଥାଏ ? ହେଲେ, ଅନ୍ଧାର ହୋଇଥାଉ ପଛକେ କେଉଁ ସନ୍ଧି ଭିତରେ ଥିବା ତୂଳି ବାହାରି ଆସିବ ଆଙ୍ଗୁଳିର ନିର୍ଦ୍ଦେଶରେ। ଦଶ ପ୍ରକାରର ରଙ୍ଗ ଏକାଠି ଥିଲେ ବି ଦରକାର ହେଉଥିବା ରଙ୍ଗ ଆସିଯିବ ହାତ ଭିତରକୁ ନିର୍ଭୁଲ ଭାବରେ।

ସାବିତ୍ରୀ ଘରଦ୍ୱାର ଲିପାପୋଛା କରେ, ଡେକ୍‌ଚି କଡେଇରେ ଥିବା କଳା ସଫା କରେ। ଏ ପାଖ ଅଗଣା ପିଣ୍ଡାରେ କେଦାର ମହାରଣା ଚକଟୁଥାଏ ମାଟି-ଜଣେ ଅନନ୍ୟ ବିଧାତା ଭଳି, ବିଗ୍ରହ ଓ କଣ୍ଢେଇ ତିଆରିବ ବୋଲି। ସେତେବେଳେ ସେ ଏତେ ନୀରବ ଓ ଏକାଗ୍ର ଥାଏ ଯେ ବାସନମଜାର ଠୁନ୍ ଠନ୍ ଶବ୍ଦ ପହଞ୍ଚି ପାରେ ନାହିଁ ତା'ର ଚେତନା ଭିତରକୁ। ସାମନାରେ ଆକାରହୀନ ହୋଇ ପଡିରହିଥିବା ଓଦା ମାଟିକୁ ନେଇ ସେ ଯୋଜନା କରୁଥାଏ ମନ ଭିତରେ ଏବଂ ଯୋଜନା ଅନୁସାରେ ହିଁ ଓଦା ମାଟି ନିର୍ଦ୍ଦିଷ୍ଟ ଆକାର ନେଇ କ୍ରମେ କ୍ରମେ ଅବତାରରେ ପରିଣତ ହେଉଥାଏ।

ଆହା, କେତେ ସ୍ନେହ ଝରିପଡୁଥାଏ ତା'ର ଦୁଇ ହାତ, ଆଖି ଏବଂ ଏକାଗ୍ରତାରୁ ସେଇ ମାଟି ପିଣ୍ଡୁଳା ଉପରେ ! ଛୁଆଦିନରୁ ଦେଖି ଆସୁଥିବା ସାବିତ୍ରୀର କର୍ମଚଞ୍ଚଳ ହାତ ଅଟକିଯାଏ ବେଳେବେଳେ। ତୂଳୀ ଧରି ନିବିଷ୍ଟ ମନରେ ମାଟିର ଦେହ ଉପରେ ରଙ୍ଗ ବୋଳୁଥିବା ଏଇ ମଣିଷଜଣକ ତେବେ ତା'ର ବାପା ? ଖାଲି ଗୋଟାଏ ମାମୁଲି ବର୍ଷା ହିଁ ଦରକାର ଅପୂର୍ବ ଦିଶୁଥିବା ଏଇ ମୂର୍ତ୍ତି-ଗୁଡିକୁ ବିବର୍ଣ୍ଣ କରି ପୁଣି ମେଞ୍ଚାଏ ମାଟିରେ ପରିଣତ କରିଦେବା ପାଇଁ। ଟିକିଏ ଚାପ ପ୍ରୟୋଗ କରିଦେଲେ ତ ସରିଲା କଥା। ଦେହ, ହାତ ଭାଙ୍ଗିଯାଏ, ଛିଣ୍ଡିଯାଏ ବେକ, ଏତେ ସୁନ୍ଦର ଦିଶୁଥିବା ମୂର୍ତ୍ତିର। କେଜାଣି କେତେ ବର୍ଷଧରି ଏ ଅଞ୍ଚଳରେ ଠାକୁର ମୂର୍ତ୍ତି ବିକୁଥିବା ଏ ମଣିଷ ଜଣକ ରୂପାନ୍ତରିତ ହୋଇଯାଏ ଜଣେ ଅନନ୍ୟ ବିନ୍ଧାଣୀରେ ; ଆଉ ଦେଖ, ଆଶାବହ ମାଟିର ସ୍ୱପ୍ନକୁ ! ତାହା ସତେ ଅବା ଅପେକ୍ଷା କରି ରହିଥାଏ କେତେବେଳେ କେଦାର ମହାରଣାର ଅଭିଜ୍ଞ ହାତରେ ଠାକୁରଟିଏ, କଣ୍ଢେଇଟିଏ ହୋଇଯିବ ଏବଂ ମନ୍ତ୍ର-ଧ୍ୱନି, ଘଣ୍ଟର ଆବାଜ ଓ ଧୂପର ଗନ୍ଧରେ ବିମୋହିତ ହୋଇ ବିଞ୍ଚିଦେବ ଅଜସ୍ର କରୁଣା, ଆଖିବୁଜା ଧ୍ୟାନସ୍ଥ ହୋଇଥିବା କାକୁସ୍ଥ, ଦୁଃଖୀ ମଣିଷଙ୍କ ଉପରେ କିମ୍ବା ସଜ୍ଜିତ ହେବ ସୌଖୀନ୍ ଘରର ଥାକରେ କିମ୍ବା ଆତଙ୍କିତ ହେବ ଚଗଲା ପିଲାମାନଙ୍କର ହାତରେ।

ବିଛେଇ ହୋଇ ପଡିଥିବା ଅଗଣାରେ ଖରା ଅନେକ ବେଳୁ ଘରର ମଥାନ ଉପରେ ବୋଳି ହୋଇଥାଏ। ଏଥର ଯିବାକୁ ପଡିବ। ସନ୍ତୋଷର ସହିତ ସାବିତ୍ରୀ ଆଖି ଫେରାଇ ଆଣେ ସବୁଆଡୁ। ଘରଦ୍ୱାର, ବାସନ-କୁସନ ସବୁ ସଫାସୁତୁରା। ଅଗଣା ପିଣ୍ଡା ତଳେ ଉଠୁଥିବା ଘାସ ବି ସଫା ହୋଇଚି। ପିଢା ଉପରେ ପାଣିକଖାରୁ ରହିଚି ଘରେ। ପୁଣି ସପ୍ତାହେ କି ଦଶଦିନ ପରେ ଆସିଲେ ଯାଇ ଯେଉଁ କଥା।

ତା'ଘରେ ତେଣେ କେତେ କାମ ତାକୁ ଅପେକ୍ଷା କରି ପଡିରହିଥିବ । ଏଇଠୁ ବସ୍‌ରେ ବସିଲେ ପନ୍ଦର ମିନିଟ୍‌ର ବାଟ । ଛୋଟ ବଜାର । ରାସ୍ତା କଡରେ ତାଙ୍କର ଦରଜୀ ଦୋକାନ । ସେ କଇଁଚିରେ କନା କାଟୁଥିବେ କିମ୍ବା ଜାମା-ପେଣ୍ଟ ତିଆରି କରୁଥିବେ । ଯଦି କାମ ନଥିବ, ତେବେ ପଞ୍ଚାଏ ଲୋକଙ୍କ ସହିତ ଗପୁଥିବେ - ଏ ବର୍ଷର ବର୍ଷା, ଚାଷର ସମ୍ଭାବନା, ଦରଦାମ୍ ଇତ୍ୟାଦି । ସେ ବସ୍‌ରୁ ଓହ୍ଲାଇବା ମାତ୍ରେ ଦେଖିବ ଯେ, ସେ ତାକୁ ଅପେକ୍ଷା କରି ଚାହିଁ ରହିଛନ୍ତି ।

-''ବାପାଙ୍କ ଦେହ ଭଲ?'' ସବୁଥରର ପ୍ରଶ୍ନ ।

- ''ହଁ ।'' ସବୁଥରର ସଂକ୍ଷିପ୍ତ ଉତ୍ତର ।

ଏ ଯେମିତି ଗୋଟାଏ ରୁଟିନ୍ କାମ । ଗୋଟିଏ ଘରେ ସ୍ତ୍ରୀ ଓ ମା, ଅନ୍ୟ ଘରେ ଝିଅ । ଦୁଇ ଦୁଇଟି ଭୂମିକା । ଖରା ଉଠିଯାଉଥିବ ପୃଥିବୀର ସମସ୍ତ ଉଚ୍ଚତା ଟପି । ସାବିତ୍ରୀ ବାହାରୁଥିବ ଅନ୍ୟ ଘରକୁ ଯିବା ପାଇଁ ଏବଂ ସବୁଥର ଭଳି ତଣ୍ଟି ତା'ର ଶୁଖିଯିବ ଓ ଆଖି ଓଦା ହୋଇଯିବ । ଗୋଟାଏ କୋହ ହରକତ କରିବ ତା'ର ସମଗ୍ର ସତ୍ତାକୁ । ସେ ଦୀର୍ଘଶ୍ୱାସ ତ୍ୟାଗ କରିବ ।

ସେ ଆଦୌ ଚିନ୍ତା କରିପାରେ ନାହିଁ, ଆଖିରେ ଚଷମା ଦେଇ ବାପା ରୋଷେଇ କଲାବେଳେ କିପରି ଦେଖାଯାଆନ୍ତି । ଅନିଚ୍ଛୁକ ଗୋବର ଘସି ଉପରେ ଅନିଚ୍ଛୁକ ନିଆଁ ସଞ୍ଚାଳନ କଲାବେଳେ ଧୂଆଁର ମାଡରେ ସେ କାଶୁଥବେ ନୟାନ୍ତ ହୋଇ । ରାସ୍ତାକଡ ଟ୍ୟାପରୁ ସେ ପାଣି ଆଣନ୍ତି କିପରି ? କିପରି ସେ ଭାତ ଗାଳନ୍ତି ?

ସେ ବାହାରିଲାଣି ଅନ୍ୟ ଘର ଯିବା ପାଇଁ ଏବଂ ବାପା ବ୍ୟସ୍ତ ରହିଚନ୍ତି ଆଗଭଳି ମୂର୍ତ୍ତି ତିଆରିବାରେ । ଘରଟା ପୁଣି ପଡିରହିବ ନୀରବତା ଘୋଡିହୋଇ, ଚୁଲୀ ଭିତରର ନିଆଁ ବର୍ତ୍ତମାନ ଯେମିତି ଅଥର୍ବ ହୋଇପଡିଚି ପାଉଁଶର ଆବରଣ ତଳେ, ଅଥଚ କୌଣସି ବ୍ୟବସ୍ଥା ହୋଇପାରୁ ନାହିଁ ଏ ବ୍ୟାପାରରେ । ଅନେକ ଦିନ ତଳେ ସାବିତ୍ରୀ ପ୍ରସ୍ତାବ ଦେଇଥିଲା, ବାପା ଚାଲନ୍ତୁ ତା' ପାଖକୁ । ତା' ପାଖରେ ରହିବେ, ଠାକୁର ବନେଇବେ ସେଇଠି । ସେ ମନାକଲେ-''ଆଉ କେତେଟା ଦିନ ? ଏମିତି ଦିନ ଆସି ଯିବରେ, ମା', ଯେତେବେଳେ ଏଇ ଓଦା ମାଟି ଆଉ ହାତର ବୋଲ ମାନିବ ନାହିଁ । ଗୋଡ ସଳଖ ଠିଆହୋଇ ପାରିବ ନାହିଁ । ସେତେବେଳେ ତୁ ଯାହା ବ୍ୟବସ୍ଥା କରିବୁ । ବର୍ତ୍ତମାନ ତ ଚଳିଯାଉଚି ସବୁ । କ'ଣମୋର ଦୁଃଖ ? ଏ ଦେହ, ଘର, ବାଡିବଗିଚା ସବୁ ତୁମମାନଙ୍କ ହାତରେ ଦିନେ ଦେଇଦେବି । ତୁ ଆଜିଠୁଁ ଏତେ ବ୍ୟସ୍ତ ହେଉଛୁ କାହିଁକି ?'' ଏ ଉତ୍ତର ପରେ ସେ ଆଉ ବାଧ କରିନାହିଁ ବାପାଙ୍କୁ ତା'ପ୍ରସ୍ତାବ ଗ୍ରହଣ କରିବା ପାଇଁ ।

-''ବାପା, ମୁଁ ଯାଉଚି ।'' ସାବିତ୍ରୀ କହେ ।

କିଛିକ୍ଷଣ ପାଇଁ ମୂର୍ତ୍ତି ତିଆରି ସ୍ଥଗିତ ରହେ । କେଦାର ମହାରଣା ମୁହଁ ଟେକି ଚାହେଁ ଝିଅଆଡକୁ । ହସେ । କହେ-''ବାହାରିଲୁଣି ? ହଉ, ଯା' । ଗାଡିଭଡା ପାଇଁ ଅଛି ନା ପଇସା ତୋ' ପାଖରେ ?''

ଏ ପ୍ରଶ୍ନ ପାଇଁ ଉତ୍ତର ନ ଥାଏ ସାବିତ୍ରୀର । ସେ ବାପାଙ୍କୁ ସତର୍କ କରିଦିଏ-''ଟିକିଏ ହୁସିଆର ହୋଇ ଚଳୁଥିବ । ଭାତ ଗାଳିଲା ବେଳେ ତରତର ହେବ ନାହିଁ । ଗାଧୋଇବ ଠିକ୍ ଟାଇମ୍‌ରେ । ରାତି ପାଇଁ ପଖାଳ ଆଉ ଭଜା ରଖିଦେଇଚି ।''

ପୁଣି ଭୂମିଷ୍ଠ ପ୍ରଣାମ । କେଦାର ମହାରଣା ଆଦୌ ପଚାରେ ନାହିଁ, ଝିଅ ପୁଣି କେବେ

ଆସିବ । ସେ ନିଶ୍ଚିତ ଯେ, ଝିଅ ଆସିବ । ତା'ଭଳି ଝିଅ ବାପାକୁ ବେଶିଦିନି ନ ଦେଖି ରହିପାରିବ ନାହିଁ ତା' ଶାଶୁଘରେ ।

ସାଇରେ କାହା ସହିତ ଯଦି ଅକସ୍ମାତ୍ ଦେଖାହେଲା, ତେବେ ପଦେ ଦି'ପଦ ମାମୁଲି କଥା । ନହେଲେ ପିଣ୍ଡା ତଳକୁ ଓହ୍ଲାଇବା ମାତ୍ରେ ସାବିତ୍ରୀ ଆଗେଇଯାଏ ବସ୍‌ଷ୍ଟାଣ୍ଡ ଆଡେ । ଅଧଘଣ୍ଟାକର ବାଟ ।

ସହରର ପିଚୁ ରାସ୍ତାର ଗୋଟିଏ ଗରୀବ, ରୁଗ୍‌ଣ ଡେଣା ଭଳି ଲମ୍ବିଥାସିଚି କଚା ରାସ୍ତା । ସେଇଠୁ ପୁଣି ବାଆଁ ହାତ ଗଳି । ଦୁଇ-କଡରେ ବିଭିନ୍ନ କିସମର ଘର-ବିଭିନ୍ନ କିସମର ଘର-ବିଭିନ୍ନ କିସମର ମଣିଷ ଭଳି । କିଛିବାଟ ଚାଲିଲେ, ଡାହାଣକୁ କେଦାର ମହାରଣାର ଚାଳଘର । ତା' କଡକୁ ପୁଣି ଘର । ତା'ପରେ ଭଲିବଲ୍ ପଡିଆ । ଏଠାରେ ଠିଆ ହେଲେ ଆଦୌ ଜଣାପଡିବ ନାହିଁ ଏଇଟା ଗୋଟେ ମ୍ୟୁନିସିପାଲିଟି ଏରିଆ ବୋଲି । ରାସ୍ତା କଡରେ କାଁ ଭାଁ ଟ୍ୟାପ୍ । ରାତିସାରା ପୋକ ଉଡୁଥିବା ରାସ୍ତାକଡର ଆଲୁଅ । ଆପାତତଃ ନୀରବ ଏ ଅଞ୍ଚଳ, ସାମୟିକ ବଚସା, ମୋଟରସାଇକେଲ୍ ଓ ସାଇକେଲ୍ ଘଣ୍ଟିର ଆବାଜ ବ୍ୟତୀତ ।

ଜୀବନ ପ୍ରତି ଏତେ ଅଣଓସାରିଆ ଦୃଷ୍ଟିଭଙ୍ଗୀ, ବଞ୍ଚିରହିବା ପାଇଁ ପୃଥିବୀ ଉପରେ ଏତେ ସଂକୀର୍ଣ୍ଣ ଦାବୀ ନେଇ ଏଭଳି ଉଚ୍ଚ ଅଭିଳାଷବିବର୍ଜିତ ମଣିଷଟେ ଖୋଜିଲେ ଆଉ କେଉଁଠି ମିଳିବ କି ନାହିଁ କେଜାଣି ? ସେଥର ଆମେରିକୀୟ ଦମ୍ପତି କେଦାର ମହାରଣା ସହିତ ସାକ୍ଷାତକାର ସମୟରେ ପଚାରିଥିଲେ-''ତୁମେ ଏଇ ଘର ପାଖରେ ରହି ମୂର୍ତ୍ତି ତିଆରିକର ନା ଅନ୍ୟ କେଉଁଠିକି ମଧ ଯାଅ ଏଥିପାଇଁ ।''

କେଦାର ମହାରଣା ପ୍ରଥମେ ପ୍ରଶ୍ନର ଗୁରୁତ୍ୱ ବୁଝିପାରି ନ ଥିଲା, ମୂର୍ତ୍ତି ତିଆରି ପାଇଁ ସେ କାହିଁକି କୁଆଡେ ଯିବ ? ସେ ମୁଣ୍ଡ ହଲାଇ ମନା କରିଥିଲା, କିନ୍ତୁ କେହି ଜଣେ ବିଦେଶୀ ଦମ୍ପତିଙ୍କୁ କହି ଦେଇଥିଲେ - ''କେବଳ ଏଇ ସାଇରେ ଥିବା ବଜ୍‌ରଙ୍ଗ କ୍ଲବ୍ ତରଫରୁ ଯେଉଁ ଦୁର୍ଗାପୂଜା ଅନୁଷ୍ଠିତ ହୁଏ, ତାହାର ପ୍ରତିମା ତିଆରି କରେ କେଦାର ମହରଣା । ସହରରେ ତାହା ହିଁ ହୁଏ ସବୁଠାରୁ ସୁନ୍ଦର ପ୍ରତିମା । ଏତକ ବାଦ୍‌ଦେଲେ ସେ ଆଉ କେଉଁଠିକି ମୂର୍ତ୍ତି ତିଆରି ପାଇଁ ଯାଏ ନାହିଁ ।''

କେଦାର ମହାରଣାର ମନେ ନାହିଁ, କେତେ ବର୍ଷ ହେଲା, ସେ ବଜ୍‌ରଙ୍ଗ କ୍ଲବ୍ ତରଫରୁ ଆୟୋଜିତ ହେଉଥିବା ଦୁର୍ଗାପୂଜାର ମୂର୍ତ୍ତି ତିଆରି କରି ଆସୁଚି । ପିଚୁ ରାସ୍ତା ଓ ତାଙ୍କ ସାଇ ଭିତରକୁ ଲମ୍ବି ଆସିଥିବା ରାସ୍ତା କଣରେ ଏବେ ତିଆରି ହୋଇଚି କଂକ୍ରିଟ୍‌ର ମନ୍ଦିର । ତା'ଭିତରେ କାଠର ଫ୍ରେମ୍ । ଅନ୍ୟ ସମୟରେ ଦେଖାଯାଏ ହାଡର ଗୋଟାଏ ଛାଞ୍ଚ ଭଳି । ଦୁର୍ଗାପୂଜା ବେଳେ ଏଇ ଛାଞ୍ଚ ଉପରେ ଉଭା ହୋଇଯାଏ ସହରର ସବୁଠାରୁ ଆକର୍ଷଣୀୟ ମୂର୍ତ୍ତି । ମନ୍ଦିର ସାମନାରେ ସାତ-ଆଠଫୁଟ ଓସାରର କଂକ୍ରିଟ୍ ଚଉତରା । ପ୍ରାୟ ସବୁଦିନ ସଂକୀର୍ତ୍ତନ ହୁଏ ସେଠାରେ ଘଣ୍ଟାଏ ସକାଶେ । ରାମ ନବମୀ ପରଠାରୁ ରାମାୟଣ ମଧ ଗାନ କରାଯାଏ ମାଇକ୍, ଢୋଲକି ଆଉ ହାର୍ମୋନିୟମ ସହଣରେ ।

ମୂର୍ତ୍ତି ତିଆରି ଶେଷ କରି କେଦାର ମହାରଣା ଫେରିଆସେ ନିଜ ଘରକୁ । ଆଉ ଯାଏନାହିଁ ସେ ଆଡକୁ । ମୂର୍ତ୍ତି ସମ୍ପର୍କୀୟ କୌଣସି ଆଲୋଚନା-ପ୍ରଶଂସା ଶୁଣିବା ପାଇଁ ସେ ଆଗ୍ରହୀ ନ ଥାଏ । କେହି ଏ ପ୍ରସଙ୍ଗ ଉଠାଇଲେ ଆଗ୍ରହହୀନ ସ୍ୱରରେ କହେ- ''କେଜାଣି,

କେମିତି ମୂର୍ତ୍ତି ହେଉଛି ? ତୁମେ କହୁଚ, ଭଲ ହୋଇଚି ସବୁଠୁ ବୋଲି ? ହୋଇଥିବ । ସବୁ ମୂର୍ତ୍ତି ତ ଏକା ଭଳି । ସେଠାରେ ପୁଣି ଭଲ ମନ୍ଦ ଗୋଟେ କ'ଣ ? ସିଂହବାହିନୀ ମା'ଙ୍କର ମହିଷାସୁରକୁ ବିନାଶ ଏଇ ତ କଥା ।''

ଏଇଭଳି ଭାବରେ ଗୋଟାଏ ଆୟୁଷ ସରିଆସୁଥିଲା । ଗୋଟାଏ ନୀରବ ସାଧନା,ପ୍ରତିବଦଳ ଆଶା କରୁ ନ ଥିବା ଗୋଟାଏ ତପସ୍ୟା ପହଞ୍ଚୁଥିଲା ପ୍ରଶାନ୍ତ ସମାପ୍ତିରେ ଅଭିଯୋଗହୀନ ଭାବରେ । ମାତ୍ର ଅଚାନକ, ଅପ୍ରତ୍ୟାଶିତ ଭାବରେ ଜୀବନର ମୋଡ ବଦଳିଯାଏ ବୋଲି କେଦାର ମହାରଣା ବା ଜାଣିଥାନ୍ତା କିପରି ?

ସାଂଘାତିକ ଘଟଣାଟି ଘଟିଲା ଏଇଭଳି-

ରାତି ସେତେବେଳକୁ କେତେହେବ କେଜାଣି ? ସେ ବାରି ଆଡକୁ ଆସି ଦଳେ ପିଲାଙ୍କର ଚାପା, ଉତ୍ତ୍ୟକ୍ତ ସ୍ୱର ଶୁଣିବାକୁ ପାଇଥିଲା । ସେମାନେ ଗୋଟାଏ ଭୟଙ୍କର କାଣ୍ଡ କରିବାକୁ ଯାଉଥିଲେ । କେହି ଜଣେ ଶୀକାର ହେବାକୁ ଯାଉଥିଲା ସେମାନଙ୍କର ଷଡଯନ୍ତ୍ରର ।

-''ମୁଁ କହୁଚି, ଶଳାକୁ ଟାଣିଆଣିବା ଘରଭିତରୁ । ବାଡେଇ ବାଡେଇ ନେବା ସାଇର ଗୋଟେ ମୁଣ୍ଡରୁ ଆଉ ଗୋଟେ ମୁଣ୍ଡକୁ ।'' ପ୍ରସ୍ତାବ ବାଢ଼ିଲା ଜଣେ ।

-''ମୁଁ ତାକୁ ତିନି-ଚାରି ମାସ ହେଲା କହିଲିଣି । ତୁମେ ବାବୁ ଯାଅ ଆମ ସାଇରୁ । ଅନ୍ୟ କେଉଁଠି ଉଡା ଘର ନେଇ ରହିବ । ତୁମେ ତୁମର ସେଇଠି ରହି ରାଜନୀତି କରିବ, ଓକିଲାତି କରିବ, ଯା' ତା' ନାଆଁରେ ମିଛ କଥା ଲେଖି ଲୋକଙ୍କୁ ବଦନାମ କରିବ । ତୁମେ ଆମ ସାଇରେ ରହି ଅଶାନ୍ତି ସୃଷ୍ଟି କରନାଇଁ ।'' ଆଉ ଜଣେ କହିଲା ।

-'' ସେ ଶଳା କହିଲା କ'ଣ ?'' ଜାଣିବାକୁ ଚାହିଁଲା ଆଉ ଜଣେ ।

-''କହିଲା, ମୁଁ ଏଇଠି ରହିବି । କିଏ ମୋର କ'ଣ କରିବ ?''

-''ଆଁ ? ଏମିତି ଉତ୍ତର ଦେଲା ସେ ?''

-''ମୁଁ ତା' କଥା ସବୁ ସଂଗ୍ରହ କରିସାରିଚି । ଏ ବାଝୋଦ୍ ଏତେ ଅବିବେକୀ ଯେ ତା ବଡ ଭାଇକୁ ଭଲ କରି ଦେଲା ପାନେ । ବଡ-ଭାଇ ଗୋଟେ ପ୍ରାଇମେରୀ ସ୍କୁଲ ଶିକ୍ଷକ । ପେଟରୁ ଦାନା କାଟି ଏ ହାରାମଜାଦାକୁ ପଢେଇଲା । ପାସ୍ କଲା ଏମ୍.ଏ. । କେଉଁ ଗୋଟେ କଲେଜର ଅଧ୍ୟାପକ ହେଲା । ତା'ବଡ ଭାଇର ଶାଳୀକୁ ଦେଲା ପ୍ରେଗ୍ନାଣ୍ଟ କରି । ଚାକରୀ ଗଲା । ଓକିଲାତି ପଢିଥିଲା ବୋଲି ଏଇଠି ଘର ଭଡା ନେଇ ଓକିଲାତି କରୁଚି । ଏ ଶଳା ଦେଖାଯାଏ କେମିତି ଦେଖୁନ ? ତା'ମୁହଁ ଗୋଟାଏ ରୋଗୀର ମୁହଁ ଭଳି ଦରମଲା ଦିଶେ । ହେଲେ, ତା' କାମଦାମ ଆହୁରି ଗୁଗ୍ଣ । କଥା କହିବ ଏମିତି ଯେ, ତୁମେ ଭାବିବ, ଆହା, ଗରିବ, ଖଟିଖିଆ ଲୋକଙ୍କ କଥା ଭାବି ଭାବି ଶଳାକୁ ରାତିରେ ନିଦ ବି ହେଉ ନାଇଁ । ଏଣେ ଜମିବାଡି ବ୍ୟାପାରରେ ତା' ବଡ ଭାଇ ସାଙ୍ଗରେ ଚାଲିଚି ମାଲିମକଦ୍ଦମା କେତେ ବର୍ଷ ହେଲାଣି ।'' ଦୀର୍ଘ ଭାଷଣଟେ ଦେଲା ଆଉ ଜଣେ ।

- ''ନାଇଁ, ନାଇଁ, ସେ ଯିବ ଆମ ସାଇରୁ ।''

-'' ମୁଁ କହୁଚି, ପେଟ୍ରୋଲ ଢାଳି ପୋଡିଦେବା ତା'ଘର ।''

-''ଚୋପ୍ !'' ପ୍ରତିବାଦ କଲା ଆଉ ଜଣେ । ସେ ଘରଟା କ'ଣ ତା'ର ? ତା'ଛଡା ତା' ଝିଅ ପିଲାମାନେ ଆମର କ'ଣ କ୍ଷତି କରିଚନ୍ତି ? ସେ ନମକହାରାମ ଅମଣିଷ ହେଲା ବୋଲି ଆମେ କାହିଁକି ସେମିତି ହେବା ?''

- ''ତେବେ ଚାଲ, ଡେରି କ'ଣପାଇଁ କରୁଚ ?''

-''ଆମେ ଧରାପଡିଲେ କରିବା କ'ଣ?''

-''ଫୁଟ ! ଧରାପଡିବା ଗୋଟେ କ'ଣ ? ଏ ସାଇରେ ସମସ୍ତେ ତା'ର ଅପ୍ରିୟ ! ଚାରି ପାଞ୍ଚଟା ଢେଲା ତା' ପଛରେ ଗୋଡାନ୍ତି ଯାହା । ଖଲାକୁ ଦେବା ପାନେ । କିଏ କ'ଣ କରିବ ?

ସେମାନେ ଆଉ ମଣିଷଛୁଆ ଭଳି ଜଣାପଡିଲେ ନାହିଁ । ଉନ୍ମତ୍ତ ଉନ୍ମାଦନାରେ ସେମାନେ ଉତ୍ତେଜିତ ହୋଇପଡିଥିଲେ । ଗୋଟାଏ ପୈଶାଚିକ ପ୍ରବୃତ୍ତି ସେମାନଙ୍କୁ ଅନ୍ଧ କରିଦେଇଥିଲା । ଏତେ ଅସ୍ଥିର, ଅନିୟନ୍ତ୍ରିତ ହୋଇ ପଡିଲେ ସେମାନେ ଯେ ଝାପ୍‌ସା ଅନ୍ଧକାର ଭିତରେ ଉଦଣ୍ଡ ନୃତ୍ୟ କରିବା ସ୍ପଷ୍ଟ ହୋଇପଡିଥିଲା ଚଷମା ପିନ୍ଧୁଥିବା ଓ ପୃଥିବୀ ଆସ୍ତେ ଆସ୍ତେ ଅସ୍ପଷ୍ଟ ହୋଇପଡୁଥିବା କେଦାର ମହାରଣା ଆଖିକୁ ।

ସେ ଏମିତି ଘଟଣା ସହିତ ପରିଚିତ ନ ଥିଲା କେବେ । ତା' ଜୀବନରେ ଏଭଳି ଘଟଣା କେବେ ଘଟିବା ତ ଦୂରର କଥା, ଅନ୍ଧାରରେ ଭଲ କରି ଚିହ୍ନି ହେଉ ନ ଥିବା ସେହି ଉଦ୍ଧ୍ୟତ୍ତ ଲୋକମାନଙ୍କର କଥୋପକଥନ ତା'ପାଇଁ ଦୁର୍ବୋଧ ଥିଲା । ସେ ଜାଣି ନ ଥିଲା, କେଉଁ ଲୋକ ଜଣକ ଏମାନଙ୍କ କ୍ରୋଧର ଶୀକାର ହେବାକୁ ଯାଉଚି । କଲେଜ ଚାକିରୀରୁ ତଡା ଖାଇ ଏ ସାଇରେ ବଦମାସୀ କରୁଥିବା ଓ ନିଜ ଭାଇ ପ୍ରତି ବିଶ୍ବାସଘାତକତା କରିଥିବା ସେ ମଣିଷଟିଏ କିଏ ?

ଯା ସତ୍ତ୍ୱେ, ଉନ୍ମାଦିତ ଲୋକଗୁଡାକ ଆଗକୁ ଯିବାବେଳେ କେଦାର ମହାରଣା ଏକ ନିଃସଙ୍ଗ ବିବେକ ଓ ମଣିଷପଣିଆର ଅସହାୟ ପ୍ରତୀକଟିଏ ଭଳି ପାଟି କରିଥିଲା - '' ଏ, ଏ, ଯାଉଚ କୁଆଡେ ତୁମେ ସବୁ ? ଆଁ ? କାହାକୁ କଣ କରିବ ବୋଲି ମାତିଯାଉଚ, ତମେମାନେ ? ଆରେ ଆରେ ରୁହ । ଶୁଣ ଏମିତି କାହିଁକି ଅନ୍ଧହୋଇ ଯାଉଚରେ, ତମେ-ସବୁ ?''

ଅନ୍ୟ ବ୍ୟାପରରେ ନିଜ ଜୀବନକାଳ ମଧ୍ୟରେ ହସ୍ତକ୍ଷେପ କରିବା ପାଇଁ ଚିନ୍ତା ବି କରି ନଥିବା କେଦାର ମହାରଣା ତ୍ରସ୍ତ ବିବ୍ରତ ହୋଇ ବନ୍ଦ କଲା ବାରି କବାଟ । ସେ କେମିତି ଘର ଦରଜାରେ ଖିଳୁଳି ଦେଇ ରାସ୍ତା ଉପରକୁ ଚାଲି ଆସିଲା, ତାହା ସେ ନିଜେ ବି ଜାଣେ ନାହିଁ । କ'ଣ ସେ କରିବାକୁ ଯାଉଚି, ଉନ୍ମତ୍ତ ଲୋକଗୁଡାକୁ ଆୟତ୍ତ କରିବା ପାଇଁ କ'ଣ ତାର କର୍ତ୍ତବ୍ୟ, ତାହା ବି ସେ ଜାଣିନଥିଲା ଆଦୌ । ସେ କେବଳ ଏତିକି ବୁଝିଥିଲା ଯେ ଅଘଟଣ ଗୋଟେ ଘଟିବା ପାଇଁ ଯାଉଚି ସେ ସାଇରେ, ରାତିର ନିସ୍ତବ୍ଧ ପ୍ରହରରେ । କେହି ଜଣେ ନିମିଷକ ମଧ୍ୟରେ ମାତର ଶିକାର ହେବ, ପୋଡିଯିବ ତା'ର ଆଶ୍ରୟ ଓ ନିରାଶ୍ରୟ ହୋଇଯିବେ ତା'ର ନିରିମାଖି ଛୁଆମାନେ ।

ଏଇଥିପାଇଁ ସେ ନିଜ ଘର ସାମନାରେ ରାସ୍ତାରେ ଖାଲି ଇତସ୍ତତଃ ହେଲା ନିରୁପାୟ ହୋଇ । ସେ କେବଳ ବୁଝୁଥିଲା ଯେ କିଛି ଗୋଟାଏ କଲେ ବିପଦକୁ ରୋକି ହେବ । କିନ୍ତୁକ'ଣ କରାଯିବା ଦରକାର ? ସେତକ ପଶୁ ନଥିଲା ଅମଣିଷପଣିଆ ସହିତ ସମ୍ପୂର୍ଣ୍ଣ ଅପରିଚିତ ତା'ର ମଗଜ ଭିତରକୁ । ସେ ନିଜେ ଆକ୍ରାନ୍ତ ହେବା ଭଳି ପାଟି କରୁଥାଏ ଝରକା କବାଟ ବନ୍ଦ ଥିବା ଘର ସାମନାରେ - ''ଧର, ଧର ସେଇମାନଙ୍କୁ । ସେମାନେ କ'ଣ ନାହିଁ କଣ କରିବାକୁ ଯାଉଚନ୍ତି । ଆରେ, ଉଠିପଡ଼ ସମସ୍ତେ । ଶୋଇଚ କ'ଣ ?''

ବଙ୍କା ହୋଇଯାଇଥିବା ଅଣ୍ଟା ଓ ପିଠି ସେ ଆଉ ଅଧିକ କ'ଣ କରିପାରିଥାନ୍ତା ? ତାକୁ

ସ୍ତମ୍ଭୀଭୂତ କରି ପ୍ରଥମେ ବ୍ୟାପିଗଲା ଗୋଟାଏ ଆର୍ତ୍ତନାଦ । ଫେଣ୍ଟାଫେଣ୍ଟି କାନ୍ଦଣା ! ଉତ୍ତେଜିତ କଣ୍ଠସ୍ୱର । ଟିକିଏ ଦୂରରେ, ରାତିର ଅନ୍ଧକାରକୁ ଚାଟି ପରିଷ୍କାର କରିଦେବା ପାଇଁ ଉପରକୁ ଉଠିଲା ଲାଲ ନିଆଁର ଭୟାବହ ଜିଭ ।

ସମୁଦାୟ ସୃଷ୍ଟି ପହଞ୍ଚିଗଲା ବୋଧହୁଏ କୃତାନ୍ତ ମୁହୂର୍ତ୍ତରେ । ଲୋକମାନଙ୍କର କୋଳାହଳ । ରାସ୍ତା ଉପରେ ଧାଁ-ଧଉଡ । ଚରମ ବ୍ୟସ୍ତତା । କେଦାର ମହାରଣା ଆଗରେ ସମସ୍ତ ରାସ୍ତା ଯେପରି ଶେଷ ହୋଇଗଲା- ଆରେ କିଏ କୁଆଡେ ଗଲ ? ଧର ସେମାନଙ୍କୁ । ଜାଳି-ଦେଲେ ସଂସାରକୁ । ଉଠିପଡ ।

ଗୋଟାଏ ସତର୍କବାଣୀ ବାଟ ଅଣ୍ଡାଳି ହେଉଥାଏ ଅସ୍ୱାଭାବିକ ଭାବରେ ଆଲୋକିତ ଓ ପାଟିତୁଣ୍ଡ ପରିପୂର୍ଣ୍ଣ ସେଇ ପୃଥିବୀରେ । ସେ ଯେପରି ଆହୁରି ଅଥର୍ବ ଓ ଅନାବଶ୍ୟକ ହୋଇପଡିଥିଲା । ପରିସ୍ଥିତିକୁ ଆୟତ୍ତ କରିବା ପାଇଁ ଗୋଟାଏ ବ୍ୟାକୁଳ ଆର୍ତ୍ତନାଦ ବ୍ୟତୀତ ଆଉ ନଥିଲା କିଛି ତା'ପାଖରେ ।

ଦମକଳର ସ୍ୱର ସବୁବେଳେ ଜରୁରୀ ଓ ଅତର୍କ୍କ ଥାଏ । ସେଇ ସ୍ୱର ଶୁଭିଲା ପ୍ରଥମେ । ତା ପରେ ଓଜନିଆ ବୁଟ୍ ଯୋତାମାନେ ସ୍ୱର୍ଦ୍ଧିତ ବ୍ୟସ୍ତତାରେ ଦରାଣ୍ଡି ପକାଇଲେ ରାସ୍ତା ଓ ଅନ୍ୟାନ୍ୟ ସ୍ଥାନ । ସେ ବୁଝି ପାରୁ ନଥିଲା କିଛି । କାହିଁକି ଗୋଟେ ଗାଡିରେ ସେ ବୁହା ହୋଇଗଲା ଅଜଣା, ଅଦେଖା ସ୍ଥାନକୁ । କିଛି ସମୟ ପରେ ସେ ଆବିଷ୍କାର କଲା, ଗୋଟାଏ ସଂକିର୍ଣ୍ଣ ଆଲୋକିତ, ଦୁର୍ଗନ୍ଧମୟ ସ୍ଥାନ ଭିତରେ ସେ ଅଛି ଆହୁରି ଅନେକଙ୍କ ସହିତ । ଚାରିପଟେ ଧଳା କାନ୍ଥ । ସାମନାରେ ମୋଟା ରେଲିଙ୍ଗ୍ ଲାଗିଥିବା ଲୁହା କବାଟ । ପ୍ରକାଣ୍ଡ ତାଲା । ପୋଲିସ୍ ହାଜତ ।

ରେଲିଙ୍ଗ୍ ଲଗା ଦ୍ୱାର ବାଟେ ଦିଶିଯାଉଚି ଚେୟାର-ଟେବୁଲ୍-ଫାଇଲ ଭରପୂର ଗୋଟେ ବଡ ରୁମ୍ । ଗୋଡରୁ ମୁଣ୍ଡ ପର୍ଯ୍ୟନ୍ତ ଖାକି ପୋଷାକ ପିନ୍ଧା ଲୋକ ଜଣେ କ'ଣ କେଜାଣି ଲେଖୁଚି । ସେଇଭଳି ଆଉ ଜଣେ ଦି'ଜଣ ବସି ହାଇ ମାରିବା ଆରମ୍ଭ କରିଚନ୍ତି । ଭାରି ବୁଟ୍‌ର ଶବ୍ଦ ଭିତରକୁ ଆସୁଚି, ଯାଉଚି । ଦେଖାଯାଉ ନଥିଲେ ବି ଜିପ୍ ଗାଡିର ଶବ୍ଦ ମଧ୍ୟ ଶୁଭୁଚି କେତେବେଳେ କେମିତି ।

କେଦାର ମହାରଣା ସଂପୂର୍ଣ୍ଣ ଅବସନ୍ନ ହୋଇସାରିଥିଲା ସେତେବେଳେ । ଆଖି ଉପରକୁ ଓହ୍ଲାଇ ଆସୁଥିଲା ଗୋଟିଏ ରାତିର ନୁହଁ, ଗୋଟିଏ ଯୁଗର ନିଦ । ତା'ର ଦୁର୍ବଳ ଦେହ ଏଇ ଯେମିତି ଦୁର୍ବଳତାର ଓଜନରେ ଢଳି ପଡିବ ଅପରିଚ୍ଛନ୍ନ, ନିଷ୍କରୁଣ ଚଟାଣ ଉପରକୁ । ସେ ଚାରିଆଡକୁ ଚାହିଁ ଚିନ୍ତା କଲା, ଖାକି ପୋଷାକକୁ କହିବ, ତାକୁ ବାହାରକୁ ଛାଡିଦେବା ପାଇଁ । ତାକୁ ଯେପରି ଅପେକ୍ଷା କରି ରହିଚନ୍ତି ଦୁଇ ବଖରା ଚାଳଘର, ବିଭିନ୍ନ ଠାକୁର ଏବଂ ରୂପାନ୍ତର ସକାଶେ ସ୍ୱପ୍ନ ଦେଖୁଥିବା ଓଦା ମାଟି । ମାତ୍ର ସେ କହିପାରିଲା ନାହିଁ କିଛି । ଅନୁମାନ କଲା ସେ, ସେ ଭାସିଯାଉଚି ଗୋଟେ ଭୟଙ୍କର ସମୟ ଓ ପରିସ୍ଥିତି ଭିତରକୁ । ସେଠାରେ ଠାକୁରମାନଙ୍କର ବିଦ୍ଧାଣୀ ମଧ୍ୟ ଉପାୟହୀନ ଓ ସ୍ତବ୍ଧ ।

ପରଦିନ ପ୍ରାୟ ଏଗାରଟା ବାରଟା ସୁଦ୍ଧା ସମସ୍ତଙ୍କୁ ହାଜର କରାଗଲା କଚେରୀରେ । କଳାରଙ୍ଗର କୋଟ୍ ପିନ୍ଧା ଲୋକେ ଏପାଖ ସେପାଖ ହେଉଥାନ୍ତି । ଥାନା ଯେମିତି ଅଧିକୃତ ଖାକି ପୋଷାକ ଦ୍ୱାରା, କଚେରୀ ମଧ୍ୟ ସେହିଭଳି ଅଭିଭୂତ କଳା ପୋଷାକଦ୍ୱାରା ।

କଚେରୀରେ ହେମନ୍ତକୁ ଦେଖିବା ମାତ୍ରେ ସେ ନିଜର ପରିଚିତ ଓ ବିଶ୍ୱସ୍ତ ପୃଥିବୀକୁ ଫେରି ପାଇବ ବୋଲି ଆଶା କଲା । ଏଇଥିପାଇଁ ଗୋଟାଏ ଆତୁରତା ଓ ଧୈର୍ଯ୍ୟହୀନତା ଯୋଗୁଁ ସେ ବ୍ୟସ୍ତ ହୋଇପଡିଲା । ହେମନ୍ତ କେବଳ ଏପାଖ ସେପାଖ ହେଉଥାଏ କାଗଜପତ୍ର ଧରି । ତା' ସହିତ କଥାବାର୍ତ୍ତା କରିବାକୁ ବି ଫୁରୁସତ ନ ଥିଲା ତା'ର ।

ଜାମିନ ମଞ୍ଜୁର ହେଲା ପ୍ରାୟ ଚାରିଟାବେଳେ । ହେମନ୍ତ ତାକୁ ସାହାଯ୍ୟ କଲା ରିକ୍ସାରୁ ଓହ୍ଲାଇବାରେ । ଚଷମାହୀନ କେଦାର ମହାରଣା ଘରଆଡେ ଯିବା ପାଇଁ ଉଦ୍ୟତ ହେଲାବେଳେ ଦେଖିଲା, ଘର ଭିତରୁ ବ୍ୟସ୍ତହୋଇ ବାହାରି ଆସୁଚି ସାବିତ୍ରୀ । ଏକଥା ସତ ଯେ ଚଷମା ନ ଥିବାରୁ ସବୁ ଅସ୍ପଷ୍ଟ ଜଣାପଡୁଥାଏ । ପିଣ୍ଡା ଉପରେ ଥିବା ଠାକୁରମାନେ ତ ପ୍ରାୟ ଦେଖାଯାଉ ନ ଥାନ୍ତି । ସେହି ଅସ୍ପଷ୍ଟତା ଭିତରେ ସାବିତ୍ରୀର ମୁହଁ ହିଁ ସ୍ପଷ୍ଟ ଦେଖାଯାଉଥିଲା କେଦାର ମହାରଣାକୁ । ତା' ଦୃଷ୍ଟିଶକ୍ତିରୁ ସବୁ ହଜି ଯାଇଥିଲେ ମଧ୍ୟ, ରହିଥିଲା ଏକମାତ୍ର ସାବିତ୍ରୀର ମୁହଁ । ତାହା ହିଁ ଥିଲା ଏକମାତ୍ର ସାନ୍ତ୍ୱନା ଓ ଭରସା ଠାକୁରଙ୍କ ନିର୍ମାତା ପାଇଁ ।

ପ୍ରଥମେ ସେ କାନ୍ଦିଲା ଗୁଡାଏ, ସମସ୍ତ ସମ୍ଭାବ୍ୟ ଆଶ୍ୱାସନାକୁ ଅତିକ୍ରମ କରି । ଗୋଟାଏ କୈଫିୟତ ଦାବୀ କଲା - ''ତମେ କାହିଁକି ଯାଇଥିଲ ସେଆଡେ ? କ'ଣ ଦରକାର ଥିଲା ତମର ? ପାଖ ଘରେ କ'ଣ ଘଟୁଚି, ତାହା ତ ଜାଣିବା ପାଇଁ କେବେ ବି ମନ ହୋଇନାଇଁ ତମର ? ତମେ ତେବେ ଅଧରାତିଟାରେ ସେ ଗଣ୍ଡଗୋଳ ଭିତରକୁ ଗଲ କାହିଁକି ?''

ଏମିତି ନିରାଶ୍ରୟ ଓ ଅସହାୟ ଭାବେ ସେ କାନ୍ଦୁଥିଲା ଯେ କେଦାର ମହାରଣା ଭଲକରି ବୁଝିପାରୁ ନଥିଲା ତା'କଥା । ସେ କେବଳ ପଚାରିଲା-''ଦେଖିଲୁ, ମୋ ଚଷମା ଏଇଠି ଅଛି ନା ନାଇଁ ?''

ବକଟେ ଘରକୁ ଦରାଣ୍ଡି ପକାଇଲା ସାବିତ୍ରୀ । ଜିନିଷପତ୍ର ଛିନ୍ନଛତ୍ର ହେଉଥିବାବେଳେ ତା' କଥା ଶୁଭୁଥିଲା - ''କାଇଁ, ଏଠି ଚଷମା ? ଏଭଳି ଜାଗାରେ କ'ଣ ସେଇଟା ଥିବ ?'' ସେ ମନକୁମନ ଏଇ କଥା କହୁଥିବା ବେଳେ ତା'ର କଣ୍ଠସ୍ୱର ବାଷ୍ପରୁଦ୍ଧ ହୋଇପଡୁଥିଲା । ପୃଥିବୀ ଏବଂ ଆଖିକୁ ସଂଯୋଗ କରୁଥିବା ପୁରାତନ ନାଲି ଫ୍ରେମର ଚଷମା ସତେଅବା କେଉଁଆଡେ ଅନ୍ତର୍ଦ୍ଧାନ ହୋଇଯାଇଥିଲା । କେଦାର ମହାରଣାର ହୃଦ୍‌ବୋଧ ହେଉଥିଲା ଯେ ଚଷମା ଆଉ ମିଳିବ ନାଇଁ । ସେ ଆଉ ଭଲକରି ଦେଖିପାରିବ ନାଇଁ ତା'ର ପରିବେଶକୁ । ଚିହ୍ନଟ କରିପାରିବ ନାଇଁ କେଉଁଟା କଣ୍ଢେଇ ଓ କେଉଁଟା ଠାକୁରଙ୍କ ଦେହ । ସମସ୍ତ ରଙ୍ଗ ଗୋଟେ ପ୍ରକାରର ହୁଏତ ଦେଖାଯିବ ତାକୁ ।

ସେଦିନ ରାତିରେ ସାବିତ୍ରୀ ରହିଲା ସେଠି । ହେମନ୍ତ ତା' ଗାଁକୁ ପଳେଇ ଯାଇଥିଲା ସନ୍ଧ୍ୟାବେଳୁ । ସକାଳ ହେବାକ୍ଷଣି କେଦାର ମହାରଣା ଫେରିଯିବାକୁ ଚେଷ୍ଟାକଲା, ନିଜର ଚିରାଚରିତ ଜୀବନ ଭିତରକୁ, କିନ୍ତୁ କିଛି ଗୋଟାଏ ତାକୁ ଅକ୍ଷମ କରି ଦେଇଥିଲା । ତା'ର ହାତ ଏବଂ ଓଦାମାଟି ମଧ୍ୟରେ ରହିଥିଲା ଅନତିକ୍ରମ୍ୟ ବ୍ୟବଧାନ ।

ସେ ହାତ ଧୋଇ ଦେଲା । ସେଠାରୁ ଚୁପ୍‌ଚାପ୍ ଉଠିଆସିଲା । ବସିଲା ନିର୍ଦ୍ଧାରିତ ସ୍ଥାନରେ-ତେଲଚିକିଟା ହୋଇଯାଇଥିବା କାନ୍ଥକୁ ଆଉଜି । ସତରେ, ଏତେ ବର୍ଷର ପରିଚିତ ସ୍ଥାନ ଅପରିଚିତ ଜଣାପଡୁଥିଲା ତାକୁ । ସେ ଭଲ କରି କିଛି ଦେଖିପାରୁ ନାଇଁ, ନା ଚଷମା ନଥିବାରୁ ପରିବେଶ ତାକୁ ଚିହ୍ନିପାରୁ ନାଇଁ, ତାହା ଜାଣିପାରୁ ନଥିଲା ସେ । ସେଇଭଳି ଚୁପ୍‌ଚାପ୍

ବସିଥିବା ବେଳେ ହିଁ ସେ ବୋଧକଲା ତା'ର ଦେହ ଭିତରେ କେଉଁଠି କେଜାଣି ଗୋଟାଏ କମ୍ପନ ସୃଷ୍ଟି ହେଉଚି ଏବଂ ନିମିଷକ ମଧ୍ୟରେ ସେ କମ୍ପନ ବଳିଷ୍ଠ ହୋଇପଡୁଚି । କାନ୍ଥରେ ଆଉଜି ବସିଥିଲେ ମଧ୍ୟ ତା'ର ତମାମ୍ ଦେହ ଦୋହଲିଗଲା, ଚିପୁଡି ହୋଇଗଲା ଏବଂ ଦୁଇଟୋପା ନୀରବ ଲୁହ ଝରି ଆସିଲା ତା' ଆଖିରୁ । ମଣିଷର ଭିତର ଚିପୁଡି ହୋଇଗଲେ ଆଖିବାଟେ ହିଁ ପାଣି ଝରିଆସେ ।

ବର୍ଷାଦିନ ଆସୁଥିବାରୁ ଅପରାହ୍ନର ଘଡଘଡି, ବତାସ ଓ ଜୋର୍ ବର୍ଷା ହୋଇ ଅଗଣାର ସଞ୍ଚିତ ମାଟି ଧୋଇ ହୋଇଗଲା । ପିଣ୍ଡା ଉପରର ଅବଶିଷ୍ଟ ବିଗ୍ରହମାନଙ୍କୁ ଘର ଭିତରକୁ ନିଆଯାଇ ପାରିଥାନ୍ତା । ସବୁଥର ସେ ତାହା ହିଁ କରେ । ସେଦିନ କିନ୍ତୁ କ'ଣ ହେଲା କେଜାଣି, ସେ ବସି ରହିଥିଲା ଘର ଭିତରେ ଆତ୍ମରକ୍ଷା କରିବା ଭଙ୍ଗୀରେ । ବର୍ଷାପରେ, ରାତିର ଅନ୍ଧାକାରରେ ସେ ଲଣ୍ଠନ ଜଳେଇଥିଲା ଏବଂ ପିଣ୍ଡା ଉପରକୁ ଆସିଥିଲା । ସବୁ ଆକାରହୀନ ଓ ବିଭତ୍ସ ହୋଇପଡିଥିବାର ଅନୁମାନ କଲା ସେ । ସବୁ ଯେପରି ମୁର୍ଦ୍ଦାର ହୋଇ ପଡିଚି । ସେମାନଙ୍କୁ ଆଉ ଘର ଭିତରକୁ ନେବା ଦରକାର କିମ୍ବା ଉଚିତ ନଥିଲା ।

ଅପରାହ୍ନରେ ବର୍ଷା ହେଉଥିଲା କେବେ କିପରି । ସେହି ସମୟତକ ବାଦ୍‌ଦେଲେ ସେ ବସୁଥିଲା ପିଣ୍ଡା ଉପରେ - କିଛି ନ ଦେଖି, କିଛି ନ ଭାବି । ଦ୍ୱାର ବନ୍ଧରେ ଆରପାଖରେ ତରଳି ଯାଇଥିବା ମୂର୍ତ୍ତିମାନଙ୍କର ମାଂସ କେବେଠୁ ସଫା କରି ସାରିଥିଲା ସାବିତ୍ରୀ । ଲଙ୍ଗଳା ଓ ସୃଷ୍ଟି ଛଡା ଦେଖାଯାଉଥିଲା ସେ ସ୍ଥାନ ।

-''ବାପା, ଏଇ ନିଅ । ରୁହ, ମୁଁ ପିନ୍ଧେଇ ଦେଉଚି ।'' ସାବିତ୍ରୀ ବାପାଙ୍କୁ ନାଲିରଙ୍ଗର ଫ୍ରେମ୍ ଥିବା ଚଷମା ପିନ୍ଧେଇ ଦେଲା ।

ଡାକ୍ତରମାନେ ମୃତ ବୋଲି ଘୋଷଣା କରିଥିବା ଏକମାତ୍ର ପୁଅ ମା' ବୋଲି ଡାକି ନିଦରୁ ଉଠିବା ଭଳି ଛାତି ଉପରକୁ ଆସି ଯାଇଥିଲେ ମା' ଜଣକ ଏତେ ବିଚଳିତ ଓ ପରିପୂର୍ଣ୍ଣ ହୋଇପାରିଥାଆନ୍ତି କି ନା, ସନ୍ଦେହ । ଏକ ଅଭାବିତ ଚାଞ୍ଚଲ୍ୟରେ ସେ ଯେପରି ଜୀବନ୍ୟାସ ପାଇଲା । ପଚାରିଲା - ଆଁ ? ପାଇଲୁ, ତା'ହେଲେ ? ଥିଲା କେଉଁଠି ଏତେଦିନ ଯାଏ ?''

ସାବିତ୍ରୀ ସେ ପ୍ରଶ୍ନର ଉତ୍ତର ଦେଲା ନାହିଁ । ପ୍ରସ୍ତାବ ବାଢିଲା-''ତମେ ଆସ ଭିତରକୁ । ମୁଁ ଘର କାମ କରିବି । ତମେ ତମର ମାଟି କାମ କରିବ ।''

ଠିକ୍ ଭାବରେ କିନ୍ତୁ ଅତୀତ ଫେରି ନଥିଲା । ଜଖମ ହୋଇ ଯାଇଥିଲା କେଉଁଠି ଯେପରି । କିଛି ଗୋଟାଏ ହଜି ଯାଇଥିଲା । ମାଟି ଓଦା କଲାବେଳେ, ରଙ୍ଗ ଦେଲାବେଳେ କେଦାର ମହାରଣା ଅନ୍ୟମନସ୍କ ହୋଇଯାଉଥିଲା । ହାତ ଥରୁଥିଲା । କେତେବେଳେ କିପରି ଭୁଲ ରଙ୍ଗ ମାଖି ଦେଉଥିଲା ମୂର୍ତ୍ତି ଦେହରେ । ସେ ଜାଣିଥିଲା, ଯେମିତି ଚଷମା ଲଗେଇଲେ ମଧ୍ୟ ଆଗଭଳି ଆଉ ଚିହ୍ନିହେବ ନାହିଁ ଏ ସଂସାରକୁ ।

ଏବଂ ନିଜକୁ ସେ କୌଣସିମତେ ଚଳେଇ ନେବା ଅବସ୍ଥାରେ ଥିବାବେଳେ ତା'ହାତକୁ ଆସି ଯାଇଥିଲା କୋର୍ଟ ନୋଟିସ୍ । ଘର ପୋଡିଦେବା, ଜଣେ ଲୋକକୁ ଓ ତା'ର ପରିବାରକୁ ଜୀବନରେ ମାରିଦେବା ପାଇଁ ଯେଉଁ ଭୟାବହ ଷଡଯନ୍ତ୍ର ହୋଇଥିଲା, ସେଥିରେ ସେ ସକ୍ରିୟ ଅଂଶ ଗ୍ରହଣ କରିଥିଲା ।

ମୂର୍ତ୍ତି ତିଆରି ସ୍ଥଗିତ ରହିଲା । ଦେବାଦେବୀମାନେ ଆଉ ଉଭା ହେଲେ ନାହିଁ ତା'ପିଣ୍ଡା

ଉପରେ । ଓଦାମାଟିର ସ୍ୱପ୍ନ ସମୟକ୍ରମେ ଶୁଖି ଫାଟିଗଲା ଓ ଖଣ୍ଡ ଖଣ୍ଡ ହୋଇଗଲା । ସେ ଗୋଟେ ପ୍ରାଣହୀନ ସରାଭଳି ଏପାଖ ସେପାଖ ହେଲା । ଓକିଲ ଘରକୁ ଗଲା ହେମନ୍ତ ସହିତ । ଛାଟିପିଟି ହେଲା ନିର୍ଜ୍ଜୀବ ହୋଇ ପିଣ୍ଡା ଉପରେ କାନ୍ଥରେ ଆଉଜି ବସିବା ପାଇଁ । ମୂର୍ତ୍ତି ତିଆରିବା ପାଇଁ ।

ହେଲା ନାହିଁ । ଯେଉଁଦିନ ସେ କାଠଗଡା ଭିତରେ ଠିଆ ହୋଇପଡିଲା, ସେ ଅନୁଭବ କଲା ଯେ ଗୋଟାଏ ବଡଧରଣର ବିସ୍ଫୋରଣ ଘଟି ତା' ଭିତରର ସାବଲୀଳ ପୃଥିବୀଟି ଛିନ୍ନଛତ୍ର ହୋଇସାରିଚି । ତାକୁ କ'ଣ ପଚରା ଯାଉଥିଲା, କ'ଣ ସେ ଉତ୍ତର ଦେଉଥିଲା, ତାହା ସେ କିମ୍ବା ଅନ୍ୟ କୌଣସି ଲୋକ ବୁଝିପାରି ନଥିଲେ । ଛ'ମାସ ପାଇଁ ତାକୁ କାରାଦଣ୍ଡରେ ଦଣ୍ଡିତ କରାଯାଇଥିଲା ।

ଜେଲ୍‌ଟା କିଭଳି ଅଞ୍ଚଳ ? ପନ୍ଦର ଘଣ୍ଟାଯାଏ ସେ ଯେମିତି ପୋଲିସ ହାଜତରେ ଥିଲା ସେଇଭଳି ? ନା, ଆଉ କୌଣସି ପ୍ରକାର ? ଗୋଟାଏ ପରାଜିତ ଆତୁରତାରେ କେଦାର ମହାରଣାର ଅନ୍ତରାତ୍ମା ମଳି ହୋଇଗଲା । ସମସ୍ତେ ଯେମିତି ତାକୁ ନିର୍ମମ ଭାବରେ ପ୍ରତାରିତ କରିଛନ୍ତି । ପୃଥିବୀ, ସଂସାର ଓ ବଞ୍ଚିରହିବା ସମ୍ପର୍କରେ ତା'ର ଯେଉଁ ଧାରଣା ଥିଲା, ତାହାକୁ ଅଭିଭୂତ କରି ଏଇ ଯେଉଁ ପୈଶାଚିକ ଘଟଣା ସବୁ ଘଟିଗଲା, ତାହା ସହିତ ସେ ନିଜର ସମ୍ପର୍କ ଖୋଜି ପାଉ ନଥିଲା ଆଦୌ ।

ଅଥଚ ଗୋଟାଏ ନିଶ୍ଚିତ ପ୍ରତିଶ୍ରୁତ ସେ ଶୁଣୁଥିଲା ହେମନ୍ତ-ଠାରୁ-''ତମର କିଛି ହେବ ନାହିଁ । ତମେ କ'ଣ କରିଚ ଯେ ଡରୁଚ ? ସେ ଶଳା ଯାହାର ନାଆଁ ଦେଲା, ପୋଲିସ୍ ଯେଠାରେ ଯାହାକୁ ପାଇଲା ତାକୁ ଧରିନେଲା । ଧର୍ମ ବୋଲି ଜିନିଷଟେ କ'ଣ ଉଭେଇ ଗଲା ପୃଥିବୀରୁ ? ନ୍ୟାୟ କ'ଣ ବେହୋସ୍ ହୋଇଗଲା ବୋଲି ଭାବୁଚ ?''

ଏମିତି କିଛି ଘଟିଲା ନାହିଁ । ଜେଲକୁ ଯିବା ଆଗରୁ ସେ ଖୋଜୁଥିଲା ଦୁଇଟି ମଣିଷକୁ । ହେମନ୍ତ କାହିଁ ? ତା' ଚେଷ୍ଟା ହାରିଗଲା ବୋଲି ସେ କ'ଣ ପଳେଇଲା ଏ ସ୍ଥାନ ଛାଡି ? ସାବିତ୍ରୀ ହେଲେ ଆସିଥାନ୍ତା କିପରି ? ସେ ମାଇପି ମଣିଷ । ଏଭଳି ସ୍ଥାନକୁ ସେ କ'ଣ ଆସିପାରନ୍ତା ? ତଥାପି ମନ ଖୋଜୁଥିଲା ତାକୁ ଦେଖିବା ପାଇଁ । ସବୁ ଦୁଃଖ ଓ ପରାଜୟ ଦୀର୍ଘଶ୍ୱାସର ଭାଷା ହୋଇଯାଏ । ତାହା ହିଁ ହୋଇଥିଲା ସେଦିନ । ତା'ପରେ ଉଚ୍ଚ ପାଚେରୀଘେରା ଜେଲ୍ ।

ଜେଲରୁ ବାହାରିବା ମାତ୍ରେ ସମସ୍ତେ କ'ଣ ପ୍ରଥମେ ଚାହାଁନ୍ତି ପାଦତଳର ମାଟିକୁ ତା'ପରେ ମୁଣ୍ଡ ଉପରର ଆକାଶକୁ ? କେଜାଣି ? କେଦାର ମହାରଣା କିନ୍ତୁ ତାହା ହିଁ କରିଥିଲା । ତା'ପରେ ମୋହମୁକ୍ତ, ସ୍ୱପ୍ନ ବିବର୍ଜିତ ଆଖିରେ ସେ ଅନାଇଲା ପରିବେଶକୁ ଏବଂ ନିଜ ଅଜାଣତରେ ଚାଲିବା ଆରମ୍ଭ କରିଥିଲା । ଏ ଚାଲିବା କ୍ରମେ ଦ୍ରୁତ ହେଉଥିଲା । ସେ ଅଣନିଃଶ୍ୱାସୀ ହୋଇପଡୁଥିଲେ ମଧ୍ୟ ସଚେତନ ହେଉଥିଲା ଯେ ସେ ଧାଇଁବା ଆରମ୍ଭ କରିଚି କେଉଁଆଡେ ନ ଚାହିଁ । ଭୟଥିଲା, ଜେଲ୍‌ର ପାଚେରୀ ମଧ ଧାଇଁଚି ତା'ପଛେ ପଛେ । ଏହାର ବିଶାଳ ଫାଟକ ଗୋଟାଏ ଭୟଙ୍କର ଆଁ ଭଳି ତାକୁ ଗ୍ରାସ କରିବା ପାଇଁ ଗୋଡେଇଚି ।

ଯେତେବେଳେ ତା'ର ହୋସ୍ ହେଲା, ସେ ଦେଖିଲା ଯେ, ସାବିତ୍ରୀର ପ୍ରସାରିତ ହାତ ଭିତରେ ସେ ରହିଚି, ତା' ଘର ସାମନାରେ । ତା' ଘରର କବାଟ ଖୋଲା ଅଛି ତା'ପାଇଁ ।

ପ୍ରତୀକ୍ଷିତ ଆଲିଙ୍ଗନ ମୁଦ୍ରାରେ ସାବିତ୍ରୀର ଦୁଇ ହାତ ପହଁରି ଆସୁଥିଲା ତା'ର ନିର୍ଯ୍ୟାତିତ ଦେହ ଆଉ ମୁଣ୍ଡ ଉପରେ, ବାରମ୍ବାର । ସେ ଯେମିତି ଛୋଟପୁଅ ଦେହରୁ ସମସ୍ତ ଯନ୍ତ୍ରଣା ଆଉ ଅତ୍ୟାଚାରର ଧୂଳି ଝାଡି ଦେଉଚି । ବଡ କଥା ହେଉଚି, ସେ କାନ୍ଦୁ ନଥିଲା ଆଦୌ । କାହାରିକୁ ଅଭିଶାପ ଦେଉ ନଥିଲା । ସେ ପାଇ ପାରିଥିଲା ନିଜର ଅପହୃତ ଦରବ । ତାହା ହିଁ ଯଥେଷ୍ଟ ଥିଲା ତା' ପାଇଁ ।

ପରଦିନ ହିଁ ଆରମ୍ଭ ହେଲା ଚିରାଚରିତ ପ୍ରକ୍ରିୟା । ମାଟି ଓଦା ହେଲା ଅଗଣା କଣରେ । ଆଜ୍ଞାବହ ହୋଇ ଆକାର ଧାରଣ କଲା କେଦାର ମହାରଣାର ଅନୁଶାସନରେ । ରଙ୍ଗ ବୋଳା ହେଲା । ଏତେଦିନ ଯାଏଁ ଶୂନ୍ୟ ହୋଇପଡିଥିବା ପିଣ୍ଡା ପରିପୂର୍ଣ୍ଣ ହେଲା ବିଗ୍ରହମାନଙ୍କ ଦ୍ୱାରା ।

କେଦାର ମହାରଣା ନିଜେ ମଧ ଜାଣିପାରୁ ନ ଥିଲା ଏତେ ଜରୁରୀ କାର୍ଯ୍ୟବ୍ୟସ୍ତତା ଓ ଶକ୍ତି ସେ ପାଇପାରିଲା କେଉଁଠୁ ପ୍ରତିମା ଗଢିବାରେ । ବିଭିନ୍ନ ଆକାର ଓ ଭଙ୍ଗୀ ନେଇ ଗଣେଶମାନେ ବାହାରିଲେ ପ୍ରଥମେ । କେଦାର ମହାରଣା କେବେ ବି ଏଭଳି ଚମତ୍କାର ମୂର୍ତ୍ତି ତିଆରି କରି ନଥିଲା । ଏତେଦିନ ଯାଏଁ ଏକ ଅସାଧାରଣ ସୃଜନଶୀଳତା ଲୁଚି ରହିଥିଲା ତା'ଭିତରେ । ଗୋଟାଏ ଯନ୍ତ୍ରଣା ଓ ଅପମାନର ମାଡରେ ତାହା ଯେପରି ଝରି ଆସୁଥିଲା ତା'ର ଦୁଇହାତ ଜରିଆରେ ଓଦାମାଟି ଉପରକୁ । ଗୋଟାଏ ପାଗଳାମୀ ଗ୍ରାସ କରିଥିଲା ତାକୁ । ବିଗ୍ରହ ସେ ତିଆରୁଥିଲା ଅବିଶ୍ରାନ୍ତ ଭାବରେ ଏବଂ ଆଖି ପିଛୁଳାକେ ତାହା ମୁଗ୍ଧ ଗରାଖମାନଙ୍କ ହାତକୁ ଚାଲି ଯାଉଥିଲା । କାହିଁକି କେଜାଣି, କେଦାର ମହାରଣା ହୋଇପଡୁଥିଲା ତୃପ୍ତିରେ ବିଭୋର । ସମସ୍ତ ଷଡଯନ୍ତ୍ର ଓ ଅନ୍ୟାୟ ଅତିକ୍ରମ କରି ସେ ପ୍ରକାଶ କରୁଥିଲା ନିଜ ଜୀବନର ସ୍ପର୍ଦ୍ଧା ଓ ମୂଲ୍ୟ ।

ଗଣେଶ ଚତୁର୍ଥୀ ଅତିକ୍ରାନ୍ତ ହେବା ପରେ ପରେ ହିଁ ସେ କ୍ଳାନ୍ତ ଓ ବିରକ୍ତ ହୋଇଯାଇଥିଲା । ଏତେଦିନ ଧରି ପରିଶ୍ରମ ପରେ ତା'ର ବିଶ୍ରାମ ଦରକାର । ଦୀର୍ଘ ବିଶ୍ରାମ, ଅଥଚ ପାଖେଇ ଆସୁଥିଲା ଦୁର୍ଗା ପୂଜା ।

-''ମଉସା !'' ଶୁଭିଲା ଗୋଟାଏ ସମ୍ବୋଧନ ।

କେଦାର ମହାରଣାର ତନ୍ଦ୍ରା ଓ କ୍ଳାନ୍ତି ଧସକି ପଡିଲା । ସାମନାକୁ ଚାହିଁ ଦେଖିଲା, ଆଠ-ଦଶ ଜଣ ଲୋକ ଠିଆ ହୋଇଚନ୍ତି ତା' ଘର ସାମନାରେ । ସେ ଟିକିଏ ଶଙ୍କିତ ହୋଇପଡିଲା । ଏକାଠି ଏତେଗୁଡ଼ାଏ ଲୋକଙ୍କୁ ଦେଖିବା ତା' ପାଇଁ ଗୋଟାଏ ଅଶୁଭ ସଙ୍କେତରେ ପରିଣତ ହୋଇଯାଇଥିଲା ।

-''କିଏ ?'' ସେ ପଚାରିଲା ଦିନର ଆଲୁଅ ଓ ନାଲିଫ୍ରେମର ଚଷମା ସତ୍ତ୍ୱେ ।

-''ଆମେ ।'' ଉତ୍ତର ଆସିଲା । ''ପୂଜା ଆଉ ଅଳ୍ପଦିନ ରହିଲା । ତୁମେ କାମ ଆରମ୍ଭ କରିବ କେଉଁଦିନ ?''

-''କି କାମ ?'' କେଦାର ମହାରଣାର ପ୍ରଶ୍ନ ।

-''କି କାମ !'' ସେମାନେ ପୁନରାବୃତ୍ତି କଲେ ଏବଂ ଚାହିଁଲେ ପରସ୍ପରକୁ । ''ମୂର୍ତ୍ତି ତିଆରି ହେବ କେବେ ? ପୂଜା ରହିଲା ଅଳ୍ପଦିନ ।'' କେହି ଜଣେ ତାକୁ ମନେ ପକାଇ ଦେଲା ।

-''ଓ !'' ଦେବୀଙ୍କର ନିର୍ମାତା ହଠାତ୍ ଗମ୍ଭୀର ହୋଇଗଲା । ଟିକିଏ ଇତସ୍ତତଃ ହୋଇ କହିଲା - ''ବାବୁମାନେ, ଏଥର ଆଉ ପାରିବି ନାହିଁ । ଆଉ କେବେ ବି ପାରିବି ନାହିଁ । ତୁମେ ଆଉ କାହାକୁ କହ ।''

ସେମାନେ ପ୍ରକୃତରେ ସ୍ତମ୍ଭୀଭୂତ ହୋଇଗଲେ । ବେଶ୍ କିଛି ସମୟର ନୀରବତା ପରେ କେହି ଜଣେ ଦାବୀ କଲା - ''ପାରିବ ନାହିଁ ବୋଲି କ'ଣ କହୁଚ, ମଉସା ? ତୁମେ ଏଠି ବସିଥିବ, ଆମେ ଆଉ ଜଣେ ମିସ୍ତ୍ରୀ ଖୋଜିବୁ ମୂର୍ତ୍ତି ତିଆରି ପାଇଁ ? ସେ କଥା ହେବ ନାହିଁ । କ'ଣ କାଲିଠୁ କାମ ଆରମ୍ଭ ହେବ ?''

-''କାଲିଠୁ ?'' କେଦାର ମହାରଣା ସତେ ଯେପରି ନିଦରୁ ଉଠିଲା । ''ନାହିଁ, ନାହିଁ, ମୁଁ ଜମା ପାରିବି ନାହିଁ । ମୋତେ ଭାରି ଥକ୍କା ଲାଗୁଚି, ବାବୁମାନେ । ମୋ ହାତ ଥରୁଚି । ଏ କାମକୁ ମୁଁ ଆଉ ଧରି ନୁହଁ '' ଅନୁନୟ ସ୍ୱରରେ ସେ କହିଲା ।

କେହି ଶୁଣିଲେ ନାହିଁ ତା' କଥା । ହାତ ଥରୁଚି ? ଏ ବର୍ଷ ଏତେ ସୁନ୍ଦର ଗଣେଶ ମୂର୍ତ୍ତି ତିଆରିଥିବା ହାତ ଦିନ କେଇଟା ପରେ ଥରୁଚି ? ପାରିବ ନାହିଁ ବୋଲି ସେ କହୁଚି କାହିଁକି ? ପାରିବ । ଏ ବର୍ଷର ମୂର୍ତ୍ତି ଆଶାତୀତ ଭାବରେ ଭଲ ହେବ ।

ପରଦିନ କେଦାର ମହାରଣା ବାଧ ହୋଇ ପହଞ୍ଚିଗଲା ଦୁର୍ଗାମୂର୍ତ୍ତି ତିଆରିବା ପାଇଁ । ଫାଙ୍କା ଘର ଭିତରେ ଠିଆହେଲା । ମେଡର କାଠ ଛାଞ୍ଚ ଦେଖିଲା । ଉଦାସ ହୋଇଗଲା । କାଶିଲା । ପ୍ରତିଧ୍ୱନି ସୃଷ୍ଟି ହୋଇଗଲା । ତା' କାଶ ଫେରଆସିଲା ତା' ପାଖକୁ । ଗୋଟାଏ ଗରମ ଢେଉ, ଗୋଟାଏ ଶିତ୍କାର, ଭୟ । ଦୌଡ଼ି ପଳେଇବ କି ଏଠାରୁ ? ଅଥଚ କେତେ ବର୍ଷ ହେଲା କେଜାଣି ସେ ଏଇଠି ବର୍ଷରେ ଥରେ ମୂର୍ତ୍ତି ତିଆରେ । ସବୁଠାରୁ ସୁନ୍ଦର, ମୃଣ୍ମୟ ମୂର୍ତ୍ତି । ଏଥର କ'ଣ ହେଉଚି ତା'ର ? ତା' ଦେହର, ମନର ? ସେ ନିଜକୁ ସମ୍ଭାଳିବା ପାଇଁ ଚେଷ୍ଟା କରୁଥିଲା ।

ମୂର୍ତ୍ତି ତିଆରି ଚାଲିଥିଲା ପୂରାଦମ୍‌ରେ । କେଦାର ମହାରଣା ସବୁ ଭୁଲି ଯାଇଥିଲା ଏଇଥିପାଇଁ । ମୂର୍ତ୍ତି ତିଆରି ପ୍ରକ୍ରିୟା ସହିତ ସେ ସମ୍ପୂର୍ଣ୍ଣ ଭାବରେ ସାମିଲ ହୋଇଯାଇଥିଲା । ଅନନ୍ୟ ଏକାଗ୍ରତାର ସହିତ ସେ ଯେମିତି ଭାବରେ ଦେବୀଙ୍କୁ ତିଆରିଥିଲା, ସେଥିରୁ ଯେକେହି ଅନୁମାନ କରିପାରିବ ଯେ ତା'ମୂର୍ତ୍ତି ତିଆରି ଉପରେ ହିଁ ଏ ସୃଷ୍ଟିର ଭଲମନ୍ଦ ନିର୍ଭର କରେ । ସେ ବଞ୍ଚି ରହିଚି କେବଳ ଏଇଥିପାଇଁ । ତା ଜୀବନର ପରିପ୍ରକାଶ ହେଉଚି ଏଇ ମୂର୍ତ୍ତି ତିଆରି ।

ମହାସପ୍ତମୀ ଆସି ଯାଉଚି । ସମସ୍ତ ସାଜସଜ୍ଜା ଚାଲିଚି । କେଦାର ମହାରଣା ଭୁଲିଯାଉଚି ସମୟ, ନିଜର ରୋକଶୋଷ । ରାତି ପାହିଲେ ପୂଜା ଆରମ୍ଭର ଦିନ ।

ସବୁ ପ୍ରସ୍ତୁତ । ଦେବୀଙ୍କୁ ଘୋଡେଇ ରଖିଚି ବିଶାଳ ପର୍ଦ୍ଦାଟିଏ, ମୁଣ୍ଡରୁ ଗୋଡ ପର୍ଯ୍ୟନ୍ତ ।

ପର୍ଦ୍ଦାଟିଏ ଅପସାରଣ କଲାପରେ ହିଁ ଉପସ୍ଥିତ ଥିବା ଲୋକମାନେ ଜାଣିଲେ ଯେ ସମଗ୍ର ସୃଷ୍ଟି ଛୁରିକାବିଦ୍ଧ, ରକ୍ତାକ୍ତ । ବିକଳାଙ୍ଗ ଓ ମୃତ । ଏତେ ଭୟାବହ, ନାରକୀୟ ଓ ଅପ୍ରତ୍ୟାଶିତ ଥିଲା ସେ ଦୃଶ୍ୟ ଯେ ସେମାନଙ୍କ ଭିତରୁ କେତେଜଣ ସ୍ତମ୍ଭୀଭୂତ ହୋଇ ପରସ୍ପରକୁ ଚାହିଁଲେ । କେତେଜଣ ପ୍ରାୟ ଚିତ୍କାର କରି ପକାଇଲେ ଦୃତାନ୍ତ ଆତଙ୍କରେ । କେତେଜେଣ ମୁହଁ ବୁଲାଇନେଲେ । କେତେଜଣ କୌଣସିମତେ ଖସି ପଳାଇଲେ ସେଠାରୁ । ସବୁ ସ୍ତବ୍ଧ, ଜଡ, ସ୍ଥିର ଓ ନିଃଶ୍ୱାସ ପ୍ରଶ୍ୱାସ ବିହୀନ ।

-''ଏ କ'ଣ?'' କେଜାଣି କେତେ ବର୍ଷ ପରେ କେହି ଜଣେ ପାଟି କରି ଉଠିଲା, ପକ୍ଷାଘାତ ହୋଇଯାଇଥିବା ଜୀବନ ପୁଣି ଟିକିଏ ଚଞ୍ଚଳ ହେବାର ସୂଚନା ଦେଇ ।

-''ଏ କ'ଣ ? ଇଏ କିଏ ? କି ମୂର୍ତ୍ତି ଏଇଟା ?''

ସମସ୍ତଙ୍କର ହୋସ୍ ଯେପରି ଫେରି ଆସୁଥିଲା । ଅକ୍ଷମ ହୋଇଯାଇଥିବା ବିଚାର ବୁଦ୍ଧି ପୁଣି ସଜାଗ ହୋଇପଡୁଥିଲା ।

ଇଏ କ'ଣ ଦୁର୍ଗା ମୂର୍ତ୍ତି ? ମୂର୍ତ୍ତିର ବେକ ମୋଡିହୋଇ ଝୁଲୁଛି ଗୋଟେ ପାଖରେ । ଖପୁରୀ ଉଡିଯାଇଛି ସତେ ଯେପରି । ତାହାକୁ ସୂଚେଇ ଦେଉଛି ନାଲିରଙ୍ଗ । ମୁହଁ ଭିଜିଯାଇଥିଲା ସେଇ ରଙ୍ଗରେ । ବନ୍ଦ ଆଖି, ମୃତ୍ୟୁର ସୂଚନା ଦେଉଥିଲା । ସବୁଠାରୁ କଦାକାର ଅଂଶଟା ଥିଲା ମୂର୍ତ୍ତିର ଛାତି ଉପରେ । ଗୋଟେ ବିଶାଳ ଛୁରି ଭୁଷି ହୋଇଯାଇଛି ସେଠାରେ । କ୍ଷତ ସ୍ଥାନରୁ ଆସିଚି ସତେ ଯେପରି ଅସହାୟ ରକ୍ତ ।

ସକ୍ରିୟ ହୋଇପଡିଲେ ସମସ୍ତେ । ଅତର୍କ୍ଷ ହୋଇ ବାହାରି ଆସିଲେ ସେଠାରୁ । ଗୋଟିଏ କୋଳାହଳ, ହୋହାଲ୍ଲା ବ୍ୟାପିଗଲା ସହର ଉପରେ । ମାତ୍ର ଘଣ୍ଟାକ ଭିତରେ ଲୋକାରଣ୍ୟ ହୋଇଗଲା ସେ ସ୍ଥାନ । ଆଗ୍ରହୀ ଲୋକମାନଙ୍କର ଶେଷହୀନ ସୁଅ ଲାଗି ରହିଥିଲା ସେ ସ୍ଥାନକୁ । ଭିଡ ବଢୁଥିଲା ।

-"ମଉସା ?" ଶିକୁଳି ଲଗା ଦ୍ୱାରା ସାମନାରେ ଏ ସ୍ୱର । ପ୍ରତ୍ୟୁତ୍ତରହୀନ ଘର ଥିଲା ଆଗଭଳି ନୀରବ । ପିଣ୍ଡା ଉପରେ ତଥାପି କେତୋଟି ମୂର୍ତ୍ତି ବିକ୍ରି ହେବା ଅପକ୍ଷାରେ ଠିଆ ହୋଇଥିଲେ । ତେଲଚିକିଟା କାନ୍ଥ ଅପେକ୍ଷା କରୁଥିଲା କେତେବେଳେ ଚଷମା ପିନ୍ଧା, ଦେବ ଦେବୀର କୁଜା ବିନ୍ଧାଣୀଟି ଫେରି ଆସିବ ତା' ଉପରକୁ ।

- "ମଉସା ? ଘରେ ଅଛ ମଉସା ?"

ଏ ଡାକ ଥିଲା ଏକତରଫା । ସେଦିନ ସକାଳେ, ଦ୍ୱିପ୍ରହରେ, ସଞ୍ଜରେ, ତା' ଆରଦିନ ସକାଳେ - "ମଉସା ? କୁଆଡେ ଗଲ କି, ମଉସା ?"

ଏବଂ ପରେ ପର - "ବାପା ।" ସ୍ୱରଟା ଥିଲା ବ୍ୟାକୁଳ । - "ବାପା !" ସ୍ୱରଟା ଥିଲା ଲୁହଭିଜା । "ବାପା ।" ଏ ସ୍ୱରରେ ମିଶିଥିଲା କୋହ । "ବାପା ।" ଏ ସମ୍ବୋଧନ ସ୍ପଷ୍ଟ ନଥିଲା । ପୋତି ହୋଇ ପଡିଥିଲା ନିରାଶ୍ରୟ, ଛେଉଣ୍ଡ କାନ୍ଦଣା ଭିତରେ ।

ଏ ସ୍ୱର ପହଁରି ଆସୁଥିଲା ରୋଷେଇ ଘର, ଅଗଣା ଓ ପଛରେ ଥିବା ବାରି ଉପରେ । ତୁହାକୁ ତୁହା ।

# ଖଗଲା

ଉତ୍ତମ କୁମାର ପ୍ରଧାନ

ବାଘ ଛେକ୍‌ସି ବୁଟାତଳେ, କଲେଦ୍ ଡେକାନ୍ ତଳେ ।
ପେନୁ ଥିସି ବେଲର ମୁଢ଼େ, ଖୁଜେନ୍ ଥିସି ଡାଲେ ।
ବାଘ୍‌କେ ଦେବୁ ଟାଙ୍ଗିଆ ମିତେ, ସାପ୍‌କେ ଦେବୁ ଠେଙ୍ଗିଆ ।।

ପେନୁ ଦେବୁ ଆନୁଛେନ୍‌ତା, ଖୁଜେନ୍ ଭାଲୁର ମିନ୍ତ
ମିଦ୍‌ନୀ ତିନେ ମନ୍ ଉତ୍ମେ, ମିତର ମନହୁଲ୍ ସେ ।।

ପେନୁ ବାଘ୍ ଖୁଜେନ୍ କଲେଦ୍ ମିଦ୍‌ନୀ ତନଭ କଲ୍‌ସେ
ଦଣ ଆଙ୍ଗୁଠି ସାଆଁଟିଯାଏ, ଦଙ୍ଗରା କୁଟିଆ ସତ୍‌ମା
ଜାନ୍‌ମି ଜାଏଁ ମିତେ ଗରେଲ୍, ଭତ୍‌ତିଲାଆର ଚୁମା ।।

ଇନ୍ଦ୍ରଜିତ୍ ବାବୁ ଚିଲିକା ବକ୍ଷରେ ପୂର୍ଣ୍ଣ ଜହ୍ନକୁ ଦେଖି ଏମିତି କୁଟିଆ ଗୀତଟିଏ ଆରମ୍ଭ କରିଦେଲେ । କଂଟ୍ରାକ୍ଟର ଇନ୍ଦ୍ରଜିତ୍‌ର କବିତା ପ୍ରୀତି ବିଷୟରେ ମୋର ବିଶେଷ ଧାରଣା ନାହିଁ । ମୋର ଆଦିବାସୀ ଗଳ୍ପମାନଙ୍କର ସେ ଜଣେ ମୁଗ୍‌ଧ ପାଠକ । ବସ୍ତୁତଃ ଓଡ଼ିଶାର ସବୁଠୁଁ ଧନୀ ପାଠକ । ଇନ୍ଦ୍ରାବତୀ ପ୍ରକଳ୍ପରେ ଏବେ ଚାଳିଶ ଲକ୍ଷ ଟଙ୍କାର ଗୋଟାଏ ବିଲ୍ ପାଇଲେ ଏବଂ ସେହିଖୁସିରେ ଏଇ କଥାକାର ତଥା ଅନ୍ୟଜଣେ ବଂଧୁ ଗୌରହରିଙ୍କୁ ଏଠିକି ଆମନ୍ତ୍ରଣ କରିଛନ୍ତି ।

ଯୋଜନା ଅନୁଯାୟୀ ଆମେ ରମ୍ଭା ଡାକ ବଙ୍ଗଳାରେ ସଂଧ୍ୟାରେ ପହଞ୍ଚିଲୁଁ ଇନ୍ଦ୍ରଜିତ୍‌ର କାର୍‌ରେ । ସେଇଠି ଆମ ପାଇଁ ଅପେକ୍ଷା କରିଥାଏ ଦୁର୍ଲଭ ଖାଦ୍ୟ ଓ ପାନୀୟ । ଦାମିକା ସ୍କଚ୍ ତନ୍ଦୁର ଚିକେନ୍ ଆଉ କେତେ କିଛି ।

କିନ୍ତୁ ପୂର୍ଣ୍ଣମୀ ରାତିରେ ବଙ୍ଗଳା କୋଠରୀ ମଧ୍ୟରେ ଆବଦ୍ଧ ହୋଇ ରହିବା ଆମର ପ୍ରକୃତି ବିରୁଦ୍ଧ । ସେଥିପାଇଁ ଇନ୍ଦ୍ରଜିତ୍ ଆୟୋଜନ ଥିଲା ସ୍ଵତନ୍ତ୍ର । ଚିଲିକା କୂଳରେ ଅପେକ୍ଷା କରିଥାଏ ସୁସଜ୍ଜିତ ନୌକାଟିଏ । ଆକାଶରେ ପୂର୍ଣ୍ଣଜହ୍ନ ଏବଂ ଚିତ୍ରୀତ ଚିଲିକାର ତରଙ୍ଗିତ ବକ୍ଷରେ ଆମେ ତିନି ବନ୍ଧୁ । ପାଖରେ ପର୍ଯ୍ୟାପ୍ତ ପରିମାଣର ପାନୀୟ ଏବଂ ଆନୁସଙ୍ଗିକ ଖାଦ୍ୟ ।

ନାଉରିଆକୁ ଇନ୍ଦ୍ରଜିତ୍ ଆଦେଶ ଦେଲା ଡଙ୍ଗା ବାହିବାକୁ । ଆମର ଲକ୍ଷ୍ୟ ଥିଲା ଏକ ନିର୍ଦ୍ଦିଷ୍ଟ ନିର୍ଜନ ଦ୍ୱୀପ । ସେଇଠି ରାତ୍ରୀ ଯାପନର ସୁବନ୍ଦୋବସ୍ତ ହୋଇଥାଏ । ନଉକା ଚାଲିଲା ଏବଂ ଇନ୍ଦ୍ରଜିତ୍ ଆରମ୍ଭ କଲେ ସେଇ କୁଟିଆ ଗୀତଟି ।

ସ୍କଚ୍‌ର ପ୍ରଭାବ କି ସ୍ୱାଭାବିକତା କହିବା କଷ୍ଟକର କିନ୍ତୁ ଇନ୍ଦ୍ରଜିତ ଗୀତଟି ଖୁବ୍ ଆତ୍ମୀୟତାରେ

ଠିକ୍ କୁଟିଆଙ୍କ ଭଳି ଗାଉଥିଲେ । ମୁଁ ପ୍ରଶ୍ନ କଲି ''ଇନ୍ଦ୍ରଜିତ । ଏଇ କୁଟିଆ ଗୀତଟି ଶିଖିଲେ କେଉଁଠି ?''

ମୋର ପ୍ରଶ୍ନର ଉତ୍ତର ନ ଦେଇ ଇନ୍ଦ୍ରଜିତ୍ କହିଲା ''କୁମାର ବାବୁ ! ଦେଖ ଦେଖ, ସେଇ ନାଉରୀର ଆହୁଲା ବାଉଁଶ ଜହ୍ନକୁ ଛୁଇଁଲାଣି । ଦେଖିଲ, ନାଉରୀ କେମିତି ବାଉଁଶକୁ ଚନ୍ଦ୍ର ଦିହରେ ଖୁମ୍ପି ଦେଉଛି ଆଉ, ତଙ୍ଗାକୁ ଠେଲି ନେଉଛି ଆଗକୁ ।''

ମୁଁ କହିଲି ''ପେଟ୍‌ରେ ଭଦ୍‌କା ବ୍ଲୁଡିମେରୀ ଆଉ ହୁଇସ୍କି ତିନିହେଁ ମିଶିଲେ ଏମିତି ଅକବି ବି କ୍ଷଣିକେ କବି ବନି ଯାଆନ୍ତି, ବୁଝିଲ ଇନ୍ଦ୍ରଜିତ୍ ।''

ମୁଁ ଆଉ ଗୋଟାଏ କଥା ମଧ୍ୟ ଚିନ୍ତା କରୁଥିଲି । ବେକୁବ୍ ଆର୍କିମିଡିସ୍ ରାଜାଙ୍କୁ ଠିଆହେବା ପାଇଁ ପୃଥିବୀ ବାହାରେ ଜାଗାଟିଏ ମାଗୁଥିଲେ ପୃଥିବୀକୁ ଟେନିସ୍ ବଲ୍ ଭଳି ଫୋପାଡିବା ପାଇଁ । ରାଜା ଏଇ ହୁଇସ୍କିରୁ କିଛି ତାଙ୍କୁ ଦେଇଥିଲେ, ଏ ପୃଥିବୀଟି ଏଠି ନ ଥାଆନ୍ତା ପରା । ତେବେ ଆର୍କିମିଡିସ୍‌ଙ୍କର ଲେଭର୍ ତଥ୍ୟକୁ ମୋଟେ ବୁଝି ନପାରି ଇନ୍ଦ୍ରଜିତ୍ ପାଞ୍ଚଥର ବି.ଏ. ଫେଲ୍ ପରେ କୋଟିପତି, ତାକୁ ଲେଭର୍ ତତ୍ତ୍ୱ ବୁଝାଇବା ମୋଟେ ସହଜ ନୁହଁ । ତାର ଲିଭର୍‌ରେ ଲହଡି ଭାଙ୍ଗୁଥିଲା ହୁଇସ୍କି ।

ଇନ୍ଦ୍ରଜିତ୍ ପୁଣି ଆରମ୍ଭ କଲା ''କୁମାର ତମେ କୁଟିଆ ମାନଙ୍କ ବିଷୟରେ ଅନେକ କାହାଣୀ ଲେଖିଛ । ତମେ ଜାଣିଛ, ଏମିତି ପୂର୍ଣ୍ଣମୀ ରାତିରେ ଚନ୍ଦ୍ରଗ୍ରହଣ ପଡିଲେ କୁଟିଆ ମାନେ କ'ଣ କରନ୍ତି ?''

କୁଟିଆ ପଡାରେ ଜନ୍ମ, କୁଟିଆ କଥାରେ ପୋଖତ, ମୋତେ କୁଟିଆଙ୍କ ବିଷୟରେ ପ୍ରଶ୍ନଟି ପଚାରି ଇନ୍ଦ୍ରଜିତ୍ ଆହୁରି ଚକିତ କରୁଥିଲେ । ମୁଁ ଓଲଟି ପ୍ରଶ୍ନକଲି ''ଇନ୍ଦ୍ରଜିତ୍ ତମେ ଜାଣିଛ ଯଦି କୁହ ।''

ଇନ୍ଦ୍ରଜିତ୍ ଏଥର ମୋତେ ତାଚ୍ଛଲ୍ୟ କରି କହିଲା-ବୁଝିଲ ଗଡଜାତିଆ କୁମାର । ତମେ ତ ଖାଣ୍ଟି-କୁଟିଆ କନ୍ଧଟାଏ, ଯୋଗକୁ କଟକିଆ ରାଉତରା ଘରେ ପଶିଗଲ, ଆଉ କଟକି କଥା ଶିଖିଲ, ନହେଲେ ଏମିତି କେତେ କୁଟିଆ ତାଙ୍କ ଧାଙ୍ଗିଡିଙ୍କୁ କାହାଣୀ ଶୁଣାଉଛନ୍ତିନା, ତମର କଥା ଶୁଣୁଛି ଲୋକଙ୍କୁ, କାରଣ ତମର ଶ୍ୱଶୁର ଘର କଟକ,''ମୁଁ ହସିଲି ପ୍ରତିବାଦ କଲିନାହିଁ କଥାଟା ଅନେକଟା ଯୁକ୍ତି ସଂଗତ ଥିଲା, ତେବେ ମୁଁ ଓଲଟି କହିଲି ''ତମେ କୁଟିଆ ଭାଷା ଶିଖିଲ, ତମର କଣ ଶ୍ୱଶୁର ଜଣେ କୁଟିଆ ।''

ମୁଁ ଜାଣେ ଇନ୍ଦ୍ରଜିତ୍ ବାହା ହେଇଛି କଟକର ଜଣେ ନାମ୍‌ଜାଦା ଜମିଦାର ପରିବାରରେ । ଶୁଣିଛି ତାର ଗୋଟାଏ ପୁଅ ଏବେ ବିଦେଶରେ ପଢୁଛି କଂପ୍ୟୁଟର ।

ମୋର ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଇନ୍ଦ୍ରଜିତ ଆରମ୍ଭ କଲା । ''ହଁ କୁମାର, ମୋର ଶ୍ୱଶୁର ଜଣେ କୁଟିଆ । କେବଳ କୁଟିଆ ନୁହେଁ, ଦିଶାରୀ, କୁଟିଆ ସର୍ଦ୍ଦାର, ଶୁଣ କହୁଛି ସେଇକଥା ।''

ଚିଳିକା ବ୍ରିଜରେ ଏ ସମୟରେ ମାନ୍ଦ୍ରାସ ମେଲ୍ ଖୁବ୍ ଜୋରରେ ସିଟି ବଜାଇ ଚାଲିଥାଏ । ଇନ୍ଦ୍ରଜିତ୍ ସେ ଦିଗକୁ ଚାହିଁ ଆରମ୍ଭ କଲା ।

''ଆଜିକି ଦଶବର୍ଷ ତଳର କଥା । ସେତେବେଳେ ଆମର କାଠ କଣ୍ଟ୍ରାକ୍ଟ ଥାଏ ଥୁଆମୁଲ ରାମ୍‌ପୁରରେ । କାଠ ବାଉଁଶ କାଟି ପେପରମିଲ୍‌କୁ ଯୋଗାଇବା ଥିଲା ଠିକା । ମୁଁ କାମ ତଦାରଖ ପାଇଁ ଜଙ୍ଗଲ ଭିତରେ ତମ୍ବୁରେ ରହେ । ପାଖରେ ସଦାବେଳେ ଥାଏ ବନ୍ଧୁକ । ଶିକାର କରିବା ଥିଲା ମୋର ବଡ ସଉକ ।

ଦିନେ ସଂଧ୍ୟାବେଳେ ଶିକାରରେ ବାହାରିଲି । ଗୋଟାଏ ପାହାଡୀ ନଈ କୂଳେକୂଳେ ନିଘଞ୍ଚ ଜଙ୍ଗଲ । ଖୁବ୍ ସତର୍କରେ ଯାଉଥାଏଁ । ହଠାତ୍ ନଈ ଭିତରୁ ଏକ ଆର୍ତ୍ତନାରୀ କଣ୍ଠରେ ମୁଁ ଚମକି ପଡିଲି ।

ଦେଖିଲି, ନଈ ସ୍ରୁଅରେ ଯୁବତୀଟିଏ ଭାସିଯାଉଛି, ଚିତ୍କାର ଛାଡୁଛି ବିକଳରେ । ବେଶୀ କିଛି ଚିନ୍ତା କରିବାର ଆଉ ସମୟ ନଥିଲା, ବନ୍ଧୁକ ସେଇଠି ଫୋପାଡି ଡେଇଁ ପଡିଲି ପାଣିକୁ । କଡକୁ ଓଟାରି ଆଣିଲି ଯୁବତୀକୁ ।

ଓଟାରି ଆଣିବା ବେଳେ ଦେଖିଲି, ତାର ଦୁଇ ଗୋଡକୁ ଛନ୍ଦି ଦେଇଛି, ଗୋଟାଏ ଲମ୍ବା ସାପ । ସାପର ମୁଣ୍ଡକୁ ଯୁବତୀ ଟାଣରେ ଧରିଛି, ତେଣୁ ଦଂଶି ପାରୁନାହିଁ, କିନ୍ତୁ ଗୋଡ ଛନ୍ଦି ହୋଇ ପଡିଯାଇଛି, ପାରି ହେଉଥିବା ପାଣିରେ । ତା ଦିହରେ କିଛି ହିଁ ଆଭରଣ ନାହିଁ ।

କୂଳକୁ ଆସିଲା ପରେ ମୋ ଛୁରୀଟା ନେଇ ଟିକିଏ ଦୂରେଇ ଯିବାକୁ କହି, ଗୋଟାଏ ହାତରେ କାଟିଆଣିଲି ସାପକୁ । ସାତ ଆଠଗଡ କାଟିବା ପରେ ମୁଣ୍ଡଟିକୁ ଫୋପାଡି ଦେଲା ପାଣିକୁ, ଆଉ ଦଉଡି ଆସି ନୋଟିଗଲା ମୋ କୋଳରେ ନିର୍ବିକାରରେ ।

କଳା ମୁଗନୀ ପଥର ଗଢା ଚିକ୍କଣ ମୂର୍ତ୍ତୀଟେ ଭଳି ଥିଲା ତାର ଶରୀର । ପୂରିଲା ପୂରିଲା ହାତ, ଆଉ କୁନ୍ଦ କାମର ବକ୍ଷଭାର । ଢଳଢଳ ତରଳ ଦୁଇଟି ଆଖି । ନିରୀହ ନିଷ୍କପଟତାର ପ୍ରତିମୂର୍ତ୍ତୀ, ପ୍ରାଣଭରା ଫୁଲଟିଏ । ଅତି ସ୍ୱାଭାବିକ ଭାବରେ ଭିଡିଆଣିଲା ମୋର ମଥା ଏବଂ ଅତି ନିବିଡରେ ଚୁମ୍ବନ କଲା ମୋର କପାଳ । କୃତଜ୍ଞତାରେ ସଂପର୍କ ଆହୁରି ବଢିଲା । ବୁଝିଲି ସେ ଗାଉଥିଲା ଏଇମିତି କା ଆଉ ଗୋଟାଏ ଗୀତ ।

''ଲାଇଥା ବେନ୍‌କୁ ପେନୁବ୍ ଦାନ୍,
ଡଙ୍ଗବ୍ ଉପର୍ ବାଦଲ୍
ତଙ୍ଗରୀ ଛାଦ୍ ଧାଂଗରୀ ହାଦ୍,
ଆମ୍‌ରି ଛୁଆଁ ଶୀତଲ୍
ଧାଙ୍ଗରା ଛାତି, ଡଙ୍ଗରୀ ପାତି,
ଧାଙ୍ଗରୀ ହେଲା ପାନି
ବାଘ୍ ଭାଲୁ କଲେଦ୍ ଭୂତ
ଜଅଁରା ମରଦ୍ ଚୁନି''

ଅତି ବିହ୍ୱୋଳିତ ଭାବରେ କହୁଥିଲା ଇନ୍ଦ୍ରଜିତ୍ । ଗୀତଟି ଗାଇ ଅର୍ଥଟି ମଧ୍ୟ ବୁଝାଇ ଦେଲା । ସୃଷ୍ଟିର ପ୍ରଥମେ ଆକାଶରେ ଉଡିଯାଉଥିଲା ମେଘ, ଦିହଗେ ଭରତି ପାଣି । ଜଅଁରା ବା ଠାକୁର ପେନୁ, ଗଢିଲେ ମରଦଟିଏ ! ସେ ପାହାଡ ହୋଇ ତାର ଅମାର ସ୍ପର୍ଶରେ ଭିଡିଆଣିଲା ମେଘକୁ । ବିସ୍ତୃତ ଧାଙ୍ଗଡା ଛାତିରେ, ନାଚିକୁଦି, ମେଘ ରୂପୀ ଧାଂଗିଡି ହେଲା ଝରଣା । ଆଉ ଦିହିଙ୍କର ସଂଗମରେ ବନିଗଲା, ସୁନ୍ଦର ଅରଣ୍ୟ ଆଉ ସେଇ ଅରଣ୍ୟର ବାଘ ଭାଲୁ, ସାପ, ବୃକ୍ଷ, ସଭିଏଁ ହେଲେ ମରଦ କୁଟିଆର ଚୁନି, ଖେଳ ସାମଗ୍ରୀ । ଆମେ ତା'ର କୁଟିଆ ତତ୍ତ୍ୱ ଶୁଣିବା ବଦଳରେ ଅଧର୍ଯ୍ୟରେ ପ୍ରଶ୍ନ କଲୁ ''ତାପରେ, ତାପରେ କେମିତି ଆଗେଇଲ କହନ୍ତୁ ?''

ତାପରେ ଯୁବତୀକୁ ମୋର ସାର୍ଟିଟି ପିନ୍ଧାଇ ଦେଲି । ସେ ଆସିଲା ମୋର ତମ୍ବୁକୁ । ଖୁବ ଥକି ଯାଇଥାଏ । ତମ୍ବୁର ଭିତରେ ପଶିଲା କ୍ଷଣି, ମୁଁ ଭୁଲିଗଲି ସଂସାରକୁ । ଗୋଟା ବୋତଲ ହୁଇସ୍କି ସଙ୍ଗେ ସଙ୍ଗେ ସାରିଦେଲି । ତାକୁ ମଧ ଦେଲି ଗ୍ଲାସ୍‌ରେ ।

ନିର୍ଜନ ଜଙ୍ଗଲ ମଧ୍ୟରେ, ରମଣୀଟି ମୋର ହାବଭାବ ଦେଖି ଟାଣିନେଲା, ତମ୍ବୁ ବାହାରକୁ । ମୋର ସମଗ୍ର ଶରୀର ସେତେବେଳେ ଉଦ୍‌ଦୀପ୍ତ ଆଗ୍ନେୟ ଆବେଗରେ । ସେ ବୁଝାଉଥିଲା ତାର ଭାଷାରେ ଚନ୍ଦ୍ର ଆକାଶ, କୁରେଇ ଫୁଲ ଏମିତି ଅଧାବୁଝାକେଇକଥା । ମୋର ଅଭିସାରକୁ ସେ

ପ୍ରତିହତ କରୁନଥାଏ, କିନ୍ତୁ ତାର ବିନୟ ବ୍ୟାକୁଳ କଥାମାନ, ମୋତେ ଆହୁରି ଅଧିକ ଉତ୍ତେଜିତ କରୁଥାଏ । ଶେଷରେ ସେ କଇଁ କଇଁ ହୋଇ ଶୋଇପଡିଲା ମୋ ଛାତିରେ, କେବଳ କହିଲା ''ମିତେ ! ଦିଶାରୀ ପାଖକୁ ଯିବା, ମୁଁ ତ ଏଣିକି, ତୋର ଏଇ ଜହ୍ନଥିବା ଯାଏଁ ତୋ'ର, କେବଳ ତୋର ।''

ସକାଳ ହେଲା ବେଳକୁ ନଈରୁ ସ୍ନାନ ସାରି ମୋତେ ଉଠାଇଲା । ମୋର ନିଶା ଫାଙ୍କିଆସୁଥାଏ ଏଥର ମୁଁ ଥରୁଥାଏଁ । ତାର ନିର୍ଦ୍ଦେଶରେ କୁଟିଆ ଗ୍ରାମକୁ ତମ୍ବୁ ସ୍ଥାନରୁ କେଇମାଇଲ୍ ଉଚ୍ଚ ପାହାଡ ଉପରେ, ଆମେ ଚାଲିଲୁ ।

ସେଠି କୁଟିଆ ସର୍ଦାର ଦିଶାରୀ ତା ଠୁଁ ସବୁ ଶୁଣିଲା । କୁଟିଆ ପରମ୍ପରାରେ ମୋର ବିବାହ ହୋଇଗଲା ଯୁବତୀ ସହ ଠିକ ତିନିଦିନ ପରେ । ତିନିଦିନ ପରେ କାହିଁକିନା, ମଝିରେ ପଡିଲା ପୂର୍ଣିମୀ ଚନ୍ଦ୍ରଗ୍ରହଣ । ଚନ୍ଦ୍ରଗ୍ରହଣ ଦିନ, କୁଟିଆ ମାନେ ମେଦା ସଂଗ୍ରହ କରନ୍ତି ।

ଜହ୍ନ ଯେତେବେଳେ ଆକାଶକୁ ଉଠେ, ଦିଶାରୀ ଆକାଶକୁ ଅନାଇଥାଏ । ଗ୍ରହଣ ଆରମ୍ଭ ହେଲାକ୍ଷଣି ହି ବିରାଟ ନିଶାନ୍ ଦିହରେ ସେ ମୋଟା ଚମଡାର ପାହାର ପିଟିଯାଏ । ଧାଙ୍ଗଡା ମାନେ ଜମାହୋଇ ଯାଆନ୍ତି ହାତରେ ଫାର୍ସା, ବର୍ଚ୍ଛା ଆଉ ଧୁନଶର ମାନ ଧରି । ତାପରେ ଦିଶାରୀ ଜଙ୍ଗଲ ମଧ୍ୟରୁ ମହାଲିମ୍ବ ଗଛର ଚେରରେ ଗୁଡେଇ କିଛି ମାଂସ ପୋପାଡିଦିଏ ହୁଦ୍‌ହୁଦ୍ ଜଳୁଥିବା ନିଆଁ ପାଖକୁ । ଦରଶିଝା ମାଂସକୁ ଦିଆଯାଏ ଗୋଟାଏ ପୋଷା କୁକୁରକୁ ।

କୁକୁରଟି ମାଂସ ଖାଇଲାକ୍ଷଣି ଏମିତି ପ୍ରକାରେ ଭୁକିବା ଆରମ୍ଭ କରେଯେ ଜଙ୍ଗଲଟି ହଠାତ୍ ହୋଇଯାଏ ଏକ ମହାରହସ୍ୟର ଉପତ୍ୟାକା । ତାପରେ କୁକୁରଟି ପାହାଡ ଉପରକୁ ଦଉଡିଯାଏ, ତା ପଛରେ ଯାଆନ୍ତି ଦିଶାରୀ ଆଉ ସଶସ୍ତ୍ର ଧାଙ୍ଗଡା ଦଳ ।

କୁକୁର ଯାଇ ପହଞ୍ଚେ ପାହାଡ ଶିଖରରେ । ସେଇଠି ମୂଷା ଭଳି ମାଟି ଖୋଳିବା ଆରମ୍ଭ କରେ, ଆଗ ଦୁଇ ଗୋଡରେ । ଗାତଟିଏ ବଡିଯାଏ, କୁକୁରଟି ଭୋ ଭୋ କରି ପୁଣି ଖୋଳେ ଗାତ । ଗାତ ମଧ୍ରୁ ବାହାରି ଆସେ ବିଶାଳକାୟ ସାପଟିଏ ଏବଂ ପ୍ରଥମରେ ହିଁ ଜାବୁଡି ଧରେ କୁକୁରକୁ । ଅନେକ ସମୟରେ ସାପଟି ଗିଳିଦିଏ କୁକୁରକୁ ଏବଂ ସେକ୍ଷଣି ଚାରିଆଡକୁ ତାର ମୁଣ୍ଡରେ ଖସେ ଫାର୍ସା, ବର୍ଚ୍ଛ ଓ ତୀର । ସାପଟିର ମୁଣ୍ଡ ବିଦୀର୍ଣ୍ଣ ହୋଇପଡେ ଏବଂ ଦିଶାରୀ ସେଇ ମୁଣ୍ଡ ମଧ୍ୟରୁ ବାହାର କରେ ଚକମକ କରୁଥିବା ଚିଜଟିଏ । ତାହାକୁ କହନ୍ତି ''ମେଦା'' ।

ବିବାହ ଦିନ ଫିଟା ରୂପାରେ ତିଆରିହୁଏ ଖଗଲା, ବେକରେ କୁଟିଆ ରମଣୀ (ଲାଆ) ମାନେଏହାକୁପିନ୍ଧନ୍ତି ।ଏହିଖଗଲାଭିତରେଥାଏଖୋପଟିଏ,ତାମଧରେଜଗନ୍ନାଥଙ୍କରକାଷ୍ଠକାୟରେ ବ୍ରହ୍ମସ୍ଥାପନ ପରି ଦିଶାରୀ ସ୍ଥାପନ କରେ ''ମେଦା'' ।

ଦିଶାରୀ ମୋତେ ଖଗଲାଟିଏ ଦେଇ କହିଲା ଯୁବତୀ ଗଳାରେ ପିନ୍ଧାଇବା ପାଇଁ । ମୁଁ ପିନ୍ଧାଇ ଦେଲି, ଦିଶାରୀ କହିଲା ''ବାବୁରେ ! ମୋର ଝିଅକୁ ତୁ କନିଆ କଲୁ'' ଖଗଲା ଦେଲୁ । ତାକୁ ନେଇଯାଆ । କେବେ ତାକୁ ଛାଡିବୁ ନାହିଁ । ଯେନ୍ତୁ ଦେବତାର ମେଦା ଅଛି ଗଳାରେ । ସବୁ ଦୁଃଖ ତୋର ସେ ନେଇଯିବ । ହେଲେ, ଯଦି କେବେ ତାକୁ ଠକିଦେବୁ, ଛାଡି ଦେବୁ, ତେବେ ଦିଶାରୀ କୁଟିଆ ଟୁକେଲ୍ କାନ୍ଥିଆ ତୋତେ କ୍ଷମା କଲେ ହେଲା । ନ ହେଲେ ଖଗଲା ଭାବିଲେ, ତୁ ଯେଉଁଠି ଥାଆନା କାହିଁକି ଅଜଗର ପେଟରେ ଯିବୁ ।''

ଦିଶାରୀ ଏହା କହି, ବୋଝାଏ କୁରେଇ ଫୁଲ ଅଚାଡିଦେଲା ଦିହିଙ୍କ ମୁଣ୍ଡରେ ।

ଇନ୍ଦ୍ରଜିତ୍ ଚୁପ୍ ରହିଲା କିଛିକ୍ଷଣ । ଆମେ ପୁଣି ପ୍ରଶ୍ନ କଲୁଁ ''ତାପରେ, ତାପରେ କ'ଣ ହେଲା'' ।

ଇନ୍ଦ୍ରଜିତ୍ ଏଥର ବେଶ୍ ଗମ୍ଭୀର ହୋଇଯାଇ ଥାଏ । ପୁଣି ଆରମ୍ଭକଲା ।

''ବିବାହ ପରେ ମୁଁ ଆସିଲି ତମ୍ଭୁକୁ । ତାପରେ ଜିପ୍‌ରେ ଯୁବତୀ ସହ ଆସିଲି କେଶିଙ୍ଗା ଷ୍ଟେସନ୍ । ସେଇଠୁଁ ଆସିଲି ବିଜୟ ନଗର । ସେଇଠି ରାତି ଅଧକୁ ଆସିଲା ''ମାଡ୍ରାସ୍ ହାୱଡା ମେଲ୍'' । ପ୍ରଥମ ଶ୍ରେଣୀରେ ଗୋଟାଏ ସଂପୂର୍ଣ୍ଣ କୁପେ ରିଜର୍ଭ କରିଥିଲି ।

ସେତେବେଳକୁ ମୁଁ ସ୍ଥିର କରିଥାଏ, ମୁଁ ଆତ୍ମ ହତ୍ୟା କରିବି । ଘଣ୍ଟିକୁ କୁଟିଆ ସ୍ତ୍ରୀକୁ ନେବା ମୋଟେ ସମ୍ଭବ ନଥିଲା । ମୋର ପ୍ରଥମ ପୁଅ ସ୍କୁଲ୍, ଯାଉଥାଏ । ଘରେ ସ୍ତ୍ରୀ, ଅଭିଯାତ୍ୟ ମୋର ସମାଜ । ମୁଁ ମାରାତ୍ମକ ବିଷ କିଛି ଆୟୋଜନ କରି ରଖିଥାଏଁ ପାଖରେ ।

ଟ୍ରେନ୍ ଭିତରେ ବୋତଲଟିଏ ବାହର କରି ପିଇଲି । ଯୁବତୀଟି ଝରକା ଆଡୁ ଦେଖୁଥାଏ ପୃଥିବୀ । ତାକୁ ଓଟାରି ଆଣିଲି କୋଳକୁ । କିଛିକ୍ଷଣ ପରେ ସେ ହି କହିଲା ''ହେଇ, ଦେଖ କେତେ ସୁନ୍ଦର ପୋଖରୀଟିଏ । ଜହ୍ନ ପଡିଛି ।''

ମୁଁ ଦେଖିଲି ଟ୍ରେନ୍ ଚାଲିଛି ଚିଲିକା ମଝିରେ । ହଠାତ୍ ମୋ ଭିତରେ ଏକ ଉପାୟ ଦେଖାଗଲା । ଅଂଧାର ମଧ୍ୟରେ କବାଟ ଖୋଲିଗଲା । ମୁଁ ତାକୁ ଆଗ୍ରହରେ ଡାକି କହିଲି, ''ଆସୁନ୍ ତୋତେ ଦେଖାଇ ଦେବି । ସେଇଟା ପୋଖରୀ ନୁହଁ, ସମୁଦ୍ର ବିରାଟ ହ୍ରଦ'' । ବାହାଁରେଇ ନେଇଗଲି କବାଟ ପାଖକୁ ।

ଜହ୍ନ ଜ୍ୟୋସ୍ନା ଓ ଚିଲିକା ଦେଖି ସେ ବିସ୍ମିତ ହୋଇ ମୋ ଛାତିରେ ଆଉଜି କହିଲା ''ମିତ, ଏତେ ବଡ ପୋଖରୀର ହୁଡା କାହିଁ ଯେ ପାଣିକୁ ଆକଟ କରୁଛି ? କାହିଁ ବା ତା'ର ମରଦ, ସିଏ ଏମିତି ଯୁବତୀକୁ କୋଳାଇ ଧରିଛି ?''

ମୁଁ ଆଉ କିଛି ଶୁଣିନି । ଏକ ଶକ୍ତ ଧକ୍‌କାରେ ତାକୁ ଠେଲି ଦେଲି ଟ୍ରେନ୍ ତଳକୁ । ଦୁଇହାତ ଟେକି ସେ ପାଟି କରୁଥାଏ ''ମିତ, ମିତରେ - ମିତରେ ।''

ଇନ୍ଦ୍ରଜିତ୍ ଝାଳନାଳ ହୋଇ ଯାଇଥାଏ । ଦୀର୍ଘ ସମୟ ଯାଏଁ ଚୁପ୍ ରହିଲା ଆମେ ମଧ୍ୟ ନିର୍ବାକ୍ । ତଙ୍ଗାବାଲା ହିଁ ପରିବେଶକୁ ହାଲୁକା କରି କହିଲା ''ବାବୁ ! ତମେ କ'ଣ ତାକୁ ଜାଣି ଜାଣି ଫୋପାଡି ଦେଲ ।

ଇନ୍ଦ୍ରଜିତ୍ ଏଥର ପୁଣି ଗୋଟାଏ ଗ୍ଲାସକୁ ହୁଇସ୍କି ଶେଷ କରି ଉଦ୍ଧାମ ହସି ହସି କହିଲା ''ଆବେ, ମୋ ଛାତିରେ ପରା ଲାଖିଥିଲା ଯୁବତୀ । ତାକୁ ଫୋପାଡି ଦେଲି । ଆଉ କ'ଣ ପିକ୍‌ନିକ୍‌ର ପିଆଲାକୁ ଠାକୁର ଘରେ ନେଇଥୁଅନ୍ତି । ବେଶ୍ ଫୋପାଡି ଦେଲି । ମନରୁ ମୋର ପାହାଡ ପରିକା ବୋଝଟି ହଠାତ୍ ଖସିଗଲା । ମୁଁ ଆରାମ୍‌ରେ ଚାଲିଗଲି ଘରକୁ । ସେଇ ବିଷ ବୋତଲଟାକୁ ଫୋପାଡି ଦେଲି କଟକରେ ପହଞ୍ଚିଲାପରେ । ବୁଝିଲ କୁମାର ! ସେଇ କାନ୍ଧିଆ, ତା'ର ଶେଷ ଆବାଜ୍‌ଟି ଏଇ ଚିଲିକାରେ ମିଶିଗଲା ସତ, କିନ୍ତୁ ଏବେ ବି, ମନେହୁଏ, କେବେ ଟ୍ରେନ୍‌ରେ ଗଲାବେଳେ, ମୋତେ ସେଇ ଡାକଟି ଶୁଭେ ''ମିତରେ ମିତ ।'' ।

କିନ୍ତୁ ଇନ୍ଦ୍ରଜିତର ଏମିତି ଏକ କଳଙ୍କିତ ଅତୀତ ଅଛି ତାହା ମୁଁ ଜାଣିନଥିଲି । ଆଉ ମଧ ଜାଣି ନଥିଲି ଯେ, ସେଥିନିମିତ୍ତ ସେ ମୋର କୁଟିଆ କଥା ଓ କାହାଣୀର ନିୟମିତ ପାଠକ । ଗୌରହରି ଓ ମୁଁ ପରସ୍ପରକୁ ଚାହିଁଲୁ । ଆମେ ଦିହେଁ ଅନୁତାପ କରୁଥିଲୁ, ଏଭଳି ଏକ ବିଭତ୍ସ ହତ୍ୟାକାରୀର ସାଫଲ୍ୟର ମହୋତ୍ସବର ଆତିଥ୍ୟ ଗ୍ରହଣ କରିଥିବା ଯୋଗୁଁ । ଆମେ ଦିହେଁ ଦେଖୁଥିଲୁ, ନିର୍ମଳ ଜହ୍ନକୁ. ଏବଂ ଗୌରହରି ହିଁ ପାଟିକଲା ''ହେ କୁମାର, ଦେଖ, ଆଜି ଗ୍ରହଣ, ଜହ୍ନ ଦିହରୁ ଅଧା ଖସିଯାଇଛି ।''

ତଙ୍ଗାବାଲା ଏଥର କିନ୍ତୁ ତଙ୍ଗା ବାହୁଥିଲା ଖୁବ୍ ତରବରରେ । ସମସ୍ତଙ୍କୁ ନିରବ ହୋଇଯିବା

ଦେଖି ଇନ୍ଦ୍ରଜିତ କହିଲା ''ଦେଖ କୁମାର, ତମେ ତମେ ସବୁ କବି ଓ କଥାକାର, ଏମିତି ଦୁଃଖ ଦାରିଦ୍ର୍ୟ ଭୋଗ କର କାହିଁକି ଜାଣ ? କାରଣ ପ୍ରେମ ହେଉ, ମଦ ହେଉ, ବା ଭକ୍ତି ହେଉ କି ଶକ୍ତିର ରାଜନୀତି ହେଉ, ତମେ ଫାଶରେ ପଡିଯାଅ । କିଏ ଟିକେ ଛାତି ପାତିଦେଲା ତୁମେ ତରଳିଯାଅ । ନିର୍ବିକାରରେ ଚାଲିଛି ମୋର ସଂସାର - କାହିଁ କେବେ କାନ୍ତିଆର ଦିହଟିକେ ଚାଖିଥିଲିତ ବୋଲି, ମୁଁ ବି ଓହ୍ଲାଇ ପଡିଥାଆନ୍ତି, - ଆଭିଜାତ୍ୟର ମହଲାରୁ - କର୍ଣ୍ଣାପାଟର କୁଟିଆ ଘରେ ?

ଡଙ୍ଗାବାଲାଗୋଟାଏଦ୍ୱୀପରେଡଙ୍ଗାଟିଲଗାଇଦେଲା ।ବେଶ୍‌ନିର୍ଜନସୁନ୍ଦରଟିକିଦ୍ୱୀପଟିଏ । ଇନ୍ଦ୍ରଜିତ୍ କହିଲା ''ଆରେ ତୁ ଏଠିକୁ ଆଣିଲୁ କାହିଁକି - ସେଇଟା ପରା ଚଢେଇ ହଗା ଆରପଟକୁ - ଆମର ତମ୍ବୁ ମାଲ୍ ମସଲା ପରା ସେଇଠି ।''

ଡଙ୍ଗାବାଲା କହିଲା ''ବାବୁ ! ଆଜିକି ଦଶବର୍ଷ ଏଇଠି ମୁଁ ରହୁଛି । ମୋର ଟିକି କୁଡିଆ ଘର, ସେଇଠିକି ଟିକିଏ ଆସନ୍ତୁ, ଘରଟି ଟିକିଏ ଦେଖି ଯାଆନ୍ତୁ ।''

ଇନ୍ଦ୍ରଜିତ୍ ପାଟିକଲା ''ଆବେ ମୂର୍ଖ ! ତୋର କୁଡିଆ ଦେଖିବା ପାଇଁ ଏ କବିମାନଙ୍କୁ ଡାକୁଛୁ ! କ'ଣ ଅଛି ସେଇଠି ।''

ଆମେ ଦିହେଁ କିନ୍ତୁ ତା କଥାରେ ସଙ୍ଗେ ସଙ୍ଗେ ବାହାରିଲୁ ଦ୍ୱୀପ ପାଖକୁ । ଡଙ୍ଗାବାଲା କିନ୍ତୁ ଇନ୍ଦ୍ରଜିତ୍‌କୁ ପ୍ରାୟତଃ ଟେକି ଆଣିଲା ଡଙ୍ଗାରୁ - ଅତ୍ୟଧିକ ନିଶାରେ ସେ ଆଉ ଚାଲିବା ଅବସ୍ଥାରେ ନଥାଏ ।

ଦ୍ୱୀପ ମଝିରେ ସୁନ୍ଦର କୁଡିଆଟିଏ । ସେଠି ମାଟି ଦ୍ୱୀପଟିଏ ମିଞ୍ଜି ମିଞ୍ଜି ଜଳୁଥାଏ । ପ୍ରଥମେ ଇନ୍ଦ୍ରଜିତକୁ ଡଙ୍ଗାବାଲା ଭିତରକୁ ନେଇଗଲା, ତା'ର ପଛରେ ଆମେ ଦିହେଁ ପଶିଲୁ ।

କୁଡିଆର ଶାନ୍ତ କୋଠରୀ ମଝିରେ ଗୋଟାଏ ଦଉଡିଆ ଖଟ । ସେଇଠି ଚିରା ହେଂସ ଉପରେ ବସିଥାଏ ସ୍ତ୍ରୀ ଲୋକଟିଏ । କୃଷ୍ଣକାୟା ରମଣୀଟି ଖୁବ୍ ସୁନ୍ଦର ଦେଖା ଯାଉଥାଏ । ହାତରେ କଣ୍ଢାଭରା, ରୂପାର ବଂଦରିଆ ଓ କଦ୍‌ରିଆ । ଗଳାରେ ଖୁବ୍ ସୁନ୍ଦର ଖଗଲା ।

ସ୍ତ୍ରୀ ଲୋକଟି ଇନ୍ଦ୍ରଜିତକୁ ଦେଖିଲାକ୍ଷଣି ଏକ ଅଦ୍‌ଭୁତ ଆବେଗରେ, ଚିତ୍କାର କଲା ''ମିତେ. ମୋର ମିତେ - ମିତରେ ।''

କିନ୍ତୁ ଖଟରୁ ଉଠିବାକୁ ଚେଷ୍ଟା କଲାକ୍ଷଣି ସେ ପଡିଗଲା ତଳେ । ଆମେ ଦେଖିଲୁ, ତାର ଗୋଡ ଦୁଇଟି ନାହିଁ । ଆବକ୍ଷ କରୁଣ କାୟାର ମୂର୍ତ୍ତିଟିଏ, ଅବିଶ୍ରାନ୍ତ ଲୁହର ଧାର ଦୁଇ ଆଖିରେ । ''ମୁଁଇ ପଡିଗଲିରେ ମିତେ, ମୁଇଁ ତୋର ଛାତିରୁ ପଡିଗଲି, ଗାଡି ନେଇଗଲା ତୋତେ - କେତେ ଦୂରକୁ । ମିତେରେ !! ଗୋଡ ମୋର କଟିଗଲା - ପଡିରହିଲି ସେଇଠି - ଏଇ ମୋର ବୁଆ-ମୋର ବାଆ - ମୋତେ ସାହାରା ହେଲା - ଗଲା ଦଶ ବରଷ ହେଲା ମୋତେ ଏଠି ରଖିଛେ । ମୋର ବାଆ, ତୋତେ ଖୋଜି ଆଣିଛେ ମୋର ବାଆ - ମୋତେ ନେଇ ଯା ମିତେ- ମୋତେ ନେଇଯା ।''

ଇନ୍ଦ୍ରଜିତ ଚମକି ପଡି ଚିତ୍କାର କଲେ ''ଆରେ କାନ୍ତିଆ - ତୁ ମରିନୁ - ତଥାପି ବଞ୍ଚିଛୁ । ଆରେ ଡଙ୍ଗାବାଲା - ଆଣ ସେଇ ବନ୍ଧୁକ, ଏଇଟା ଏଯାଏଁ ବଞ୍ଚିଛି । ମରିନି, ଏଯାଏଁ....... ।''

ଡଙ୍ଗାବାଲା କାନ୍ତିଆକୁ ତଳରୁ ଉଠାଇ ବସାଇଲା ଖଟରେ କହିଲା ''ଆରେ କାନ୍ତିଆ ମୁଁ କେତେଥର କହିଚି, କାଗଜପଢା ବାବୁଙ୍କୁ କିଛି ବିଶ୍ୱାସ ନାହିଁରେ, ସେ ତୋତେ ଫୋପାଡି ଦେଇଗଲା - ତୁ ସିନା ବିଶ୍ୱାସ କରୁନୁ ଏବେ ଶୁଣିଲୁ ବାବୁ ଖୋଜୁଛି ବନ୍ଧୁକ ତୋତେ ଖତମ୍ କରିବ ।''

ଏଥର କୁଟିଆ ରମଣୀ କାନ୍ତିଆ ଲୁହ ପୋଛିଲା ଆଞ୍ଚୁଳାଏ ହେବ, ଦରଦର ଲୁହ ଫୋପାଡି

ଦେଲା, ଆଗକୁ । ଇନ୍ଦ୍ରଜିତ ଆଡକୁ ଚାହିଁ କହିଲା ''ମିତେ, - ତୁଇ-ମତେ ଠକିଲୁରେ ମିତେ, ତୁଇ ମିଛରେ ମୋତେ ବାହାହେଲୁ । ଖଗଲା ଦେଲୁ, ବେକରେ, ମୁଁ ତୋ'ର କି ଦୋଷ କଲିରେ ମିତେ, ବାଉଁଶ ହାଣିଲା ଭଳି, ହାଣିଦେଲୁ ମୋର ସଂସାର - ନାଇଁରେ ମିତେ, ମୁଇଁ ତତେ ଛାଡିବି ନାହିଁ - ମୋ ସାଥୀରେ ତୋତେ ନେମିରେ ମିତେ, ତୁ ମୋ ସାଙ୍ଗରେ ଯିବୁ । ଏଇ ନେଇଯାଆ ତୋର ଖଗଲା ।''

ସେତିକି ବେଳକୁ ତାର ଆଖିରୁ ଖସୁଥାଏ ପ୍ରତିହିଂସାର ଅଗ୍ନି । ବେକରୁ ଖଗଲାକୁ କାଢି, ଦୁଇ ହାତରେ ଖୁବ୍ ଜୋର୍‌ରେ ଓଟାରି ଦେଲା, ଯେମିତି ତାହା ଦୁଇ ଭାଗ ହୋଇଗଲା, ମଝିରେ ଠିକ୍ ମିଞ୍ଜି ମିଞ୍ଜି ଦ୍ୱୀପ ତଳେ ଖସିଲା, ଝଲସି ଉଠୁଥିବା ଚିଜଟିଏ ।

ଚିଜଟିକୁ ହାତକୁ ନେଇ, କପାଳରେ ଥୋଇ ରମଣୀ, ତଳେ ଗଡିଆସି, ଆମକୁ କହିଲା ''ଆରେ, ନେଇଯାଆ ସେଇ ବାବୁମାନଙ୍କୁ, ତା ପାଇଁ ସେମାନେ ମରିବେ କିଆଁ - ଜଲଦି ଯାଆରେ ବାଆ-ଆଉ ଆସିବୁନି, - ଏଇ ଘଡିକେ ଏ ମିତ ନଥିବ, ମୁଁ ବି ନଥିବି - ପଳେଇ ଯାଆରେ ବାଆ ।''

ଡଙ୍ଗାବାଲା ମୋତେ ଓ ଗୌରହରିଙ୍କୁ ତଡିତ ଓଟାରି ଆଣିଲା ଡଙ୍ଗାକୁ । ପଛରୁ ଇନ୍ଦ୍ରଜିତ୍ ଖୁବ୍ ଜୋର୍‌ରେ ଚିତ୍କାର କରୁଥାଏ ''ମୋ ବନ୍ଧୁକ ଦେଏରେ ମୋ ବଂଧୁକ ।''

ଘୋସାଡି ହୋଇ କାନ୍ତିଆ କୁଡିଆ ବାହାରକୁ ଚାଲିଆସି, ଖୁବ୍ ଜୋର୍‌ରେ ହସିଲା । ଆକାଶରେ ଜହ୍ନକୁ ଗ୍ରହଣ ଅଧା ଖାଇ ଯାଉଥାଏ । ଆକାଶକୁ ଦେଖିଲା । ମାଟିରୁ ମୁଠାଏ ନେଇ ସେଇ ଖଗଲାର 'ମେଦା' ସହ ଫିଙ୍ଗିଦେଲା, ଇନ୍ଦ୍ରଜିତ୍‌ର ଦିଗରେ ।

ହଠାତ୍ ସଁ ସଁ ଶୁଭିଲା ଚାରିଦିଗରୁ । କେଉଁଠି ଥିଲେ କେଜାଣି, ଚାରିଦିଗରୁ ଫଣା ଟେକି ଚହଟି ଆସୁଥିଲେ ମାଳମାଳ ସାପ । ଘଡିକେ ଆମେ ଦେଖିଲୁ ଇନ୍ଦ୍ରଜିତର ଗୋଡ, ହାତ, ମୁଣ୍ଡଯାଏଁ, ଗୁଡେଇ ହୋଇଗଲେ ସାପ । ତା'ର ମୁଣ୍ଡ ଉଚ୍ଚଯାଏଁ ଘେରି ଗଲେ ସାପ । ଇନ୍ଦ୍ରଜିତ୍‌ର ଚିତ୍କାର ଆଉ ଶୁଭିଲା ନାହିଁ । ଡଙ୍ଗାବାଲା ଖୁବ୍ ତରବରରେ ଘେନି ଆସିଥିଲା ଡଙ୍ଗା ରମ୍ଭା ତଳକୁ ।

ଏଇ ଘଟଣାର ଦୁଇ ବର୍ଷ ପରେ ଏବେ ଥରେ, ଇନ୍ଦ୍ରଜିତର ପୁଅ ଆମକୁ ସେଇ ଦ୍ୱୀପକୁ ନେଇଯାଉ ଥିଲେ, ତାର ପିତାର ଶ୍ରାଦ୍ଧ ପୂର୍ଣ୍ଣମୀରେ । ଖୁବ୍ ସୁନ୍ଦର ସ୍ମୃତି ମନ୍ଦିରଟିଏ ଏବେ ସେଠି ଶୋଭା ପାଉଛି । ସୁନ୍ଦର ମୀନାକରା ଅକ୍ଷରରେ, ସେଠି ଖୋଦେଇ ହୋଇଛି, ଇଂରାଜୀରେ ଇନ୍ଦ୍ରଜିତ୍ ତାର ଡାଏରୀ ଟିପି ରଖିଥିବା ସେଇ କୁଟିଆ କବିତାର ଇଂରାଜୀ ଅନୁବାଦ :

"Thou shall kill the Tigers
With thy Axes
Snakes with thy Sticks
If scratching sting kills thy Pride
Better make a bear thy Bride
But, If all these four in equal
Furore, In a Fiancy Lurks,
No Axe, No Stick, No Love can
Discern. The Honey she offers
in the Hamlock."

# କୂଅ ଖୋଳାପାଇଁ ଗୋଟିଏ ଦରଖାସ୍ତ

**ପଦ୍ମଜ ପାଳ**

ଛପି ଛପି ଯେମିତି ସେ ଆସୁଥିଲା । ଶିକାରୀ ବାଘ ଭଳି ପାଦ ଚିପିଚିପି । ହିଂସ୍ରତାର ସେଇ ପଦପାଦରେ ନିନାଦିତ ହେଉଥିବା କରୁଣ ସଙ୍ଗୀତ, ବିଭିଷିକା, ଚାଳରୁ ପୂଳା ପୂଳା ଉର୍ଦ୍ଧମୁଖୀ ଧୂଆଁ ଭଳି ଉଡି ବୁଲିଥିଲା ସେଇ ହରିଜନ ସାହିଟାସାରା । କେଇଟା ରୁଗ୍ଣ ଦୁର୍ବଳ କୁକୁର ଭୁକି ଭୁକି ଦୌଡିଗଲେ ଏଣେତେଣେ । ମଲା ! ଏ କୁକୁର ଗୁଡା କାହିଁ ବେଳବୁଡଟାରେ ଏମିତି ହଉଛନ୍ତି ବା ! ଉଷୁମ ପାଣିରେ ଚାଉଳ ପକାଇ ଦେଇ ଗଙ୍ଗାବୋଉ କହିଲା - 'ସେ ଟୋକା କୁଆଡେ ଗଲା ? ବେଳ ବୁଡିଲାଣି - ଯାଇ କେଉଁଠି ଖେଳୁଥିବ । ଗଲ ଗଲ ତାକୁ ଡାକିଆଣିବ ।

କାନ୍ଥକୁ ଆଉଜି ସତିଆ ନ ଶୁଣିଲା ଭଳି ଗୋଡ ଆଙ୍ଗୁଠି ସନ୍ଧିରୁ ବାଲି ଝାଡୁଥାଏ । ଦିନଟା ସାରା ବର୍ଷାରେ ଭିଜି ଭିଜି ବିଲରେ ପାଣି କାଦୁଅରେ ପଡି ବାଳୁଙ୍ଗା ବାଛିଛି । ଦେହଟା କେମିତି କସ୍‌ମସ୍ ଲାଗୁଛି । ମୁଣ୍ଡଟା ବି ଭାରି ଭାରି । ଗାମୁଛାଟାରେ ପାଦକୁ ଝାଡିଦେଇ ସେ କହିଲା-ଦେଲୁ ଟିକେ ତେଲ ଗରମ କରି, ପାଦଟାରେ ଘଷିଦିଏ । ଏ ଶୋଳସଟା କଟିଯାଉ ।

ତମକୁପରା ମୁଁ ଗଙ୍ଗାକୁ ଡାକିଆଣିବାକୁ କହୁଛି । ଚତୁରମାସିଆଦିନ, କଉଠି ଯାଇ ସେ କାହାଘରେ ପଶି ଖେଳୁଛି । ରାତି ଆସି ଘଡିଏ ହେବାକୁ ବସିଲାଣି । ଟିକିଏ ଉତ୍ତେଜିତ ସ୍ୱରରେ ଗଙ୍ଗାବୋଉ କହି ଚୁଲୀ ଭିତରକୁ ଜାଳ ଖଣ୍ଡେ ଠେଲିଦେଲା ।

-ରତନା ସାଙ୍ଗରେ ଖେଳୁଥିବ ତା'ଘରେ ।

ଡାକଟାଏ ପକାଉନା । ଅନ୍ଧାର ହେଲାଣି । ଗଙ୍ଗା ବୋଉ ଯେମିତି ଆଦେଶ ଦେଲା ।

ଓହୋ, ତୁ ତୋ କାମକର । କାହିଁ ବେଳବୁଡଟାରେ ଖଟଖଟ ହେଉଛୁ ? ଆସୁ ନଥିବ ସେ । ଦେଲୁ ଟିକିଏ ନିଆଁ, ମୁଁ ବିଡିଟା ଲଗାଏ । ସତିଆ ହାତ ବଢାଇଲା ।

ଖଟ୍‌ଖଟ୍ କ'ଣ ହଉଛି ? ବେଳ ବୁଡିଲାଣି- 'ପିଲାଟାକୁ ଡାକ' କହିଲେ ଖଟ୍‌ଖଟ୍ ହେଉଛି । କାହିଁ ତମ ପାଟିରେ କ'ଣ ବେଙ୍ଗ ପଶିଛି ନା କେମ୍ପାକୁଳା ହେଇଛି ଟିକେ ଦାଣ୍ଡକୁ ଯାଇ ଡାକି ପାରୁନା । ଗଙ୍ଗାବୋଉ ଏଥର ଝିଙ୍ଗାସିଲାଭଳି ପାଟିକରି ଗାଳିଦେବା ଆରମ୍ଭ କଲା ।

ରାଗ ତମତମ ହୋଇ ବିରକ୍ତିରେ ସତିଆ ଉଠି ଆସିଲାବେଳେ କହିଲା, ଶାଳୀ ମାଇକିନିଆ ମଣିଷକୁ କ'ଣ ଟିକେ ରଖେଇ ବସେଇ ଦବନି ! ଖାଇବ - ତେବେ ଯାଇ ତା' ମନବୋଧ ହେବ । ବାହାରକୁ ଚାଲିଆସି ପାଟିକରି ଡାକିଲା - ଇଲୋ ସଜନି ଖୁଡି ! ଏଇ ଶଳା ଟୋକାଟା ତୋ' ଘରେ ଅଛି କିଲୋ ?

-'କିଏ ଗଙ୍ଗା' ? ଘରଭିତରୁ ଶୁଭିଲା ଗୋଟିଏ ନାରୀର କଣ୍ଠ ।

-'ହଁ', ସେଇ ଶଳା ।

- ନାହିଁ, ନାହିଁ - ସେ ମଣ୍ଡପ ପାଖରେ ଦଣ୍ଡ ଖେଳୁଥିଲା ଗିରିଆ ସାଙ୍ଗରେ । ତାଙ୍କରି ଘରେ ଥିବ ।

'ଶଳା ଆଜି ଆସୁ, ଦଉଛି ସାବାଡ କରି' । ସତିଆ ଚିତ୍କାର କରି ଡାକ ପକାଇଲା - 'ଗଙ୍ଗା ! ଗଙ୍ଗାରେ' ..... ।

କାହିଁ ସେଇଠି ଠିଆ ହୋଇ ଭୂତ ଭଳି ପିଲାଟା ଉପରକୁ ଚଢ଼ି ମରକଟି ହେଉଛ ନା ! ପାଣି କାଦୁଅ ଦିନ, ଅନ୍ଧାର ହେଲାଣି, ପିଲାଟିକୁ ଡର ମାଡିବ ନା କ'ଣ, ଯାଇ ଟିକିଏ ସେ ଗିରିଆଘରୁ ତାକୁ ନେଇ ଆସୁନ । ଗଙ୍ଗା ବୋଉର ତୀକ୍ଷ୍ଣ ସ୍ୱରରେ ଥିଲା ସତିଆ ପ୍ରତି କେମିତି ଏକ ଅବମାନନା ଭାବ ।

କୁଳଚନ୍ଦ୍ରମାଟାଏ ତ ଜନମ କରିଛୁ ଆଉ ! ଚିଡି ଉଠିଲା ସତିଆ । ଏତେ ପିଲାଟାଏ ହେଲାଣି ଦିନ ନାହିଁ, ରାତି ନାହିଁ, ସବୁବେଳେ ଖେଳ ଚାଲିଛି । ଢେଗା ପାଦରେ ସତିଆ ଆଗକୁ ଚାଲିଲା । ପଛରେ ସେଇ ଭୁଗ୍‌ଣ କୁକୁରଟାର ଅନୁସରଣ ସୂଚେଇ ଦେଉଥିଲା, ସମସ୍ତଙ୍କୁ ଯେପରି ହରାଇ ନିର୍ଜନ ସେ ଲୟପଥରେ କ୍ଲାନ୍ତ ଅବସନ୍ନ ଭାବେ ଚାଲିଛି ଏକାକୀ ଯୁଧିଷ୍ଠିର, ପୁଣି କେଉଁ ଅନାଗତ ଦୁର୍ଘଟଣାକୁ ସାମ୍ନା କରିବାକୁ ।

-ଗଙ୍ଗା କାହିଁ ? ସତିଆ ପଚାରିଲା - ଗିରିଆ, କିରେ ଗଙ୍ଗା କାହିଁ ?

- ଆମ ଘରେ ତ ନାହିଁ ।

-କୁଆଡେ ଗଲା ? ତୋ ସାଙ୍ଗରେ ତ ଖେଳୁଥିଲା !

-ସେ ଘରକୁ ଗଲା । ମୁଁ ଆଇଲି । ଆଉ ତାକୁ ଦେଖି ନାହିଁ ।

-ଘରକୁ ଗଲା ? କେତେବେଳେ ?

-ଘଣ୍ଟାଏ ହବ ସଞ୍ଜପହରୁ ଗଲାଣି ।

ହଠାତ୍ ସତିଆ କ୍ରୋଧରେ ବିଚଳିତ ହୋଇ ଚିତ୍କାର କରି ଡାକ ପକାଇଲା-ଗଙ୍ଗା, ଗଙ୍ଗା । ଓଜନିଆ ବର୍ଷାଦିନର ମାଡି ପଡୁଥିବା ନିସ୍ତବ୍ଧତା ଭିତରେ, ସେ ପତଳା ଅନ୍ଧକାରର କାୟାସହ ଯେମିତି ପେଣ୍ଟି ହୋଇଗଲା ଗୋଟାଏ ଶବ୍ଦ - ଗଙ୍ଗା ।

ସତିଆ ଅନୁଭବ କଲା, ଯେମିତି ସେ ଅବଶ ପାଲିଟିଯାଇଛି । କେମିତି ଏକ ଅଜଣା ଆଶଙ୍କା, ଗୋଟାଏ ରୁଦ୍ଧକକ୍ଷର ବିଷାକ୍ତ ବାୟୁ ଭଳି ତା'ର ନିଃଶ୍ୱାସରେ ଭିତରକୁ ପଶିନଯାଇ ତାକୁ ଅଣନିଃଶ୍ୱାସ କରି ପକାଉଛି । ଗୋଟାଏ ଉଦ୍ଧତ ବାଦୁଡି ଭଳି ରାତ୍ରିର ସେଇ ପ୍ରହରରେ ଉଡି ବୁଲୁଥିବା ତା'ର ଚିତ୍କାର ଯେମିତି ଅସ୍ୱଷ୍ଟରୁ ଅସ୍ୱଷ୍ଟତର ହୋଇଗଲା । ନିଜକୁ ଯେମିତି ନିଜେ ସେ ପଚାରିଲା - ଗଙ୍ଗା ! ଗଙ୍ଗା ଗଲା କୁଆଡେ ?

କାତର ଗଙ୍ଗା ବୋଉର ଛଳ ଛଳ ଆଖି । କାନ୍ଦ କାନ୍ଦ ସ୍ୱର, ଅସହାୟ ଭାବେ ଏଣେ ତେଣେ ଖୋଜା-ପରିବେଶକୁ ଯେମିତି ଆହୁରି କରୁଣ କରି ପକାଇଲା । ଆଗକୁ ପାଦ ନ ପଡିବାର ଭୟାତୁର କିଂକର୍ତ୍ତବ୍ୟ ବିମୂଢ଼ତା ଭିତରେ ସତିଆ ଠିଆହୋଇ, ଢଳ ଢଳ କରି ସମସ୍ତଙ୍କ ମୁହଁକୁ ଚାହିଁ ଯେମିତି ପଚାରୁଥିଲା-ଗଙ୍ଗା ମୋର ଗଲା କୁଆଡେ ?

ଇଲୋ ମୋପୁଅ ଗଲା କୁଆଡେ ଲୋ ! ଇରେ ଟିକିଏ ତାକୁ ଖୋଜରେ ! ଇଲୋ ମୁଁ କ'ଣ କରିବି ଲୋ ! ମୋ ଧନ କୁଆଡେ ଗଲୁରେ ! ଗଙ୍ଗାବୋଉ କାନ୍ଦିଉଠୁଥିଲା ।

ଆରେ ସେମିତି କାହିଁ ହେଉଛ ? ସେ ତା' ମାମୁଁ ଘରକୁ ପଳେଇ ଯାଇନି ! କିଏ ଜଣେ ପଚାରିଲା ।

-ଆଚ୍ଛା ବଜାରକୁ ଯାଇନି କାହା ସାଙ୍ଗରେ ।

-ଆରେ, ଆଉ କାହା ଘରେ ସେ ନାହିଁ ?

-ମୁଁ ତ ସାହିଟାଯାକ ଖୋଜି ଆସିଲାଣି ଲୋ ମା । ଗଙ୍ଗା, ତୁ କୁଆଡେ ଗଲୁରେ ! ଗଙ୍ଗାବୋଉ ଏକ ପ୍ରକାର ବାହୁନି ବାହୁନି କହିଯାଏ ପାଗଳୀଙ୍କ ଭଳି । ଏ ବାଡିପଖାକୁ ମୁଁ ବେଳ ନ ବୁଡୁ କହୁଛି ତାକୁ ଟିକିଏ ଦେଖ, କୁଆଡେ ଗଲା ପିଲାଟି - ମତେ କହୁଛି କ'ଣନା ମୁଁ ତା' ସାଙ୍ଗରେ ଖଟ୍ ଖଟ୍ ହଉଛି ।

ଆରେ ସବୁ ଠିଆ ହୋଇଛ କ'ଣ ? ଚତୁରମାସିଆଦିନ, ଟିକିଏ କୂଅ ପୋଖରୀ ଦେଖିଲ । କାଳେ କଉଁଠି ଗୋଡ .... କ୍ଷୀଣ ସ୍ୱରଟିଏ ସ୍ପଷ୍ଟ ଭାବେ ସଚେତନ କରାଇ ଦେଲା-ଆଉ ଏକ ଦିଗର, ଆଉ ଏକ ଆଶଙ୍କାର ।

ହାତରେ ଧରିଥିବା ଲଣ୍ଠନକୁ ଟିକିଏ ତେଜିଦେଇ ଝୁଲିଆ ଡାକିଲା - ଆଇଲ ଆଇଲ, ଦେଖିବା ସେ କୂଅପାଇଁ ଖୋଳା ହୋଇଥିବା ଖାଲଟାକୁ ?

ଜମା ହୋଇଥିବା ସାହିଟାଯାକର ଲୋକ ଚାଲିଲେ ଆଗକୁ । ନୀରବରେ ଚାଲିଥିବା ସେଇ ପଟୁଆରଟା ଯେମିତି ଦେଖାଯାଉଥିଲା କର୍ମକୁ ଆଦରି ଆଗକୁ ଗୋଡ ଘୋସାରି ନେଉଥିବା ଶବବାହକମାନଙ୍କ ଏକ ଯାନ୍ତ୍ରିକ ପଟୁଆର ଭଳି, ଯେଉଁଠି ଜୀବନ ନାହିଁ, ପାଟିରୁ ପଦେ କଥା ବାହାରି ଯିବାର ନିର୍ଭୟତା ବା ସାମର୍ଥ୍ୟ ନାହିଁ, ଅଛି କେବଳ ପାଣୀପାଇଁ ଦେଉଥିବା ଜିଅନ୍ତା ମଣିଷଙ୍କ ଡାକିର ଶବ୍ଦ ଭଳି, ସେମାନେ ବଞ୍ଚିଥିବାର ଏକ କରୁଣ ସଙ୍କେତ ।

ପବନରେ, ଉପରେ ବିସ୍ତାରିତ ଗୋଟାଏ ଗଛର ଡାଳ ନିଜ ଦେହରୁ ଝାଡିଦେଲା ଶେଷ କେଇବିନ୍ଦୁ ବର୍ଷାର ପାଣି । ସେମାନଙ୍କର ଦେହ ଶୀତେଇ ଉଠିଲା । କେଇଟା ବେଙ୍ଗ ଛୁଆ ଆସନ୍ନ ଏଇ ଆତାତୟୀଙ୍କ ନୀରବ ନିଷ୍ଠୁର ପଦପାତର ଆତଙ୍କରେ ହଠାତ୍ ରଡିଛାଡିବା ବନ୍ଦକରି ଡେଇଁପଡିଲେ ସେ ଖାଲ ଭିତରକୁ ।

ଚହଲା ପାଣିଭିତରେ ଭାସିଉଠିଲା କଡରେ ଲାଗିଥିବା ଗୋଟାଏ ନାଲିବଲ୍ ।

ଗିରିଆ ଚିତ୍କାର କରିଉଠିଲା ତାର କର୍କଶ ସ୍ୱରରେ-ହେଇ, ହେଇ ଏଇଠି ଭାସୁଛି ଗଙ୍ଗା ବଅଇ !

ପାଗଳଙ୍କ ଭଳି ସତିଆ ହଠାତ୍ ଡେଇଁପଡିଲା ସେଇ ଅଧାଖୋଳା କୂଅର ବିସ୍ତାରିତ ପାଟି ଭିତରକୁ, ଯାହା ଏକ ମୃତ୍ୟୁର ଗହ୍ୱର ଭଳି ନୀରବ ହିଂସ୍ରତାରେ ଥିଲା ଉନ୍ମୁକ୍ତ ।

ଗଙ୍ଗାବୋଉ କାନ୍ଦିଉଠିଲା ବିକଳ ହୋଇ ଏକ ପରିଚିତ ଆଶଙ୍କାରେ ।

ମୁହୂର୍ତ୍ତକ ପରେ ଖାଲର ସେଇ ଛପିଥିବା କୂଅ ଭିତରୁ ବୁଡିଯାଇଥିବା ସତିଆ ଉଠିଲା - ଗୋଟାଏ ଶବଧରି ।

ସେତେବେଳକୁ ଚାରିଆଡେ ଅନ୍ଧାର ନିଜର କାୟାବିସ୍ତାର କରିସାରିଥିଲା । ହରିଜନ ସାହିର ସବୁଦିନ ପରି, ପରିଚିତ ରାତ୍ରିର ଏଇ ପ୍ରହରର ନୀରବତାକୁ ଭଙ୍ଗକରି ଶୁଭିଲା ଗୋଟାଏ ମିଳିତ ଆର୍ତ୍ତନାଦ, ଗୁଡାଏ ନାରୀ ପୁରୁଷଙ୍କର କରୁଣ କ୍ରନ୍ଦନର ସ୍ୱର । ଯୁଗ ଯୁଗଧରି ମୃତ୍ୟୁ ନିକଟରେ ଅସହାୟ ଭାବେ ଆତ୍ମସମର୍ପଣ କରିବାର ଦୟନୀୟ ପ୍ରତିବାଦ ସହ ତାର ବିକଳ ସ୍ୱୀକୃତି ।

ମାନନୀୟ ଶ୍ରୀଯୁକ୍ତ ଜଗତ୍‌ସିଂହପୁର ମଣ୍ଡଳ ଉନ୍ନୟନ ଅଧିକାରୀ, ମହୋଦୟ .....ସମୀପେଷୁ ।

ମହାଶୟ,

ନିବେଦନର କାରଣ ଏହିକି ଯେ, ଆମେ ୧୫ ଘର ହରିଜନ ଏଇ ଗ୍ରାମରେ ବାପଅଜା ଚଉଦପୁରୁଷରୁ ବସ୍‌ବାସ କରି ଆସୁଅଛୁ । ହଜୁର, ଆମେସବୁ ଗରିବ ଖଟିଖିଆ ଦିନମଜୁରିଆ ଲୋକ । କାହାରି ବାଡିଗୋବରେ ଗୋବେ ବୋଲି ଚାଷଜମି ନାହିଁ । ଯାହା କଉଁକାଳରୁ ବାପଅଜା କରିଥିବା ବଖରାଏ ଘର ଅଛି । ସେତକ ଜମି ପୁଣି ଏ ଗାଁର ବାବୁମାନେ ଦେଇଥିଲେ । ସେତେବେଳେ ସେମାନେ ତାଙ୍କର ଚାକର କୋଠିଆ କାମ କରୁଥିଲେ । ଆମେ ବି ତାଙ୍କରି ଭରସାରେ, ତାଙ୍କରି ବିଲବାଡିରେ କାମକରି ପଡିଛୁ । ହଜୁର ଆମେ ଶୁଣିବାକୁ ପାଉଛୁ, ସରକାର ବାହାଦୁର କୁଆଡେ ''କାମପାଇଁ ଖାଦ୍ୟ'' ଯୋଜନା ଜରିଆରେ ଗାଁ ଗଣ୍ଡାରେ ରାସ୍ତା ତିଆରି, ମରାମତି, ପୋଖରୀ ଖୋଳା, କୂଅ ଖୋଳା ଇତ୍ୟାଦି କାମ କରାଉଛନ୍ତି ।

ହଜୁର ଏତେବଡ ହରିଜନ ସାହିରେ ପିଇବା ପାଣି ଟିକିଏ ପାଇଁ କୂଅଟିଏ ନାହିଁ । ଆମ ପିଲାଛୁଆଏ ମାଠିଆ ବାଲିଟି ଧରି, ବାବୁମାନଙ୍କ କୂଅକୁ ପାଣିପାଇଁ ଯାଆନ୍ତି । କୂଅଠାରୁ ଦୂରରେ ଠିଆହୋଇ ଦି'ମାଠିଆ ପାଇଁ ନେହୁରା ନିମନ୍ତ କରନ୍ତି । ସବୁଦିନେ ଆମକୁ କେତେ ପାଣି କାଢିଦେବେ ବୋଲି କହି, ଆଞ୍ଜା, ରାଗରୋଷ କରନ୍ତି । କେତେ ବା ବରଷସାରା ଆମକୁ ପାଣି ଦେବେ ! ଆମକୁ ବି ଲାଜଲାଗେ, ତେଣୁ ପୋଖରୀ ଗାଡିଆରୁ ଆମେ ପାଣିଖାଉ । ଖରାଦିନେ ପୋଖରୀ ଶୁଖିଗଲେ ପାଣି ପାଇଁ ପୁଣି ବାବୁମାନଙ୍କ କୂଅ ପାଖରେ ଠିଆହଉ ।

ହଜୁର ଆପଣ ଗରିବଙ୍କ ମା' ବାପ । ହଜୁର ଦୟା କଲେ ଆମ ସାହିରେ ଗୋଟିଏ କୂଅ ଖୋଳା ହୋଇପାରିବ । ଆପଣଙ୍କର ବଡତି ହବ, ନାଁ ରହିବ । ଏ ଗରିବ ହରିଜନମାନେ ସବୁଦିନେ ହଜୁରଙ୍କୁ ମନେ ରଖିବେ । ଭଗବାନ ବି ମଙ୍ଗଳ କରିବେ ।

ଆମେ ହଜୁର କହି ରଖୁଛୁ, କାମଟି ହେଲେ ସବୁ ରକମ ସାହାଯ୍ୟ କରିବୁ, ହଜୁରଙ୍କ ଦୟାକୁ ଚାତକ ପ୍ରାୟେ ଚାହିଁ ଅଧୀନମାନେ ରହୁଛୁ ।

*ଆପଣଙ୍କର*

*ଗରିବ ଅଭାଗା ହରିଜନ ପ୍ରଜାଗଣ*

ଗ୍ରାମ - କୁସିଙ୍ଗା *ସତିଆ ଭୋଇ*

ତା ୩-୪-୭୯ *ଗୁରୁ ସାମଲ*

*ନଟ ଜେନା*

ଏ ଟିପଚିହ୍ନ *ସଜନା ବେଓ୍ୱାର*

ଲୁଚାଇ ସେଦିନ ଦରଖାସ୍ତଟି ଲେଖାଯାଇଥିଲା । ଲେଖିଥିଲା ନଟ ଜେନାର ମାଟ୍ରିକ ପଢୁଥିବା [illegible] କୈଳାସ । ''ହୁସିଆର'' ସେଦିନ କୈଳାସ ମାମଲତକାର ଢଙ୍ଗରେ ସତର୍କ କରାଇ ଦେଇଥିଲା, [illegible] ଯେମିତି କାନକରୁ ଦି'କାନ ନ ହୁଏ । ହେଲେ କାମ ଭଣ୍ଡୁର ହବ । ଗାଁବାଲା ଜାଣିଲେ [illegible]ତେ ରକମର କଥାକହି, ନାନା ପେଞ୍ଚକରି ସରକାରଙ୍କଠାରୁ ଟଙ୍କା ଆଣିବେ-ତାଙ୍କରି ସାହିରେ ଖୋଳାହେବ କୂଅ । ଆମକୁ ପୁଣି ତାଙ୍କରି ପାଖରେ ଗୋଡଭାଙ୍ଗି ନେହୁରା ହବାକୁ ପଡିବ । ପାଣିପାଇଁ ସବୁଦିନେ ଏ ସେ ଆମକୁ ଶୋଷଣ କରୁଛନ୍ତି ।

- ନାଇଁ ନାଇଁ ଏକଥା କେହି କୁଆଡେ କହିବ ନାହିଁ । ଝୁଲିଆ ସମସ୍ତଙ୍କୁ ପୁଣି ଥରେ ତାଗିଦ କରିଦେଲା । କହିଲେ ଆମରି କ୍ଷତି, କାହାର କ'ଣ ହବ !

ସେଦିନ ସମସ୍ତଙ୍କର କେମିତି ବିଶ୍ୱାସ ହୋଇ ଯାଇଥିଲା - ନିଶ୍ଚୟ କୂଅଖୋଳା ହୋଇଯିବ । ଖରାଦିନେ ମୁନ୍ଦାଏ ପାଣି ପାଇଁ ତାଙ୍କୁ ଆଉ ଯା'କୂଅ ମୂଳେ, ତା' କଅମୂଳେ ଠିଆ ହୋଇ ନେହୁରା ହେବାକୁ ପଡିବ ନାହିଁ । ପାଣିପାଇଁ ସବୁଦିନେ ତ ସେ ଆମକୁ ଶୋଷଣ କରୁଛନ୍ତି । ମନଇଚ୍ଛା ନିଜେ କୂଅରୁ ପାଣି କାଢ଼ିବେ । ବେଳ ଅବେଳରେ ଗାଧୋଇବେ । ଲୁଗା ବି ସଫା କରିବେ ସେଇଠି । ସ୍ୱପ୍ନ ଦେଖିଲା ଭଳି ସେମାନେ ସମସ୍ତେ ସେଦିନ ନିଜ ନିଜ ଘରକୁ ଚାଲି ଯାଇଥିଲେ ମନ ଫୂର୍ତ୍ତିରେ ।

ପରଦିନ ହାଟକୁ ଯିବା ବାହାନାରେ ସେମାନେ ଗଲେ ଲୁଚି ଲୁଚି ବି.ଡି.ଓ. ଙ୍କ ଅଫସିକୁ । ସତିଆ, ଝୁଲିଆ ଠିଆ ହୋଇଥିଲେ ବାହାରେ । କୈଳାସ ଯାଇ ଜଣେ ବାବୁଙ୍କ ସହ କ'ଣ କଥା ହେଉଥାଏ । କିଛି ସମୟପରେ ସେ ଆସି କହିଲା, ସବୁ ଠିକ୍ ହୋଇଯିବ । ସେ ଯେଉଁ ବାବୁଙ୍କ ସହ କଥା ହେଉଥିଲା ସେ ହେଉଛନ୍ତି ଏ ଅଫିସର କିରାନୀ ବାବୁ, ତାଙ୍କରି ହାତର କଥା । ଅଫିସରଙ୍କୁ କହି କରାଇଦେବେ । ଚାରିଆଡକୁ ଚାହିଁ ସତର୍କତା ସହ ଚାପା ସ୍ୱରରେ କୈଳାସ କହିଲା-ଖାଲି ସେ କିଛି ଟଙ୍କା ନେବେ ।

ଟଙ୍କା ! କେତେ ? ସତିଆ ଚାପା କଣ୍ଠରେ ପଚାରିଲା ।

-ପନ୍ଦର ଟଙ୍କା ଖଣ୍ଡେ !

'ନିଅନ୍ତୁ ପଛେ, ଆମ କାମଟା ହବଟି' ' ସମସ୍ତେ ତ ଟଙ୍କା ଆଜିକାଲି ନଉଛନ୍ତି । ଆମେ ପଛେ ସମସ୍ତଙ୍କଠାରୁ ଆଦାୟ କରି ଦେବା, କାମଟା ଯେମିତି ହୁଏ ! ଝୁଲିଆ ତାର ମଧ୍ୟମ ବୟସର ଗାମ୍ଭୀର୍ଯ୍ୟ ରକ୍ଷା କରି କହିଲା !

-ହଁ ଏତେ ବଡ କାମ, ବିନା ପଇସାରେ ହବ କେମିତି ? ସତିଆ ସ୍ୱୀକୃତି ଜଣାଇଲା ।

ଅନ୍ୟମାନେ ପଇସା ଦେବେଟି ? କୈଳାସ ପଚାରିଲା ।

ହଁ ନ ଦେବେ କାହିଁକି ? ସେମାନେ କ'ଣ ପାଣି ନେବେ ନାହିଁ ? ଖାଲି ସୁବିଧା ପାଇଲାବେଳକୁ ପାଇବେ, ଟଙ୍କାଟାଏ ଦେବେନି ! ଝୁଲିଆ ପ୍ରଶ୍ନ କଲା ।

ଛାଡ ଛାଡ ସେ କଥା । ମୁଁ ସମସ୍ତଙ୍କୁ କହି ଆଦାୟ କରିଦେବି । ବର୍ତ୍ତମାନ ଆମ ତିନିଜଣଙ୍କଠାରୁ ୧୦ ଟଙ୍କା ନେଇ ଦେଇଆ । ଆଉ ପାଞ୍ଚଟଙ୍କା କାଲି ଦବୁ ବୋଲି କହି ଦେ । ସତିଆ ଉପଦେଶ ଦେବା ସ୍ୱରରେ ଆସ୍ତେ କହିଲା ।

କୈଳାସ ଚାଲିଗଲା ଟଙ୍କା ଓ ଦରଖାସ୍ତ ନେଇ । ସେଇ ଅଫିସର ଏକ ନିରୋଳା କାନ୍ଥ କଡକୁ ଠିଆ ହୋଇ ସତିଆ, ଝୁଲିଆ ପରାମର୍ଶ କଲେ । ଅଇଚ୍ଛା କୂଅଟା ଖୋଳିବାକୁ ହଜାରେ କି ଦେଢ ହଜାର ଟଙ୍କା ଲାଗିବ । ଟଙ୍କା କେଇଟା ନେଲେ କ୍ଷତି କ'ଣ ?

କିଛି ସମୟପରେ ଅଫିସରଙ୍କ ପାଖରୁ ଆସିଲା ଡକରା । ସତିଆ, ଝୁଲିଆ, କୈଳାସ ଯାଇ ବିନୀତ ଭାବେ ଦଣ୍ଡବତ କଲେ ।

ଆଖିରୁ ଚଷମା ଖୋଲି ବି.ଡି.ଓ. ପଚାରିଲେ, ଏ ଦରଖାସ୍ତ ତୁମେ ଦେଇଛ ?

-ହଜୁର !

ତୁମ ଗାଁ-କୁସିଙ୍ଗା ?

-ଆଜ୍ଞା !

-ସେଇଟା କେଉଁ ପଞ୍ଚାୟତରେ ?

-ଆଜ୍ଞା କାବୁଲପତା, କୈଳାସ ହାତ ମୋଡି ମୋଡି ଉତ୍ତର ଦେଲା ।

-ତୁମେ ସବୁ ପାଣି ପୋଖରୀ ଗଡିଆରୁ ଖାଅ ?

-ହଜୁର, ହଁ ।

-ସମସ୍ତେ ମିଶି ଗୋଟାଏ କୂଅ ଖୋଳି ଦେଲ ନାହିଁ ।

-ଆଜ୍ଞା ଗରିବ ମୂଲିଆଲୋକ, ଏତେ ଟଙ୍କା ହଜୁତ ପାଇବୁ କଉଁଠୁ ! ଝୁଲିଆ ଭୟାତୁର କଣ୍ଠରେ ଉତ୍ତର ଦେଲା ।

-ଆଚ୍ଛା, ସେ ଗାଁରେ ମହିଳା ସମିତି ଗୋଟାଏ ଅଛି ପରା ?

ସତିଆ ଚାହିଁଲା କୈଳାସର ମୁହଁକୁ, ତା'ପରେ କହିଲା, ଅଛି ଗୋଟିଏ ଆଜ୍ଞା ।

-ତୁମ ପିଲାମାନଙ୍କୁ ଗହମ ସିଜେଇ କରିଦିଅନ୍ତି ?

-ଆଜ୍ଞା ଦିନେ ଦିନେ, କଉଁଦିନ ମୁଠାଏ ତ କଉଁଦିନ ନାହିଁ ।

ଆଗକୁ ପାଦେ ଚାଲିଯାଇ କୈଳାସ କହିଲା ! ଆଜ୍ଞା ସେ ଗହମ, ତେଲ ତ ବିକ୍ରି କରି ଦିଆଯାଏ । ସେ ଟଙ୍କାରେ ସେମାନେ ଫିଷ୍ଟ କରି ଖାଆନ୍ତି ।

-ତୁମେ କେମିତି ଜାଣିଲ ସେମାନେ ବିକ୍ରି କରନ୍ତି ? କେବେ କିଣିଛ ? ବି.ଡି.ଓ. ସିଧା ଚାହିଁ ପଚାରିଲେ କୈଳାସକୁ ।

'ତୁ କେମିତି ଜାଣିଲୁ ବିକିରି କରନ୍ତି ବୋଲି' ? ଚିହିଙ୍କି ଉଠି ଝୁଲିଆ କହିଲା,- 'ହଜୁର, ନାଇଁ ଆଜ୍ଞା, ସେ କିଛି ଜାଣିନାଇଁ । ଗହମ ସିଜେଇ ଦିଅନ୍ତି ପିଲାଙ୍କୁ ।'

-'ତୁମେ ବହୁତ ଜାଣିଛ ! ଆଉ ସେଦିନ ତେବେ କାହିଁକି ମହିଳା ସମିତି ମିଟିଂରେ ପାଟି ଲାଗିଥିଲା ?' ଚିଡି ଉଠିଲା ଭଳି କୈଳାସ ପଚାରିଲା ରାଗିଲା ସ୍ୱରରେ ।

-ଆଚ୍ଛା, ତୁମେ ଯାଅ । ଚଷମା ପିନ୍ଧି ବି.ଡି.ଓ ଦରଖାସ୍ତ ଉପରେ କ'ଣ ଲେଖିବା ଆରମ୍ଭ କଲେ ।

-'ହଜୁର, ଆଜ୍ଞା ଆପଣ ଆମ ମାଆ ବାପ । ହଜୁରଙ୍କ ଦୟା ଯେମିତି ହୁଏ' । ପୁଣି ଥରେ ନଇଁଯାଇ ଦଣ୍ଡବତ କରି ସେମାନେ ବାହାରି ଆସିଲେ ।

-ଝୁଲିଆ କହିଲା 'ଏତେ କଥା କାଇଁ କହୁଥିଲୁ' । ଆମେ ଯଉଥିପାଇଁ ଆସିଛେ, ତା'ସିନା କହନ୍ତି । ବାରଚାଉଳିଆ ହେଲେ, କେତେ କଥା ସେଥିରୁ ବାହାରିବ । ଫେର ନାନା ଗଣ୍ଡଗୋଳ ହବ । ସମାଳିବ କିଏ ?

ଆଶା ନିରାଶାର ଦ୍ୱନ୍ଦ ଭିତରେ ସେମାନେ ଫେରି ଆସିଥିଲେ, ଖଣ୍ଡେ ଖଣ୍ଡେ ବିଡି ଟାଣି । କୈଳାସ ମଟରରେ ଯିବ ବୋଲି ଚାଲିଗଲା ବସ୍ ଷ୍ଟାଣ୍ଡକୁ ।

ସବୁଦିନେ ସନ୍ଧ୍ୟାରେ କାମରୁ ଫେରିବା ପରେ ପ୍ରାୟେ ସେମାନେ ବସନ୍ତି । ନିଜ ନିଜ ଭିତରେ ବିଚାର ଆଲୋଚନା ଚାଲେ । କେହି କେହି ଅତିବାହିତ ହୋଇଯାଇଥିବା ସମୟକୁ ଲକ୍ଷ୍ୟ କରି ନିରାଶାର ସ୍ୱରରେ କହେ- ସେ କାମ କିଛି ନୁହେଁ । ଆଉ କିଛି ଟଙ୍କା ହାତଗୁଞ୍ଜା ନ ଦେଲେ  ସେ କାମ ହବ ନାହିଁ ।

-ହଁ ସବୁଆଡେ ତ ସେମିତି ହଉଛି ।

-ପନ୍ଦର ଟଙ୍କା ପରା ନେଇଛନ୍ତି । କେହି ଜଣେ ମନେ ପକାଇଦିଏ ।

-ସେତିକିରେ କ'ଣ ଏତେ ବଡ କାମଟା ହବ ?

ବେଙ୍କରୁ ଖଣ୍ଡେ ରିକ୍ସା ଆଣିବି ବୋଲି ପରା ମତେ ଦୁଇଶ ଟଙ୍କା ଯାକୁ ତାକୁ ହାତଗୁଞ୍ଜା ଦବାକୁ ପଡ଼ିଥିଲା । ଦଉଡ଼ି ଦଉଡ଼ି ପୁଣି ପାଦରୁ ପାଣି ମରିଛି । ଆଉ ଏ କାମଟା ଏତେ ସହଜରେ ହବ । ସୁଦାମ କହେ ।

ଆଚ୍ଛା ଏ କଥା ସରପଞ୍ଚଙ୍କୁ କହୁନା । ସେ ଟିକିଏ କ'ଣ କରନ୍ତେ ନାହିଁ । ଝୁଲିଆ ପଚାରିଲା ।

ନା, ନା, ସେମିତି କଲେ କାମଟି ମୂଳରୁ ଯିବ ଖଇଚା ଧରି । ସମସ୍ତେ ତା'ର ପ୍ରତିବାଦ କରନ୍ତି ।

ପିଣ୍ଡାକୁ ଆଉଜି ଚମ୍ପୀବୁଢ଼ୀ ବସି ଶୁଣୁଥାଏ ସବୁକଥା । ସେମାନେ ନୀରବ ହୋଇଗଲେ, କହେ ! ଆରେ କାହିଁ ମାତିଛ ସେଥିରେ ? ଆମ ବାପ ଅଜା ଚଉଦ ପୁରୁଷରୁ ତ ଏଠି କୂଅଟିଏ ନାହିଁ । ସେମାନେ କ'ଣ ଅପାରଗ ଥିଲେ ଏ କାମଟା କରିବାକୁ । ହେଲେ, ନୂଆ କରି କୂଅ ଖୋଳିଲେ ନିଶ୍ଚେ କିଛି ଅମଙ୍ଗଳ ହେବ ବୋଲି ପରା ତାକୁ କଉଁ ପଣ୍ଡିତ କହିଥିଲା । ମୁଁ ସେତେବେଳେ ନୂଆକରି ବୋହୂ ହୋଇ ଆସିଥାଏ,ସମସ୍ତେ କହିଲେ - ନାଇଁ ନାଇଁ ଆମର କୂଅ ଦରକାର ନାଇଁ ପଛେ, ସମସ୍ତେ ମଙ୍ଗଳରେ ଥାଆନ୍ତୁ ।

ଚମ୍ପୀ ବୁଢ଼ୀ ଥିଲା ଅତୀତର ଅନ୍ଧବିଶ୍ୱାସ, ରକ୍ଷଣଶୀଳତା ସହ ଆଧୁନିକ ପରିବର୍ତ୍ତିତ ସମାଜର ଏକ ଭଗ୍ନ ସେତୁ ଭଳି, ବର୍ତ୍ତମାନ ସାମାଜିକ ଚେତନା ସହ ନିଜକୁ ସାମିଲ ନକରି ପାରି ଯିଏ କ୍ଷତ ବିକ୍ଷତ ମର୍ମାହତ ।

ସେ ପୁରୁଣାକାଳିଆ କଥା ରଖି ଦେଇଥା । କୈଳାସ ଚିଡ଼ି ଉଠେ । ଯୁଗଯାଇ କେଉଁଠି ହେଲାଣି-କୂଅ ଖୋଳିଲେ ଅମଙ୍ଗଳ ହବ । ଆମେ ପାଣି ପାଇଁ ଡମଗଳି ବାରଦ୍ୱାର ଶୁଙ୍ଘି ପିଣ୍ଡା ହୋଇ ପାରିବୁ ନାହିଁ ।

ଚମ୍ପୀ ବୁଢ଼ୀର ସେଇ ଥରିଲା କଣ୍ଠର ବୟସ୍କ ସ୍ୱରଟି କେମିତି ସମସ୍ତଙ୍କୁ ପ୍ରାୟେ ନୀରବ କରେଇ ଦେଇଥିଲା । ଆଶଙ୍କାର ଏକ କ୍ଷୀଣ ବାଦଲ କେମିତି ସେମାନଙ୍କ ମୁହଁରେ ଉଡ଼ି ବୁଲୁଥିଲା । କୈଳାସର ଦୃଢ଼ ପ୍ରତିବାଦ ତାକୁ ସାମାନ୍ୟ ବି ଟହଲେଇ ଦେଇ ପାରିଲା ନାହିଁ । ବରଂ ଏଇ ବେଖାତିର ଢଙ୍ଗ ପରିବେଶକୁ ଅଧିକ ଗଭୀର କଲା । ସତିଆ କହିଲା-

ଆରେ, ଛାଡ଼ ଛାଡ଼ ସେସବୁ କଥା, ସବୁ ସେଇ ଠାକୁରଙ୍କ ଇଚ୍ଛା । ତାଙ୍କର ଦୟାଥିଲେ, କିଏ କ'ଣ କରିବରେ ? ଭାଗବତରେ ଅଛି ପରା- ''କରି କରାଉଥାଏ ମୁହିଁ । ମୋ ବିନୁ ଆନ ଗତି ନାହିଁ ।''

ଦିନେ ଖରାବେଳେ ହରିଜନ ସାହିକୁ ହଠାତ୍ ଗୋଟାଏ ମଟରସାଇକେଲ ଗଡ଼ିଆସିଲା । ଘରଭିତରୁ ପିଲା ମାଇପେ ବାହାରକୁ ଚାଲିଆସିଲେ । ପିଣ୍ଡାରେ ବସି ମଶିଣାଟାଏ ବୁଣୁଥିଲା ସତିଆ । ଉଠିଆସି ପଚାରିଲା-

ବାବୁ ! କୁଆଡେ ଆଇଛ !

ଆରେ ଡମରପରା ଏଠି ଗୋଟାଏ କୂଅଖୋଳା ହବ !

କୂଅ ! ଅସ୍ପଷ୍ଟ ଭାବେ ସତିଆ ଅଜାଣତରେ ଉଚାରଣ କଲାବେଳେ ମୁହଁ ତା'ର ଝଲସି ଉଠିଲା । କୂଅ ଖୋଳା ହବ ! ଏ ଟୁକୁ, ବାଜିଆ, ଗଲ ଗଲ, ନଟିଆ, ଝୁଲିଆକୁ ଡାକିଆଣିବ । ଏକା ନିଃଶ୍ୱାସରେ ପ୍ରାୟେ କହିଗଲା ସତିଆ ।

ମୁହୂର୍ତ୍ତକ ପରେ ହରିଜନ ସାହିର ସମସ୍ତେ ଆସି ଜମା ହୋଇଗଲେ । ପିଲାମାନେ ଆନନ୍ଦରେ

ମଟର ସାଇକେଲରେ ଭୟରେ ହାତ ମାରିଦେଇ ତା'ର ଆରୋହୀକୁ ଚାହିଁ ଖୁସି ହେଉଥାନ୍ତି, ଆଉ ବୟସ୍କମାନେ, କୂଅ ଖୋଳା ହେବାର ସମ୍ବାଦରେ କେମିତି ଏକ ବିଜୟ-ଗୌରବର ଭାବ ଅନୁଭବ କରୁଥାନ୍ତି, ପାଦ ଯେମିତି ମାଟିରେ ଲାଗୁ ନଥାଏ । ତଥାପି ବିନୀତ ଭାବେ ନିଜକୁ ନୁଆଇଁ ନେଇ ଝୁଲିଆ ପଚାରିଲା ।

-ଆଜ୍ଞା, ଆପଣ ସେ କାମଟା କରେଇବେ ?

-ହଁ ।

ସତିଆ କହିଲା, ଆମର ଆଜ୍ଞା ବଡ ଭାଗ୍ୟ । ସେତେବେଳେ ମାଇପେମାନେ ଟିକିଏ ଦୂରରେ ଠିଆ ହୋଇ ଶୁଣୁଥାନ୍ତି । ନିଜ ନିଜ ଭିତରେ କଥା ହେଉଥାନ୍ତି । କୂଅ ହେଲେ ସେଇମାନଙ୍କର ତ ହିଁ ସୁବିଧା । ସେମାନେ ପାଣି କାଢିବେ, ଆଣିବେ । ବେଳ ଅବେଳରେ ଲୁଗା କାଚିବେ । ଆଉ କାହା କୂଅ ପାଖକୁ ଯାଇ ନିକୁଟି ହେବାକୁ ପଡିବ ନାହିଁ ।

ମଟର ସାଇକେଲ ଉପରେ କଣ୍ଟ୍ରାକ୍ଟର ବାବୁ ବସିଯାଇ ପଚାରିଲେ - କୂଅ କେଉଁଠି ଖୋଳା ହେବ ? ଜାଗା ସ୍ଥିର କରିଛ ।

-ଆଜ୍ଞା ହଁ, ଆମେ ଭାବୁଛୁ, ସେ ରାସ୍ତାକଡରେ ଖୋଳିଲେ ଭଲ ହେବ । ବାଟୋଇ ଗଲାବେଳେ ପାଣି ପିଇବେ । ଇସ୍କୁଲ ପିଲାବି ପାଣି ପାଇବେ । ଆମ ସାଇବି ପାଖ ହବ ।

ସିଗାରେଟ୍‌ରେ ନିଆଁ ଲଗାଇ କଣ୍ଟ୍ରାକ୍ଟର ବାବୁ ହସି ଉଠି କହିଲେ - କିରେ, ତୁମମାନଙ୍କର ଯେଉଁଠି ସୁବିଧା ହେବ ସେ କଥା ନଦେଖି, ଏତେ କଥା ତୁମେ କାହିଁ ଭାବୁଛ ?

-ଆଜ୍ଞା, କୂଅଟାଏ କ'ଣ ଦିନେ ଅଧେ ପାଇଁ ଖୋଳା ହେବ । ବରଷ ବରଷ ପାଇଁ ରହିବ । ସେଇଠି କଲେ ତ ସମସ୍ତଙ୍କର ସୁବିଧା । ଦି'କୋଶ ବାଟ ଯାଇ ଆମେ କ'ଣ ପାଣି ଆଣିବୁ ନାହିଁ ! ବାଟୋଇ ତ ପାଣି ପାଇବେ । କେତେ ଧର୍ମ ନ ହବ ।

ଧର୍ମ ! ହସି ଉଠିଲେ କଣ୍ଟ୍ରାକ୍ଟର ବାବୁ, ଶଳାଏ ପର ଉପକାରୀ ଦେଖାଇ ହଉଛନ୍ତି ! ସେ ସ୍ପଷ୍ଟ ଭାବେ କହିପାରିଲେ ନାହିଁ । ତାଙ୍କର ସେଇ ତାଚ୍ଛଲ୍ୟକରା ହସରୁ ବୁଝି ହୋଇ ଯାଉଥାଏ ତାଙ୍କର ମନର ଭାବ ।

ଏ ଦେଶରେ କିଏ, ଆଜିକାଲି ଅନ୍ୟମାନଙ୍କ ସୁବିଧା କଥା ଭାବୁଛନ୍ତି-ନିହାତି ନିର୍ବୋଧ ନହେଲେ ? ବ୍ୟକ୍ତି ସ୍ୱାର୍ଥର ପିରାମିଡ ଗଢି ଉଠୁଥିଲାବେଳେ, ଏମାନେ କୁଆଡେ କୂଅଟାଏ ରାସ୍ତା କଡରେ ଖୋଳି ଦେଇ ଧର୍ମ କରିବେ ! ବିଚରା ଜାଣନ୍ତି ନାହିଁ, ଯାହା ଏ ଦେଶରେ ହୁଏ ତା'ସବୁ କୌଣସି ନା କୌଣସି ବ୍ୟକ୍ତିର ମଙ୍ଗଳ ପାଇଁ - ସମାଜ ପାଇଁ ନୁହେଁ । ସାମାଜିକ ମଙ୍ଗଳର ପ୍ରଚାରିତ ଆବରଣ ତଳେ ଆଜିତ ସବୁଠି ଏକ ଆସୁରିକ ସମାର୍ଥ୍ୟ ନେଇ ବଢ଼ି ଉଠିଛି ଦୁର୍ଦ୍ଧର୍ଷ ଭାବେ ବ୍ୟକ୍ତି ସ୍ୱାର୍ଥ । ତାରି ପ୍ରତୀକ ଏଦେଶର ନେତା, ମନ୍ତ୍ରୀ, ଡାକ୍ତର, କଣ୍ଟ୍ରାକ୍ଟର, ଇଞ୍ଜିନିୟର, ଅଫିସର, କିରାଣୀ, ପିଅନ, ସମସ୍ତେ । ନିଜକୁ ବଡ କରାଇବା ପାଇଁ ଏ ସାମାଜିକ ଖେଳ । ଏ ଚାଲବାଜି ।

''ଆଚ୍ଛା ଆଚ୍ଛା ସେଇଠି ଖୋଳାଯାଉ, ଭଲ ହବ''-କଣ୍ଟ୍ରାକ୍ଟର ବାବୁ କହି ସିଗାରେଟ୍‌ର ଶେଷ ଅଂଶତକ ପାଦତଳେ ଦଳିଦେଲେ, ''ହଁ କାଲିଠାରୁ ଖୋଳ । ତମେ ସବୁ ଏଇଠି କାମ କରିବ ତ ?''

-'ହଁ ଆଜ୍ଞା ଆମ କାମ, ଆମେ କରିବୁ ନାହିଁ ! ତେବେ କେତେ ଜଣ ଆସିବୁ ? ସତିଆ ପଚାରିଲା ।

-ଦଶଜଣ ଆସ ।

-ଆସିବୁ ଆଜ୍ଞା ।

ଆସିବ ଯେ, ଏତେ ବଡ କାମ ପାଇଁ ସରକାର ତୁମର ସାହାଯ୍ୟ ଚାହିଁଛନ୍ତି । କିଛି ଟଙ୍କା ସେମାନେ ଦେବେ ଆଉ ତୁମେ କିଛି କାମ ଦେବ । ଏ ଯୋଜନାର ତା ଲକ୍ଷ୍ୟ ସେଇଥି । କଣ୍ଟ୍ରାକ୍ଟର ବାବୁ କେମିତି ସେମାନଙ୍କୁ ବୁଝାଇଲା ଭଳି କହିଲେ ।

ମାତ୍ର କିଛି ନ ବୁଝି ପାରିଲାଭଳି ସେମାନେ ଚାହିଁ ରହିଲେ । ଝୁଲିଆ ପଚାରିଲା - ଆମେ ଆଜ୍ଞା ଶ୍ରମ ଦେବାକୁ ପ୍ରସ୍ତୁତ ! ହେଲେ କ'ଣ ମଜୁରୀ ପାଇବୁ ନାହିଁ ।

-କିଏ କହିଲା ପାଇବ ନାହିଁ ? ପାଇବ, ପାଇବ-ମାତ୍ର ତୁମର ଅଧା ସରକାରଙ୍କ ଅଧା । ନ ହେଲେ ଯେଉଁମାନେ ଅଧା ସାହାଯ୍ୟ କରିପାରିବେ, ସେଇଠି କୂଅଟି ଖୋଳା ହେବ ।

-ନାଇଁ ନାଇଁ, ଆଜ୍ଞା ଏଇଠି ଖୋଳା ହେଉ, ଆମେ ପଛେ ଅଧା ମଜୁରୀରେ କାମ କରିବୁ । ଆମେ ବି.ଡି.ଓ.କୁ ଜଣାଇଥିଲୁ ସାହାଯ୍ୟ କରିବୁ ବୋଲି । ଆଉ ଅନ୍ୟ ଜାଗା କଥା କାଇଁ ଭାବୁଛନ୍ତି ?

କୂଅ ଖୋଳା ହେବାପାଇଁ ଥିବା ବ୍ୟାକୁଳତାକୁ କଣ୍ଟ୍ରାକ୍ଟର ଠିକ୍ ଠଉରେଇ ନେଇଥିଲେ । ଖାଲି ଗମ୍ଭୀରତା ରକ୍ଷା କରି କହିଲେ, କାଲିଠାରୁ କାମ ଆରମ୍ଭ ତେବେ କର ।

-ହଁ କୋଡି, କୋଦାଳ ଟୋକେଇ ତ ଦରକାର । ବିନୀତ ସ୍ୱରରେ ନଟିଆ କହିଲା ।

-ମୋ ଘରୁଯାଇ ଦୁଇଜଣ ସନ୍ଧ୍ୟାବେଳକୁ ନେଇ ଆସିବ ।

-ହଉ ଆଜ୍ଞା । ମୁଁ, ସତିଆ ଦାଦା ଯିବୁ । ଝୁଲିଆ ସମ୍ମତି ଜଣାଇଲା ।

ମଟର ସାଇକେଲ ଷ୍ଟାର୍ଟ୍ କରି କଣ୍ଟ୍ରାକ୍ଟର ବାବୁ ଚାଲିଗଲାବେଳେ ପଛରୁ କେତେଟା ପିଲା ଆନନ୍ଦରେ ନାଚି ଉଠି ଚିତ୍କାର କଲେ, ଇରେ ମଟରସାଇକେଲ ଗଲାରେ, ମଟର ସାଇକେଲ ଗଲା ।

ମାଇପଙ୍କ ମୁହଁରେ ହସ ସେ ପର୍ଯ୍ୟନ୍ତ ଲାଗି ରହିଥିଲା । ମରଦମାନେ ଯେପରି ଜୀବନରେ ପ୍ରଥମଥର ପାଇଁ ବଞ୍ଚିବାର ସ୍ୱାଦୁ ଅନୁଭବ କରୁଛନ୍ତି ସେଇ ଆତ୍ମତୃପ୍ତିର ଭାବ ସେମାନଙ୍କ ମୁହଁରେ ଖେଳୁଥିଲା ।

ଯାହାହେଉ, ଏତେଦିନେ ଏଠି ଗୋଟାଏ କୂଅ ଖୋଳା ହେବ । କୈଳାସ ଉତ୍‌ଫୁଲିତ ହୋଇ ପାଟିକରି କହୁଥାଏ-ଦେଖିବ ଏକଥା ଜାଣିଲେ ଗାଁବାଲା କେମିତି ଚମକି ପଡିବେ । କେତେ ପ୍ରକାରର କଥା ହେବେ ।

ଆରେ ଯା, ଆଜିକାଲି କିଏ କାହାର କ'ଣ କରି ପକାଇବ ବା ! ଦେଶ ସ୍ୱାଧୀନ ହୋଇଛି, ଆମେ ଟିକିଏ ବାହରକୁ ଯାଇପାରୁନେ ବୋଲି ସିନା ଏମାନେ ଆମକୁ ନାଲି ଆଖି ଦେଖାଉଛନ୍ତି । ଖାଲି ସେମାନଙ୍କ ଭଳି ଆମର ମାଣେ ଦିମାଣ କରି ଜମିଥିଲେ ପରା ଆମେ ବାବୁଭୟା ହୋଇଯାନ୍ତୁ-ଭବି କହୁଥାଏ । ସମସ୍ତଙ୍କ ମନରେ ଆନନ୍ଦ । ଆଜି ଯେମିତି ସମସ୍ତଙ୍କ ଏକ ମିଳିତ ସ୍ୱପ୍ନ ସାର୍ଥକ ହୋଇଛି- ସେଇ ଭାବ ଉଚ୍ଛୁଳି ଉଠୁଥାଏ ପିଲାଙ୍କ କଣ୍ଠରେ ।

ଆମର ଏଠି କୂଅଖୋଳା ହବରେ ।

କୂଅଖୋଳା ହବ ।

ଦୀର୍ଘଶ୍ୱାସ ପକାଇ ଡମ୍ବୀ ଭାବିଲା-କେଉଁ ଅମଙ୍ଗଳ ସମୟ ଆସିଛି କେଜାଣି । ଏମିତି ବେପରୁଆ ହୋଇ ଉଠୁଛନ୍ତି ସମସ୍ତେ ।

ସକାଳୁ ଚାଲିଲା କୂଅ ଖୋଳା । ସାହିଯାକର ପିଲା ମାଇପେ ସେଠି ଜମା ହୋଇଥାନ୍ତି । ଯେଉଁମାନେ କାମ କରୁଥାନ୍ତି, ଟିକିଏ ଦମ ନେବାକୁ ବି ତାଙ୍କର ଇଚ୍ଛା ନଥାଏ । ଯେତେ ଶୀଘ୍ର ସରିଯିବ

କାମ, ସେତେ ଭଲ । ନିଜ ପିଲାଛୁଆ କାଢ଼ିବେ ପାଣି । କାହାଠାରୁ ପଦେ ଅଧେ ଶୁଣିବାକୁ ବି ନଥିବ ।

ଏକ ସ୍ୱାଧୀନ ଜୀବନଯାତ୍ରାର ମୋହ, ତାର କଳ୍ପିତ ପ୍ରତିଶ୍ରୁତି ସେମାନଙ୍କୁ ଆଚ୍ଛନ୍ନ କରିଥିଲା । ସମସ୍ତଙ୍କ ଆଖି ଆଗରେ ନାଚୁଥିଲା ପନ୍ଦର କୋଡିଏ ଫୁଟର ଗହିରିଆ କୂଅ । ଭିତରେ ତାର ସରି ସରି ଗୋଲ ଗୋଲ ନନ୍ଦ । ତା'ରି ଭିତରେ ପାଣି । କାଚ କେନ୍ଦୁପରି ପାଣି । ଚାହିଁ ଦେଲେ ଶୋଷ ମରିଯାଉଛି । ଆଜି ସେଇ କୂଅରୁ କାଢୁଛନ୍ତି ପାଣି ଏଇ ହରିଜନ ସାହିର ମାଇପେ, ପିଲାଏ ।

ମୁଣ୍ଡ ଉପରେ ମାଟି ଟୋକେଇଏ ଥୋଇ ସତିଆ ପଚାରଲା - ପ୍ରଥମ କରି କିଏ ଏ କୂଅରୁ ପାଣି କାଢ଼ିବ ?

-କୈଳାସ ! କିଏ ଗୋଟାଏ ଟୋକା ଶୁଣୁ ନ ଶୁଣୁ ଉତ୍ତର ଦେଲା । ମାତ୍ର ପ୍ରଶ୍ନଟା ଥିଲା ଆହୁରି କଠିନ । ଆହୁରି ବ୍ୟାପ୍ତ ଥିଲା ତାର ପରିସୀମା । ଏଠିକାର ସଂସ୍କୃତିଗତ ପରମ୍ପରା ଯେମିତି ଅନ୍ତର୍ନିହିତ ଥିଲା ଏଇ ପ୍ରଶ୍ନରେ ।

କୈଳାସ ! ସେ କାହିଁ ପହିଲେ ପାଣି କାଢ଼ିବ ? ଏତେ ଟିକିଏ ଛୁଆ ସେ-ନଟ ଜେନା ବିରକ୍ତ ହେବା ସ୍ୱରରେ ଅସମ୍ମତି ଜଣାଇଲା ।

ତେବେ ହରିଆ ଅଜା କାଢୁ । ସେ ତ ସମସ୍ତଙ୍କଠାରୁ ବୁଢ଼ା, ସବୁରି ମୁରବୀ । ଗୁରିଆ ପ୍ରସ୍ତାବ ଦେଲା ।

ସେଇଠି ହରିଆ ଭୋଇ ବସିଥିଲା-ଗୋଡ ପାଖରେ ହାତବାଡିଟିକୁ ଥୋଇଦେଇ, ଘଣ ଘଣ ସ୍ୱରରେ ଉଠୁଉଠୁ ସେ କହଲା, ହରିଆ ଅଜା ! ହରିଆ ଅଜା ଆଜି ମୁରବୀ ପାଲଟିଗଲା ! ତାକୁ ତମେ କେହି ବାଳକ ପ୍ରମାଣେ ଖାତିର କରୁଛ କଉଁ କଥାରେ ?

ଓହୋ ନ ହେଲା ନାହିଁ, ଆମ ବେଙ୍ଗୀ ବୋଉ ଶୁଭଦବ । ରହସ୍ୟ କରିବା ଢଙ୍ଗରେ ଝୁଲିଆ କହେ !

ଆରେ ସାପଖିଆ, ତୋ ମାଇପ ପହିଲେ କାଢୁନି । ଯା' ତା' ନାଁରେ କାହିଁ କହୁଛୁ । ବେଙ୍ଗୀ ବୋଉ କଥା ଶୁଣି ସମସ୍ତେ ହସି ଉଠିଲେ ।

ନା, ପ୍ରଥମେ ପାଣି କାଢ଼ିବ ଆମଗାଁ ମହାଦେବଙ୍କ ପୂଜାରୀ । ଠାକୁରଙ୍କୁ ଗାଧୋଇ ଦେବ । ସେଇଠି ଭୋଗହବ, ତାପରେ ଯିଏ କାଢ଼ିବ ପଛେ କାଢୁ । ସତିଆର ଏଇ ପ୍ରସ୍ତାବ ସମସ୍ତଙ୍କ ମନକୁ ପାଇଲା । ସମସ୍ତେ ଏକ ସ୍ୱରରେ ପ୍ରାୟେ ସ୍ୱୀକୃତି ଜଣାଇଲେ ।

ଆଗେଇ ଚାଲିଛି ମାଟିଖୋଳା କାମ । ପ୍ରାୟେ ପାଞ୍ଚଦିନର ପରିଶ୍ରମ ପରେ ଦଶହାତ ତଳେ ପଡିଲା ବାଲି । ଦୁଇହାତ ବାଲି ଖୋଳିବା ପରେ କଳା ନାଲି ମିଶ୍ରିତ ବାଲିରେ ପାଣି ଦିଶିଲା ଜକଜକ ।

ଚମକ ଖେଳିଗଲା ଚାରିଆଡେ..... ପାଣି ପଡିଲାଣି, ପାଣି ପଡିଲାଣି । ଏଣିକି କୂଅ ଭିତରେ ନନ୍ଦ ନ ବସିଲେ ଆଉ କାଢ଼ି ହେବନି ବାଲି । ଭୁଷୁଡି ପଡିବ କତର ମାଟି । ପାଣି ବି ଝରିଆସିବ ଭୁସ୍‌ଭୁସ୍ ହୋଇ ।

ଏଣିକି ନନ୍ଦ ଆଣନ୍ତୁ ବାବୁ । ପାଣି ପଡିଲାଣି । ଫିଟିଗଲାଣି ଝରର ମୁହଁ । ଆଉ ଖୋଳିହବ ନାହିଁ ନନ୍ଦ ନ ବସାଇଲେ । ବ୍ୟଗ୍ରତାଭରା ସ୍ୱରରେ ସେମାନେ କଣ୍ଟ୍ରାକ୍ଟର ବାବୁଙ୍କୁ ଅନୁରୋଧ କଲେ ।

ଦୁଇଦିନ ପରେ ଦିନେ ଦୁଇଟି ଶଗଡରେ ଆସିଲା ଦୁଇ ଶୂଳେଇ ନନ୍ଦ । କଣ୍ଟ୍ରାକ୍ଟରବାବୁ ଆସି କହିଲେ-ଏତିକି ବସାଅ । ଆଉ ଦିନେ ଦୁଇଦିନ ପରେ ଆସିବ, ଯାହା ଆଉ ଦରକାର ହେବ । ବର୍ତ୍ତମାନ କୁମ୍ଭାର ପାଖରେ ମିଳିଲା ନାହିଁ । ବରାଦ ଦିଆହୋଇଛି, ପଠେଇ ଦେବ ଭାଟି ଉଠେଇଲେ ।

ତା'ପରଦିନ ସକାଳୁ ଆରମ୍ଭ ହେଲା ନନ୍ଦ ବସାଇବା କାମ । ପାଣିମିଶା ବାଲି ଉପରେ

ନନ୍ଦକୁ ଘୁରେଇ ବାଲି କାଢି କାଢି ନନ୍ଦଗୁଡିକ ଖସେଇ ଦିଆହେଉଥିଲା, ତଳକୁ । ସିଗାରେଟ୍ ଲଗାଇ କଣ୍ଟ୍ରାକ୍ଟରବାବୁ କହିଲେ- ଆରେ ବେଶି ତଳକୁ ନନ୍ଦଗୁଡାକ ଖସେଇ ଦିଅନା । ଝର ଯେପରି ପଡୁଛି ମନେହେଉଛି, ଯେତେ ପାଣି କାଢିଲେ କୂଅ ଭରିଯାଉଥିବ ।

-ହଁ ଆଜ୍ଞା ସେଇଆ ଜଣାହଉଛି । କୂଅ ଭିତରେ ଥାଇ ଝୁଲିଆ ପାଟିକରି ସମ୍ମତି ଜଣାଇଲା । କହିଲା, ଆଜ୍ଞା ଆପଣଙ୍କ ଯୋଗୁଁ ଏଠି କୂଅ ହୋଇପାରିଲା । ଆମ ପିଲାଛୁଆଙ୍କୁ ଆଉ କୁଆଡକୁ ପାଣି ପାଇଁ ଯିବାକୁ ପଡିବ ନାହିଁ । ଆମେ ଆପଣଙ୍କ ଗୁଣ ସବୁଦିନେ ଗାଉଥିବୁ । ଯଶ ରହିଥିବ ।

ଆରେ, ଆରେ ମୁଁ କ'ଣ କଲି ? ସରକାରଙ୍କ ଟଙ୍କା । ତମେ ବି ସାହାଯ୍ୟ ସହଯୋଗ କଲ. ମୁଁ ଅଧିକଟା କ'ଣ କଲି ! ହଉ ମୁଁ ଯାଉଛି, ସନ୍ଧ୍ୟାବେଳକୁ ଦି'ଜଣ ଯାଇ ମୂଲ ହିସାବକରି ନେଇଆସିବ ।

-ହଉ ଆଜ୍ଞା, ନ ଶୁଣିଲା ଭଳି କଣ୍ଟ୍ରାକ୍ଟରବାବୁ ଷ୍ଟାର୍ଟ ଦେଲେ । ଗାଡି ଗ ର୍ଜ୍ଜନ କରି ସେଦିନ ଚାଲିଗଲା । ସନ୍ଧ୍ୟା ସୁଦ୍ଧା କୂଅଟାରେ ବସିସାରିଥିଲା ସବୁଗୁଡାକ ନନ୍ଦ । ଆସିଯାଇଥିବା ରାତ୍ରିର ଅନ୍ଧାର ଭିତରେ ସେଇ ଅଧାଖୋଳା କୂଅଟା ପଡିରହିଲା ଏକ କ୍ଷୁଧିତ ଗହ୍ବର ଭଳି ।

ପ୍ରତିଶ୍ରୁତିର ସମୟ ଗଡିଯାଇଛି । କୂଅ ଅଧାହୋଇ ପଡିବା ଆଜିକୁ ଦି'ମାସରୁ ଅଧିକ ହେଲାଣି । କେବେ କେମିତି କଣ୍ଟ୍ରାକ୍ଟରବାବୁ ନିଜ ମଟରସାଇକେଲ ଚଢିଯାଆନ୍ତି ସେଇ ରାସ୍ତାରେ । ସତିଆ, ଗୁରିଆ, ଝୁଲିଆ ପିଲାଛୁଆ ତାଙ୍କ ମାଇପେ ସମସ୍ତେ ଦେଖନ୍ତି ତାଙ୍କୁ । ବେଳେ ବେଳେ ଇଚ୍ଛା କରନ୍ତି, ପଚାରି ଦେବେ ! ବାବୁ କୂଅଟା ଅଧାହୋଇ ପଡିଛି । ବର୍ଷାହୋଇ ମାଟି ତା'ଭିତରକୁ ଧୋଇହୋଇ ପଶିଯାଇ ପୋତି ପକାଉଛି । ନନ୍ଦ ଦେଇଥିଲେ, ଆମେ ବସେଇ ଦେଇଥାନ୍ତୁ । ପିଲାଛୁଆ ନେଇ ପଡିବୁ । ଗହିରା ଖାଲଟା, କେତେବେଳେ କେଉଁ କଥା ! ହେଲେ କେମିତି ଏକ ଭୟରେ ସେମାନେ ମୁହଁ ଖୋଲି ଏକଥା କହିପାରନ୍ତି ନାହିଁ ।

କେବଳ ସନ୍ଧ୍ୟାରେ ଏକାଠି ବସିଗଲେ ନିଜ ନିଜ ଭିତରେ ଝଗଡା କରନ୍ତି ଏଥିପାଇଁ । ଏତେଦିନ ଖଟି ଖଟି ଅଧା ମଜୁରୀ ପାଇଲେ କୂଅଟା ବି ହେଲା ନାହିଁ । ଏମିତି ପରସ୍ପର ପରସ୍ପରକୁ ଦାୟୀ କରନ୍ତି । ରାଗରେ ଗରଗର ହୁଅନ୍ତି । ମୁହଁ ଫୁଲେଇ ଘରଭିତରକୁ ପଶିଯାଆନ୍ତି । କେବେ ବା ମାଇପମାନଙ୍କଠାରୁ ପରିହାସ ଶୁଣନ୍ତି-କୂଅଟାଏ ଏଠି ଖୋଳେଇ ଦେଉଥିଲେ, କୂଅ ।

ଦିନେ କୈଳାସ ଆସି କହିଲା-ଆଜି ସେ କଣ୍ଟ୍ରାକ୍ଟରକୁ ମୁଁ ଦେଖି ପଚାରିଥିଲି । ଶଳା କହିଲା, ନନ୍ଦ ମିଳୁ ନାହିଁ ।

ନନ୍ଦ ମିଳୁ ନାହିଁ ! ଚିହିଁକି ଉଠିଲା ଝୁଲିଆ, ଦୁନିଆଯାକ ଖୋଳା ହଉଛି, ନନ୍ଦ ମିଳୁଛି, ଆଉ ଏଠିକି ନନ୍ଦ ମିଳୁନି ! ଶଳା ଜାଲିଆତି କଥା କହୁଛି ।

ମୁଁ ତ ଶୁଣୁଥିଲି, ସେଗୁଡାକ ତା'ର ବିଲ୍‌କରି ସବୁଟଙ୍କା ନେଇଗଲାଣି । ଆଉ କାମ ଫାମ ହବ ନାହିଁ । ରବି ବିଡିଟାଣି କହିଲା ।

ଏଗୁଡାକପରା ପଇସାର ଚାକର । ପଇସା ଟଙ୍କାପାଇଁ ତଣ୍ଟି କାଟିଦେବ ! ସେମାନଙ୍କ ପାଖରେ କ'ଣ ଧର୍ମକର୍ମ ମଣିଷପଣିଆ ଅଛି ! ସତିଆ କେମିତି ଆକ୍ରୋଶରେ କହି, ଚାହିଁଲା ଅନ୍ୟମାନଙ୍କୁ-ସମସ୍ତଙ୍କ ମନରେ ଯେପରି ସେଇକଥା- ଏମାନଙ୍କ ପାଖରେ କ'ଣ ମଣିଷପଣିଆ ଅଛି !

ଅସହାୟତା, ଆତ୍ମଗ୍ଲାନିରେ ସମସ୍ତେ ନୀରବ ପାଲଟି ଯାଆନ୍ତି । କେବେ କେହି ନୂଆକଥା ପୁଣି ଉଠେଇଲେ, ତା'ଉପର ଚିଡିଉଠନ୍ତି । ତଥାପି କେମିତି ଗୋଟାଏ ଫାସରେ ବାନ୍ଧିହେଲା ଭଳି

ଅଠା କାଠିରେ ଲାଗିଯାଇଥିବା ଉଡା ଚଢେଇଟି ଭଳି ସେମାନେ ନିଜ ଅଜାଣତରେ ଛନ୍ଦହୋଇଯାଉ. ଛଟପଟ୍ ହୋଇ ଅଭିଶାପ ଦିଅନ୍ତି-ତୋ କୁଳ ବୁଡିଯାଉ । ଟଙ୍କାଯାକ ସବୁ ଖାଇଲୁ, କୂଅଟା ଅଧା ରହିଲା-ଧର୍ମ ସିହବ ନାହିଁ ।

କେଉଁ ଧର୍ମ, କେମିତି ସହେ, ପୁଣି କେମିତି ନ ସହେ, ବିଚରା ଜାଣନ୍ତି ନାହିଁ, ଜାଣନ୍ତି ନାହିଁ ଏ ଦେଶର ସବୁକାମ ଏମିତି ଅଧାକୁହେ ଯାହା ବା ଶେଷ ହୁଏ , ତା ବି ଭୁଷୁଡି ପଡେ ଦିନ କେଇଟାରେ ।

ଏଇ ଦେଶରେ ନଦୀବନ୍ଧ ଭାଙ୍ଗିଲେ ଇଞ୍ଜିନିୟର, ଓଭରସିୟରଙ୍କର, ଆଧୁନିକ ଦି'ମହାଲା କୋଠା ସହରର ଛକ ଉପରେ ଠିଆହୁଏ । ମରୁଡି ପଡିଲେ ସମାଜସେବୀ, ନିସ୍ୱାର୍ଥପର ଜନସେବୀ ପାଲଟି ଯାଆନ୍ତି ଧନୀ । ରାସ୍ତା ତିଆରି, ମରାମତି, ପୋଲ ତିଆରି ହେଲେ କଣ୍ଟ୍ରାକ୍ଟରର ଗାଡି କିଣା ହୁଏ । ମଦର ଚାହିଦା ବଢେ । ନାରୀ ଦେହର ମାଂସ ହୁଏ ଶସ୍ତା । ସଂସଦରେ ଉଚ୍ଚ ଶ୍ରେଣୀର ଲୋକଙ୍କ ସ୍ୱାର୍ଥପାଇଁ ନିୟମ ପ୍ରଣୟନ ହେଲେ, ମନ୍ତ୍ରୀମଣ୍ଡଳ ଭାଙ୍ଗେ । ଦୁର୍ନୀତି ପାଇଁ ବସିଥିବା କମିସନ ରିପୋର୍ଟ ଚପିଯାଏ ନାଲିଫିତା ତଳେ, ଫିଟେ ଯଦି, କେଉଁ ଦୁର୍ନୀତିଗ୍ରସ୍ତ ମନ୍ତ୍ରୀ, ନେତାଙ୍କର ଦୁର୍ନାମକୁ ଚାପିଦେଇ ଅନ୍ୟଆଡେ ଲୋକଙ୍କୁ ଭୁଲାଇ ଦେବାର ଚମତ୍କାର ଯୋଜନା ଭିତରେ ଫିଟେ । ବିଚରା ଜାଣନ୍ତି ନାହିଁ- ଜନହିତକର ଯୋଜନାର ଅଟକଳର ଅର୍ଥ, ବ୍ୟକ୍ତି ବିଶେଷର ପକେଟ ପାଇଁ ଗଡିଯାଏ, ଅଥବା ପାର୍ଟିକୁଯାଏ ଆଗାମୀ ନିର୍ବାଚନରେ ନେତୃତ୍ୱ ଲଢେଇକୁ ସହଜ କରିବା ପାଇଁ ।

ସେମାନେ ବି ଜାଣି ନଥିଲେ, 'କାର୍ଯ୍ୟପାଇଁ ଖାଦ୍ୟ ଯୋଜନା'ରେ ଦିଆହେବାକୁ ଆସିଥିବା ଗହମ, ଚାଉଳ ମୂଲିଆଙ୍କୁ ନ ଦିଆଯାଇ ବିକ୍ରି ହୁଏ ବ୍ୟବସାୟୀଙ୍କୁ । ସେଇ ଖାଦ୍ୟରେ ପୁଣି ମିଶିଯାଏ ଅଖାଦ୍ୟ । ମୂଲିଆ, ଗରିବ ଲୋକ ଅଧିକ ରେଟ୍‌ରେ କିଣି ତାକୁ ଖାଇ ରୁଗ୍‌ଣ ହୁଏ ।

ଅଥଚ ସେଇ ଅଧାଖୋଳା କୂଅଟା ସମସ୍ତଙ୍କ ଆଖିଆଗରେ ପଡିଥିଲା ଏକ ଅନନ୍ତ କ୍ଷୁଧାର ଉନ୍ମୁକ୍ତ ପାଟିଭଳି, ନୀରବରେ ହୁଏତ ଯିଏ ଅପେକ୍ଷା କରିଥିଲା ଗୋଟାଏ ଶିକାର । ସେଦିନ ହେଲା ବର୍ଷା ।

ପ୍ରବଳ ବର୍ଷା । ଚାରିଆଡେ ପାଣି ଆଉ ପାଣି । ଦି'ପହର ପରେ ଯାହା ଟିକିଏ ଛାଡିଯାଇଥିଲା । ଆଉ ସବୁଦିନ ଭଳି ନିଜର ଫଟା ବଲ୍‌ଟାକୁ ନେଇ ଗଙ୍ଗା ବାହାରିଗଲା ଖେଳିବାକୁ ଗିରିଆ ସାଙ୍ଗରେ ।

ସନ୍ଧ୍ୟାରେ ଯେତେବେଳେ ଘରକୁ ଫେରିଆସୁଥିଲା ଗଙ୍ଗା ପାଦରେ ଥିଲା ତାର ଚଞ୍ଚଳତା । ଉପରକୁ ବଲ୍‌ଟା ପକାଇ ପୁଣି ଥରେ ଧରିବାର ପ୍ରବଣତା । ହଠାତ୍ ହାତରୁ ଖସିଯାଇ ବଲ୍‌ଟା ପଡିଗଲା ସେଇ ଗହ୍ୱରରେ । ତା'ପଛରେ ଦୌଡି ଦୌଡି ଆସୁଥିବା କୁକୁରଟା ଭୁକିଉଠିଲା ।

ହରିଜନ ସାହିର ଓଦା ଚାଳକୁ ଭେଦକରି ଯେତେବେଳେ ନୀଳ ନୀଳ ଧୂଆଁ ମେଘ ଭସା ଆକାଶରେ ପେଷି ହୋଇଯିବାକୁ ଊର୍ଦ୍ଧ୍ୱମୁଖୀ ହୋଇଥିଲା, ଆଉ କାହାର ଗୋଟାଏ ହିଂସ୍ର କଳାପାଦ ଅଜଣା ଏକ କାରୁଣ୍ୟ ସହ ମାଟିଉପରେ ପଡିବାକୁ ଭୟଆସିଲା । କାଦୁଅ ମାଟିକୁ କୁନ୍ଦି କୁନ୍ଦି ଡେଉଁଥିବା ସେଇ କଅଁଳ ଗଙ୍ଗାର ପାଦ ଦୁଇଟି ଧୀରେ ଖସିଗଲା ମୃତ୍ୟୁର ଗହ୍ୱର ଭିତରକୁ - ଅକ୍ଟୋପାସର ପାଦ ଭିତରକୁ ।

ପିଣ୍ଡାକୁ ଆଉଜି ବିକଳ ଭାବେ ସତିଆ ନିଃଶବ୍ଦରେ କାନ୍ଦିଉଠିଲା । ଝୁଲିଆ, ଗୁରିଆ, ରବି ସମସ୍ତେ ସେଇଠି ଠିଆହୋଇ ତାକୁ ବୁଝାଇ ଚାଲିଥାନ୍ତି-

ଧଇର୍ଯ୍ୟ ଧରରେ ବାବା । ଛାତିକୁ ଟିକିଏ ପଥର କରିଦେ । ଯିଏ ଗଲା, ସେ କ'ଣ ଆଉ ଫେରି ଆସିବ ଯେତେ ଆକୁଳ ବିକଳ ହେଲେ, କାନ୍ଦିଲେ କ'ଣ ହବ । ଏ ଖେଳ ତ ଲାଗିଛି ସବୁଦିନେ । କଉଁ ତୋର ବଳ ବଅସ ଗଲାଣି -କାଲି ସକାଳେ ଠାକୁର ଚାହିଁଲେ ଗଣ୍ଡା ଗଣ୍ଡା ପିଲା ହେବେ ।

ସତିଆ ସବୁ ଶୁଣି ସାନ୍ତ୍ୱନା ପାଇଲା କି ନପାଇଲା, ତା'ବୁଝି ହେଲାନି । ସେ କେବଳ ଅଧିକ ଅଧୈର୍ଯ୍ୟ ହୋଇ ମୁଣ୍ଡ ବାଡଉଥିଲା ।

ଦେଖି ଦେଖି ଏମିତି ହନା । ମନକୁ ବୁଝେଇ ଦେ, ଝୁଲିଆ କହୁ କହୁ ସତିଆକୁ ନିଜ ଉପରକୁ ଟାଣି ଆଣିଲା । ହଠାତ୍ ସତିଆର କ'ଣ ହେଲା କେଜାଣି ସେ ପାଗଳଙ୍କ ଭଳି ସମସ୍ତଙ୍କୁ ଠେଲି ଦେଲା । ଘର ଭିତରକୁ ପଶିଯାଇ ଉଠେଇ ଆଣିଲା ଗୋଟାଏ କୋଦାଳ ଓ ଦଉଡିଲା ସେଇ ଅଧାଖୋଳା ହୋଇଥିବା କୂଅ ଆଡକୁ । ସମସ୍ତେ ତା' ପଛେ ପଛେ ଆଶଙ୍କାରେ ଭୟରେ ଦୌଡିଲେ ।

ସବୁଦିନେ ତ ଏଇ କାତର ମଣିଷ ମୃତ୍ୟୁର ଶୀତଳ ହାତର ଅଜଣା ସ୍ପର୍ଶରେ ଛଟପଟ ହୋଇଛି । ଆକୁଳବିକଳ ହୋଇଛି । ପୁଣି କେତେବେଳେ ଅସହାୟଭାବେ ତାର ପ୍ରତିବାଦ କରିଛି । ହେଲେ ଅପ୍ରତିହତ ସେଇ ଧାରାର ନିସ୍ତାର ରଥଚକ୍ର କେବେ ବି ପଥଚ୍ୟୁତ ହୋଇନି । ମା'ର ଗର୍ଭଯନ୍ତ୍ରଣା ଶିଶୁର ପ୍ରଥମ କ୍ରନ୍ଦନର ସ୍ୱର ଯେଉଁ ମହାସତ୍ୟକୁ ପ୍ରଥମେ ସ୍ୱୀକାର କରେ, ତାହା କରାଳ ବକ୍ଷ ଉପରେ ଉଡନ୍ତା ଗୋଟିଏ ଇଗଲର ସ୍ଥିତି ।

ସତିଆ ଏକ ନପୁଂସକ କ୍ରୋଧରେ କୂଅଟାକୁ ଉପରୁ ମାଟି ହାଣି ହାଣି ପୋତି ଚାଲିଥିଲା । ସାମାନ୍ୟ ଦୂରରେ ଠିଆ ହୋଇ ସେମାନେ ଲକ୍ଷ୍ୟ କରୁଥିଲେ । ଦିନେ ସେ ନିଜେ ଏମିତି କ୍ଳାନ୍ତି ହୀନ ଭାବରେ ମାଟି ଖୋଳୁଥିଲା, କୂଅଟିଏ ହେବ । ପାଣିପାଇବେ । ସେଦିନ ଥିଲା ମନରେ ରଙ୍ଗୀନ ଗୋଟାଏ ସ୍ୱପ୍ନ । ଆଜି ସେଇ ଭଗ୍ନସ୍ୱପ୍ନର ଅଭିଶାପର ଜ୍ୱାଳା ତାକୁ କରିଛି ପାଗଳ ।

ହରିଜନ ସାହି ଭିତରୁ ଶୁଭିଲା ଗୋଟାଏ ନାରୀ କଣ୍ଠର ଆକୂଳ ଚିତ୍କାର । ଗଙ୍ଗାବୋଉ ବାହୁନି ଉଠୁଚି । ମୋତେ ଛାଡି ତୁ କୁଆଡେ ଗଲୁରେ ଧନ...ମୁଁ କାହା ମୁହଁ ଚାହିଁ ଆଉ ବଞ୍ଚିବିରେ ଗଙ୍ଗା......

ମୁଁ ଭାବୁଥିଲି, ଏ ମୃତ୍ୟୁଟାକୁ କ'ଣ ଉପେକ୍ଷିତ କରାଯାଇ ପାରି ନ'ଥାନ୍ତା । ପୂର୍ଣ୍ଣ ହୋଇ ଯାଇଥିଲେ ସେଇ କୂଅର କାମ, ଗଙ୍ଗା କ'ଣ ବଞ୍ଚିଯାଇ ନଥାନ୍ତା ।

ଗଙ୍ଗା ବୋଉ କାନ୍ଦୁଥିଲା । ବାହୁନି ବାହୁନି । ହାତଗୋଡ ମୁଣ୍ଡ ପିଟିପଟି । ବଞ୍ଚିବା ପାଇଁ ଗଢିଥିବା ସେଇ ମନ୍ଦିରଟି ଆଜି ତାରି ଉପରେ ଭୁଷୁଡି ପଡିଛି । ଦଳି ମକଚି ହୋଇଯାଇଛି ତାର ସେଇ କୋମଳ ହୃଦୟଟି ଯିଏ ଦିନେ ଥିଲା ଗଙ୍ଗାପାଇଁ ଚିନ୍ତାକାତର ।

ଗର୍ଭଯନ୍ତ୍ରଣାରେ ଛଟପଟ ହେଉଥିବା ଏଇ ନାରୀଟି ସେଦିନ ଥିଲା-ଫୁଲ, ସତିଆର ସ୍ତ୍ରୀ, ଆଉ ବାବନା ମଳିକର ଝିଅ । ଗର୍ଭଦ୍ୱାରକୁ ବିଦୀର୍ଣ୍ଣ କରି ଯେତେବେଳେ ସେଇ ଶିଶୁଟି କାନ୍ଦି ଉଠିଲା, ସେଇ ଦିନଠାରୁ ଫୁଲ ପାଲଟିଗଲା ଗଙ୍ଗାବୋଉ ।

ମାତୃତ୍ୱର ଗୌରବବୋଧ ଭିତରେ ନିଜର ସମସ୍ତ ସ୍ୱାତନ୍ତ୍ର୍ୟକୁ ହରାଇ ଦେବାର କି ଆନନ୍ଦ । ଫୁଲର ଗ୍ଲାନି ନଥିଲା- ଗଙ୍ଗାବୋଉ ହେବାରେ ଥିଲା ଆତ୍ମ ଗୌରବ । ନାରୀତ୍ୱର ଗର୍ବ, ମାତୃତ୍ୱର ଅହଙ୍କାର ।

ଆଜି ଗଙ୍ଗା ନାହିଁ· ଗଙ୍ଗାବୋଉ ଅଛି । ରହିବ ନି ସବୁଦିନେ ସେଇ କ୍ଷେତକୁ ବହନ କରି, ଗଙ୍ଗାବୋଉ ହୋଇ ।

ହୁଏତ ପୁଣି ଖରାଦିନେ ଯେତେବେଳେ ପୋଖରୀ ଗାଡ଼ିଆରୁ ପାଣି ଶୁଖିଯିବ । ହରିଜନ

ସାହିର ଛୁଆ ମାଇପେ ବାଲ୍‌ଟି ମାଠିଆ ଧରିଯାଇ ଠିଆ ହେବେ, କେଉଁ ବାବୁଘର କୂଅଠାରୁ ଛୁଇଁ ଦେବାର ନିରାପଦ ଦୂରତାରେ । ଗଙ୍ଗାବୋଉ କାହାକୁ ପୁଣି ଡାକିବ ପାଣି ପାଇଁ ନେହୁରା ହୋଇ ।

ସେତେବେଳେ କ'ଣ ତା'ର ମନେ ପଡ଼ିଯିବ ନାହିଁ, କୂଅଖୋଳା ହେବାର ସବୁ କରୁଣ ଇତିହାସ, ସ୍ମୃତି ।

# ବନ୍‌ସାଇ

ଯଶୋଧାରା ମିଶ୍ର

ସୁଷମା ଚଉକିଟିରେ ବସି ପଡ଼ିଥିଲେ କେତେବେଳେ, ହାତରେ ତାଙ୍କର ତଥାପି ଖୋଲା ଚିଠିଟି । ଗାଧୁଆ ଘରୁ ରୀତୁର ବେପରୁଆ ସିନେମା ଗୀତ ଶୁଭୁଚି; ଏଇନା ସେ ଗାଧୋଇ ସାରି ବାହାରି ଆସିବ । ସୁଷମାଙ୍କୁ ସାମ୍ନା କରିବାକୁ ହେବ ତାକୁ ।

କେମିତି ? କେମିତି ସାମ୍ନା କରିବାକୁ ହୁଏ ଆଜିକାଲିର ଝିଅଙ୍କୁ ? ରୀତୁ ପରି ଗୋଟିଏ ଝିଅର ହାତଲେଖା ପ୍ରେମ ପତ୍ରଟିଏ ତା ବହି ଭିତରୁ ଆବିଷ୍କାର କଲା ପରେ ତା ମା' କ'ଣ କରେ ?

କବାଟ ଖୋଲିବାର ଶବ୍ଦ ହେଲା ଓ ରୀତୁ ବାହାରି ଆସିଲା ମାତ୍ରେ ଗୀତ ଧିମେଇ ଆସି ଗୁଣୁଗୁଣୁରେ ପହଞ୍ଚିଚି । ଉଦା ବବ୍‌ବାଳ ତଉଲିଆରେ ପୋଛୁ ପୋଛୁ ଗୀତ ମଝିରୁ ପଚାରୁଚି - "ମା, ମୋ ଟେବୁଲରେ ବସି ପଢୁଚୁ ନା କ'ଣ ?" ତା ସ୍ୱର ହସିଲା, ପିଲାଳିଆ ।

ସୁଷମା କୋଉ ଛଟକରେ ଚିଠିଟି ବ୍ଲାଉଜ୍ ଭିତରେ ପୁରାଇ ସାରିଥିଲେ । ଚଉକିରେ ସେମିତି ବସି ରହି ରୀତୁ ମୁହଁକୁ ନ ଚାହିଁ ଭାବହୀନ ଉତ୍ତର ଦେଲେ - "ବହୁତ ମଇଳା କରି ପକେଇଚୁ ତୋ ଟେବୁଲ୍ ।"

- "ଥାଉ, ଥାଉ ମା ପ୍ଲିଜ୍ ! ମୁଁ ନିଜେ ସଜାଡ଼ି ଦେଉଚି, ଏଇନା ସଜାଡ଼ି ଦେବି ।"

ସୁଷମା ବସି ରହିଲେ । କିଏ କହିଲା ମୁଁ ସଜାଡ଼ି ଦେଉଥିଲି ବୋଲି, ମୁଁ ତୋ କୈଫିୟତ୍ ଦେଉନାହିଁ । କିଏ ବା କହୁଚି ତୋତେ କଥା କହିବାକୁ । ଚୁପ୍ ରହ, ମୁଁ ସମ୍ଭାଳିଯାଏ ପହିଲେ ।

- "କ'ଣ ହେଲା ମା, ରାଗିଚୁ କି ?"

ମନ ହେଉଥିଲା ତା ଆଖିକୁ ସିଧା ଚାହାନ୍ତେ, ପଚାରନ୍ତେ- ମୋତେ ଜବାବ୍ ଦେ, କେବେଠୁ ଏମିତି ଧୋକା ଦେବାକୁ ଶିଖିଲୁଣି ତୁ ? ଆଲୁରୁ ବାଲୁରୁ ବହି ଖାତା ଭିତରେ ଏମିତି ବୋମାଟିଏ ଲୁଚାଇ ମୋ ସାଙ୍ଗେ ଗେଲେଇ ହେଉଚୁ କିଛି ନ ଜାଣିଲା ଭଳି ? ଏତେ ସାହସ ତୋର ? ଏତେ ପେଞ୍ଚ ତୋ ପେଟ ଭିତରେ ?

- "ମା, ସୀମା ନୁହେଁ କଲିକତାରୁ ଏଥର ପ୍ଲାଷ୍ଟିକ୍ ଜୋତା ହଳେ ଆଣିଚି ।"

ସୁଷମା ବୁଲି ଚାହିଁଲେ, କାନ୍ଥର ଲମ୍ୱା ଦର୍ପଣ ପାଖେ ସେ ମୁଣ୍ଡ କୁଣ୍ଡାଉଚି, ଦର୍ପଣରେ ଦିଶୁଚି ତା'ର ନିର୍ମଳ ପନ୍ଦର ବର୍ଷର ମୁହଁ । ହାତରେ ପାନିଆ ରହିଯାଇଚି, ଦର୍ପଣ ପାଖକୁ ନଇଁ ପଡ଼ି ବାଁହାତ ନଖରେ ଗାଲର ବ୍ରଣକୁ ଖୁଣ୍ଟୁଚି ।

ସୁଷମା ଚଟକିନି ମୁହଁ ଫେରେଇଲେ - ଚିହ୍ନା ଚିତ୍ରପଟଟି ମଝିରୁ ଫାଟି ଖଣ୍ଡ ଖଣ୍ଡ । ନା ଦେଖି ହେଉଚି, ନା ଆଉ ଯୋଡ଼ି ହେବ । ଚଉକି ଛାଡ଼ି ଉଠୁ ଉଠୁ କହିଲେ- "ପାଠପଢ଼ା ଦିନରେ ଯେତେକ ବାଜେ ଚିନ୍ତା ସବୁ ମନରେ, ଖାଲି ଜୋତା - ଡ୍ରେସ୍..."

କହୁ କହୁ ସେ ବାହାରି ଆସିଲେ, ଦର୍ପଣର ମୁହଁଟି ଆଡ଼େ ଚାହିଁ ନାହାନ୍ତି । ଦାଣ୍ଡ ବାରଣ୍ଡାରେ ବସି ବାବୁଲା ଅଠା ଆଉ କାଗଜ ପଟାଗୁଡ଼ିଏ ନେଇ କ'ଣ ଗୋଟାଏ ଯୋଡ଼ାଯୋଡ଼ି କରି ତିଆରି

କରୁଚି, ମା ସ୍କୁଲର କ୍ରାଫଟ କ୍ଲାସ ଲାଗି । ଲମ୍ବ ବାରଣ୍ଡାର କଣକୁ ଥୁଆ ଯାଇଥିବା ନୂଆ କୁଣ୍ଡଟିକ କମଳା ଟାରାଟିକୁ ଦେଖାଇ ପଚାରିଲା- ''ଇଏ କ'ଣ ?''

ସୁଷମା ଚୁପଚାପ୍ ମଝି ବେଡ-ଟେବୁଲ ଉପରୁ ଆଜିର ଖବର କାଗଜ ଉଠାଇଲେ । ବାବୁଲା ମୁହଁ ଗୋଲା କରି ଏକ ଲୟରେ ପଟା ଖଣ୍ଡିଏ କାଟୁ କାଟୁ ରହିଯାଇ ପୁଣି ପଚାରିଲା - ''ସେଇଟା ଲେମ୍ବୁଗଛ ପରି ଦିଶୁଚି । ଏଗୁଡ଼ା କ'ଣ ଏମିତି ଗମ୍ଲାରେ ଲଗାଯାଏ ?''

- ''ଲଗାଯାଏ । ତୋର ଏତେ ଚିନ୍ତା କାହିଁକି । ଗାଧେଇବୁ ଯା, ସ୍କୁଲ ବେଳ ହୋଇଯିବ ।''
ସୁଷମା ତା'ପରେ ଖବରକାଗଜ ଖୋଲି ନିଜ ଆଗରେ ମେଲି ଧରିଲେ ଓ ଦୁର୍ଗଟି ଭିତରେ ଏବ ପାଇଁ କାର୍ଯ୍ୟପନ୍ଥା ସ୍ଥିର କଲେ । ଏମିତି ବକ୍ସ ତ ପଡ଼ିଯାଇ ନାହିଁ କିଛି । ଅଭିମାନରେ କାନ୍ଦିଲେ କି କାନି ଘୋଡ଼େଇଲେ ଘର ନିଆଁ ବି ଲିଭିଯାଏ ନାହିଁ ଆପେ ।

ଆଜି ରୀତୁ କଲେଜ ଯିବା ପୂର୍ବରୁ ହିଁ । ଏଡ଼ିକି ଟିକିଏ ପିଲା ତୁ । ଛି ଛି, ବାପା ଜାଣିଲେ କ'ଣ ଭାବିବେ, କେତେ ମନ ଦୁଃଖ କରିବେ ଭାବିକୁ ।

ନିଜ ଉପରେ ରାଗ ଆସୁଛି । କାହିଁକି ଘଟୁଛି ଏମିତି ଅନାହୂତ କଥା । କ'ଣ ଭୁଲ ରହିଗଲା ରୀତୁକୁ ବଢ଼େଇବାରେ ?

ମୁଁ ଜାଣୁଥିଲି ଏମିତି କିଛି ପାଇଁ ବେଶି ଦିନ ନାହିଁ । ଯେବେଠୁ ସେ ସ୍କର୍ଟ ପିନ୍ଧା କାହିଁକି ଛାଡ଼ିବ ବୋଲି ଆଶ୍ଚର୍ଯ୍ୟ ହେଲା, ତା ଢଙ୍ଗ ଗୋଲେଇ ଦୃଷ୍ଟିକଟୁ ଦିଶୁଚି ଜାଣି ବି । ଜନ୍ମଦିନ ପାଇଁ ଏଥର ଶାଢ଼ି କିଣିଦିଏ କହିଲାରୁ ଜିଦ୍‌କରି ଜିନ୍ ଟି-ସାର୍ଟ କିଣିଲା, କହିଲା-ମାଇଲିଏ ଲମ୍ବା ଶାଢ଼ିରେ କିଏ ବାନ୍ଧି ହେବ, ଶାଢ଼ିଟା କେବଳ ସୌଖୀନ ସାନ୍ଧ୍ୟ-ପୋଷାକ ହେବା ଉଚିତ । ଆଉ ଏବେ ପୁଣି କି ଜବାବ ଦେବ କେଜାଣି !

ସୁଷମାଙ୍କ ଛାତି ଚାଉଁକିନା ଦବିଗଲା । ରୀତୁ ଜବାବ୍ ଦେବ ।

ତା କଅଁଳ ମୁହଁ ସେମିତି କଅଁଳ ଦିଶୁଥିବ, ପଚାରିବ - ''କ'ଣ ଭୁଲ ହେଲା କି ମା ? ଆଉ ଇଭ୍ ସତୀଶ୍ ବିଲିଭ୍ ମି ।''

ଖବରକାଗଜକୁ ଅସମାନିଆ କରି ଦୁଇଭାଙ୍ଗ ମୋଡ଼ି ଦେଇ ସୁଷମା ଉଠିଲେ, ଅଣନିଃଶ୍ବାସୀ ଲାଗୁଚି । ରବିବାବୁ କେତେବେଳେ ଫେରିବେ, ସକାଳୁ ଯାଇଚନ୍ତି ।

ରୀତୁ ବାହାରି ଆସୁଚି ତାଙ୍କ ଶୋଇବା ଘରୁ, ତା ମା'ର ଲିପ୍‌ଷ୍ଟିକ୍‌ରୁ ଟିକିଏ ମାରିଦେଇଚି କି ପୁଣି ଓଠରେ ? ନା ସନ୍ଧ୍ୟାରେ କେବେ କେମିତି ସିନେମା ଗଲାବେଳେ ଆଜିକାଲି ସେ ଲୁଚେଇ ମାରିଦିଏ । ଏବେ ସ୍କୁଲ୍ ଡ୍ରେସ୍‌ରେ ବାହାରିଚି, ସ୍କଟ୍ ତଳକୁ ମୋଜାଯାଏଁ ଖୋଲା ଚିକ୍‌କଣ ଗୋଡ଼, ବେଲ୍ଟ ଭିଡ଼ା ବ୍ଲାଉଜରେ ନୂଆ କରି ବଢ଼ିଥିବା ଛାତିକୁ ଲୁଚେଇବାର କୌଣସି ଅଭିପ୍ରାୟ ହିଁ ନାହିଁ ପ୍ରସାଧାନହୀନ ସଫା ମୁହଁ, କହୁଥିଲା ସ୍ନୋ ମାରିଲେ କାଳେ ବ୍ରଣ ବେଶି ହୁଏ ବୋଲି । ସଜାଗ ଚଢ଼େଇଟି, ପରି ନିର୍ଭୀକ ଦୃଷ୍ଟି, ଅନ୍ୟଥା ସନ୍ତର୍ପଣ କି ଆତ୍ମସଚେତନ ନୁହେଁ । ଚାଲି ଯାଉ ଯାଉ କହୁଚି ନିଜ ଖଇରିଆ ସ୍କଟ୍‌କୁ ଦେଖାଇ ଏଇଟା ଗ୍ୟାରେଣ୍ଡିଦିଆ ଟେରିକଟ୍ ? ରଙ୍ଗ ଛାଡ଼ି କେମିତି ଛାପିଛାପିକିଆ ଦିଶିଲାଣି ଦେଖିଲୁ ?

ସୁଷମା ସ୍କୁଲ କଲେଜରେ ପୁଅଙ୍କ ସଙ୍ଗେ ପଢ଼ିଛନ୍ତି, ଶେଷ ସ୍କୁଲ ଜୀବନରେ ସଲୱାର୍‌-କମିଜ୍ ପିନ୍ଧୁଥିଲେ ଦିନାକେତେ । ତେବେ ପଢ଼ିବାକୁ ଗଲାବେଳେ ଦାମୀ ସୌଖୀନ ଲୁଗା ବାହାରେ ହିଁ ନାହିଁ । ମା'ଙ୍କ ଦୃଷ୍ଟି ଖୁଣ୍ଟିନାଣ୍ଟି ଦେଖିଲାକ୍ଷଣି ଲାଜ ଲାଗେ । ଦେହଟା କ୍ରମେ ଫିଟିଆସିବା ଯେମିତି ସୁଷମାର ଫୁଲେଇପଣ, ମଣ୍ଡଦିଆ ଲୁଗା କି ମୋଟା ଓଢ଼ଣୀ ସତ୍ତ୍ୱେ ଛାତି ଫୁଟି ଦିଶିବାର ବେହିଆମି

ଭିନ ଅନ୍ୟ କାରଣ ନାହିଁ । ଦୃଷ୍ଟିରେ ଶାସନ ବି ନଥାଏ; ଥାଏ ନିଭନ କରିଦେବାର, ଦୋଷ ଧରା ପକେଇ ପାତାଳ ପ୍ରବେଶ କରେଇ ଦେବାର ଉଦ୍ଦେଶ୍ୟ । ସେ ଦୃଷ୍ଟି, ସେ ଓଠ ନାକ ଟେକିବାର ଆଭାସ ଖାଲି ଜାନି ସଢ଼ାଡ଼ିବାକୁ କୁହେ ନାହିଁ, କାନ୍ଧ କୁଜା ହୋଇ ପିଠିକୁ ଗୋଲେଇ ଦିଏ, ଖାଲ ଭିତରେ ବୁଡ଼ିଯାଉ, ନଦିଶୁ ଛାତିର ନିର୍ଲଜ୍ଜ ସ୍ଥାପତ୍ୟ । କାଠବିକାଳି ଆଦିବାସୀ ଝିଅଟିର ମୁଣ୍ଡରୁ ଯେତେବେଳେ ତା ଦଳର କେଉଁ ପୁଅଟି ବୋଝ ଓହ୍ଲେଇ ଦେଉଥାଏ ଓ ଲୁଗା ସଜାଡୁ ସଜାଡୁ ଚେପିନାକୀ ଝିଅଟି ବି ହସେ, ମା ଗମ୍ଭୀର ହୋଇ ପଇସା ଗଣି ଦେଉଥାନ୍ତି, ସୁଷମା ଭାବେ ଆଖି ଆଗରେ ଏତେ ନିର୍ଲଜ୍ଜ ଅମଣିଷପଣିଆ ମା' ସହୁଚନ୍ତି କେମିତି ।

ରୋଷେଇ ଘରେ ରଘୁ ରନ୍ଧାବଢ଼ା ଖୁଦୁରୁଖାଦୁରୁ କରୁଚି ।

-"ରଘୁ, ତରକାରି ହେଲା ? ବାବୁଲା ଗାଧୋଇବାକୁ ଗଲାଣି, ଏଇନା ଖାଇବାକୁ ବସିବ ।"

ରୀତୁ ବି ବସିବ । ବାବୁଆ ଆଗ ଚାଲିଯାଏ, ତା ସ୍କୁଲ ଦୂର । ରୀତୁ ପଢ଼ାଘରୁ ପୁଣି ଗୁଣୁଗୁଣୁ ଶୁଭୁଚି - ଏତେ ଗୀତ କାହିଁକି ?

- "ରୀତୁ, କ୍ଲାସ କେତେବେଳେ ଅଛି ?"

- "ସାଢ଼େ ଦଶ ।"

- "ବେଶ୍, ପଢୁନୁ ଯଦି ଖାଇବାକୁ ବସ୍ । ବାବୁଲାକୁ ଡାକ । ପୁଣି ଡେରି ହେଲା କହି ନ ଖାଇ ଚାଲିଯିବ, କେତେ ଆଉ ମୁଁ ତମର ପ୍ରତି କଥା ବୁଝୁଥିବି ?"

କାହିଁକି ଏସବୁ କହୁଚନ୍ତି ସେ । କାହିଁକି ସିଧା ପାଖକୁ ଡାକି ରୋକ୍‌ଠୋକ୍ କହିଦେଉ ନାହାନ୍ତି ।

ରବିବାବୁ ସକାଳୁ ଜଳଖିଆ ଖାଇ ବାହାରି ଯାଇଚନ୍ତି, ଦିନ ଗୋଟାଏ ଦେଢ଼ଟା ବେଳେ ଖାଇବା ପାଇଁ ଆସିବେ । ସେ ହିଁ ଦାୟୀ, ସବୁ ଦୋଷ ତାଙ୍କରି । ହେଲା ତ ? ମୂଳରୁ କହୁ ନଥିଲି ଆକଟ କର ବୋଲି ? କାହିଁକି ସାନ ସାନ କଥାରେ ଆକଟ କରାଯିବ ନାହିଁ ? କାହିଁକି ତାର କହିଲା ଯାକେ କଥାଯିବ - 'କିଏ ମୋର ପିନ୍ଧିବ ମାଇଲିଏ ଲମ୍ବ ଶାଢ଼ି ? ସତେ କି ତା ଇଚ୍ଛା ଉପରେ ନିର୍ଭର କରୁଚି ସବୁ !

ପିଲାଦିନେ ମା'ର ସ୍ୱର ଶୁଭିଯାଏ - ସୁଷି, ଭାଙ୍ଗିଯିବ ମା ରଖି ଦେ । ଦାମୀ ଖେଳନାଟା, ଆଲମାରିରେ ରଖି ଦେ ।

ଦାମୀ ଖେଳନାମାନ କାଚଆଲମାରିରେ ଶୋଭା ପାଉଥିଲା ବର୍ଷ ପରେ ବର୍ଷ ଓ ସେଇ ବର୍ଷମାନଙ୍କ ଭିତରେ କେବେ ଦିନେ ସେ ଦେଖିଲେ ଏଥର ଆଉ ଚକୁ ଟିପରେ ଠିଆହୋଇ ଉହୁଙ୍କି ଆକାଶ ଉଚ୍ଚ ଆଲମାରି ଥାକରୁ ଆଉ ମହାର୍ଘ ଖେଳନାମାନଙ୍କୁ ଦେଖିବାକୁ ହୁଏ ନାହିଁ । ଆଲମାରି ଥାକ ଏବେ ନିଜ ଉଚ୍ଚରେ, ଅନେଇଲେ ନାକସିଧା ଖେଳନାମାନ-ରଙ୍ଗ ଫିକା ପଡ଼ିଆସିଥିବା ଛୋଟିଆ ଛୋଟିଆ ପ୍ରାଣହୀନ ଖେଳନା, ଚିରଦିନ ଲାଗି କାଚ ସେପାଖେ କାଛର ଖୋପ ଭିତରେ ।

ରୀତୁ, ବାବୁଲା ଖାଇବାକୁ ବସିଚନ୍ତି, ସବୁଦିନ ପରି ସୁଷମା ବସିଚନ୍ତି ପାଖରେ । ରଘୁ ବାଢୁଚି, ଅନ୍ୟଦିନ ପରି ବଳେଇବାକୁ ଇଚ୍ଛା ହେଉନାହିଁ, ଥକ୍‌କା ଲାଗୁଚି । ରୀତୁ ପଚାରୁଚି - "ମା, ତୁ ନିଶ୍ଚେ ଜଳଖିଆ ବି ଖାଇ ନ ଥିବୁ ।"

- "ମୋର ଆଜି ଶୁକ୍ରବାର ବ୍ରତ ।"

ରୀତୁ ବାବୁଲା ମୁହଁକୁ ଚାହିଁ ଉହୁଙ୍କି ଏଡି ହସୁଚି । ମୁହଁରେ ବାଁହାତ ପାପୁଲି ଦେଇ ହସ ଲୁଚିବାର ବାହାନା କରୁଚି - "ମାନେ, ମଜରେ ତୁ ଆରମ୍ଭ କରିଚୁ, ଅନେଷ୍ଟଲି ?"

ତୁ ଖିଲ୍‌ଖିଲ୍ ହେଇ ମୋ ଆସନ ଟଳେଇ ପାରିବୁନି । ତୋ ବୟସ୍କ ଜୀବନକୁ ନିୟନ୍ତ୍ରଣ କରିବି ମୁଁ, ତୋ ପିଲାଳିଆମୀକୁ ମାନିବି ହିଁ ନାହିଁ ।

ବାବୁଲା ପଚାରୁଚି -''ଶୁକ୍ରବାର ଗୋଟେ କି ବ୍ରତ ? ଆଉ ସେ ଗମ୍‌ଲାରେ କି ଗଛ ମା ? ବ୍ରତ ଲାଗି ଦରକାର ?''

- ''ସେଇଟା ତାଙ୍କ ଲେଡ଼ିଜ୍ କ୍ଲବ୍‌ରେ ଲେଟେଷ୍ଟ କି ଗୋଟାଏ ଆର୍ଟ ଶିଖାଯାଉଛି ?''

- ''ଶୁକ୍ରବାର ବ୍ରତ ଶିଖାଯାଉଚି ତମ କ୍ଲବ୍‌ରେ ?''

- ''ଧେତ୍ ! (ରୀତୁର ଆହୁରି କିରି କିରି ହସ) ସେ ଗଛଟା କ'ଣ ତ ମା ସେ ଆର୍ଟର ନାଁ ? ବନ୍‌ସାଇ ନା ?''

ତାପରେ ସୁଷମାଙ୍କୁ ନିରୁତ୍ତର ଦେଖି ନିଜେ ବାବୁଲାକୁ ବୁଝେଇଲା - ''କ'ଣ ସବୁ କେମିକାଲ୍ ଦେଇ ଗଛମାନଙ୍କୁ ଟିକିକରି ରଖାଯାଏ ।''

ସୁଷମା ଗାଲରେ ହାତ ଦେଇ ଦୁହିଁଙ୍କୁ ଦେଖୁଥିଲେ । ତାଙ୍କ ମନକୁ କ୍ଲବ୍‌ର ନୁଆ ପ୍ଲାନ୍ କଥା ଆସିଲା, ଭୁଲିଯାଇଥିବା ଉତ୍ସାହ ମୁହୂର୍ତ୍ତକେ ଫେରି ଆସିଲା । ଆଉ କେତେବେଳେ ସକାଳର ଓଜନିଆ ଭାବଟା ମନରୁ ଖସିଗଲା ସେ ଖିଆଲ କରିପାରିଲେ ନାହିଁ । ରୀତୁର କଥାକୁ ମଝିରୁ କାଟି କହିଲେ - ''କେମିକାଲ ଦେଇ ନୁହଁ, ଡାଳ କଟାଯାଏ । ଗୋଟାଏ ଆର୍ଟ । କେବଳ ସମୟ ଦେଖି ଡାଳ କାଟିବାରେ ହିଁ ବାହାଦୂରୀ- ପ୍ରତିଥର ଡାଳ ପୁଣି କଅଁଳିବ, ହେଲେ ଆଗଭଳି ନୁହେଁ । ଟାଙ୍କୁଟ୍ ଲାଗିବ - ଶେଷରେ ଏଡ଼ିକି ଟିକିଏ ଟିକିଏ ଗଛମାନ କୁଣ୍ଡରେ ଥିବ, ଫୁଲ ଧରିବ, ଫଳ ଧରିବ, କମଳା ଡାଳିମ୍ବ ଫଳିଥିବ ବି, ବରଗଛରୁ ଓହଳ ବି ଝୁଲୁଥିବ-ତା ଜାତିର ବଡ଼ ଗଛରୁ କିଛି ଫରକ୍ ନାହିଁ, ଖାଲି ଯାହା ପ୍ରକୃତିର ମିନିଏଚର ।

ତାଙ୍କ ଉତ୍ସାହକୁ ହଠାତ୍ ଥମକାଇ ଦେଇ ରୀତୁ କହିଲା - ପାଣି ପିଇ ଦେଇ ଥାଏ ବୋଲି ଊର୍ଦ୍ଧ୍ୱଶ୍ୱାସ ହେଲାପରି - ''ହେଲେ ଯାହା କହ, ଏଇଟା ଆର୍ଟ କିଛି ନୁହଁ । ସାଇନ୍‌ସ କି କ୍ରାଫ୍‌ଟ କିଛି ଗୋଟେ କୁହାଯିବା କଥା । ଡ୍ରଇଂରୁମ୍‌ରେ ରଖିବ ବୋଲି ଡାଲାକିରେ ବାମନ କରିବ ଗଛଟିକୁ । ପାଣି, ଖତ ଦେଇ ପାଳୁଥିବ, ଏଣେ କତୁରିଟାଏ ଧରି ଜଗିଥିବ, କାଟି ଚାଲିଥିବ ବର୍ଷ ବର୍ଷ ଧରି ।'

- ''ତୋର ଗୋଟାଏ ବକ୍ ବକ୍ ସବୁ କଥାରେ । ଅଧା ଖାଇ କୁଆଡ଼େ ଉଠିଲୁ ?''

ହାତ ଧୋଉ ଧୋଉ ରୀତୁ କି କୈଫିୟତ୍ ଦେଇଚି କିଛି ଶୁଣାଯାଉନି । କାନ ଝାଇ ଝାଇ ଲାଗୁଚି । ଦେଖେଇପଣ । ସବୁ କଥାରେ ଜାଣି ଶୁଣି କଥା କାଟିବା, ଯୁକ୍ତି କରିବା, ମୁଁ ଅଲଗା ବୋଲି ଦେଖେଇ ହେବା । ସତେ ଯେମିତି 'ହଁ' କରିବା ଆମବେଳେ ଛାତି ଭିତରୁ ବାହାରି ଆସୁଥିଲା ଆପେ, ସେଥିଲାଗି ନିଷ୍ଠା, ସାଧନା କିଛି ଲୋଡ଼ା ହୁଏ ନାହିଁ କେଉଁ ନିଆରାପଣ ଦେଖେଇ ହେଉଛୁ ତୁ ? ସେଇଟା ମୋଓରି ଭଲପଣିଆ, ଉଦାରତା । ଛାତି ଭିତରୁ 'ନାହିଁ' ଆସି ଓଠ ସେପାଖେ ଲାଖିଯିବା ଲାଗି ଭୟ ମୁଁ ହିଁ ତୋତେ ଦେଇ ନଥିଲି କେବେ । ମୋ ହାତରେ କ'ଣ କତୁରି ନ ଥିଲା ।

ରୀତୁ ହାତ, ମୁହଁ ଧୋଇ ତଉଲିଆରେ ପୋଛୁଚି । ଏଇନା ବହି ଧରି ଚାଲିଯିବ, ବାହାରି ଯିବ ହାତରୁ, ଡାଳ ବଢ଼ିଯିବ ଆକାଶକୁ ।

ଶେଷ ପର୍ଯ୍ୟନ୍ତ ରୀତୁ ବହି ଧରି ଜୋତା ପିନ୍ଧି ବାହାରିଗଲା, ସୁଷମା ମୁହୂର୍ତ୍ତ ମୁହୂର୍ତ୍ତ କରି ଗଣୁଥାଆନ୍ତି ହାତରୁ ଚାଲିଯାଉଚି ବୋଲି । ତା'ପରେ ତାଙ୍କର ସ୍ଥିର କରିବା କଥା - ଏଥର ଏକୁଟିଆ ସମସ୍ୟାଟି ସମ୍ଭାଳି ପାରିବାର ବିଶ୍ୱାସ ଅଛି ନା ରବିବାବୁଙ୍କ ସାହାଯ୍ୟ ନେବାକୁ ହେବ । ଭାବୁ ଭାବୁ

ସେ ଶୋଇବାଘରକୁ ଗଲେ, ଆଉ ଆଲମାରି ଖୋଲି ଲୁଗାଥାକ ତଳୁ ଟାଣି ଆଣିଲେ ଲେଟର ପ୍ୟାଡ୍‌ଟିଏ । ଅବ୍ୟବହୃତ, ବନ୍ଦ ଜରିକାଗଜ ପ୍ୟାକେଟ୍ ଭିତରୁ ତାର ଝୋଟି ଦିଆହେଲା ପରି ଫିକା କୋଟୀକମକରା ଚନ୍ଦନ ରଙ୍ଗର କାଗଜ ସେମିତି ସଫା ଦିଶୁଚି, ଦୀନେଶ ପ୍ରେଜେଣ୍ଟ କରିବାର କେତେବର୍ଷ ହୋଇଗଲା ? କେତେଦିନୁ ରହିଚି ଏ ଏମିତି ଶାଢ଼ି ବ୍ଲାଉଜ୍ ଥାକ ତଳେ, ପାଞ୍ଚବର୍ଷ ହେବ, ନା ବେଶି ?

ଦୀନେଶ ଜଣେ ଇଣ୍ଟେଲେକ୍‌ଚୁଆଲ ବେଶପୋଷାକର ଜର୍ଣ୍ଣାଲିଷ୍ଟ, ଆସି କିଛିଦିନ ରହିଥିଲା ଏଠି । ମଝିରେ ମଝିରେ ବୁଲିବାକୁ ଆସେ, ରୀତୁ ବାବୁଲାଙ୍କ ପାଇଁ ଟଫି ଆଣେ । ତା କାନ୍ଧରୁ ଝୁଲୁଥିବା ମୋଟା ନେଳି ବ୍ୟାଗ୍ ଭିତରୁ ମ୍ୟାଜିକ୍ ପରି ବିଭିନ୍ନ ଫଟୋ, ବିଦେଶୀ ମାଗାଜିନ୍ କାଢ଼ି ଦେଖାଏ । ତା ଲେଖା, ଅଭିଜ୍ଞତା ବିଷୟରେ ଗପେ ରବିବାବୁ ଓ ସୁଷମା ଆଗରେ । ବେଳେ ବେଳେ କେବଳ ସୁଷମା ଆଗରେ । କହେ ଯେ ବିଭିନ୍ନ ସ୍ଥାନରେ ତା'ର ଆଗ୍ରହ, ମଣିଷଙ୍କଠି ଓ ମଣିଷଙ୍କ ସାଙ୍ଗେ ସମ୍ପର୍କରେ ତାର ଆଗ୍ରହ । ବିନା ପରିସ୍ଥିତି ଓ ଉପକ୍ରମଣିକାରେ ଦିନେ ତା ମୋଟା ନେଳି ମୁଣି ଭିତରୁ ଏଇ ଲେଟରପ୍ୟାଡ୍‌ଟି କାଢ଼ି ଉପହାର ଦେଲା ସୁଷମାଙ୍କୁ, ତା ଯିବାର ପୂର୍ବଦିନ । ମନା କରିଦେବାକୁ ଯେମିତି ସୁଷମାର ମୁହଁରେ ଫୁଟିଲାନି । ସେ ପଚାରି ବି ପାରି ନଥିଲେ - ଏମିତି କାଗଜରେ ମୁଁ ଭଲା କାହାକୁ ଲେଖିପାରିବି ଚିଠି ? କାହିଁକି ମୋତେ ଦେଉଛ ?

ବୋଧେ ଦୀନେଶ୍ ଜାଣିଥିଲା ଯେ ସୁଷମାଙ୍କୁ ଲେଖି ହିଁ ଆସେ ନାହିଁ ସେ ପ୍ୟାଡ୍‌ଟି ଗୋପନରେ ରହିଛି ସେମିତି ଆଜିଯାଏଁ, ଆବିଷ୍କୃତ ହୋଇନାହିଁ । ସୁଷମା ନିଶ୍ଚିତ ଯେ ଆବିଷ୍କୃତ ହେଲେ ବି ତାର କହିବାର ନାହିଁ କିଛି, କୌଣସି ଅନୁଭବର ଚିହ୍ନ ନାହିଁ ତା ଦେହରେ - କେବଳ ହଠାତ୍ ସୁଷମାଙ୍କ ନିଜସ୍ୱ ଏକାନ୍ତତା ଭିତରୁ ବାହାରି ଯାଇ ସାଧାରଣ ପାଲଟିଯିବ ଯାହା ।

ସୁଷମା ଜରି କାଗଜର ଖୋଳ ଚିରିଲେ ଓ ରୀତୁର ଏକ୍‌ସର୍‌ସାଇଜ୍ ଖାତାରୁ ଚିରା କାଗଜରେ ଲେଖା ଚିଠିଟି କୋଟୀକମ ଚନ୍ଦନ ରଙ୍ଗ କାଗଜ ଉପରେ ବିଛାଇ ଧରିଲେ । ପଢ଼ିଲେ । ନିରୋଳା ସ୍ନେହର, ନୂଆ ଚମକଦିଆ ରୋମାଞ୍ଚର ମହକ ଆସୁଥିବା ଛୋଟ ଚିଠିଟିଏ ସତୀଶକୁ ରୀତୁର ସରଳ ଦୃଷ୍ଟିପରି, ସେଥିରେ ଫୁଲେଇପଣ, ଅଧାଛପା ଭାବ କିଛି ନାହିଁ । କଲୋନୀର ବୋଷ୍‌ବାବୁଙ୍କ ପୁଅ ସତୀଶ, ଚଷମାପିନ୍ଧା ସୁନ୍ଦର ଆଖି । ହସୁ ହସୁ ଓଠ ବୁଜେ ବାହାଡ଼ା ଦାନ୍ତ ଲୁଚାଇବା ପାଇଁ । ଏଇ ସେଦିନ ଯାଏଁ ଦୁହେଁ ସାଙ୍ଗ ହୋଇ ଖେଳୁଥିଲେ, ସେଦିନ ଯାଏଁ ଯେମିତି ରୀତୁ ତା ସାନ ଡେସ୍କରେ ପାଠ ପଢୁଥିଲା । ଡେଙ୍ଗା ହୋଇ ଡେସ୍କକୁ ବଳେଇଗଲା ବୋଲି ବଡ଼ ଟେବୁଲ ଚଉକି ଅଣାଗଲା ତା ପାଇଁ, ଏଇଠି ତ ଝୁଙ୍କି ପଡ଼ି ସ୍କୁଲପାଠ କରୁଥାଏ, ଅଙ୍କ କଷୁଥାଏ, ରଚନା ଲେଖୁଥାଏ ।

ପଢ଼ା-ଟେବୁଲ୍‌ରେ ମୁହଁ ମାଡ଼ି ଅଙ୍କ କଷୁ କଷୁ, ରଚନା ଲେଖୁ ଲେଖୁ ସୁଷମାଙ୍କୁ ବି ଅନ୍ୟ ମୁହଁ ଦିଶିଯାଏ । ଶେଷ ସ୍କୁଲ ଜୀବନରେ ସେଇ ସାବନା ଡେଙ୍ଗା ପିଲାଟି ଅରୁଣ । ସେ ଅଗତ୍ୟା ଫିକା ପଡ଼ିଆସିଲା ପରେ ପୁଣି ଥରେ ରବୀନ୍ଦ୍ର । ନା, ସେ କେବେ ପଢ଼ା ଟେବୁଲ୍‌ରେ ସ୍କୁଲ କଲେଜ ଖାତାରୁ ଫର୍ଦ୍ଦ କରି ଚିରି ନାହାନ୍ତି- ଖାତା ଉପରେ ପୃଷ୍ଠା ନମ୍ବର ଥାଏ, ପ୍ରମାଣ କେଉଁଠି ନାହିଁ ? ବହି ଉପରେ ମୁହଁ ମାଡ଼ି ନିଜକୁ ବିଶ୍ୱାସ ଦେଇ ଆସିଛନ୍ତି - ଏ କିଛି ନୁହେଁ, ଚାଲିଯିବ, ଯିବାକୁ ହିଁ ଦେବ ତାକୁ । ଏ ହେବା କଥା ନୁହେଁ । ଏ ଢ଼େଉ ବି - ଗତଥର ପରି ମୁଣ୍ଡ ପୋତି ଥାଏ ଗୋଡ଼ ସ୍ଥିର ଥାଉ ଭୂମିରେ ଜମା ନ ଘୁଞ୍ଚୁ । ନଇଁପଡ଼ି କୁଣ୍ଢେଇ ଧରିଥା ଆପଣାକୁ ।

ରୀତୁ ଖେଳନା ସାଇତିବାକୁ ଦିଏ ନାହିଁ । ତା ଅଳିରେ ତାଙ୍କର ଭୟ ହୁଏ ଚାହୁଁ ଚାହୁଁ ସାଇତା ଖେଳନାମାନ ମରିଯିବେ ରୀତୁବିନା । ତା 'ପରେ ରୀତୁ ଡରଡର, ରୀତୁର ମୁହଁ ପୋତା, କାନ୍ଧ କୁଞ୍ଚା ।

ଅଚିହ୍ନା ଆଗନ୍ତୁକଙ୍କୁ ଟ୍ରେ'ରେ ଚା' ଚଳଖିଆ ନେଇ ପରସିବ, ସ୍ୱାମୀ ପାଖେ ଓଢ଼ଣା ଟେକିବ ଜହ୍ନ ରାତିରେ ଲାଜମିଶା ଅନୁରାଗରେ ନୁହେଁ, ଶଙ୍କା ସ୍ୱାର୍ଥର ପଥର ଦୁର୍ଗ ଭିତରେ । ପଚିଶ ବର୍ଷ ହେଲାବେଳକୁ ଜୀବନର ସିଧା ପକ୍କା ରାସ୍ତା-ସେ ମୁଣ୍ଡରେ ଦିଶିଯାଉଥିବ, ଝିଅର ମ୍ୟାରେଜ୍ ପଲିସି, ପୁଅର ଡୁନ୍ ସ୍କୁଲରେ ସିଟ୍ । ବାସ୍ ତେଣିକି ଆଉ କିଛି ନାହିଁ ମୋ ପରି ଯୋଗାଭ୍ୟାସ କରି ଦେହ ସୁନ୍ଦର ରଖିପାରେ ।

ରାତୁ ଅଳି କରିବ - ନୂଆ କଣେଇ ଦେଇଦେ ମା, ମୁଁ ଖେଳିବି, ଗେଲ କରିବି । ନ ହେଲେ କେବେ ଆଉ ଦେବୁ ? ଚିଠି ଲେଖିବି ମା ପ୍ଲିଜ୍ । କେବେ ଆଉ ଲେଖିବି ? ତୋ'ପରି ସୁନ୍ଦରୀ ରହିବି, କ୍ଲିଭେଜ୍ ଦେଖାଇ ସିଫନ୍ ଶାଢ଼ି ପିନ୍ଧିବି, ହେଲେ ସତୀଶକୁ ଚିଠି ଲେଖି ଶେଷରେ 'ମାଇଁ ସୁଇଟେଷ୍ଟ କିସେସ୍' ବୋଲି ଚାରିପାଞ୍ଚଟା ନିର୍ଲଜ୍ଜ ତାରା ଚିହ୍ନ ଆଉ କେବେ ଦେଇପାରିବି ?

ରାତୁର ସମବୟସୀ ପାଇଟିଯାଆନ୍ତି ଆଉ ଏମିତି ଚିଠି ସହିତ ରାଇଟିଂପ୍ୟାଡ୍ ତା'ପଢ଼ା ଟେବୁଲ୍ ଡ୍ରୟାରରେ ଥୋଇ ଦିଅନ୍ତି । ସେ ଖୋଲି ଦୋଦୋପାଞ୍ଚ ହାତକୁ ନେଲାକ୍ଷଣି ପଛ ପାଖରୁ ଚମକାଇ ଦେଇ ତା' କାନ୍ଧ ଉପରେ ହସି ହସି ଲୋଟିଯାଆନ୍ତି ।

ବାହାରେ ଗାଡ଼ି ହର୍ଣ୍ଣ ଶୁଭିଲା । ସୁଷମା ବାହାର ବାରଣ୍ଡାରେ । ରବିବାବୁ ଗାଡ଼ି ଚାବି ଘୂରେଇ ଘୂରେଇ ବାରଣ୍ଡା ଉପରକୁ ଉଠିଲେ, କହିଲେ - କହ କହ ରଘୁକୁ ବାତୁ, ଭୀଷଣ ଭୋକ । ରହିଯାଇ ପେପର ଉଠାଇ ଆଖି ବୁଲେଇଗଲେ ଠିଆ ଠିଆ । ତା'ପରେ ତରବରରେ ପେପର ଥୋଇ ପଚାରିଲେ- 'ତମ ବନ୍‌ସାଇ କେତେଦୂର ଗଲା ? ଆମ କାକ୍‌ଟସ୍‌ଗୁଡ଼ା କିନ୍ତୁ ଚମତ୍କାର ହେଇଚି, ଆଉ କାହା ଘରେ ଏତେ ଆର୍ଟିଷ୍ଟିକ୍ ହେଇନି ?'

ବାରଣ୍ଡାର ବାହାର ପାଖ ଧାରକୁ ଇମ୍ଫ ଡଙ୍ଗା ପରି କୁଣ୍ଡରେ ବିଭିନ୍ନ ରକମର ସାନ ସାନ ନାଗଫେଣୀ, ତା' ମୂଳରେ ମାଟିସାରା ଢାଙ୍କି ଦେଇ ବିଛେଇ ଦିଆଯାଇଚି ଗୋଲ ବାଲିଗରଡ଼ା - ମାଟିଆ, ପାଉଁଶିଆ, ଧଳା । ସୁଷମାଙ୍କ ହାତର କାରିଗରି । ଗଛମାନ ସତେ କି ତିଆରି ହେଇଚି, ଦେଖିଲେ ବିଶ୍ୱାସ ହେଉନି, ସେଥିରୁ ଚେର ଯାଇ ସୁନ୍ଦର ସଜା ପଥରତକୁ ମାଟିରୁ ରସ ଟାଣି ଜୀଇଁଚି ବୋଲି ।

ସୁଷମାଙ୍କ ବିଶ୍ୱାସ ଫେରି ଆସୁଚି, ଗୋଡ଼ ଥାପି ହେଇଯାଉଚି ମାଟିରେ । ରବିବାବୁଙ୍କ ପଛେ ପଛେ ଘର ଭିତରକୁ ପଶି ଆସୁ ଆସୁ ତାଙ୍କୁ ବାଟ ଦିଶିଯାଚି । ରାତୁକୁ ଉପର ଆସନରୁ ଶାସନ କରିବା ଦରକାର ନାହିଁ, ତା'ପାଖରେ ବସି ସେ ତା' ମନ ଖୋଲିଦେବେ, ତା' କଥାକୁ ମାନିନେଇ ଆପଣା ଲୋକର ବିଶ୍ୱାସ ଦେବେ, ତା'ପରେ ହାତ ଧରି ବାଟ ବତେଇ ଦେବେ - ସ୍ନେହକୁ, ବନ୍ଧୁତାକୁ କିଏ ବାଟ ଓଗାଳିବ ? ତେବେ ମା' ସ୍ନେହ କି ବନ୍ଧୁତାରେ ତ ଜୀବନକୁ ଉଜାଡ଼ି ଦେଇ ହେବ ନାହିଁ ତୋ' ଜୀବନ ପାଇଁ ଯାହା କିଛି ସାଇତିବୁ ତୁ ନିଜେ ।

ଖାଇବା ଆରମ୍ଭ କରି ରବିବାବୁ ପଚାରିଲେ - ''ତମେ ଖାଇବନି ?''

ସକାଳୁ ଉପାସରେ ଅଛନ୍ତି ସୁଷମା, ଗରମ ଭାତ ତରକାରିର ବାସ୍ନା ଖେଳେଇ ହେଇଯାଉଚି ଘରସାରା । ହସି କହିଲେ - ''ମୋର ବ୍ରତ ଆଜି । ପରେ ଖାଇବି, ସାତ୍ତ୍ୱିକ ଖାଦ୍ୟ !''

- ''ବଡ଼ ରିଲିଜିୟସ୍ ହେଲଣି ପୁଣି ।''

'ପୁଣି'ର ମର୍ମ ହେଲା, କିଛି ବର୍ଷ ତଳେ ଦୁହେଁ ଯୋଗାଭ୍ୟାସ ଓ ଧ୍ୟାନ ଶିଖିଥିଲେ, ଅଭ୍ୟାସ ଛାଡ଼ିଗଲା - ପ୍ରଥମେ ରବିବାବୁଙ୍କର ତା'ପରେ ସୁଷମାଙ୍କର । ରବିବାବୁ ପୁଣି କହିଲେ - ''ହେଲେ ବ୍ରତ କଲ ଯଦି, ଚିହ୍ନା ବ୍ରତ ଉପାସ ଛାଡ଼ି ଏ ନୂଆଟା ଗୋଟିଏ ଧରିଲ କେମିତି ?''

ସୁଷମାଙ୍କର ମନେପଡ଼ିଲା ଲେଡ଼ିଜ୍ କ୍ଲବରେ ବିଭିନ୍ନ ନାରୀମାନଙ୍କ ଏଇ ବ୍ରତର ଫଳ ଲାଭ ବିଷୟରେ ବିଭିନ୍ନ ଅନୁଭୂତିମାନ କଥା । କହିଲେ - "ଠାକୁର ପୂଜା ତ ସେଇ, ନୂଆ ଆଉ କ'ଣ । ଯେଉଁ ରାସ୍ତା ମନକୁ ରୁଚିଲା, ସେଇ ଆଳରେ ଭଗବାନଙ୍କୁ ଡାକିବା କଥା ।"

ରବିବାବୁ ହୋ ହୋ ହସିଲେ ଅକାରଣ। "ନୂଆ ବାହାନାରେ ପୁରୁଣା ରାସ୍ତା, କ'ଣ କହୁଛ ? ନୂଆ କିଛି ଖୋଜୁଥିବ, ନୂଆ ଆଳରେ ପୂଜାରୀତି ଗୁଡ଼ିଏ ପୁଣି ମାନିବ - ତା'ପରେ ନିଜକୁ ସୁହେଇଲା ପରି ଯୁକ୍ତି କରିବ । କ'ଣ ଖଟା ଖାଇବା ପରା ମନା ଏ ବ୍ରତରେ ?"

- "ଥଟ୍ଟା କରନି । ଆମର ତ ସବୁ ବ୍ରତରେ ଏମିତି ନୀତି ନିୟମ ଥାଏ । ନିଷ୍ଠା, ତ୍ୟାଗ, ସଂଯମ ଶିଖିବା ଲାଗି ସେସବୁ ।"

ସୁଷମାଙ୍କୁ ଗମ୍ଭୀର ଦେଖି ରବିବାବୁ ଆଉ ଥଟ୍ଟା କଲେ ନାହିଁ। ପାଣି ପିଇବାକୁ ଯାଇ ଦେଖିଲେ ଗିଲାସ ଖାଲି, ଟେବୁଲର ପାଣି ଜଗ୍ ବି ଖାଲି । ସୁଷମା ଅନ୍ୟମନସ୍କ । ନିଜେ ଉଠି ବାଁ ହାତରେ ଫ୍ରିଜ୍ ଖୋଲିଲେ ଓ କହିଲେ -- "ସୁଷମା, ବଡ଼ ଗନ୍ଧ ହେଲାଣି ଫ୍ରିଜ୍‌ଟା ।"

ସୁଷମା ଚାହିଁଲେ - ଖୋଲା ଫ୍ରିଜରୁ ଆମ୍ବିଳିଆ ପଚା ଗନ୍ଧଟିଏ ଖେଳେଇ ହୋଇ ଆସୁଚି ପଙ୍ଖା ପବନରେ ।

ସୁଷମା ବିହ୍ୱଳ ଚକିତ ହେଲା ପରି ପଚାରିଲେ - "କୋଉଠୁ ଆସୁଚି ଏ ଗନ୍ଧ ?"

- "ତମ ଫ୍ରିଜ୍‌ରୁ, ଆଉ କୋଉଠୁ ?" ରବିବାବୁ ଏଥର ଥଟ୍ଟା ସମ୍ଭାଳି ପାରିଲେ ନାହିଁ -"ତମ ହାଉସ୍-ହୋଲଡ୍ ଟିପ୍ସ ଲେଖା ମୋଟା ଖାତାଟି କୁଆଡ଼େ ଗଲା ?"

ବିଚିକିଚିଆ ଗନ୍ଧ ନାକରେ ବାଜୁଚି, ଅପମାନ ଲାଗୁଚି । "କାହିଁକି ମୋତେ ଦୋଷ ଦିଅ ସବୁ କଥାରେ ?"

-"ଆରେ ବାବା ଦୋଷ ନୁହେଁ, ଦୋଷ ନୁହେଁ । ମୋର ଚିନ୍ତା ହେଲା ଏ ଆମ୍ବିଳା ଗନ୍ଧରେ ତ ଦେହ, ମନ ଭରିଗଲା, ଆଉ ତମର ଶୁକ୍ରବାର ବ୍ରତ ହେବ କ'ଣ ?"

ସ୍ୱାମୀ ଗଲାପରେ ସୁଷମା ବସି ରହିଲେ । ତାଙ୍କ ତଣ୍ଡି ଆରପାଖେ ଏତେ ଗରମ ବାମ୍ଫ ଯେ ଆଖି ପକେଇ ଧୂଆଁ ପୋଡ଼ି ଉଠୁଚି, ଓଠ ଶବ୍ଦ ଆସିବା ପାଇଁ ସବୁ ରାସ୍ତା ବନ୍ଦ । ନ ରହୁ ଶୁକ୍ରବାର ବ୍ରତ । କାହାଲାଗି ମୁଁ ମାନସିକ କରିଚି, କାହାଲାଗି ଏତେ କଥା ସତେଜ ସବୁଜ କରି ସାଇତି ରଖୁଚି ? ମୁଁ ହିଁ ଦାୟୀ ହେବି, ତମ ଅଟ୍ଟାକୁ ଜଗୁଥିବି ?

ରଘୁ ଆସି ଟେବୁଲ୍ ପୋଛିଲା। ସୁଷମାଙ୍କ ନିଜ ହାତ ତିଆରି ସାତ୍ତ୍ୱିକ ଆହାର ଆଣି ରଖିଲା । ସୁଷମା ଡାଲ୍ନୀ ଖୋଲିଲେ, ତୀକ୍ଷ୍ଣ ସ୍ୱରରେ ପଚାରିଲେ-"ଏଥିରେ ହାତ ମାରିଥିଲୁ ? ଡାଲ୍ନୀ ଖୋଲିଥିଲୁ ?"

-"ନାଇଁ ତ ମା ।"

- "ନାଇଁ ତ ଏ ଗନ୍ଧ ଆସୁଚି କେଉଁଠୁ ? ଅଳସୁଆ ଠକ, ଆଜି ସକାଳୁ କି କାମ ସବୁ କରିପକେଇଚୁ ଶୁଣେ ?"

କେତେବେଳ ଭଲା ଚୁନି ରହିଥିବି ମୁଁ ? ଶବ୍ଦମାନ ଏଥର ସଳଖ ସ୍ରୋତରେ ବହିଆସୁଚନ୍ତି । ରଘୁ କେତେବେଳୁ ବାରିପାଖେ ଅଦୃଶ୍ୟ ହେଲାଣି । ତା ମନ ହେଲେ ଯାଉ କାମଛାଡ଼ି, ମୁଁ ଡରି ନାହିଁ । ତାଙ୍କ ତଣ୍ଡି ଝିନ୍ ଝିନ୍ ଲାଗି ଦେହଯାକ ଝାଳ ଫିଟିଆସିଲା । ଗଳା ଶୁଖିଯାଇ ପୋଡ଼ି ଉଠିଚି, ଅଭ୍ୟାସବଶତଃ ସେ ଫ୍ରିଜ୍ ଖୋଲିଲେ ପାଣି ଲାଗି ଓ ସେତିକିବେଳେ ଆମ୍ବିଳିଆ ମହକଟି ତାଙ୍କ ନାକରେ ବାଜିଲା ଓ ଚାହୁଁ ଚାହୁଁ ତାଙ୍କ ଦେହଯାକ ଆଉଁସି ତାଙ୍କୁ ନରମେଇ ଦେଲା । ରାଗରେ ତେଜ ମଉଳି

ଯାଇ ସେ କୁକୁରି ଗଲେ ଓ ସେଇଠି ଗୋଡ଼ ଭାଙ୍ଗି ବସି ପଡ଼ିଲେ ଖୋଲା ଫ୍ରିଜ୍ ତଳେ । କୋଉଠୁ ଆସୁଚି ଏ ଗନ୍ଧ ? କେଉଁ ଯତ୍ନେ ସାଇତା ଖାଦ୍ୟରୁ, କେଉଁ ଚକ୍ ଚକ୍ ବାସନର ଚିପା ଘୋଡ଼ଣୀ ଠେଲି, କେଉଁ ସବୁଜ ପରିବାର ମଞ୍ଜି ଭିତରୁ ? ଖଟା ଗନ୍ଧ ନାକବାଟେ ଯାଇ ଆଉଟି ଦେଉଚି ପେଟ ଭିତର, ସୁଲୁ ସୁଲେଇ ଦେଉଚି ଦାନ୍ତମୂଳ, ପାଚକ ରସ ଝରି ପାଟି ଭିତରଟା ସାରା ଖଟା । କେଉଁ ଛଟକରେ ପଶିଲା ବାହାଘର ଉଷୁମ ପବନ ଭିତରକୁ । ଭିତରର ଥଣ୍ଡା ତାଙ୍କୁ ଆବୋରି ପକାଉଚି, ନିଜ ଭିତରକୁ ଟାଣି ନେଉଚି ।

ସେ ଜାଣିନ୍ତି ସେ ଲଢ଼ିବେ, ଲଢ଼ି ପାରିବେ । ଭିତର ଥଣ୍ଡାକୁ ବଞ୍ଚେଇ ରଖିବେ, ବାହାରର ଉଷୁମ ଜୀବାଣୁ ଦାଉରୁ । ତଥାପି ନିଜକୁ ସମର୍ପି ଦେଇ ସେ ବସିଥାଆନ୍ତି ଥଣ୍ଡା ଗରମ ହାବୁକାମାନଙ୍କ ଭିତରେ - ଆମ୍ବିଳା ପଚା ମହକ ଭିତରେ ଦେହ ଗୋଟା ଓ ପୂରା ଜିଭଟି ଡୁବେଇଦେଇ ।

# ଅଙ୍ଗାର ଭୂଇଁର ମାଛିମାନେ ଓ ମେଫିଷ୍ଟୋଫେଲିସ୍‌କୁ ନେଇ ଶେଷ ଗଳ୍ପ

**ଜଗଦୀଶ ମହାନ୍ତି**

ଦେ' ବାବୁଙ୍କ ମୃତ୍ୟୁର ସାଢ଼େପାଞ୍ଚଘଣ୍ଟା ପୂର୍ବରୁ ହସ୍‌ପିଟାଲ ବାରଣ୍ଡାରେ ଖୋସ୍‌ଲା, ଯୋଶୀ ଓ ମହାନ୍ତି ଦ୍ୱିତୀୟଥର ପାଇଁ ତାଙ୍କର କ୍ୟାଜୁଏଲ ଲିଭ୍ ନେଇ ବସି ରହିଥିଲେ । ମୃତ୍ୟୁର ପନ୍ଦର ଦିନ ପୂର୍ବରୁ ଦେ'ବାବୁଙ୍କମୃତ୍ୟୁପ୍ରତୀକ୍ଷାରେନେଇଥିବାସି.ଏଲ୍.ଟିବ୍ୟର୍ଥହୋଇଯାଇଥିବାରୁମନଦୁଃଖରେସେଦିନ ସନ୍ଧ୍ୟାବେଳେ ଯୋଶୀ ତା'ସ୍ତ୍ରୀକୁ ନେଇ ଫିଲ୍ମ ପଳେଇଥିଲା, ଖୋସ୍‌ଲା ଆଉ ଜଣକ ସାଙ୍ଗରେ ମଦ ପିଇଥିଲା ଓ ମହାନ୍ତି ବୋର୍‌ହୋଇ ହୋଇ ଶେଷରେ କ୍ଲବକୁ ଯାଇ ରମି ଖେଳି ପାଞ୍ଚଟଙ୍କା ଅଣୀପଇସା ହାରିଯାଇଥିଲା ।

ଗତକାଲି ରାତିରେ, ଅର୍ଥାତ୍ ଦେ'ବାବୁଙ୍କ ମୃତ୍ୟୁର ଆନୁମାନିକ ସାଢ଼େ ବାରଘଣ୍ଟା ପୂର୍ବରୁ ଓଭରମ୍ୟାନ ଗୋପାଳ ବିଶ୍ୱାସ ଆସି ଖବର ଦେଇଥିଲା ଯେ ଦେ'ବାବୁ ସିରିୟସ୍ ଓ ତାଙ୍କ ପାଇଁ କାଠ ଯୋଗାଡ କରିବାକୁ ପଡିପାରେ, ତେଣୁ ଡାକ୍ତର ଦେ'ବାବୁଙ୍କ ବନ୍ଧୁ ବାନ୍ଧବମାନଙ୍କୁ ଡାକିଦେବାକୁ କହିଲେ ।

ଯୋଶୀ, ଖୋସ୍‌ଲା ଓ ମହାନ୍ତି ହସ୍‌ପିଟାଲରେ ପହଞ୍ଚିଲା ବେଳକୁ ଦେ'ବାବୁଙ୍କୁ ସାଲାଇନ୍ ଲାଗିଥିଲା ଓ ନର୍ସ ତା' ଡ୍ୟୁଟିରୁମ୍‌ରେ ଟେବୁଲ ଉପରେ ମୁଣ୍ଡ ଥୋଇ ଶୋଇଯାଇଥିଲା । ଦେ'ବାବୁ ନିଦରେ ଶୋଇଥିଲେ ଓ ତାଙ୍କ ଭାଇ ବସି ବସି ନଭେଲ ପଢୁଥିଲା । ମୃତ୍ୟୁର ଚିହ୍ନବର୍ଣ୍ଣ କୌଣସିଠି ନଥିଲା ଏବଂ ନିଦରୁ ଉଠି ନର୍ସ କହିଲା ଯେ ଆଜି ରାତିରେ କୌଣସି ଚାନ୍‌ସ ନାହିଁ । ଡାକ୍ତର ଆସିଥିଲେ, କୋରାମିନ୍, ଡେକ୍‌ସାମେଥାସନ ଓ ସାଲାଇନ୍ ଦିଆହେଲା । ନ ହୋଇଥିଲେ ହୁଏତ ଏବେକୁ ସରିଯାଆନ୍ତାଣି ।

ନର୍ସ କ୍ଲାନ୍ତ ଦେଖାଯାଉଥିଲା ଓ କହିଲା ଯେ ଏମିତି ଟାଣି ସଟାରିକି ବଞ୍ଚେଇ ରଖିବାର କୌଣସି ମାନେ ହୁଏନା । ମରିଗଲେ ଦେ'ବାବୁ ଆହୁରି ରକ୍ଷା ପାଇଯିବେ ।

ନର୍ସର କଥାଟି ସେମାନଙ୍କୁ ଆଦୌ କର୍କଶ ଓ ଅମାନବିକ ମନେ ହେଲାନି । ଖୋସ୍‌ଲାର ମନେହେଉଥିଲା, ନର୍ସଟି ଯଦି ମୃତ୍ୟୁର ଦେବୀ ହୁଅନ୍ତା, ତେବେ ମୃତ୍ୟୁ ଭଳି ରୋମାଣ୍ଟିକ୍ କିଛି ଆଉ ବାକି ରହନ୍ତାନି । ଯୋଶୀ, ଖୋସ୍‌ଲା ଓ ମହାନ୍ତି ନର୍ସର କଥାରେ ଏକ ବାକ୍ୟରେ ରାଜିହୋଇ ତଥାପି ଉଠିବେ ଉଠିବେ କରି ଆହୁରି ଘଣ୍ଟେ ଦେଢଘଣ୍ଟା କାଳ ହସ୍‌ପିଟାଲ ବାରଣ୍ଡାରେ ବସି ଖଣି ଉତ୍ପାଦନ, ନୂଆ ଡେପୁଟି ସି.ଏମ୍.ଇ. ଭାବରେ ପ୍ରମୋଶନ୍ ପାଇଥିବା ପୁରୁଣା ମ୍ୟାନେଜରର ଦୌରାତ୍ମ୍ୟ ଓ ସାଙ୍ଗସାଥିଙ୍କୁ ଚୁଗୁଲି କରିବାରେ ବ୍ୟସ୍ତ ରହିଲେ । ସେମାନଙ୍କ କଥାବାର୍ତ୍ତା ଭିତରେ ସେମାନେ ତିନିହେଁ ଆଠଟି ସିଗାରେଟ ଖର୍ଚ୍ଚ କରିସାରିଥିଲେ ଓ ସେ ଆଠଟି ସିଗାରେଟ୍ ଯୋଶୀର ଥିବାରୁ ତା'ର ମନ ଖରାପ ହୋଇଯାଇଥିଲା । ମନ ଖରାପର ପ୍ରଥମ କାରଣ ହେଲା, ଆଜିକାଲି ସିଗାରେଟ୍‌ର ଦାମ୍

ଯେତେ ହେଲାଣି ଗୋଟେ ସିଗାରେଟ କାହାକୁ ଯାଚିବା ମାନେ ଛାତିରୁ ଆଞ୍ଜୁଳାଏ ରକ୍ତ କାଢି ଫୋପାଡି ଦେବା ଭଳି । ଦ୍ୱିତୀୟତଃ, କାଲି ସକାଳେ ବେଡ୍ ଟି' ପରେ ଗୋଟେ, ପାଇଖାନରେ ଦୁଇଟି ଓ ବ୍ରେକ୍‌ଫାଷ୍ଟ ପରେ ଅନ୍ତତଃପକ୍ଷେ ଗୋଟିଏ - ଏମିତି ଭାବରେ ଚାରିଟି ସିଗାରେଟ ତା'ର ଅତି ଆବଶ୍ୟକୀୟ ଓ ଏଇମାତ୍ର ପ୍ୟାକେଟର ଶେଷତମ ସିଗାରେଟଟି ବି ମହାନ୍ତି ଲଗେଇ ଦଳିମକଚି ଖାଲି ପ୍ୟାକେଟକୁ ଫୋପାଡି ଦେଲା ପରେ ଯୋଶୀର ତୃତୀୟ ଅବଶୋଷଟି ହେଲା, ହାୟ ଅନ୍ତିମ ସିଗାରେଟଟି ଭଲା ମୁଁ ଟାଣି ପାରିଥା'ନ୍ତି ।

ଦେ'ବାବୁଙ୍କର କ୍ୟାନ୍‌ସର ଜଣାପଡିବାର ଦି'ବର୍ଷ ହୋଇସାରିଥିଲା ଓ କଲିକତାରେ ସେ ଗୋଟେ ଅପରେସନ୍ ବି କରାଇଥିଲେ, ଯାହା କହିବା ବାହୁଲ୍ୟ, ଅସଫଳ ହିଁ ହୋଇଥିଲା । ପାଞ୍ଚମାସ ତଳେ ଡାକ୍ତର ତାଙ୍କୁ ସିଧାସଳଖ କହିଦେଇଥିଲେ ଯେ, ତାଙ୍କର ଆଉ ବେଶି ଆଶା କରିବା ଉଚିତ୍ ନୁହଁ ଓ ତା'ପରଠୁ ଦେ'ବାବୁ, ଯିଏ ତଥାପି ଆତ୍ମବିଶ୍ୱାସର ସହ ଏକାକୀ କଲିକତା ଯାଉଥିଲେ, ଆଠଘଣ୍ଟା ଡ୍ୟୁଟି କରୁଥିଲେ, ହଠାତ୍ ଶଯ୍ୟାଶାୟୀ ହୋଇ ପଡିଲେ, କଠିନ ଖାଦ୍ୟ ପଦାର୍ଥ ହଜମ ହେଲାନି ଓ କ୍ରମଶଃ ବାନ୍ତି ଓ ପତଳା ଝାଡା ବଢିବାକୁ ଲାଗିଲା ଓ ପାଞ୍ଚମାସ ଭିତରେ ତାଙ୍କର ଦେହରେ କେବଳ ଚମଡା ଓ ହାଡତକ ହିଁ ବାକି ରହିଯାଇଥିଲା ।

ଆଜି ଦ୍ୱିତୀୟଥର ହସ୍‌ପିଟାଲ ବାରଣ୍ଡାରେ, ଏଇ ସକାଳଟାରେ ଦେ'ବାବୁଙ୍କ ମୃତ୍ୟୁ ପ୍ରତୀକ୍ଷାରେ ବସିଥିଲା ବେଳେ ଡାକ୍ତର ଆସି ଘୋଷଣା କଲେ ଯେ ଦେ'ବାବୁ ଆପାତତଃ ଭଲ ଅଛନ୍ତି ଓ ଏବେ ତାଙ୍କର ମୃତ୍ୟୁର କୌଣସି ଚାନ୍‌ସ ଦେଖାଯାଉନି । ତେବେ, ତାଙ୍କ ପକ୍ଷରେ କହିବା ସମ୍ଭବ ନୁହେଁ ଯେ କେତେବେଳେ ମୃତ୍ୟୁ ହୋଇଯିବ । ହୁଏତ ପାଞ୍ଚମିନିଟ୍ ଭିତରେ ବି ତାଙ୍କର ଅବସ୍ଥା ସିରିୟସ୍ ହୋଇ ଯାଇପାରେ, ନ ହେଲେ ଦି' ତିନିଦିନ ବି ଗଡିଯାଇପାରେ ।

କ୍ରମଶଃ ହସ୍‌ପିଟାଲରେ ଭିଡ ବଢୁଥିଲା ଓ ଆଉଟଡୋର୍‌କୁ ଆସୁଥିବା ରୋଗୀମାନେ, ତରତର ହୋଇ ଧାଉଁଥିବା ନର୍ସମାନେ, ହସ୍‌ପିଟାଲ ଦେଖି ଇଞ୍ଜେକ୍‌ସନ ଭୟରେ କାନ୍ଦୁଥିବା ପିଲାମାନଙ୍କର ପାଟିତୁଣ୍ଡରେ ଦେ'ବାବୁଙ୍କ ମୃତ୍ୟୁ ପ୍ରତୀକ୍ଷାରେ ବସିଥିବା ତିନିଜଣ ଲୋକ ଯୋଶୀ, ଖୋସ୍‌ଲା ଓ ମହାନ୍ତି ମହତ୍ତ୍ୱହୀନ ହୋଇପଡିଥିଲେ ଓ ରାତିରେ ଯେମିତି ସେମାନଙ୍କୁ ଫାଙ୍କା କରିଡର୍‌ରେ ଗୁରୁତ୍ୱପୂର୍ଣ୍ଣ ମନେ ହେଉଥିଲା, ସେମିତି ମନେ ହେଲାନି ।

ଦିନ ନଅଟା ପଇଁଚାଳିଶି ବେଳକୁ କରିଡର୍‌ରେ ଯୋଶୀ, ଖୋସ୍‌ଲା କି ମହାନ୍ତି ନଥିଲେ । ସେତେବେଳେ ଦେ'ବାବୁଙ୍କର ପଲ୍‌ସ ମିଳୁ ନଥିଲା ଓ ଡାକ୍ତର ନର୍ସମାନେ ଦଉଡାଦଉଡି ଆରମ୍ଭ କରିଦେଇଥିଲେ । ଅଧଘଣ୍ଟାକ ପରେ ସାଲାଇନ ଲାଗିଥିଲା ଦେ'- ବାବୁଙ୍କ ହାତରେ ଓ ତାଙ୍କ ପୁତ୍ରରା ପାଖରେ ବସି ବୋର୍ ହେଉଥିଲା । ଯୋଶୀ, ଖୋସ୍‌ଲା ଓ ମହାନ୍ତି ନ ଥିବାରୁ ଡାକ୍ତର ଜଣକ ନର୍ସକୁ କହିଥିଲେ ଯେ ଏଇ ଯାତ୍ରାରୁ ବି ଦେ'ବାବୁ ଆପାତତଃ ବଞ୍ଚିଗଲେ ।

''ତାଙ୍କ ପାଖରେ ବିଧବାର କୌଣସି ଲକ୍ଷଣ ହିଁ ଦେଖାଯାଉ ନଥିଲା, ମୁଣ୍ଡରେ ସିନ୍ଦୁର ଉଜ୍ଜଳ ହିଁ ଦେଖାଯାଉଥିଲା ଏବଂ ପାଦରେ ଅଳତା ।'' କାନରେ ପିନ୍ଧିଥିବା ଇମିଟେସନ ଓ ଚୁଡି ଏବଂ ହାର ଓ ସାଢୀର ରଙ୍ଗ-କ୍ୱାଲିଟି, ଏମିତିକି କେମିତି ସେ ମୁଣ୍ଡ କୁଣ୍ଡେଇଥିଲେ ଓ କେଉଁ ରଙ୍ଗର ଟିପା କପାଳରେ ପିନ୍ଧିଥିଲେ ସେସବୁର ଗୋଟେ ଡିଟେଲ ବର୍ଣ୍ଣନା ପ୍ରତିମା ଅଧିକାରୀ ନାଁରେ ଥିବା ନର୍ସଟି ଦେଇଥିଲା । ଦେ'ବାବୁଙ୍କ ମୃତ୍ୟୁର ପୂର୍ବଦିନ ସଂଧ୍ୟାରେ ରୋଗୀପାଇଁ ପଥ୍ୟ ଆଣିଥିବା ମିସେସ୍ ଦେ' ସଂଧ୍ୟା ଡିଉଟିରେ ଥିବା ନର୍ସ ପ୍ରତିମା ଅଧିକାରୀ ପାଖରେ କହିଥିଲେ । ''ଏତେଦିନ ସିଏ ବେମାର

ପଡିଲେ, ଅଥଚ ଏମିତି କେବେ ବି ଲାଗି ନଥିଲା । ଆଜି ମୋତେ ଲାଗୁଛି ଯେମିତି କଣ ମୁଁ ହଜେଇ ଦେଇଚି । ଛାତି ଭିତରଟା ଭାରି ଫାଙ୍କା ଫାଙ୍କା ଲାଗୁଛି ।

ମିସେସ୍ ଦେ' ସୁନ୍ଦରୀ ମହିଳା ଥିଲେ କୁହାଯିବନି । ତଥାପି ତାଙ୍କର ଫେସନ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରୁଥିଲା । ଦେ' ବାବୁ ରୋଗରେ ପଡିବା ପରେ ବି ତାଙ୍କର ସାଜସଜ୍ଜାରେ ଉଣା ହୋଇ ନଥିଲା । ଅଥଚ ସିଏ ସଦାସର୍ବଦା ରିଜର୍ଭ ଥିଲା ବୋଲି ବାହାରକୁ ଜଣାପଡୁଥିବାରୁ କେହି ତାଙ୍କୁ ଭରସିକି ତାଙ୍କର ଏଇ ସମୟରେ ଫେଶନ କରିବାର ଔଚିତ୍ୟ ବିଷୟରେ ପଚାରି ପାରୁ ନଥିଲେ ।

ଦେ'ବାବୁଙ୍କ ଘରେ, ତାଙ୍କ ରୋଗଶଯ୍ୟାରେ ପଡିବା ପରଠୁ ତାଙ୍କର ଆସାମରେ ଥିବା ସାନଭାଇ, ଯିଏକି ସେଠି ଛୋଟିଆ ବିଜିନେସ୍ କରନ୍ତି ଓ ବଡଭାଇ ଯିଏକି ରିଟାୟାର୍ଡ କରି ପେନସନ୍ ଟଙ୍କାରେ ବଙ୍ଗଳାଦେଶ ଓ ପଶ୍ଚିମବଙ୍ଗର ସୀମାନ୍ତବର୍ତ୍ତୀ ବନଗାଁ ନାମକ ଛୋଟିଆ ସହରରେ ରହୁଛନ୍ତି. ଦିହେଁ ନିଜ ନିଜ ପରିବାର ନେଇ ଚାଲିଆସିଥିଲେ.

ଘରେ ସେମାନଙ୍କର ଗହଳି ଚହଳି ବି ଲାଗି ରହିଥିଲା ଓ ମନେ ହେଉଥିଲା ଯେମିତି କୌଣସି ବାହାଘର ହେଉଚି । ଘରେ ଯେ ଗୋଟେ ରୋଗୀ ଅଛି ଓ ସିଏ ମୃତ୍ୟୁଶଯ୍ୟାରେ - ଆଗନ୍ତୁକଙ୍କ ପକ୍ଷରେ ବୁଝିବା ସମ୍ଭବ ହୋଇପାରୁ ନଥିଲା । ଦେ'ବାବୁ ହସ୍‌ପିଟାଲରେ ଥିଲେ ଓ ତାଙ୍କ ଭାଉଜ ଆସିବାମାତ୍ରେ କନ୍ଦାକଟା ଆରମ୍ଭ କରି ଦେଇଥିଲେ ଓ ଶୁଣିବା କଥା, ସେଇ ଭାଉଜ କୁଆଡେ ଦେ'ବାବୁଙ୍କୁ ମଣିଷ କରିଥିଲେ ଓ ପୁତ୍ରପ୍ରତିମ ଦିଅରର ଯନ୍ତ୍ରଣା ଦେଖି ତାଙ୍କ ଆବେଗପ୍ରବଣ ନାରୀ-ମନର ସମସ୍ତ ମମତା ଓ କରୁଣା ତାଙ୍କର ଲୁହ ଆକାରରେ ଗଡିଆସିଥିଲା । ସେ ଦେ'ବାବୁଙ୍କୁ ହସପିଟାଲରୁ ଘରକୁ ନେଇଯାଇଥିଲେ ଓ ପଡୋଶୀମାନଙ୍କ ଭାଷାରେ, ଘରର ଏତେ ପାଟିତୁଣ୍ଡ, ଗହଳି ଚହଳିରେ ବ୍ୟସ୍ତହୋଇ ଦେ'ବାବୁ ପୁଣି ଜିଦ୍ ଧରି ବସିଲେ ସେ ହସପିଟାଲରେ ହିଁ ଭର୍ତ୍ତିହେବେ ।

ହସପିଟାଲରେ ମିସେସ୍ ଦେ'ଙ୍କୁ ଖୁବ୍ କମ୍ ଦେଖିବାକୁ ମିଳୁଥିଲା । ଦେ' ବାବୁଙ୍କ ପାଖରେ ପ୍ରାୟ ତାଙ୍କର ଛୋଟ ଭାଇ, ଯାହାଙ୍କୁ ଲୋକେ ଆସାମବାଲା ଭାଇ କହୁଥିଲେ, ରାତି ଦିନ ରହୁଥିଲା ଓ ମିସେସ୍ ଦେ'ଙ୍କୁ କୁଆଡେ ଦେ'ବାବୁ ଦେହରେ ହାତ ଲଗେଇ ଦେବାକୁ ଦଉନଥିଲେ ଓ ସବୁ ବିଷୟରେ ଛୋଟଭାଇ କିମ୍ବା ଭାଉଜଙ୍କୁ ହିଁ କରିବାକୁ କହୁଥିଲେ ବୋଲି ନର୍ସ ଜ୍ୟୋସ୍ନା ମିଶ୍ର ପ୍ରତ୍ୟକ୍ଷଦର୍ଶୀ ବିବରଣୀ ଦେଇଥିଲା । ଜ୍ୟୋସ୍ନା ମିଶ୍ରର ଭାଷାରେ 'ଦେ' ବାବୁଙ୍କର ମନଭିତରେ ଏକ ଅହେତୁକ ଓ ଚାପା କ୍ରୋଧ ଥିଲା ମିସେସ୍ ଦେ'ଙ୍କ ପ୍ରତି ।

ମିସେସ୍ ଦେଙ୍କୁ କିନ୍ତୁ ଦେ'ବାବୁ ଖୁବ୍ ଭଲ ପାଉଥିଲେ ଓ ବହୁତ ଶାଢୀ ଦେଇଚନ୍ତି ତାଙ୍କୁ ଓ କହିଛନ୍ତି ତାଙ୍କ ମୃତ୍ୟୁପରେ ମିସେସ୍ ଦେ' ଯେମିତି ଶାଢୀ ହିଁ ପିନ୍ଧନ୍ତି ବୋଲି । ଦେ'ବାବୁଙ୍କ ପଡୋଶୀ ଏବଂ ହସପିଟାଲରେ ରିସେପ୍‌ସନିଷ୍ଟ କାମ କରୁଥିବା ଆଉ ଜଣେ ବିଧବା ମିସେସ୍ ମହାପାତ୍ର କହୁଥିଲେ, ଯାହାଙ୍କର ସ୍ୱାମୀ ଛଅବର୍ଷ ତଳେ ହାର୍ଟ ଆଟେକ୍‌ରେ ମଲାପରେ କମ୍ପାନୀ ତରଫରୁ ତାଙ୍କୁ ଏ ଚାକିରୀ ମିଳିଛି ଓ ସେ ତାଙ୍କର ଦୁଇ ପୁଅଙ୍କୁ ପଢେଇ ମଣିଷ କରିବାର ସଂକଳ୍ପ ନେଇଛନ୍ତି । ବଡପୁଅ ଯାହାଙ୍କର ବାରମ୍ବାର ଆଇକମ୍ ଫେଲ୍ ହେଉଚି ଓ ସାନପୁଅ ପ୍ଲସଟୁ ସାଇନ୍‌ସରେ ପଢୁଚି । ଦେ'ବାବୁଙ୍କ ମୃତ୍ୟୁର ପାଞ୍ଚଦିନ ପୂର୍ବରୁ ମିସେସ୍ ମହାପାତ୍ର ଆଶ୍ଚର୍ଯ୍ୟ ହୋଇ କହିଥିଲେ ଦେ' ବାବୁଙ୍କ ଘରେ କିନ୍ତୁ କାହାରି ମନରେ ଦୁଃଖ କି ଶୋକର ଛାୟା ଦେଖିବାକୁ ମିଳୁନି ଓ ଏବେ ବି ତାଙ୍କର ଘରର ଖର୍ଚ୍ଚ ଆଗଭଳି ଅଛି । କେଜି କେଜି ମାଛ ଆସୁଛି ପ୍ରତିଦିନ ।

ମିସେସ୍ ଦେ' ଯେ ଅ'ଠ.ପାଞ୍ଚଟା ଲୋକଙ୍କ ପରି ଉପରକହି ଓ କୃପଣ ନଥିଲେ । ମିସେସ୍

ମହାପାତ୍ର କଥା ପ୍ରସଙ୍ଗରେ କହିଥିଲେ ଓ ଆଶ୍ଚର୍ଯ୍ୟ ହେଉଥିଲେ ଯେ କେମିତି ସେମାନେ ଏବେ ଏଇ ମେଡିକାଲ ଲିଭ୍‌ର ଯଦ୍ ସାମାନ୍ୟ ଟଙ୍କାରେ ସଂସାର ଚଳାଉଛନ୍ତି ବୋଲି ।

ଦେ' ବାବୁଙ୍କ ଚାରୋଟି ଝିଅ ହିଁ ଥିଲେ ଓ ପୁଅ ନଥିଲା ଓ ବଡ ଝିଅ ମୋନା ଦି ତିନି ବର୍ଷ ହେଲା ମ୍ୟାଟ୍ରିକ୍ ଫେଲ ହେଉଥିଲା ଓ ସମସ୍ତେ ଥିଲେ ଅତ୍ୟାଧୁନିକ ଫେଶନର ଭକ୍ତ । ସେମାନେ କଲିକତାରୁ ବିଉଟି ପାର୍ଲରରେ ବାଳ ଷ୍ଟାଇଲ କରି କଟେଇ ଆଣୁଥିଲେ ଓ ଚାରି ଭଉଣୀ ବିଭିନ୍ନ ଫେଶନର ସାର୍ଟ, ବ୍ଲାଉଜ, ମିଡି, ମ୍ୟାକ୍‌ସି ଇତ୍ୟାଦି ପିନ୍ଧୁଥିଲେ - ଯାହା ଏଇ କୋଇଲାଖଣି ଅଞ୍ଚଳର ସୋଡିୟମ ଲାଇଟ ଭଳି ଅତ୍ୟୁଜ୍ଜଳ ହୋଇଉଠୁଥିଲା ଏବଂ ଏ ଅଞ୍ଚଳର ସମସ୍ତ ଟିନ୍‌ଏଜରଙ୍କ ଛାତିତଳେ ଟ୍ରେନର ହୁିସିଲ ଶୁଣାଇବା ପାଇଁ ଯଥେଷ୍ଟ ଥିଲା ।

ସେଇ ଝିଅମାନେ, ଦେ' ବାବୁଙ୍କର ରୋଗଶଯ୍ୟାରେ ପଡିବା ପରେ ବି ନିତ୍ୟନୈମିତ୍ତିକ ଭାବରେ ସଂଧ୍ୟାରେ ବୁଲି ବାହାରୁଥିଲେ ଓ ନିଜ ନିଜ ଭିତରେ ହସାହସି ହେବା, ଟାହିଟାମ୍ପରା କରିବା ଓ ହସ ଖୁସି ହେବା ସେଇ ଖଣି ଅଞ୍ଚଳର ଲୋକମାନଙ୍କ ଆଖିରେ ସୁହାଉ ନଥିଲା । ଅବଶ୍ୟ ଖଣି ଅଞ୍ଚଳର ଲୋକମାନେ ଯେ ଭାରି ମିନ୍ ଓ ସେମାନେ ଖଣି ଓ ଘର ଓ ରେସନ୍ ଦୋକାନ ଓ ଟିଭି ସିରିୟଲ ଭଳି ଜୀବନ ବିତଭ/ସଂସାର/ପୃଥିବୀ/ଜୀବନର ଉଦ୍ଦେଶ୍ୟ ସବୁକିଛି ଭୁଲିଯାଇ ଗୋଟେ ଗୋଟେ ସଁବାଳୁଆ ଭଳି ହେଇଯାଇଛନ୍ତି - ସେକଥା ରାଜେଶ ମହାପାତ୍ର କଥାପ୍ରସଙ୍ଗରେ କହିଥିଲେ ।

ଦେ' ବାବୁଙ୍କ ମୃତ୍ୟୁ ସମ୍ଭାବନାରେ ଆଗରୁ ଆସି ଅପେକ୍ଷା କରିଥିବା ତାଙ୍କର ଦୁଇ ଭାଇଙ୍କର ଆର୍ଥିକ ପରିସ୍ଥିତି ସେତେ ଭଲ ନଥିଲା । ବଡ ଭାଇ ରିଟାୟାର୍ଡ କରିସାରିଥିଲେ ଚାକିରୀରୁ । ସେ ନିଃସନ୍ତାନ ଥିବାରୁ ବେଶ୍ କିଛିଦିନ ପର୍ଯ୍ୟନ୍ତ ଭାଇମାନଙ୍କୁ ସେ ପୁଅ ଭଳି ଦେଖୁଥିଲେ ଓ ମଣିଷ କରିଥିଲେ । ପରେ ସେ ଏକ ପୋଷ୍ୟପୁତ୍ର ରଖିଥିଲେ ଓ ସେ ପିଲାଟି ଏବେ ବାଇଶିବର୍ଷର ଓ ସେ କଲିକତାର ଫୁଟ୍‌ପାଥ୍‌ରେ ଲୁଗା ଦୋକାନ କରିଛି ।

ଦେ' ବାବୁଙ୍କ ବଡଭାଇ ବଙ୍ଗଳାଦେଶ ଓ ଭାରତ ସୀମାନ୍ତବର୍ତ୍ତୀ ବନ୍‌ଗାଁ ସହରରେ ରହୁଥିଲେ ବି ସେ ଏଠାରେ ସମସ୍ତଙ୍କୁ ତାଙ୍କ ଘର କଲିକତାରେ ବୋଲି କହୁଥିଲେ, ଯେମିତି କି ଅନେକ କହିଥା'ନ୍ତି । ତାଙ୍କ ପୋଷ୍ୟପୁତ୍ର କଲିକତାର ଫୁଟ୍‌ପାଥରେ ଲୁଗା ବ୍ୟବସାୟ କରେ କି କଲିକତାରୁ କିଣିନେଇ ଯାଇ ବନ୍‌ଗାଁରେ ବିକ୍ରିକରେ, ସେ ବିଷୟରେ ବିଶେଷକିଛି ଜଣାପଡୁ ନଥିଲା ।

ତେବେ, ସେଇ ପୋଷ୍ୟପୁତ୍ରଟି ତାଙ୍କର ନିଜ ଜାତିର ନଥିବା କଥା ଗୋପାଲ୍ ବିଶ୍ୱାସ ଖୁବ୍ ବିଶ୍ୱସ୍ତ ସୂତ୍ରରୁ ଜାଣିଥିବାର ପ୍ରକାଶ କରିଥିଲା । ଗୋପାଲ୍ ବିଶ୍ୱାସ ବଙ୍ଗାଳୀ ଥିବାରୁ ଓ ଦେ' ବାବୁଙ୍କ ପରିବାର ସହ ତା'ର ଓ ତା' ପରିବାରର ଘନିଷ୍ଠ ସମ୍ପର୍କ ଥିବାରୁ ଏ ସମ୍ପର୍କରେ ସନ୍ଦେହ କରିବାର ଅବକାଶ ନଥିଲା । ଗୋପାଲ୍ ବିଶ୍ୱାସ ଆହୁରି ଏକ ଗୋପନ ରହସ୍ୟ ଉଦ୍‌ଘାଟନ କରିଥିଲା ଯେ, ପୋଷ୍ୟପୁତ୍ର ଜଣକ ଥିଲା ଅବୈଧ ସନ୍ତାନ ।

ଦେ' ବାବୁଙ୍କ ମୃତ୍ୟୁ ଅପେକ୍ଷାରେ ତାଙ୍କ ବଡଭାଇଙ୍କ ରହଣି ସମୟକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ପ୍ରଥମ ରହଣି ଓ ଦ୍ୱିତୀୟ ରହଣି ସମୟ ମଝିରେ ବିଭାଜକ ସମୟଟି ଥିଲା ତାଙ୍କ ପୋଷ୍ୟପୁତ୍ରର ବିବାହ ଉତ୍ସବ । ଦେ'ବାବୁ ମୃତ୍ୟୁ ପୂର୍ବରୁ ତାଙ୍କ ପୁତ୍ରବଧୂର ମୁହଁ ଦେଖି ଯିବାକୁ ଚାହାନ୍ତି ବୋଲି ତାଙ୍କ ଭାଉଜ କହିଥିଲେ ଓ ବଡଭାଇ ତାଙ୍କ ପରିବାରକୁ ନେଇ ଗାଁକୁ ଚାଲି ଯାଇଥିଲେ । ଅବଶ୍ୟ ତାଙ୍କ ସାଙ୍ଗରେ ଦେ' ବାବୁଙ୍କ ମଝିଆଁ ଝିଅଟି ଯାଇଥିଲା ।

ବଡଭାଇ ନିଜ ପୋଷ୍ୟପୁତ୍ରର ବିବାହ ଉତ୍ସବରେ ଯୋଗ ଦେବାପାଇଁ ଗଲାବେଳେ ଦେ'ବାବୁ

ଭାରି ସିରିୟସ୍ ହୋଇପଡିଥିଲେ ଏବଂ ମଝିରେ ଥରେ ବାକ୍‌ଶକ୍ତିହୀନ ବି ହୋଇପଡିଥିଲେ । ତାଙ୍କ ଗଳାବାଟେ କୌଣସି କିଛି ଖାଦ୍ୟପଦାର୍ଥ ଗଳୁ ନଥିଲା ଓ ରକ୍ତ ନୁହଁ, କିନ୍ତୁ ମାଟିଆ ପାଣି ଭଳି କ'ଣ ସେ ବାନ୍ତି କରୁଥିଲେ । ସେତେବେଳେ ବଡଭାଇଙ୍କୁ ସମସ୍ତେ ମନେ ପକାଉଥିଲେ ଓ ଗୋପାଳ ବିଶ୍ୱାସର ସ୍ତ୍ରୀ ଭାରି ଦୃଢତାର ସହ, ଯେମିତିକି ଏଇୟା ହିଁ ଅବଧାରିତ, କହିଥିଲା ଯେ, ଦେ' ବାବୁଙ୍କ ପିଣ୍ଡରୁ ପ୍ରାଣ ଛାଡିପାରୁନି, ଖାଲି ବଡଭାଇଙ୍କୁ ଦେଖିବାପାଇଁ ଓ ତାଙ୍କୁ ଦେଖିଲେ ହିଁ ସେ ମରିବେ ।

ସେସବୁ ଘଟଣାର ବେଶ୍ କିଛିଦିନ ପରେ ବଡଭାଇ ଆସିଲେ ତାଙ୍କ ପୁଅ ଓ ବୋହୂକୁ ଧରି । ବୋହୂଟି ଖୁବ୍ ଗୋଟେ ସୁନ୍ଦରୀ ନଥିଲେ ବି ନୂଆ ବାହାହୋଇ ଆସିଥିବାରୁ ତାଜା ଦେଖା ଯାଉଥିଲା ଓ ସେ ଘରର କିଛି କାମ କରୁ ନଥିଲା । ଖାଲି ସ୍ୱାମୀ, ଦିଅର ଓ ନଣନ୍ଦମାନଙ୍କ ସହ କ୍ୟାରମ୍ ଖେଳିବା ଛଡା । ହସ୍‌ପିଟାଲର ନର୍ସମାନେ ନୂଆ ବୋହୂକୁ ଦେଖିବାକୁ ଭାରୀ ଉଦ୍‌ଗ୍ରୀବ ଥିଲେ, କିନ୍ତୁ ସେ ବୋହୂଟି କେବେ ବି ତା' କକାଶ୍ୱଶୁରକୁ ଦେଖିବାକୁ ହସ୍‌ପିଟାଲକୁ ଯାଇ ନଥିଲା ।

ସାନଭାଇ ଜଣକ ଆସାମର ଜୋର୍‌ହାଟ ଅଞ୍ଚଳରେ ଗୋଟେ ଛୋଟିଆ ଦୋକାନଟେ କ'ଣ ଦେଇଥିଲେ ଓ ଗତ ଆସାମ ଗଣ୍ଡଗୋଳ ବେଳେ ସେ ଡରିକି ପଳେଇ ଆସିଥିଲେ । ଏବେ ଆସାମ ପରିସ୍ଥିତି ଶାନ୍ତ ହେଲେ ବି ସେ ଡରୁଥିଲେ । ଜୋର୍‌ହାଟ ଯିବାକୁ ଓ ତାଙ୍କ ପାଖରେ ତିନୋଟି ବିକଳ୍ପ ଥିଲା । ପ୍ରଧମତଃ ବନଗାଁରେ ବଡଭାଇଙ୍କ ପାଖରେ ରହି ବ୍ୟବସାୟ କରିବା, ଦ୍ୱିତୀୟତଃ ଓଡିଶାରେ - ବିଶେଷକରି ଏଇ ଖଣି ଅଞ୍ଚଳରେ ରହିବା, ନଚେତ୍ ଆସାମ ଫେରିଯିବା । ପ୍ରଥମ ଦି'ଟା ଉପାୟ ଆପାତତଃ ଅବାସ୍ତବ ହୋଇପଡିଲେ ସେ ଠିକ୍ କରିନେଇଥିଲେ ଯେ ପୁଣି ଥରେ ଆସାମ ଫେରିଯିବେ, ହେଲେ ଜୋର୍‌ହାଟରେ ନୁହଁ, ସିଲଚରରେ ନୂଆ ବ୍ୟବସାୟ ଆରମ୍ଭ କରିବେ । କିନ୍ତୁ ସେଥିରେ ବି ତିନିଟା ସମସ୍ୟା ଥିଲା । ପ୍ରଥମତଃ ସିଲଚର ତାଙ୍କପାଇଁ ନୂଆ ଜାଗା ଓ ହଠାତ୍ ଛୁଆପିଲାଙ୍କ ସହ ଯାଇ ସେଠି ତେରେଇବା କାଠିକର ପାଠ । ଦ୍ୱିତୀୟତଃ ନୂଆ ଜାଗାରେ ନୂଆ ବିଜିନେସ୍ କରିବା ପାଇଁ ଯେଉଁ ଉଦ୍ୟମ ଲୋଡା, ତାଙ୍କର ବୟସ ଆଉ ସେଥିପାଇଁ ଅନୁମତି ଦେଉ ନଥିଲା । ତୃତୀୟତଃ ନୂଆ ବ୍ୟବସାୟ ପାଇଁ ତାଙ୍କ ପାଖରେ ପଇସା ନଥିଲା । ସାନଭାଇଙ୍କ ପାଇଁ ପ୍ରଥମ ଦି'ଟା ଅପେକ୍ଷା ଏଇ ତୃତୀୟ ସମସ୍ୟାଟା ହିଁ ଅତି ଭୟାନକ ମନେହେଉଥିଲା ।

ଦେ'ବାବୁଙ୍କ ସାନଭାଇ ସବୁବେଳେ ଦେ'ବାବୁଙ୍କୁ ଜଗିକି ବସୁଥିଲେ ଓ ତାଙ୍କର ଗୁହମୁତ କରୁଥିଲେ, କିନ୍ତୁ ତଥାପି ତାଙ୍କର କୌଣସି କଥାର ଦାମ୍ ରହୁ ନଥିଲା ବୋଲି ଗୋପାଳ ବିଶ୍ୱାସର ସ୍ତ୍ରୀ କହିଥିଲା । ସାନଭାଇଙ୍କର ସ୍ତ୍ରୀଙ୍କୁ କେବେ ବି ହସ୍‌ପିଟାଲରେ ଦେଖିବାକୁ ମିଳୁ ନଥିଲା ଓ ସେ ଆସି ପହଞ୍ଚି ଦେ' ବାବୁଙ୍କର ରୋଷେଇଘର ସମ୍ଭାଳି ନେଇଥିଲେ । ସାନବୋହୂ ହାତର ରୋଷେଇ ଯେ ଦେ' ବାବୁଙ୍କର କେତେ ପସନ୍ଦ, ସେ କଥା ହସ୍‌ପିଟାଲକୁ ପଥ୍ୟ ଧରି ଆସୁଥିବା ତାଙ୍କ ଭାଉଜ ବହୁତ ତୃପ୍ତିର ସହ କହୁଥିଲେ । ସାନଭାଇର ଗୋଟେ ପୁଅ ଥିଲା, ଯିଏ ହସ୍‌ପିଟାଲରୁ ଘରକୁ ଓ ଘରୁ ହସ୍‌ପିଟାଲକୁ ଯିବାଆସିବା କରୁଥିଲା ଓ ବାପା ହସ୍‌ପିଟାଲରେ ନଥିବା ବେଳେ ଦେ' ବାବୁଙ୍କୁ ଜଗି ବସୁଥିଲା ।

ସେ ପିଲାଟି ସମସ୍ତଙ୍କୁ କହୁଥିଲା ଯେ ଦେ' ବାବୁଙ୍କ ମୃତ୍ୟୁପରେ ତାକୁ ଏଇ ଖଣି ଅଞ୍ଚଳରେ ଚାକିରୀ ମିଳିବ, କାହିଁକି ନା ବଡବାପାଙ୍କ ପୁଅ ତ' ବିଜିନେସ୍ କରୁଚି, ଆଉ ତା' ଭଉଣୀମାନେ, ଅର୍ଥାତ୍ ଦେ' ବାବୁଙ୍କ ଝିଅମାନେ ତ' ଏବେ ଛୋଟ ଅଛନ୍ତି । ସେ ସମସ୍ତଙ୍କ ପାଖରେ କହୁଥିଲା ଯେ ଦେ' ବାବୁଙ୍କ ମୃତ୍ୟୁ ପରେ ସିଏ ହିଁ ପୂରା ପରିବାରର ବୋଝ ଉଠେଇବ ବୋଲି ।

ଦେ'ବାବୁଙ୍କ ମୃତ୍ୟୁର ଠିକ୍ ଦେଢଘଣ୍ଟା ପୂର୍ବରୁ ଇଲେକ୍‌ଟ୍ରିସିଆନ ନାଗେଶ୍ୱର ହୋଟେଲରେ ସେ କଥାଟି କହିଥିଲା । ନାଗେଶ୍ୱରର ଫ୍ୟାମିଲି ଉତ୍ତର ପ୍ରଦେଶର ଗୋରଖପୁର ଅଞ୍ଚଳରେ ଥିବା ତା' ଗାଁକୁ ଯାଇଥିଲେ ଓ ସେ ଖାଇବା ପାଇଁ ହୋଟେଲକୁ ଯାଉଥିଲା । ନାଗେଶ୍ୱର ଯଦିଓ ମୋତେ କହିଥିଲା ଯେ ସେ କଥାଟି ପ୍ରଥମଥର ପାଇଁ କହୁଚି ବୋଲି, ତଥାପି ମିସେସ୍ ମହାପାତ୍ରଙ୍କ ପାଖରୁ ଶୁଣିଲି ଯେ ନାଗେଶ୍ୱର ଏ କଥାଟି ଦୀର୍ଘ ଦୁଇମାସ ହେଲା ସମସ୍ତଙ୍କୁ କହି ଚାଲିଛି ।

ନାଗେଶ୍ୱରର ବୟାନ ଅନୁଯାୟୀ ସେଥର ଯେଉଁ ଲାଇନ ଗଲାନି (କୋଉଦିନ ଠିକ୍ ମନେକରି ହେଲାନି, କାରଣ ଏ ଖଣି ଅଞ୍ଚଳରେ ହମେଶା ଲାଇନ ଯାଉଥାଏ ଆସୁଥାଏ) ନାଗେଶ୍ୱର ଗ୍ରୀଡ୍‌କୁ ଯାଇଥିଲା ଠିକ୍ କରିବାପାଇଁ ରାଓ ବାବୁଙ୍କ ସାଙ୍ଗରେ । ସେଇଠି ଦରୱାନ ତାଙ୍କୁ କହିଲା, ଯେ ଦେ'ବାବୁଙ୍କ ବଡଝିଅ ମୋନା ଓ ସ୍ଥାନୀୟ ମ୍ୟାଟ୍ରିକ୍ ଫେଲ୍ ଅଥଚ ବେକାର ଗୋଟେ ଏହ୍ଲାବାଦୀ ଯୁବକ ସିଉମୋହନ ସାଙ୍ଗରେ ଇଟର ପଟର ହେଉଚି । ସେ ଓ ରାଓ ଦେଖିଲା ବେଳକୁ .... ସେ ସବୁ ଲଜ୍ଜାର କଥା ।

ନାଗେଶ୍ୱର କହିଥିଲା ଓ ତା'ପରେ ମନ୍ତବ୍ୟ ଦେଇଥିଲା ଯେ ଏସବୁ ମୋନାର ମା' ପାଇଁ । ମା'କୁ ଦେଖି ନାହାନ୍ତି - ସ୍ୱାମୀ ମୃତ୍ୟୁ ଶଯ୍ୟାରେ ଓ ସେ କେମିତି ଫେସନ କରୁଚି ।

ନାଗେଶ୍ୱର କଥାରେ ସାମ୍ନାରେ ବସିଥିବା ଅଟୋମେକାନିକ୍ ମାଝି ବିରୋଧ କରିଥିଲା ଏଇଯା କହି ଯେ ଉପରଠାଉରିଆ ଭାବରେ କାହାରିକୁ ଦୋଷ ଦେବା କଥା ନୁହେଁ । ଯେତେବେଳେ କି ଛୁଟିପାଇଁ ଅପେକ୍ଷା କରିଥିବା ଦରୱାନ ଦୁବେ ମହାରାଜ୍ ନାଗେଶ୍ୱର କଥାରେ ସଂପୂର୍ଣ୍ଣ ଏକମତ ହେଇ ଦେ'ବାବୁଙ୍କ ବିଷୟରେ କହିଲା ଯେ ଏମିତି ହିଁ ହୁଏ, ଦେବତା ଲୋକଙ୍କ ରାକ୍ଷସୀ ସ୍ତ୍ରୀ ।

ନାଗେଶ୍ୱର କହିଲା : ସ୍ତ୍ରୀଲୋକଟିର ସ୍ୱାମୀପ୍ରତି ଆଦୌ ସମ୍ମାନ ହିଁ ନାହିଁ । ଆମ ଘରେ ସ୍ତ୍ରୀ ଲୋକମାନେ ସ୍ୱାମୀକୁ କେତେ ସମ୍ମାନ ଦେଖାଇ ଆପଣ, ନିଅନ୍ତୁ ଦିଅନ୍ତୁ କହନ୍ତି - ଅଥଚ ସେ ମାଇକିନାଟି ସେଦିନ କହିଲା, ଦେ'ବାବୁ ଅମୁକ ଜିନିଷଟା ଖାଇବାକୁ ଚାହୁଁଚି ।

ପିଆଜ ପାଇ ନଥିବାରୁ ଦୁଃଖ ପ୍ରକାଶ କରୁଥିବା ଅଟୋମେକାନିକ୍ ମାଝି ଏକଥାରେ କହିଥିଲା ଯେ ବଙ୍ଗାଳୀମାନେ ସ୍ୱାମୀକୁ ସେ ଖାଉଚି, ସେ ଯାଉଚି ଭାବରେ କହିଥାନ୍ତି ଓ ସେଇଟା ତାଙ୍କର ଭାଷାର ଢଙ୍ଗ । ଏଥିପାଇଁ ମିସେସ୍ ଦେ'ଙ୍କୁ ଦୋଷ ଦିଆଯାଇ ନପାରେ । ଦୁବେ ମହାରାଜ କିନ୍ତୁ କହିଥିଲା : ଦେ'ବାବୁଙ୍କ ଘରକୁ ଏବେ ବି କିଲୋ କିଲୋ ମାଛ ଯାଉଚି : ହୋ ହଲ୍ଲା ଚାଲୁଚି । ଆତ୍ମୀୟ ସ୍ୱଜନମାନଙ୍କର ଯେମିତି କି ବାହାଘର ହେଉଚି । କାହାରି ଖାତିର୍ ନାହିଁ ଯେ ଗୋଟେ ଲୋକ ମରିବାକୁ ଯାଉଚି । ତା ଛଡା ସେମାନେ ଏତେ ଟଙ୍କା କୋଉଠୁ ପାଉଛନ୍ତି ଯେ ଏମିତି ଦିଲ୍‌ଦାର ଖର୍ଚ୍ଚ କରୁଛନ୍ତି । ତାଙ୍କର ଝିଅମାନେ ଓ ବିଶେଷକରି ମୋନା ଓ ଆହୁରି ସ୍ପଷ୍ଟ ଭାବରେ କହିଲେ ମିସେସ୍ ଦେ'ଙ୍କ ଚାଲିଚଳଣରେ କେମିତି ଗୋଟେ ସନ୍ଦେହ ହୁଏ ।

ମୋନା ବିଷୟରେ ଆଉ ଗୋଟେ ଚାଞ୍ଚଲ୍ୟକର ଖବର ହସ୍‌ପିଟାଲର ନର୍ସ ପ୍ରତିମା ଦିଦି ପ୍ରଚାରକରି ଦେଇଥିଲା, ଦେ'ବାବୁଙ୍କ ମୃତ୍ୟୁର ଅଢେଇଦିନ ପୂର୍ବରୁ । ସେଦିନ ପ୍ରତିମା ଦିଦିର ଇଭିନିଂ ଡ୍ୟୁଟି ଥିଲା ଓ ସେଲେବର ରୁମ୍‌ରୁ ବାହାରି କ୍ୟାଜୁଏଲିଟି ଆଡକୁ ଥିବା ଗଳିରେ ଯାଉଥିଲା ତରତର ହୋଇ ସିଣ୍ଟୋସିନ୍ ଇଞ୍ଜେକସନ ଆଣିବା ପାଇଁ । କରିଡରରେ ସେ ଦେଖିଥିଲା ଦୃଶ୍ୟଟି । ସେସବୁ ଥିଲା ନାଗେଶ୍ୱର ଭଳି ଭାଷାରେ ଲଜ୍ଜାର କଥା ଓ ସେଠି ବି ଥିଲା ମୋନା ଓ ତା'ସାଙ୍ଗରେ ଥିଲା

ତାର ଦାଦାପୁଅ ଭାଇ । ପ୍ରତିମା କହିଥିଲା, ସେ ସବୁ ଦେଖିଲା ପରେ ତାର ଦେହ ଶୀତେଇ ଉଠୁଥିଲା । ଛି ଛି ।

ଦେ'ବାବୁଙ୍କ ମୃତ୍ୟୁର ଅଢେଇଦିନ ପରେ ମିସେସ୍ ମହାପାତ୍ର ଏସବୁ ଅଭିଯୋଗର ଖଣ୍ଡନ କରିଥିଲେ । କିନ୍ତୁ ମିସେସ୍ ମହାପାତ୍ର ଆଉ ଗୋଟେ ଅଭିଯୋଗ କରିଥିଲେ, ଦେ'ବାବୁଙ୍କ ମୃତ୍ୟୁର ଦୁଇମାସ ଆଗରୁ । ସେଇ ଆଉ ଗୋଟେ ଅଭିଯୋଗର କଥା ଆଗେ । ସେତେବେଳେ ମିସେସ୍ ମହାପାତ୍ର କହିଥିଲେ ଯେ ତାଙ୍କର ବଡ ପୁଅ ରାଜେଶ ମହାପାତ୍ର, ଯିଏକି ଆଇକମ୍ ଫେଲ ହୋଇଚି ଏଥର ଓ ପଡାପଢି କରୁନି, ତାର ଚାଲିଚଳନ ଯାଙ୍କୁ ଭଲ ଲାଗୁନି । ସେ ହମେଶା ସିଉମୋହନ ଭଳି ପିଲା, ଯା ସାଙ୍ଗରେ ତାଙ୍କ ପୁଅର ଭାବ ଦୋସ୍ତି ହେବାର କୌଣସି କାରଣ ହିଁ ସେ ଦେଖିବାକୁ ପାଉ ନାହାନ୍ତି । ତା' ସାଙ୍ଗରେ ବୁଲୁଚି ଓ ମୋନାଟା ଏତେ ନିର୍ଲଜ୍ଜୀ ଓ ଉପରେପଡିଯେ, ଯେକୌଣସି ପୁଅ ଖରାପ ରାସ୍ତାରେ ଚାଲିଯିବ ।

ସେତେବେଳେ ମିସେସ୍ ମହାପାତ୍ର ଦେ'ଙ୍କୁ ହିଁ ଦାୟୀ କରିଥିଲେ, ମୋନା ସହ ଆଉ ତିନୋଟି ଝିଅ କେମିତି ଉଦ୍ଧତ ଓ ନଷ୍ଟ ହୋଇଯାଇଥିବାରୁ । କିନ୍ତୁ ଦେ'ବାବୁଙ୍କ ମୃତ୍ୟୁର ଅଢେଇଦିନ ପରେ ମିସେସ୍ ମହାପାତ୍ର କହିଥିଲେ ଯେ ନାଗେଶ୍ୱର ଯାହା କହୁଚି ସେବୁ ପୂରା ମିଛକଥା । ନାଗେଶ୍ୱର, ଯିଏକି ପୁରା ନମକହରାମ, କାହିଁକିନା ଦେ'ବାବୁ ତାକୁ କେତେ ଓଭରଟାଇମ୍ ଦେଇଚନ୍ତି - ସେ ହିଁ ଜାଣିଛି । - ଏବେ ମରିଗଲା ପରେ ନିନ୍ଦୁଚି । ମିସେସ୍ ମହାପାତ୍ର କହିଲେ, ସେଦିନ ରାତିରେ ମୋନା ଓ ସିଉମୋହନ ସାଙ୍ଗରେ ତାଙ୍କର ପୁଅ ରାଜେଶ ବି ଥିଲା ଓ ସେମାନେ କିଛି ଅନୈତିକ କାମ ବି କରିନାହାନ୍ତି - ଖାଲି ରାସ୍ତାରେ ବୁଲି ବୁଲି ମ୍ୟାଟ୍ରିକ ପରୀକ୍ଷା ବିଷୟରେ କଣ କଥାବାର୍ତ୍ତା କରିଥିଲେ ।

ପ୍ରତିମା ଦିଦିଙ୍କ ଏ ଅଭିଯୋଗ ବିଷୟରେ ମିସେସ୍ ମହାପାତ୍ର କହିଥିଲେ ଯେ ବଙ୍ଗାଳିମାନେ ଟିକିଏ ସ୍ମାର୍ଟ ଓ ଖୋଲା । ସେମାନଙ୍କ ଭାଇ ଭଉଣୀ ଦେହ ଘଷାଘଷି ହୋଇ ଠିଆହେବା ସ୍ୱାଭାବିକ ହୋଇଥାଏ, କାରଣ ସେମାନେ ସେଠି ଆବିଳତା ଦେଖନ୍ତି ନାହିଁ । ବାହାରର ଲୋକମାନେ ହୁଏତ ଯେହେତୁ ନିଜର ମନରୁ ଆବିଳତା ଛାଡି ପାରି ନଥାନ୍ତି କିମ୍ବା ନିଜେ ହିଁ ଆବିଳ, ତେଣୁ ସମସ୍ତଙ୍କୁ ସେମିତି ଭାବନ୍ତି ।

ଦେ'ବାବୁଙ୍କ ରୋଗଶଯ୍ୟାରେ ପଡିବା ଖବର ଏଇ ଖଣି ଅଞ୍ଚଳରେ ଏକ ବହୁ ପରିଚିତ ଘଟଣା ହୋଇସାରିଥିଲା । ଖଣି ଅଞ୍ଚଳର ସବୁ ଶିକ୍ଷକ, କର୍ମଚାରୀ ଓ ଅଫିସର ହସ୍‌ପିଟାଲ ଆସି ଦେ'ବାବୁଙ୍କୁ ଦେଖିଯାଉଥିଲେ । ପ୍ରତିଦିନ ସକାଳୁ ଖଣିଶ୍ରମିକ କିମ୍ବା କର୍ମଚାରୀ କିମ୍ବା ଅଫିସରମାନଙ୍କର ପରସ୍ପର ଦେଖାସାକ୍ଷାତ ହେଲେ ପରସ୍ପରକୁ ନମସ୍କାର କରିବା ପରେ ସେମାନଙ୍କର ପ୍ରଥମ ପ୍ରଶ୍ନ ହିଁ ହେଉଥିଲା ଯେ ଦେ'ବାବୁ ମଲେଣି କି ନାହିଁ ବୋଲି, ଯେମିତିକି ଏଇ ଆଶାରେ ସେମାନେ କାଲି ବିଛଣାକୁ ଯାଇଥିଲେ ଯେ ସକାଳକୁ ଉଠିବା ବେଳକୁ ଦେ'ବାବୁ ନ ଥିବେ ।

ଯା' ଅର୍ଥ ନୁହେଁ ଯେ ଦେ'ବାବୁ ଭଲଲୋକ ନ ଥିଲେ ଓ ଖଣିଅଞ୍ଚଳର ଲୋକେ ତାଙ୍କୁ ମୃତ୍ୟୁ ନିମନ୍ତେ ଅଭିସନ୍ଧାନ ନେଉଥିଲେ । ଦେ'ବାବୁ ଏଭଳି ଲୋକ ଯେ ଆଉ ଏ ଖଣି ଅଞ୍ଚଳରେ ମିଳିବେନି, ସମସ୍ତେ ଏକବାକ୍ୟରେ ସ୍ୱୀକାର କରିବେ । ଏମିତି କେହି ନାହିଁ ଏ ଖଣି ଅଞ୍ଚଳରେ ଯିଏ ଦେ'ବାବୁଙ୍କ ଦ୍ୱାରା ଉପକୃତ ନ ହୋଇଚି ଓ ଦେ'ବାବୁ ବି ଏମିତି ଭଦ୍ର ଓ ଅମାୟିକ ଲୋକ ଯେ ଯିଏ ଯାହା କହିଚି - ତା'ର ସେ କାମଟି ବଜାୟ ରହିଚି । ଏ ଅଞ୍ଚଳର ପ୍ରତିଟିଲୋକ ଓ୍ୱାର୍କସପ୍‌ରୁ ଯେତେବେଳେ ବି ଇଚ୍ଛା ତାଓ୍ୱା, ସଣ୍ଡଆସୀ, ଓ୍ୱାଟର ଫିଲ୍‌ଟର ଷ୍ଟାଣ୍ଡ, ଛତା, କୁରାଢୀ, କୋଦାଳ

ଯାହାକିଛି ମାଗିଛନ୍ତି, ଦେ'ବାବୁ ତୁରନ୍ତ ସେସବୁ ବନେଇବା ପାଇଁ ଅର୍ଡର ଦେଇଛନ୍ତି । ତାଙ୍କ ଅଧସ୍ତନ ଫିଟର, ଇଲେକ୍‌ଟ୍ରିସିଆନ୍, ଟର୍ଣ୍ଣର, ୱେଲ୍‌ଡରଇତ୍ୟାଦିମଧ୍ୟ ଏକଥାସ୍ୱୀକାରକରିବେଯେଦେ'ବାବୁଙ୍କ ସମୟରେ ସେମାନେ ଯଥେଷ୍ଟ ଫାଙ୍କି ମାରିଛନ୍ତି, ଯଥେଷ୍ଟ ଓଭରଟାଇମ ପାଇଛନ୍ତି ଓ ସେମାନଙ୍କ ନାଁରେ ଇଞ୍ଜିନିୟର ପାଖରେ ଖୁବ୍ କମ୍ ଅଭିଯୋଗ ଓ ଚୁଗୁଲି କରାହେଇଚି ।

ଦେ'ବାବୁଙ୍କ ଜୁନିଅର ରାଓବାବୁ ଯିଏ ଏବେ ୱାର୍କସପ୍‌ର ଚାର୍ଜରେ ଅଛନ୍ତି, ସିଏ ଠିକ୍ ଦେ'ବାବୁଙ୍କର ଓଲଟା ପ୍ରକୃତିର ବୋଲି ଲୋକମାନେ କହନ୍ତି । ରାଓବାବୁଙ୍କ ସମୟରେ କୋଇଲାଖଣି ଅଞ୍ଚଳର କୌଣସି ଲୋକ ଉପକୃତ ହେବାର କେହି ଜାଣିନାହାନ୍ତି । ଏମିତିକି କୌଣସି ବ୍ଲକର କି ଘରର ଫ୍ୟୁଜ୍ ଯଦି ଚାଲିଯାଇଥାଏ, ଫ୍ୟୁଜ୍ ଠିକ୍ କରିବା ପାଇଁ କହିବାକୁ ଯାଇଥିବା ଲୋକମାନେ ମଧ୍ୟ ରାଓ ବାବୁଙ୍କ ପାଖରୁ ହସିକି କଥାପଦେ ଆଦାୟ କରିପାରିନାହାନ୍ତି । ଅଧସ୍ତନ ଫିଟର, ଇଲେକ୍‌ଟ୍ରିକ୍‌ସିଆନମାନଙ୍କ ଓଭରଟାଇମ୍ ବନ୍ଦ ହୋଇଯାଇଥିଲା ଓ ସେମାନେ ଛିଙ୍କିଲେ ବି ଇଞ୍ଜିନିୟର ପାଖରେ ଖବର ହେଇଯାଉଥିଲା । ସବୁ ମିଶି ରାଓ ସବୁଠୁ ଆଲୋକପ୍ରିୟ ଓ ଇଞ୍ଜିନିୟରଙ୍କ ଭାଷାରେ 'ଦକ୍ଷ' ଫୋର୍‌ମ୍ୟାନ ଭାବରେ ନିଜକୁ ପ୍ରତିଷ୍ଠିତ କରିନେଇଥିଲା ଦେ'ବାବୁଙ୍କ ସ୍ଥାନରେ ।

ଖଣି ଅଞ୍ଚଳର ସମସ୍ତେ ଦେ'ବାବୁଙ୍କୁ ଦେଖିବାକୁ ଗଲାବେଳେ ରାଓ ଆଦୌ କେବେ ବି ଯାଇ ନଥିଲା ଓ ଦେ'ବାବୁଙ୍କ ମୃତ୍ୟୁର ଚାଳିଶି ଘଣ୍ଟା ପୂର୍ବରୁ ଟର୍ଣ୍ଣର ପରିଡା ପ୍ରଥମେ ଲକ୍ଷ୍ୟ କରିଥିଲା ବିଷୟଟି । ତା'ଠୁ ପୁଣି ୱେଲ୍‌ଡର ପ୍ରଥମେ ଆଶ୍ଚର୍ଯ୍ୟ ହେଇଥିଲା ଓ ପରେ ଭାବି ଦେଖିଥିଲା ପରିଡା କଥାଟି ହିଁ ସତ । ୱେଲ୍‌ଡରଠୁ ଫିଟର । ଫିଟରଠୁ ଇଲେକଟ୍ରିସିଆନଠୁ ଅଟୋ ମେକାନିକ, ଅଟୋମେକାନିକଠୁ କାର୍ପେଣ୍ଟର, କାର୍ପେଣ୍ଟରଠୁ ହମରମ୍ୟାନ୍, ହମରମ୍ୟାନରୁ ବ୍ଲାକ୍‌ସ୍ମିଥ୍, ବ୍ଲାକ୍‌ସ୍ମିଥରୁ ଟେଲିଫୋନ୍ ଅପରେଟର, ଏମିତିଭାବରେ କଥାଟି ବ୍ୟାପୁବ୍ୟାପୁ କ୍ରମଶଃ ୱାର୍କସପ୍‌ରୁ ଗଡି ଗଡି ହସ୍ପିଟାଲ, ହସ୍ପିଟାଲରୁ ଅଫିସ୍, ଅଫିସରୁ ଖଣି, ଖଣିରୁ ଗଡି ଗଡି ଷ୍ଟୋର, ଷ୍ଟୋରରୁ ସର୍ଭେ ଅଫିସ, ସର୍ଭେ ଅଫିସରୁ ସ୍କୁଲ, ସ୍କୁଲରୁ ପୋଷ୍ଟଅଫିସ, ଥାନା, ପାନଦୋକାନ, ମାଛବାଲା, ପରିବା ବାଲା ସମସ୍ତଙ୍କ ପାଖରେ ପହଞ୍ଚିଗଲା ଓ ସମସ୍ତେ ପ୍ରଥମେ ଶୁଣିପାରି ଆଶ୍ଚର୍ଯ୍ୟ ହୋଇ କହୁଥିଲେ : ଏ ମା' ସତେତ ? ସତେ ନା କ'ଣ ? ଆରେ ସତେ ତ ।

ଦେ'ବାବୁଙ୍କମୃତ୍ୟୁଶଯ୍ୟାରେଥରେହେଲେବିରାଓବାବୁଙ୍କନଯିବାଟାକ'ଣହୋଇପାରେ ? ତାଙ୍କର ଅହଂକାର, ସ୍ୱାର୍ଥପର ଗୁଣ, କିମ୍ବା ଅମାନବିକତା ? ଦେ'ବାବୁ ଓ ରାଓବାବୁଙ୍କର ଯେ କୌଣସି ଝଗଡା ଥିଲା ତା' ନୁହଁ । ବରଂ ଦେ'ବାବୁ ରାଓବାବୁଙ୍କୁ କାମ ଶିଖେଇଛନ୍ତି ଓ କେବେ ବି ରାଓବାବୁଙ୍କ ବିରୁଦ୍ଧରେ ଅଭିଯୋଗ ଆଣି ନାହାନ୍ତି । ଦେ'ବାବୁଙ୍କୁ ନିଜର କାମତକ ଦେଇ ରାଓବାବୁ ଫାଙ୍କିମାରିଛନ୍ତି ବେଶ୍ । ତେବେକ'ଣରାଓବାବୁଦେ'ବାବୁସ୍ଥାନରେଅବସ୍ଥାପିତହେଲାପରେଦେ'ବାବୁଙ୍କପ୍ରତ୍ୟାବର୍ତ୍ତନ ଚାହୁଁ ନାହାନ୍ତି ? ଦେ'ବାବୁ ଯେ ଆଉ ଫେରିବେନି ସେ କଥା ସମସ୍ତେ ଜାଣନ୍ତି । ତେଣୁ ରାଓର ସେ ସଂଶୟ ରହିବା ଉଚିତ ନୁହେଁ । କିମ୍ବା ରାଓ ନିଜର ଏହି ନୂତନ ପଦାଭିଷିକ୍ତ ହେବାରେ ଖୁବ୍ ଆନନ୍ଦିତ ଓ ମୁଗ୍ଧ ଯେ ସେ ଦେ'ବାବୁଙ୍କ ବିଷୟରେ ଭାବିବାକୁ ସମୟ ପାଉନି । ଖଣି ଅଞ୍ଚଳରେ ସମସ୍ତେ ନିଜ ନିଜ ମତାମତ ଉପସ୍ଥାପନ କରି ଓ ଅନ୍ୟର ମତାମତକୁ ଯଥାସମ୍ଭବ ଯୁକ୍ତିରେ କାଟିବାକୁ ଚାହିଁ ଆଲୋଚନାଟିକୁ ସରଗରମ କରି ରଖିଥିଲେ । ଦେ'ବାବୁଙ୍କ ମୃତ୍ୟୁର ପାଞ୍ଚଘଣ୍ଟା ପୂର୍ବରୁ ୱାର୍କସପ୍‌ରେ ପହଞ୍ଚି ଦେଖିଲା ଯେ ପୂରା ୱାର୍କଶପ୍ ଖାଲି । ଦରୱାନ୍‌କୁ ଡକେଇ ପଚାରିଲା ଯେ ସମସ୍ତେ କୁଆଡେ ଗଲେ ବୋଲି । ଦରୱାନ୍ କହିଲା : ସମସ୍ତେ ଦେ'ବାବୁଙ୍କୁ ଦେଖିବାକୁ ହସ୍ପିଟାଲକୁ

ଯାଇଛନ୍ତି । ଦରଓ୍ୱାନ ଜଣଙ୍କ ଜାଣିଶୁଣି କହିଥିଲା ଯେ 'ଦେ'ବାବୁ ଭାରି ସିରିୟସ୍ । ବୋଧେ ଆଉ ଘଣ୍ଟେ ଦେଢଘଣ୍ଟାରେ ଖପା ହୋଇଯିବେ ।

ତଥାପି ରାଓ କୌଣସି ପ୍ରତିକ୍ରିୟା ପ୍ରକାଶ କଲାନି ବୋଲି ଦରଓ୍ୱାନ ସମସ୍ତଙ୍କୁ କହିଲା ଯେ ୬ା'ପରେ ବି ଅଫିସରୁମ୍‌ର ତାଲା ନିଜେ ଫିଟେଇ ନଟବୋଲଟ, ତାର ଓ ଅଳିଆ ଆବର୍ଜନା ଭିତରେ ପଡିଥିବା ଟେବୁଲ ଉପରେ ଡାଇରୀ ଖୋଲି ବସି ଦୈନନ୍ଦିନ କାମର ତାଲିକା କରିବାକୁ ରାଓ ବସିଯାଇଥିଲା ।

ଦେ' ବାବୁଙ୍କ ମୃତ୍ୟୁର ଚାରିଦିନ ପୂର୍ବରୁ ଗୋପାଳ ବିଶ୍ୱାସ ତାଙ୍କର ଡେଥ୍ ସାର୍ଟିଫିକେଟର ଷୋଳଖଣ୍ଡ କପି ଟାଇପ କରାଇ ସାରିଥିଲା । ସେ ଭାରି ପ୍ରାକ୍ଟିକାଲ ମଣିଷ ଓ ଏବେଠୁ ଏସବୁ କରିସାରି ନଥିଲେ ପରେ ହଇରାଣ ହେବାକୁ ପଡିବ ବୋଲି ସେ ଡାକ୍ତରଙ୍କଠୁ ଡେଥ୍ ସାର୍ଟିଫିକେଟର ପ୍ରୋଫର୍ମା ପଚାରି ନେଇଥିଲା । ପ୍ରୋଭିଡେଣ୍ଟ ଫଣ୍ଡ, ଏଲ୍.ଆଇ.ସି., ରେକରିଂ ଡିପୋଜିଟ, ଏନ୍.ଏସ୍.ସି. ସାର୍ଟିଫିକେଟ ଆଦି ଯାବତୀୟ ଟଙ୍କା ପଇସା ବ୍ୟାପାରରେ ଏଇ ଡେଥ୍ ସାର୍ଟିଫିକେଟ ସବୁ ଦରକାର ହେଉଥିବାରୁ ସେ ଷୋଳ ଖଣ୍ଡ କପି କରାଇ ନେଇଥିଲା ଓ ଭବିଷ୍ୟତରେ ଦରକାର ହେଲେ ଆଉ କିଛି ଫଟୋ କପି କରେଇ ଦେବାର ପ୍ରତିଶ୍ରୁତି ଦେଇ ସାରିଥିଲେ ।

ଦେ'ବାବୁଙ୍କ ମୃତ୍ୟୁ ପରେ କେତେ ଟଙ୍କା ମିଳିବ ତା'ର ଗୋଟେ ଆନୁମାନିକ ହିସାବ ଗୋପାଳ ବିଶ୍ୱାସ କରିଥିଲା । ସେ ଏଲ୍.ଆଇ.ସି.ର ଷାଠିଏ ହଜାର, ପ୍ରୋଭିଡେଣ୍ଟ ଫଣ୍ଡର ଚାଳିଶ ହଜାର, ରିକରିଂ, ଏନ୍.ଏସ୍.ସି. ଇତ୍ୟାଦି ମିଶି ତିରିଶ ହଜାର ଓ ଗ୍ରାଚ୍ୟୁଟି ତିରିଶ ହଜାର । ସବୁ ମିଶି ପ୍ରାୟ ଦେଢଲକ୍ଷ ଟଙ୍କା ପର୍ଯ୍ୟନ୍ତ ମିଳିବାର ସମ୍ଭାବନା ଥିଲା । ଦେ'ବାବୁଙ୍କର ନିଜସ୍ୱ କୌଣସି ଘର ନ ଥିଲା ଓ ଚାରୋଟି ଝିଅ ଥିଲେ, ତେଣୁ ଗୋପାଳ ବିଶ୍ୱାସ ମିସେସ୍ ଦେ'ଙ୍କୁ ପରାମର୍ଶ ଦେଇଥିଲେ ଟଙ୍କାତକ ଫିକ୍ସ ଡିପୋଜିଟ୍‌ରେ ରଖିଦେବାକୁ, ଯେମିତିକି ଖର୍ଚ୍ଚ ହୋଇ ଯିବନି ।

ଦେ' ବାବୁଙ୍କ ମୃତ୍ୟୁ ପରେ ତାଙ୍କର କୌଣସି ଆଶ୍ରିତଙ୍କୁ ନିୟମାନୁସାରେ କମ୍ପାନିର ଚାକିରୀ ଦେବା କଥା ଓ ସେଥିପାଇଁ ଗୋପାଳ ବିଶ୍ୱାସର ଦୃଢ ମତ ଥିଲା ଯେ ମିସେସ୍ ଦେ' ମ୍ୟାଟ୍ରିକ୍ ପାଶ୍ କରି ନଥିଲେ ଓ ତାଙ୍କୁ ମିସ୍‌ଲେନିଅସ ମଜଦୁର ଡେଜିଗ୍‌ନେଶନ୍ ଛଡା ଅନ୍ୟକିଛି ମିଳିବାର ଚାନସ୍ ନଥିଲା । ସେମିତିରେ ତାଙ୍କୁ ଅଫିସ୍ କିମ୍ବା ହସ୍‌ପିଟାଲ କିମ୍ବା ଷ୍ଟୋରରେ କୌଣସିଠି ଏନ୍‌ଗେଜ୍ କରିବା ପାଇଁ ଖଣି କର୍ତ୍ତୃପକ୍ଷ ଚିନ୍ତା କରୁଥିଲେ ଓ ଗୋପାଳ ଏ ସଂକ୍ରାନ୍ତରେ ଖଣି କର୍ତ୍ତୃପକ୍ଷଙ୍କ ସହ କଥାବାର୍ତ୍ତା କରିସାରିଥିଲା । ସେ ଏ ସମ୍ପର୍କରେ ଯାବତୀୟ କାଗଜପତ୍ର ତିଆରି କରିସାରିଥିଲା ଓ କେବଳ ଦେ' ବାବୁଙ୍କ ମୃତ୍ୟୁ ତାରିଖଟି ଲେଖିବା ଜାଗାରେ ଫାଙ୍କଟେ ଛାଡିଦେଇଥିଲେ । ଦେ'ବାବୁଙ୍କ ମୃତ୍ୟୁପରେ ପରେ ହିଁ ସେ ହେଡ୍ ଅଫିସକୁ ସଂପୃକ୍ତ ଉଚ୍ଚ କର୍ତ୍ତୃପକ୍ଷଙ୍କ ସୁପାରିଶ ସେସବୁ ପଠେଇବାର ବନ୍ଦୋବସ୍ତ କରିଦେବ ବୋଲି ପ୍ରସ୍ତୁତ ହୋଇ ରହିଥିଲା ।

ଦେ'ବାବୁଙ୍କ ମୃତ୍ୟୁ ପରେ କେତେ ଟଙ୍କା ମିଳିବ ତା'ର ଆନୁମାନିକ ମୌଖିକ ହିସାବ ଦେ'ବାବୁଙ୍କ ପରିବାରର ସମସ୍ତେ କରୁଥିଲେ ଓ ଜଣେ ଅନ୍ୟଜଣକର ହିସାବକୁ ଅବିଶ୍ୱାସ କରିବାକୁ ଆରମ୍ଭ କରିଦେଇଥିଲେ । ଦେ'ବାବୁଙ୍କ ଝିଅମାନେ ଏତେଗୁଡାଏ ଟଙ୍କା କେମିତି ଖର୍ଚ୍ଚ କରାଯାଇପାରେ ସେବିଷୟରେ, ନିଜନିଜ ବିଷୟରେ ଆଲୋଚନା କରୁଥିଲେ, ଯଦିଓ ସେମାନେ ଜାଣିଥିଲେ ସେମାନଙ୍କ ଇଚ୍ଛା ଅନୁସାରେ ସେସବୁ ଖର୍ଚ୍ଚ ହେବନି ।

ଦେ'ବାବୁଙ୍କ ଭାଉଜ ସବୁବେଳେ ନୂଆ ବୋହୂର ମୁହଁ ଚାହାଣୀ ପ୍ରସଙ୍ଗ ଉଠାଉଥିଲେ ଓ ଦେ'ବାବୁ ଆଜି ଭଲ ଥିଲେ ନିଶ୍ଚୟ ପୁତୁରାର ବ୍ୟବସାୟ ପାଇଁ କିଛି ସାହାଯ୍ୟ କରିଥା'ନ୍ତେ ବୋଲି ଅବଶୋଷ କରୁଥିଲେ । ଦେ'ବାବୁଙ୍କ ଭାଇ ତାଙ୍କ ଭାଉଜଙ୍କୁ ସାନ୍ତ୍ୱନା ଦେଉଥିଲେ ଯେ ଏତେ ବ୍ୟସ୍ତ ହେବାର କିଛି ନାହିଁ, ତାଙ୍କ ପୁଅକୁ ସେ ଦେଇଦେବେ ଓ ତାଙ୍କ ପୁଅ ହିଁ ସବୁ ସମ୍ଭାଳିବ : ଘରଦ୍ୱାର, ଝିଅମାନଙ୍କ ଦାୟିତ୍ୱ । ସେ ବୁଝାଉଥିଲେ ଯେ ଗୋଟେ ପୁରୁଷ ଲୋକର ଆବଶ୍ୟକତା କେତେ ଅଧିକ ଘରଟିଏ ପାଇଁ ଓ ସ୍ତ୍ରୀଲୋକ ଯଦି ଚାକିରୀ କରିବ ତେବେ ବଡ ଚାକିରୀ ହିଁ ଭଲ । ଦେ'ବାବୁଙ୍କ ଏଠି ପ୍ରେଷ୍ଟିଜ୍ ଅଛି ଓ ତାଙ୍କ ସ୍ତ୍ରୀ ପିଅନ ଚାକିରୀ କରିବ - ଏହାଠୁ ବଳି .... ।

ସବୁ ପରାମର୍ଶ, ସବୁ ଅଭିଯୋଗ, ସବୁ ସାନ୍ତ୍ୱନାବାଣୀ ଭିତରେ ବି ମିସେସ୍ ଦେ' ନିର୍ବିକାର ଥିଲେ ଓ ତାଙ୍କର ମୁଣ୍ଡର ବାଳ ଅସଜଡା ହେଉ ନଥିଲା । ସେ ସପ୍ତାହରେ ଦି'ଥର ଶାମ୍ପୁକରୁଥିଲେ ଓ ଅଁଳା ତେଲ ଲଗାଉଥିଲେ । ସେ ସପ୍ତାହରେ ଥରେ ନିଜେ ଫେସିଆଲ କରୁଥିଲେ ଓ ଝିଅମାନଙ୍କୁ ବି କରିବାକୁ ବାଧ କରୁଥିଲେ । ସେ ମ୍ୟାଚିଂ ଶାଢୀ, ବ୍ଲାଉଜ୍, ଚୁଡି, ଟିପା ପିନ୍ଧୁଥିଲେ ଓ ଆଇବ୍ରୋ ପ୍ଲକ୍ଡ କରୁଥିଲେ । ସେ ପ୍ରତି ଦୁଇ ତିନି ଦିନରେ ଥରେ ବ୍ୟାଙ୍କର ଉଇଥ୍‌ଡ୍ରୟାଲ୍ ସ୍ଲିପ୍‌ରେ ସାଇନ କରୁଥିଲେ ଓ ମାଛର ବିଭିନ୍ନ ପ୍ରିପାରେଶନ୍ ବଢେଇବାକୁ ସାନ ଯାଆକୁ ନିର୍ଦ୍ଦେଶ ଦେଉଥିଲେ । ସେ ନିୟମିତ ଚିତ୍ରହାର ଏବଂ ଟି.ଭି. ସିରିୟାଲ୍ ଦେଖୁଥିଲେ ଓ ସେସବୁ ବିଷୟରେ ଆଲୋଚନା କରୁଥିଲେ । ସେ ସବୁଦିନ ଥରେ ସନ୍ଧ୍ୟାବେଳେ ଦେ'ବାବୁଙ୍କୁ ଦେଖିବାକୁ ଯାଉଥିଲେ ।

ଦେ'ବାବୁଙ୍କ ମୃତ୍ୟୁର ଦେଢଘଣ୍ଟା ପୂର୍ବରୁ ବେଶ୍ ବଡପାଟିରେ କଥାବାର୍ତ୍ତା କରିଥିଲେ । ସେ ଏତେବଡ ପାଟିରେ ଓ ସ୍ପଷ୍ଟ ଭାବରେ କଥାବାର୍ତ୍ତା କରିଥିଲେ ଯେ, ଆଉଟଡୋର ବନ୍ଦ କରି ଯାଉଥିବା ଡାକ୍ତର ସେ ପାଟିରେ ଉତ୍‌ଫୁଲ୍ଲ ହୋଇ ନର୍ସକୁ କହିଥିଲେ, ପେସେଣ୍ଟ କଣ କଥା ବି କହିଲାଣି ।

ଦେ'ବାବୁ ବଡପାଟିରେ ତାଙ୍କ ସାନଭାଇକୁ ଧମକଉଥିଲେ ଓ ଡାକ୍ତରଙ୍କ ପାଖରେ ଅଭିଯୋଗ କରୁଥିଲେ ଯେ ତାଙ୍କୁ ଭାତ ନଦେଇ ଏମାନେ ସବୁ କଣ ତରଳ ପଦାର୍ଥ ଦେଉଛନ୍ତି ବୋଲି । ସେ ବହୁତ ଦିନ ହେଲା ଖୁବ୍ କ୍ଷୀଣକଣ୍ଠରେ କଥା କହୁଥିଲେ ଯେ ତାଙ୍କର ଏତେ ବଡ ପାଟି ଶୁଣି ସମସ୍ତେ ଚମତ୍କୃତ ହୋଇପଡିଥିଲେ ଓ ଡାକ୍ତର ଦେ'ବାବୁଙ୍କ ସାନଭାଇଙ୍କୁ ପେସେଣ୍ଟ ଯାହା ମାଗୁଛି ଦିଅ ବୋଲି କହିଥିଲେ ।

ଦେ'ବାବୁଙ୍କ ମୃତ୍ୟୁର ପନ୍ଦର କୋଡିଏ କି ତିରିଶି ମିନିଟ୍‌ପରେ ଡାକ୍ତରଙ୍କ ପାଖକୁ ନର୍ସ ଜ୍ୟୋତ୍ସା ମିଶ୍ର ଫୋନ୍ କରିଥିଲା । ସେତେବେଳକୁ ଆଉଟଡୋର ବନ୍ଦ ହୋଇଯାଇଥିଲା ଓ ଡାକ୍ତର ଘରକୁ ଚାଲି ଯାଇଥିଲେ । ନର୍ସ ଜ୍ୟୋତ୍ସା ମିଶ୍ରର ଫାଷ୍ଟ ସିଫ୍‌ଟ ଡ୍ୟୁଟି ଥିଲା ଓ ସେ କ୍ୟାଜୁଏଲିଟିରେ ବସି ତା' ଶାଢୀ ପାଇଁ ଲେସ୍ ବୁଣୁଥିଲା । ଦେ'ବାବୁଙ୍କ ପାଖରେ ତାଙ୍କ ପୁତୁରା ବସିଥିଲା । ତାଙ୍କ ସାନଭାଇ ଘରକୁ ଖାଇବା ପାଇଁ ଯାଇଥିଲେ ।

ଗୋଟାଏ ପଇଁତିରିଶିରେ (ଜ୍ୟୋତ୍ସା ମିଶ୍ରର ଘଣ୍ଟାଟା ଠିକ୍ ନାହିଁ, ହମେଶା ଦଶ ପନ୍ଦର ମିନିଟ ଫାଷ୍ଟ ରୁହେ) ଦେ'ବାବୁଙ୍କ ପୁତୁରା ମୋତେ ଡାକିଲେ ଯେ ପେସେଣ୍ଟ କେମିତି ଅଛି । ମୁଁ ଯାଇ ଦେଖିଲାମାତ୍ରେ ପଲସ ବହୁତ ଧିରେ ଧିରେ ଚାଲୁଚି । ସେତେବେଳେ ବି ଜୀବନ ଥିଲା । ମୁଁ ଧାଇଁକି ଆସିଲି କୋରାମିନ୍ ନେବାପାଇଁ । ନେଇକି ଯାଉ ଯାଉ ସବୁ ଶେଷ । କଳାପାଣି ଭଳି କ'ଣ ବାନ୍ତି ହେଇଯାଇଚି ।

ଡାକ୍ତର ଯିଏ ଜାଣିସାରିଥିଲେ ଯେ ଦେ'ବାବୁ ମରିଯାଇଛନ୍ତି ବୋଲି, ତଥାପି ଘରୁ ଆସିଲେ,

ନାଡି ଦେଖିଲେ ଓ ନିର୍ଜୀବ ହାତଟାକୁ ଛାଡିଦେଇ, ଦେ'ବାବୁଙ୍କ ପୁତୁରାକୁ କହିଲେ : ଟେକ୍ ଇଟ୍ ଇଜି ।

ଦେ'ବାବୁଙ୍କ ମୃତ୍ୟୁର ଖବର ସାଙ୍ଗେ ସାଙ୍ଗେ ଚାରିଆଡେ ଖେଳିଗଲା ଓ ମହାନ୍ତି, ଘୋଷ ଓ ଖୋସଲା ତିନିହେଁକୁ ଆମ୍ବୁଲାନସ ଡ୍ରାଇଭର ଡାକିଆଣିଥିଲା । ସେମାନେ ପହଞ୍ଚିଲା ବେଳକୁ ଗୋପାଳ ବିଶ୍ୱାସ ଓ ଦେ'ବାବୁଙ୍କ ଘରଲୋକେ ପହଞ୍ଚି ଯାଇଥିଲେ ଓ ହସ୍‌ପିଟାଲରେ ଭିଡ ବଢି ଯାଇଥିଲା । ଡାକ୍ତର ଘରକୁ ଚାଲି ଯାଇଥିଲେ ।

ଦିନ ଗୋଟାଏ ଦଶରେ କକା ମୋତେ ଡାକିକି ରାମକୃଷ୍ଣ ପରମହଂସଙ୍କ କଥାମୃତ ପଢିବାକୁ କହିଲେ । ମୁଁ ଦଶମିନିଟ ପଢିଥିଲି ଓ ହଠାତ୍ ଠିକ୍ ଗୋଟାଏ କୋଡିଏରେ ସେ କଳାପାଣି ଭଳି କ'ଣ ବାନ୍ତି କଲେ, ବାସ୍ । ମୁଁ ସିଷ୍ଟରଙ୍କୁ ଡାକିଆଣିବା ଭିତରେ ସବୁ ଶେଷ । ଦେ'ବାବୁଙ୍କ ପୁତୁରାକୁ ବାରମ୍ବାର କୌତୂହଳୀ ଲୋକଙ୍କ ସାମ୍ନାରେ ଏକ ଧାରାବିବରଣୀ ଦେବାକୁ ପଡୁଥିଲା ।

ଦେ'ବାବୁଙ୍କ ଶବକୁ ଘରକୁ ନେଇ ଯାଉ ଯାଉ ତିନିଟା ବାଜିଯାଇଥିଲା ଓ ନର୍ସ ଜ୍ୟୋସ୍ନା ମିଶ୍ରକୁ ରିଲିଭ୍ କରିବା ପାଇଁ ଆରତୀ ଦିଦି ନର୍ସ ଆସିଯାଇଥିଲା । ଆରତୀ ଦିଦି ପ୍ରଥମେ ହିଁ ଦେଖି ନେଇଥିଲା ଦେ'ବାବୁଙ୍କ ବେଡ୍‌ଟି ଖାଁ ଖାଁ କରୁଛି ଓ ତା' ଛାତି ଭିତରଟା ଦୁରୁ ଦୁରୁ ହେଉଥିଲା ।

ଜ୍ୟୋସ୍ନା ମିଶ୍ର ସାଙ୍ଗରେ ଆରତୀ ଦିଦିର ପଟୁ ନଥିବାରୁ ଓ ମାସେହେଲା କଥାବାର୍ତ୍ତା ବନ୍ଦ ଥିବାରୁ ଦେ'ବାବୁଙ୍କ ବିଷୟରେ ଫାଷ୍ଟ ସିଫ୍‌ଟିର ଆମ୍ବୁଲାନ୍‌ସ ଡ୍ରାଇଭରଠୁ ହିଁ ଖବରଟା ଶୁଣିଥିଲା ଆରତୀ । ଭାତ ଖାଇସାରିଲା ପରେ ଆମ୍ବୁଲାନ୍‌ସ ଡ୍ରାଇଭର ମୋହନ ସାତବେନ, ଗୁଲଚିନ୍ ନନ୍ଦାଙ୍କର ବହିଟେ ନେଇ ମେଲ୍ ୱାର୍ଡକୁ ଯାଇଥିଲା ଓ ଗୋଟେ ଖାଲି ବେଡ୍‌ରେ ଶୋଇ ଶୋଇ ପଢୁଥିଲା । ଦେ'ବାବୁ ତାଙ୍କ ପୁତୁରାକୁ ତାଙ୍କ ଧର୍ମଶାସ୍ତ୍ର କି ପୁରାଣରୁ କିଛି ପଢି ଶୁଣେଇବାକୁ କହିଲେ । ଦୁଇ ତିନି ମିନିଟ ପଢିସାରି ସେ ପିଲାଟି ପରିସ୍ରା କରିବାକୁ ଗଲା । ଠିକ୍ ଏଇ ସମୟରେ, ତାଙ୍କ ପୁତୁରା ଲ୍ୟାଟ୍ରିନ୍‌ରେ ଥାଏ । ଟାଇମ୍ କେତେ ହେବ ସେତେବେଳକୁ ମୋହନ ସାତବେନ କହିପାରିଲାନି, କାରଣ ସେ ଘଣ୍ଟା ହିଁ ପିନ୍ଧି ନଥିଲା, ଦେ'ବାବୁଙ୍କର କଳାପାଣି ବାନ୍ତି ହେଲା ଓ ମୁଣ୍ଡଟା ଗୋଟେ କଡକୁ ଝୁଲି ପଡିଲା । ୱାର୍ଡର ଅନ୍ୟ ରୋଗୀମାନେ ହୋ ହୋ ପାଟିକରି ଉଠିଲେ । ତା'ପରେ ତାଙ୍କର ପୁତୁରା ଆସିଲା ଓ ପରେ ପରେ ନର୍ସ ଜ୍ୟୋସ୍ନା ମିଶ୍ର ।

ଦେ' ବାବୁଙ୍କ ଦେହଟିକୁ ଆମ୍ବୁଲାନ୍‌ସରେ ହିଁ ତାଙ୍କ କ୍ୱାଟରକୁ ନିଆଯାଇଥିଲା ଓ ସେଠୁ କୋକେଇରେ ଶ୍ମଶାନ ନିଆଯିବା ପୂର୍ବରୁ ତାଙ୍କର ଶେଷଦର୍ଶନ ପାଇଁ କୋଲିୟାରୀର ତାଙ୍କ ପରିଚିତମାନେ ତାଙ୍କ କ୍ୱାର୍ଟର ସାମ୍ନାରେ ଜମା ହେଉଥିଲେ । ସେଦିନ ଅପରାହ୍ନରେ ୱାର୍କସପ୍ ପୂରା ଖାଲି ହୋଇଯାଇଥିଲା । ଏମିତିକି ସଦାସର୍ବଦା ବ୍ୟସ୍ତ ଓ ପ୍ରାୟତଃ ଉପସ୍ଥିତ ରହୁଥିବା ଟେଲିଫୋନ୍ ଅପରେଟର ବି ତା' ପି.ବି. ଏକ୍‌ସକୁ ବନ୍ଦ କରିଦେଇ ଦଶିମିନିଟ ପାଇଁ ଦେ'ବାବୁଙ୍କୁ ଦେଖିବାକୁ ପଳେଇଥିଲା । କିନ୍ତୁ ରାଓ ତା'ର ସେଇ ଇଲେକ୍‌ଟ୍ରିକ୍ ତାର, ନଟ୍, ବୋଲ୍ଟ ଓ ଯାବତୀୟ ଲୁହାଲକ୍କଡ ରହୁଥିବା ଅନ୍ଧାରୁଆ ଅଫିସଘରେ ଏକୁଟିଆ ବସିରହିଥିଲା ଓ ଗୋଟେ ପରେ ଗୋଟେ ସିଗାରେଟ ଟାଣିଥିଲା । ସେ ଦେ'ବାବୁଙ୍କୁ ଶେଷଦର୍ଶନ କରିବା ପାଇଁ ଯାଇ ନଥିଲା ।

ହସ୍‌ପିଟାଲରେ ମେଲ୍ ୱାର୍ଡଟି ପ୍ରାୟତଃ ଫାଙ୍କା ହୋଇଯାଇଥିଲା । ଅନ୍ୟାନ୍ୟ ଇନ୍‌ଡୋର ପେସେଣ୍ଟମାନେ କରିଡରରେ ବସି ରହିଥିଲେ ଓ ସେମାନଙ୍କର ମୁହଁଗୁଡାକ ଶେତା ଦେଖାଯାଉଥିଲା । ସେମାନେ କିଛିଟା ଉଦାସ ଦେଖାଯାଉଥିଲେ ଓ ମଣିଷ ଜୀବନର ନିରର୍ଥକତା ବିଷୟରେ ହିଁ କଥା

ହେଉଥିଲେ । ଦେ'ବାବୁଙ୍କ ଖଟର ଗଦି ଓ ଚାଦର କାଢ଼ି ନିଆଯାଇଥିଲା ।

ଦେ'ବାବୁଙ୍କୁ କୋକେଇରେ ବୋହିନେବା ପାଇଁ ଆୟୋଜନ ଚାଲିଥିଲା ଏବଂ ଯୋଶୀ, ମହାନ୍ତି ଓ ଖୋସଲା ପହଞ୍ଚି ଯାଇଥିଲେ । କାଠ ଯୋଗାଡ଼ କରିବା, ନୂଆଧୋତି, ନୂଆ ହାଣ୍ଡି ଓ ଖଇ, ଘିଅ ଯୋଗାଡ଼ କରିବାରେ ଦେ'ବାବୁଙ୍କ ବଡ଼ଭାଇ ଓ ସାନଭାଇ ବ୍ୟସ୍ତ ଥିଲେ । ପିଲାମାନେ ରାହା ପକେଇ କାନ୍ଦୁଥିଲେ ଓ ପଡ଼ୋଶିନୀମାନେ ସମସ୍ତେ ମିସେସ୍ ଦେ'ଙ୍କୁ ଘେରିକି ବସିଥିଲେ । ଦେ'ବାବୁଙ୍କ ବଡ ଭାଉଜ ଓ ସାନ ଯା' ଖୁବ୍ ବଡପାଟିରେ ଛାତି ପିଟି ପିଟି, ଭୂଇଁରେ ଗଡି ଗଡି କାନ୍ଦୁଥିଲେ । ମିସେସ୍ ଦେ' ପଥର ଭଳି ନିର୍ବାକ୍ ହୋଇଯାଇଥିଲେ । ସେ ଯଦିଓ କାନ୍ଦୁ ନଥିଲେ, ତାଙ୍କର ଆଖିର ପତା ବି ପଡୁନଥିଲା । ତାଙ୍କୁ କେହି ହଲେଇ ଦେବାର ସାହାସ ବି କରି ପାରୁ ନଥିଲେ । ଯେମିତି ଛୁଇଁଦେଲେ ହିଁ ଭାଙ୍ଗିପଡ଼ିବ ସେଇ କ୍ଷଣଭଙ୍ଗୁର କୋହର ବନ୍ଧ ଓ ଲୁହରେ ଭାସିଯିବ ଏଇ କଲୋନି, କୋଲିୟାରୀ ଓ ସହର ।

ଦେ'ବାବୁଙ୍କୁ କୋକେଇରେ ବୋହିବା ପୂର୍ବରୁ ଯୋଶୀ, ଖୋସଲା ଓ ମହାନ୍ତି ନିଜ ନିଜ ଘରକୁଯାଇଥିଲେଓସାର୍ଟପ୍ୟାଣ୍ଟଖୋଲିଲୁଙ୍ଗିଗଞ୍ଜିପିନ୍ଧିଗାମୁଛାଗୁଡେଇଦେ'ବାବୁଙ୍କଶବବୋହିବାରେ ସେମାନେ କାନ୍ଧ ଦେଇଥିଲେ । ସେମାନେ ପରସ୍ପରସହ ଖୁବ୍ ସଂକ୍ଷିପ୍ତ କେତୋଟି ଆବଶ୍ୟକୀୟ କଥା ହିଁ ହେଉଥିଲେ ଓ ଶ୍ମଶାନରେ ପହଞ୍ଚି ଚୁପଚୁପ୍ କାଠ ସଜେଇବାରେ ବ୍ୟସ୍ତ ହୋଇପଡ଼ିଥିଲେ ।

ରାଓ ସେଦିନ ୱାର୍କଶପରୁ ଜାଣିଶୁଣି ରାତିରେ ହିଁ ବାହାରିଲା । ଯଦିଓ ଦେ'ବାବୁଙ୍କର ଶେଷଦର୍ଶନପାଇଁଯାଇଥିବା ଲୋକମାନେଆଉ ୱାର୍କଶପକୁ ଫେରି ନଥିଲେ ଓ ସାଢେ ପାଞ୍ଚଟା ବେଳେ ରାଓ ୱାର୍କଶପ୍ ବନ୍ଦକରି ଚାଲି ଆସିପାରିଥାନ୍ତା, ତଥାପି ସେ ବହୁତ ସମୟ ତା'ର ଅଫିସଘର ଭିତରେ ବସିରହିଥିଲା ଓ ବାହାରିଲାବେଳକୁ ଅନ୍ଧାର ହୋଇଯାଇଥିଲା । ସେ ଘରକୁ ନ ଯାଇ ଆଉ ଗୋଟେ ରାସ୍ତାରେ ହିଁ ଯାଇଥିଲା ଓ କଲୋନିଠୁ ବହୁତ ଦୂରକୁ ଯାଇ ଗୋଟେ ନିର୍ଜନ କଲ୍‌ଭର୍ଟ ଉପରେ ଚୁପଚାପ୍ ବସିରହିଥିଲା ଅନ୍ଧାରରେ ।

ଶ୍ମଶାନରେ ଦେ'ବାବୁଙ୍କ ମୁଖାଗ୍ନି ତାଙ୍କ ସାନଭାଇଙ୍କ ପୁଅ ହିଁ କରିଥିଲା ଓ ନିଆଁ ଲଗେଇସାରି ଦୂରକୁ ଯାଇ ଶବୁକ ପଛ କରି ବସିଥିଲା । ଶବଦାହ ପୂର୍ବରୁ ଯୋଶୀ, ମହାନ୍ତି ଓ ଖୋସଲା ଦେ'ବାବୁଙ୍କ ଅସ୍ଥିସାର ଦେହରେ ଘିଅ ମାଲିସ୍ କରିଥିଲେ ଓ ନିଆଁ ଜଳିବାରେ ଆଦୌ ଡେରି ଲାଗି ନଥିଲା । ଅନେକ ସମୟରେ ମୁଣ୍ଡଟା ଠାଏକିନା ଫାଟିଯାଏ ବୋଲି ସେମାନଙ୍କୁ ଜୁଇଠୁ ଟିକେ ଦୂରରେ ବସିବାକୁ ଦେ'ବାବୁଙ୍କ ବଡଭାଇ କହିଥିଲେ ।

ଶବଦାହ ପରେ ସେମାନେ ପୋଖରୀରେ ଗାଧୋଇକି ଫେରିଲେ ଓ ରାସ୍ତାସାରା କଥାବାର୍ତ୍ତା କରି ନଥିଲେ । ମହାନ୍ତିର ମନେ ହେଉଥିଲା ତା'ର ଦେହ ମନ ପୂରା ଭ୍ୟାକୁମ୍‌ହୀନ୍ କଣା ହେଇଯାଇଥିବା ଡେମରା ଟ୍ୟୁବ ଭଳି ହୋଇଯାଇଛି ଓ ତାକୁ କିଛି ଭାବିବାକୁ କି କହିବାକୁ ଭଲ ଲାଗୁନଥିଲା । ତା'ର ଭିତରେ ରାଜ୍ୟଯାକର କ୍ଳାନ୍ତି ମଇଳା-ପ୍ରଲେପ ଭଳି ଲାଗିରହିଥିଲା । ଦେ'ବାବୁଙ୍କ ଘର ପାଖକୁ ପହଞ୍ଚିଲାପରେ ତାଙ୍କ ବଡଭାଇ, ସାନଭାଇ ଓ ଦି'ଟା ପୁତୁରାଙ୍କୁ ଘରେ ଛାଡ଼ି ଯିଏଯୁଆଡେ ନିଜ ଘରକୁ ମୁହେଁଇଥିଲେ । ଖୋସଲା ତା'ର ସ୍କୁଟରରେ ଷ୍ଟାର୍ଟ ଦେବା ପୂର୍ବରୁ ମହାନ୍ତିକି ପଚାରିଥିଲା ତା'ପାଖରେ ସିଗାରେଟ୍ ଅଛିକି ନାଇଁ - ଯଦିଓ ସିଗାରେଟ୍ ଥିଲା, ମହାନ୍ତି ମିଛରେ ନାଇଁ ବୋଲି କହିଦେଇଥିଲା । କଲଭର୍ଟ ଉପରୁ ରାଓ ଫେରିଆସୁଥିଲାବେଳେ ଦେଖିଲା ଦେ'ବାବୁଙ୍କ ଶବଦାହ କରି ଲୋକମାନେ ଫେରୁଛନ୍ତି । ସୋଡିୟମ୍ ଭେପର୍ ଲାଇଟ୍‌ର ଉଜ୍ଜଳ ଆଲୋକରେ ସେଇ

ଖାଲିଦେହର ଲୁଙ୍ଗି, ଧୋତି, ଗାମୁଛାପିନ୍ଧା ଲୋକମାନେ ଚୁପ୍‌ଚୁପ୍ ଆଗେଇ ଆସୁଥିଲେ । କଲୋନିଟା ବି ଚୁପ୍ ହେଉଯାଉଥିଲା । ବାହାରେ ପିଲାମାନେ ଧାଁ ଦଉଡ଼ କରୁ ନଥିଲେ କି ଘର ଭିତରେ ବି କନ୍ଦାକଟା କରୁ ନଥିଲେ । ସମସ୍ତେ ନିଜ ନିଜ ରେଡିଓ, ଟି.ଭି. ଟେପ୍‌ରେକର୍ଡର ଚାଲୁ କରିବା ପାଇଁ ଭୁଲିଯାଇଥିଲେ । ପ୍ରତିଟି ଘରର ଦୁଆର ବନ୍ଦଥିଲା ଓ ଗୋଟେ ନିର୍ଜନତା ମାଡ଼ିପଡୁଥିଲା । ରାଓ ଲମ୍ବା ପାହୁଣ୍ଡ ପକେଇ ତା' ଘର ଆଡକୁ ଆଗେଇଗଲା ଓ ତରବରେଇକି ଘର ଭିତରେ ପଶିଗଲା ।

# ଆକାଶରେ ମାଟିରାସ୍ତା

**ଦାଶ ବେନହୁର**

ଆଖି ବୁଜିଲେ ଭ ପିଲାଟି ପଛକଥା ଦେଖେ । ଛାଇ ଆଲୁଅ ପରି ଝିଲିମିଲି ପଛକଥା । ମରୀଚିକା ଭଳି ଅପହଞ୍ଚ । ତଥାପି ପିଲାଟି ମୁଦିଲା ଆଖିରେ ଚାହିଁରହେ ସେଇ ଆଡ଼କୁ । ଅନ୍ଧାର ଆପଣାର ଲାଗୁଥାଏ । ତା'ଠୁ ଆହୁରି ନିଘଞ୍ଚ - ଆପଣାର ଲାଗୁଥାଏ ବୋହି ଯାଇଥିବା ଅତୀତ ।

ପିଲାଟିକୁ ପିଛିଲାଦିନ ଗୁଡ଼ାକ ଦାଉ ଦାଉ ଦିଶେ । ହେଲେ ବର୍ତ୍ତମାନଟା କୁହୁଡ଼ିଆ । ଭବିଷ୍ୟତ କଥା ଭାବିବାକୁ ସାହସ କୁଳାଏନି । ବୟସବି ହେଇନି ସେଥିପାଇଁ । ନିହାତି ପିଲାଟିଏ ।

ଗାଁରେ ଥିଲାବେଳେ ଖରା ଉବୁକିଲାଯାଏଁ ଶୋଇ ପଡୁଥିଲା ସେ । ମାଆ, ତୁହାକୁ ତୁହା ଡାକ ଦିଏ । ସଁପିଲା ଭଳି ଭାଷାରେ ଲହରେଇ ଲହେରଇ ଡାକେ । ''ଉଠୁନୁ ନାଇଁରେ ଟୋକା ? ପୋଡ଼ାମୁହାଁକୁ କ'ଣ ଶୁଭୁଥିବ କି ?'' କଥାଟା ଟାଆଁସା ସିନା ଭାରୀ କଅଁଳ ଲାଗେ ଶୁଣିବାକୁ । ବାପା ଡାକ ଛାଡ଼େ । ଝାଙ୍କୁଳି କରି ହଲେଇ ଦିଏ । ବେଳେବେଳେ ବିଧାଏ ବି ପକାଏ ଦରଆଣ୍ଟ କରି । ନହେଲେ ପାଣି ଚଳେ ଛାଟିଦିଏ ମୁହଁକୁ । କିଲିକାଛିଆ ହେଇ ଉଠିପଡ଼େ ପିଲାଟା ।

ଏମିତି ବହେ ଉପୁଚାର ହବାପରେ ସେ ଶେଯଛାଡ଼େ । ଦାନ୍ତକାଠି ଖଣ୍ଡେ ଧରି ଘଡ଼ିଏ ଯାଏଁ ଠେବ ମାରେ । ଦାଣ୍ଡରୁ ଦୁଆର ଫାଲ୍ଡୁରେ ଏକଡ଼ ସେକଡ଼ ହୁଏ । ବାରିଆଡ଼କୁ ଯାଇ ଗଛକୁ ଚାହେଁ । କଖାରୁ ଫୁଲରେ କି ପୋକଶୁଙ୍ଘା ପତ୍ରରେ ହାତ ମାରେ । ପ୍ରଜାପତି ଧରିବାକୁ ଦଉଡ଼େ । କୋଉଠି ବେଙ୍ଗଟେ ଉପରକୁ ଟେକା ଛାଟେ । କେତେବେଳକେ ଯାଇ ତା'ର ଦାନ୍ତଘଷା ସରେ। ମାଆ ରଡୁଥାଏ । ବାପା ଚିଡୁଥାଏ । ମାତ୍ର ପୁଅର ,କାନରେ ପଶି ସବୁକଥା ଆରପଟେ ବାହାରିଯାଏ । ନିଜେ ହେଇ ବଞ୍ଚୁଥାଏ ସେ । ମୁଢ଼ିଗଣ୍ଡେକି ପଖାଳ କିଛି ପେଟରେ ପଡ଼ିଗଲେ କୁହାଟ ଛାଡ଼େ ଟୋକା ।

ଏଠି କିନ୍ତୁ କଥା ଅଲଗା । ସକାଳ ନପାହୁଣୁ ବାବୁଘର ମାଆଙ୍କର ଚିର୍‌ଚରା ରଡ଼ି ଶୁଭେ ବାରଣ୍ଡାରେ । 'ହଇରେ ହେ.... ଟୋକା । କେତେବେଳେ ଯାଏ ଶୋଇଥିବୁକି ?'' ଥରକରେ ନିଦ ନଭାଙ୍ଗିଲେ ସ୍ୱରର ଆଞ୍ଚ ବଢ଼ିଯାଏ । ମାଆଙ୍କର ବେକମୂଳ ଶୀରା ଦୁହିଁହେଇ ଆସେ । ପ୍ରତିଟି ଅକ୍ଷର କର୍କଶ ଶୁଭେ । ପ୍ରତି ଶବ୍ଦ ବାଣଫୁଟିଲାପରି ତାବ୍‌ଦା କରିଦିଏ । ରୋଷେଇ ଘରେ ଛିଣ୍ଡାକନ୍ଥା, ଅଧାଚିରା ଚଦରଖଣ୍ଡେ ଆବୋରି ଶୋଇପଡ଼ିଥିବା ପିଲାଟି ଦମେ ଚମକିଯାଏ ସେ ଡାକରେ । ସାହସ ହୁଏନା, ଘାଲେଇ ଆଉଟିକେ ପଡ଼ିଯିବାକୁ । ଆଉ କେହି ଡାକିବା ଯାଏଁ କଥା ଯାଏନି । ଧଡ଼ପଡ଼ ହେଇ ଉଠିବସେ । ଆଖି ମଳିବାକୁ ତର ନଥାଏ ।

ସକାଳର ଆଲୁଅ ଡର ବୁଣିଦିଏ ତା' ଭିତରେ । ମାଆଙ୍କର ଆଖି କଣ୍ଟା ଫୋଡ଼ିଦିଏ । ମୁହଁ ଉଠେଇବାକୁ ଭୟ ଲାଗେ । ସେଇମିତି ମୁହଁ ପୋତି କାମରେ ଲାଗିଯାଏ ସେ ।

ଗଞ୍ଜାମର ଦୂର-ମଫସଲରେ ପିଲାଟିର ଘର । ଘର ମାନେ ନାଆଚାଳିଆ ଦୁଇଟି ବଖୁରି । ପଛପଟେ ମେଲା ବାରି । ସେଇଥିରେ ବାଉଁଶ କଣି ପୋତି ମାଆ ତା'ର ଶାଗ ମୁଗ କରେ । ସଜନା ଗଛରୁ ପତର ଦୁହିଁ ଆଣେ । ବାପ ମାଆ ଦିହେ ମୂଲ ଲାଗନ୍ତି । ଗରିବ ଘର । ତହିକୁ ପାଞ୍ଚ ପାଞ୍ଚଟି ପିଲା । ଚଢ଼େଇ ଛୁଆ ପରି ହରଦମ୍ ଆଁ କରିଛନ୍ତି । ସେମାନଙ୍କ ଭିତରେ ସବୁଠୁ ବଡ଼ ଏଇ ପିଲାଟି । ବୟସ ମୋଟେ ଦଶ ବରଷ ।

ଘରେ ଅଭାବର ଅଦଉତି । କ'ଣ ଅଛି ଯେ ଆବୋରି ଚଳିବେ ? ଗାଆଁରେ କାମ ଧନ୍ଦା କୋଉଠୁ ଆସିବ ? ଯାହାବା' ଅଛି ବାରମାସଯାକ କାହିଁକି ଚାରିଟା ମାସବି ଯାଏନି । ଆଖିର ଲୁହ ତୁଣ୍ଡରେ ମାରି ଚଳିଯାଆନ୍ତି ସେମାନେ । ସୁନୁସୁନିଆ, ମଦରଙ୍ଗା ଯାହା ଯୋଉଠୁ ଦରାଣ୍ଡି ଆଣନ୍ତି, ବାଣ୍ଟିକୁଣ୍ଟି ସେଇଥିରେ ଚଳନ୍ତି ।

ଥରେ କୋଉ ଅଫିସ୍ କାମରେ ସେଇ ଗାଆଁକୁ ଯାଇଥିଲେ ଜଣେ ବାବୁ । ଥିଲାବାଲା ବାବୁ । ଦିହଟି ବଡ଼ ଚିକ୍କଣ । କି ସୁନ୍ଦର ସୁନ୍ଥାକାଟି ମୁଣ୍ଡ କୁଣ୍ଡେଇ ଥାଆନ୍ତି । ସହରରେ କୋଉ ଅଫିସ୍‌ରେ ହାକିମ । ତା'ଙ୍କ ପଛଆଡ଼େ ଦି ଦିଇଟା ଚପରାଶି, ପିଅନ ନଡ଼ବଡ଼ ହଉଥାଆନ୍ତି । ତା'ଙ୍କର ପିଲାଟିଏ ଲୋଡ଼ା । ବେଶି ଡାଗର ହେଇ ନଥିବ । ମଝିଲା ବୟସର । ଘରେ ବୋଲହାକ କରିବ । ବାସନ କୁସନ ମାଜିବ । ରୋଷେଇ ଘରେ ବାବୁଆଣୀଙ୍କ ହାତ ବଟେଇବ ।

ବାବୁଙ୍କର ନଜର ପିଙ୍ଗା ଜାଲପରି । ଗାଆଁକୁ ଗାଁଆ ସେ ପିଙ୍ଗନ୍ତି ଜାଲ । ତାଙ୍କ ତଳିଆ କର୍ମଚାରୀଙ୍କୁ ଲଗେଇ ଖୋଜାଲୋଡ଼ା କରନ୍ତି । ଏଥରକ ଗସ୍ତରେ ଆସିଲାବେଳେ ବାବୁଆଣୀଙ୍କୁ ସେ କଥାଦେଇ ଆସିଥିଲେ । 'ଯେମିତି ହେଲେ ପିଲାଟିଏ ଧରି ଆଣିବି ତୁମପାଇଁ' । ସତକୁ ସତ ଗାଆଁଟିରେ ସରକାରୀ କାମ ଆରମ୍ଭ ନକରୁଣୁ ପିଲା ଖୋଜିବା କାମଟି ସେ ଆରମ୍ଭ କରିଦେଲେ ।

ଖୋଜା ହେଲା । ସେଇ ଖୋଜା ଖୋଜିରେ ପିଲାଟି ଧରା ହେଇଗଲା । କ'ଣ କରନ୍ତେ ବାପ ମାଆ । ଭୋକିଲା ପେଟର ରଡ଼ନିଆଁକୁ ଅଣ୍ଟିରେ ପୁରାଇ କେତେ ଆଉ ସମ୍ଭାଳିବେ । ବାବୁଙ୍କର ଓଦାହାତ । ତାଙ୍କ ହାତରେ ପଡ଼ିଲେ ପେଟର ନିଆଁତ ଲିଭିବ ତା ସାଙ୍ଗକୁ ମଣିଷ ହେଇଯିବ ପିଲାଟି । ଗାଁଆରେ ରହି ଧକ୍କୁଚି । "ଦିଅ ପଠେଇ ଦିଅ । ବାବୁଟି ଭାରୀ ଭଲ ମଣିଷ" । ଗରିବ ଗାଆଁ ବାଲାବି ଭଲଲୋକି କରି ଜାଣନ୍ତି । ଅତଏବ ପିଲାଟିକୁ ବାପ ମାଆ ଟେକିଦେଲେ ବାବୁଙ୍କ ହାତରେ । ବାବୁ ନଗଦାନଗଦ କଞ୍ଚାପଇସା କିଛି ପକେଇ ଦେଲେ । ଏଣିକି ଫି'ମାସ ଶେଷରେ ନିୟମିତ ମିଳିବ କିଛି ପଇସା ।

ସାଇ ପଡିଶା ରୁଣ୍ଡହେଲେ । ବାବୁଙ୍କ ସରକାରୀ ଜିପ୍ ପଛପଟେ ଲଦାହେଲା ପିଲାଟି । ଗାଡି ଗାଁଆକୁ ପଛକରି ଧାଇଁଲା ସହର ଆଡେ । ଜିପ୍‌ର ଧୂଳି ଭିତରେ ଛୋଟ ଗାଆଁଟି କାହିଁ କେତେ ଦୂରରେ ପଛକୁ ରହିଗଲା । ଏପରିକି ତା'ର ଡେଙ୍ଗା ଡେଙ୍ଗା ତାଳଗଛବି ବୁଡିଗଲେ ସେଇ ଧୂଳିରେ ।

ପିଲାଟି ବାବୁଙ୍କ ସହରରେ ତା'ର ଥରିଲା ପାଦ ଥୋଇଲା ।

ବାବୁଘର କାମ କେତେ ଫରକ ସତେ ! ଘର ଭିତର ଗୁଡାକ ଆଲୁଅରେ ଉବୁଟୁବୁ । କେତେ ଅଜଣା ଜିନିଷର ଭରା । ଶୋଇବା, ବସିବାପାଇଁ କେତେ ଆଡ କେତେ ଥାନ । ହେଲେ

ପିଲାଟି ସେସବୁରେ ବସି ପାରିବନି କି ଶୋଇପାରିବନି । କାମ ସରିଗଲେ ସେ ତଳେ ବସେ, ଚଟାଣ ଉପରେ । ହେଲେ କାମ କୋଉ ସରେକି ? ସବୁ ଜିନିଷ ଏଠି ଅଜଣା । କେତେ ଆଦବ୍ କାଇଦା ।

କାମ କରୁକରୁ ହଡବଡେଇ ଯାଏ ସେ । ଦଶବର୍ଷିଆ ନହକା ହାତ ତା'ର ବାସନମଜା, ଘରଓଳା କାମରେ ପାରିଲା ପଣିଆ ଦେଖେଇପାରେନି । କୋଉଠି କ'ଣ କେତେବେଳେ ଖସି ତଳେ ପଡିଯାଏ ଅନଭ୍ୟସ୍ତ ହାତରୁ । ସେତିକିବେଳେ ଉହୁଙ୍କି ଆସନ୍ତି ମାଆ । କାନ ଧରି ରଗଡି ଦିଅନ୍ତି । ବାବୁ ଏତେପାଟିଟାଏ କରି ଗାଳି ଫଜିତ୍ କରନ୍ତି । ଛି ଛାକର କରନ୍ତି । ତା' ବୟସର ବାବୁଙ୍କ ପୁଅ ଖତେଇ ହେଲାଭଳି ଚାହେଁ । ବେଳେବେଳେ ଉପରକୁ ଜିନିଷ ଫୋପାଡେ ।

ପିଲାଟିକୁ ଲାଗେ ସେ ଘରଟି ଯେମିତି ଜନ୍ତାଟିଏ । ସବୁ ଜିନିଷରେ ଯେମିତି କଣ୍ଟା ବାହରିଚି ଗିଲ ଫଳ ପରି । ହାତ ବାଜିଲେ ଫୋଡି ହେଇଯିବ ।

ସେତିକିବେଳେ ତା'ର ମନେ ପଡିଯାଏ ମାଆ ମୁହଁ । ବାସି ପଖାଳ ବେଲା । ଗାଆଁ ମୁଣ୍ଡର କଇଁଆ ଆଉ କରମଙ୍ଗା ଗଛ । ପ୍ରଧାନଘର ପଛପଟ ଗଡିଆ । ତା' ସାଙ୍ଗ ଗୁରେଇ, ନଟ, ଧୂଳ, ସନା, ମଦନ । ଗାଆଁ ପଛପଟର ସୋରି ସୋରି ଗଭୀର ବିଲ । ବାପାର ଆଦର ଡାକ, ଭାଇ ଭଉଣୀଙ୍କ ଚବଚବ କଥା । ଲୁହ ଲେସିହେଇଯାଏ ଆଖିରେ । ସବୁଆଡେ ତାକୁ ଝାପସା ଦିଶେ ।

ମନ ଉଣା କରି ମୁହଁ ପୋତି ବସିଲେ ମାଆ ବେଳେ ବେଳେ ଆଗତ କଥା କହନ୍ତି । ''ଦିହ ଲଗେଇ କାମ କଲେ ସବୁ ଶିଖିଯିବୁ । ଆମରି ପାଖରେ ରହିବୁ । ଖାଇପିଇ ଚଳିଯିବୁ । ବଡହେଲେ କୋଉଠି ହେଲେ ବାବୁ ତତେ ରଖେଇ ଦେବେ: ତୋ ଆଗରୁ ହୁରୁଷି ଆଉ ଚକରାକୁ ରଖେଇ ଦେଇଛନ୍ତି । ସେମାନେ ତୋରି ଭଳି ଛୋଟଦିନୁ ଆସି ଆମଘରେ ଥିଲେ । ପଛକଥା, ବାପ ମାଆ ଭୁଲି କାମ କର । ପିଲାଟା ସେସବୁ ବୁଝେନା । ଛାତିତାର ଦୁଆପତ୍ରପରି ଥରୁଥାଏ । ଏକ ଉଠେ ଛାତିରେ । ସୁକୁ ସୁକୁ ହେଇ ସେ କାନ୍ଦେ ।

ଏମିତି ବେଶି ହେଲେ ମାଆ ଭାବନ୍ତି ; କାଳେ କୁଆଡେ ନକହି ପଳେଇବ ଟୋକାଟା । ସେଥିପାଇଁ ପୋଲିସ୍‌ର ଧମକ୍ ଦିଅନ୍ତି । ବାବୁ କହନ୍ତି ଖବରଦାର୍ । ଏ ଗେଟ୍ ବାହାରକୁ ଗୋଡ କାଢିବୁନି ।

ଲୁହକୁ ପାଟିରେ ପୂରେଇ ପିଲାଟି ଚୁପ ହୋଇଯାଏ । ଦଶବର୍ଷର ପିଲା ଦେହରେ ଭିତି ମୋଡି ହେଉଥାଏ, ବୟସ୍କ ମଣିଷଟେ ।

ଅଇଁଠା କଣ୍ଟାଖାଇ ପଡିଥାଏ ସେ । ବାବୁଙ୍କ ପୁଅର ସବୁ ଅଇଁଠା, ପୁରୁଣା ବ୍ୟବହୃତ ଦରବ, ତା'ର ଯେମିତି ସ୍ୱାଭାବିକ ପ୍ରାପ୍ୟ । ଚିରା ସାର୍ଟ, ଛିଣ୍ଡା ପ୍ୟାଣ୍ଟ ଯାହା ସବୁ ଅଲୋଡା, ସେସବୁ ଦାନସୂତ୍ରରେ ଅଜଡାହୁଏ ତା'ର ଫୁଙ୍କୁଳା ଦିହ ଉପରେ । ବାବୁଘର ପୁରୁଣା କନାପଟାରେ ସେ ନିତି ଦିନ ସମ୍ଭାଳି ରଖିଥାଏ ନିଜକୁ ।

ଦିନ ଗଡୁଥାଏ । ତା'ରି ଆଗରେ ବାବୁ ଆଉ ମାଆ ତାଙ୍କ ନିଜ ପୁଅଟିକୁ କେତେ ଆଦର କରନ୍ତି । ଅଳି ଅର୍ଦ୍ଦଳି ସହନ୍ତି । ପାଣି ଗିଲାସଟାବି ଧରିବାକୁ ଦିଅନ୍ତିନି ତାକୁ । କହନ୍ତି ''ପିଲାଲୋକ, କୋଉ ଧରି ପାରିବ ?'' ତା'ର ବୟସ ବି ଦଶ । ଅଥଚ ସେ ବାଲ୍‌ଟିଏ ପାଣି ଟେକି ଆଣୁ କୋଉଠି ଟିକେ ଚକ୍‌କିଗଲେ, ଖିଙ୍କାରି ହୁଅନ୍ତି ମାଆ । ବାବୁ କହନ୍ତି - ''ହ୍ୟାପ୍ ନିକମାଟାଏ'' ।

ବାବୁଙ୍କ ପୁଅ ପାଠ ପଢେ । କେତେ ସବୁ ଚିତ୍ର ବହି ଓଲଟାଏ । କି ସୁନ୍ଦର ପୋଷାକ, ବ୍ୟାଗ, ପାଣି ବୋତଲ ଧରି ସ୍କୁଲଯାଏ । ପାଦରେ ଚକ୍ ଚକ୍ ଯୋତା ମୋଜା । ରିକ୍ସା ଆସେ । ନେଇଯାଏ ଯାତରା ଦେଖେଇ ନେଲାପରି । ଘରେ ପଢୁ ଥିଲାବେଳେ କ'ଣ ସବୁ ପାଟିକରି ଦୋହରାଏ ସେ । କେବେ କେବେ ବାବୁ କିମ୍ବା ମା, ପୁଅ ମୁଣ୍ଡରେ ହାତ ବୁଲେଇ କହନ୍ତି- ''ଆମ ଧନ ବଡହେଲେ ଅମୁକ ହବ । ସମୁକ ହେଇ ତମୁକ କରିବ ।''

ପିଲାଟି ଶୁଣେ ସେକଥା । ଶୁଣୁଶୁଣୁ ତା ନିଜକଥା ଭାବେ । ଗାଆଁ ସ୍କୁଲକୁ କେତେଦିନ ଯାଇଥିଲା ସିଏ । ମୋଟେ ଭଲଲାଗିଲାନି ସେଠି । ତୁଛାଟାରେ ସେ ମାଷ୍ଟ୍ରଟା ବାଡେଇଲା । ଶେଷକୁ ଆଉ ଗଲାନି । ବାପା ମାଆବି କିଛି କହିଲେନି ସେ ବିଷୟରେ ।

ଓଲଟି କହିଲେ - ''ଘରେ ରହି ସାନ ଭାଇ ଭଉଣୀଙ୍କୁ ଜଗେ ।'' ଏମିତି ଭାବୁ ଭାବୁ ସେ ନିଜ ହାତକୁ ଚାହେଁ । ଆଙ୍ଗୁଠି ସନ୍ଧିରେ ମାଡୁଥିବା ପାଣିକନ୍ଦା ଘା'ଉପରେ ଟିପ ବୁଲେଇ ଆଣେ । ଶେଥା ପଡିଯାଇଥିବା ନଖଗୁଡାକୁ ଦେଖେ, କେମିତି ସରି ସରି ଯାଉଛି ଘଷି ହେଇ ହେଇ ।

ସବୁଦିନେ ରାତିରେ ବାବୁ ପଢାଘରେ ପୁଅକୁ ପଢାନ୍ତି । କେତେ ଆଦର କେତେ କଥା କହନ୍ତି ତା'କୁ । ଆକଟ କରନ୍ତି । ଚଗଲାହେଲେ ବୁଝାନ୍ତି । ସବୁବେଳେ କହୁଥାନ୍ତି ବଡହେଲେ ତୁ ଏଇଆ ହବୁ । ଫୁସୁଲେଇ କେତେ ବାଗରେ କହନ୍ତି ସେ । କହି କହି ପୁଅ ମନରେ ଆଲୁଅ ଭରି ଦିଅନ୍ତି । ତା' ବଗୁଲିଆ ଆଖି ଆନନ୍ଦରେ ଚକ୍‌ଚକ୍ କରେ ।

ସେତିକିବେଳକୁ ରୋଷେଇ ସରିଯାଇଥାଏ । ମାଆ ଖଟରେ ପଡି କ'ଣ ଗୋଟେ ଚିତ୍ରବହି ପଢୁଥାଆନ୍ତି । ଏଣେ ପଢାଘର ପାଖ ସିଡିପାହାଚରେ ପିଲାଟି ବସି, ବାବୁ ଆଉ ବାବୁଙ୍କ ପୁଅର କଥା ଶୁଣୁ ଶୁଣୁ ଆକାଶକୁ ଚାହେଁ । ଚାହୁଁ ଚାହୁଁ କ'ଣ ଗୋଟାଏ ସେ ଖୋଜି ବସେ । ତାରାବୁଣା ବିସ୍ତୀର୍ଣ୍ଣ ଆକାଶରେ କେତେ ଅନ୍ଧାର ସତେ ! ଏଠି ଅନ୍ଧାର କଳା ନୁହେଁତ । କେମିତିକା ଗୋଟେ ଅଲଗା ଅନ୍ଧାର ସତେ ! ବୁଝେଇ ହବନି ସେକଥା । ଆଉ ସେମିତି ଅନ୍ଧାର କୋଉଠି ନାହିଁ । ପିଲାଟି ଆବାକାବା ହେଇ ଚାହିଁରହେ ଅନ୍ଧାର ଭିତରକୁ । ସେଇଠି ତାକୁ ସହସା ଦିଶିଯାଏ ଗୋଟେ ମାଟି ରାସ୍ତା । ଲମ୍ବି ଲମ୍ବି ଯାଇଛି କାହିଁ କେତେ ଦୂରକୁ । ରାସ୍ତାର ଶେଷ ମୁଣ୍ଡଆଡକୁ ସେ ଆଖି କୁଞ୍ଚେଇ ଚାହେଁ, ହଠାତ୍ ଉଜ୍ଜଳି ଉଠେ ତା'ର ଆଖି ଦୁଇଟି ।

ତା'କୁ ଗାଆଁ ମୁଣ୍ଡ ଦିଶେ । ଦିଶୁଥାଏ ଗାଆଁ ମୁଣ୍ଡ ସପନେଶ୍ୱରଙ୍କ ମନ୍ଦିରର ତ୍ରିଶୁଳ ଆଉ ପତାକା । ଚହଲିଯାଏ ପିଲାଟା ପୋଖରୀ ପାଣିରେ ଢେଲାଟାଏ ପଡିଯିବା ପରି ।

ସେଉ ପାହାଚରେ ବସି ସେ ଅନ୍ଧାରରେ ଅଙ୍କ କଷିବା ଆରମ୍ଭ କରିଦିଏ । ସହରରୁ ଗାଆଁକୁ ପଡିଥିବା ସଡକମାନଙ୍କର ଦୂରତା ଖୋଜୁଥାଏ । ପିଲାଟି ବାବୁଘର ସିଡିରୁ ମାଆକୋଳଯାଏଁ ମାପୁଥାଏ ଚାଖଣ୍ଡ ଚାଖଣ୍ଡ ମାଟି । ଉତ୍ତର ଅଣ୍ଡାଳୁଥାଏ ଥରକୁ ଥର ।

ଆକାଶରେ ମାଟିରାସ୍ତାଟି ଦିଶୁଥାଏ ତାକୁ ପ୍ରାଞ୍ଜଳ ହେଇ । ପଢାଘରୁ ବାବୁଙ୍କ ପୁଅର ପାଟି ଶୁଭୁଥାଏ ।

# ଔରସ୍ୟ

ହୃଷୀକେଶ ପଣ୍ଡା

## ଅ

ଅଗଣାରେ ଛୋଟ ଆମ୍ବଗଛ, ଅଗଣା ବାହାରେ ବଡ ଆମ୍ବଗଛ । ଆରଣ୍ୟକ ବାରଣ୍ଡାରେ ବସି ଭାବୁଛି ବାପ ପୁଅ ପରି ଦିଶୁଛନ୍ତି ଏ ଆମ୍ବଗଛ ଦିଇଟା । ଖରାବେଳ, ଖରାଦିନ । ମରୁଭୂମିର ସୀମାନ୍ତ, ପାକିସ୍ଥାନର ସୀମା ଖୁବ୍ ଦୂର ନୁହେଁ । ଖରା, ଧୂଳି । ସୁନ୍ଦର ଲୋକେ । ଏତେ ଖରାରେ ମରୁଭୂମିରେ କଷ୍ଟରେ ଥିବା, ପୁଣି ଅପବାଦ ଯେ ସମସ୍ତେ ଅଫିମ ଖାଆନ୍ତି, ଲୋକେ ଏତେ ସୁନ୍ଦର ହୁଅନ୍ତି କିପରି ? ପାକିସ୍ଥାନ ସାଙ୍ଗେ ଯୁଦ୍ଧ ହେଲେ, ତାଙ୍କ ୟୁନିଟ୍‌ର ମୁଭ୍‌ମେଣ୍ଟ୍ ଆଗେ ହିଁ ହେବ । ଯୁଦ୍ଧ ହେଲେ କ'ଣ ଭଲ ହେବ ? ଯୁଦ୍ଧ ହେଲେ ସେ ମରିଯାଇ ପାରେ । ହୁଏତ ସେ ହଠାତ୍ କମିଶନ୍‌ଡ୍ ଅଫିସର ହୋଇଯାଇ ପାରେ । ଯାହା ହଉ ପଛେ, ବୋର୍ ହବ ନାହିଁ ଯୁଦ୍ଧ ହେଲେ । ଯୁଦ୍ଧ ହେଲେ ସେ ଆମ୍ବଗଛଙ୍କୁ ଅନେଇ ବାପ ପୁଅଙ୍କ ତୁଳନା କରିବ ନାହିଁ । ଦୁଃଖ ପାଇବ ନାହିଁ । ଛୁଟି ଦିନ ରହିବ ନାହିଁ ତା'ର; ଛକାଛକ ଛକାଛକ ଦିନ ସବୁ ଗଡିଯିବ, ସକାଳ ସଂଞ୍ଜ ଓ ରାତି ସବୁ ଗଡିଯିବ, ଛକା ଛକ୍‌ଛକାଛକ୍ ।

ଅବଶ୍ୟ ଏ ଯାଏଁ ସେ ସତ ଯୁଦ୍ଧ ଦେଖି ନାହିଁ । ଖାଲି ଅପରେସନ୍ ହାର୍ଡ୍ ଓୟାର ଦେଖିଛି - ଗୋଟେ ମସ୍ତବଡ ଯୁଦ୍ଧର ତିଆରି-ଲାଗୁଥିଲା ଯୁଦ୍ଧ ହୋଇଯିବ, ପ୍ରାୟ ସମସ୍ତେ ଚାଲିଯାଇଥିଲେ, ଓ ଆରଣ୍ୟକଙ୍କୁ ଖଣ୍ଡେ ସତସ୍ତରୀର ଦାୟିତ୍ୱ ଛାଡିଯାଇଥିଲେ । ସେ କେତେ ଦିନ ଆରଣ୍ୟକ ସତେକି ବଡ ସାହେବ, କମାଣ୍ଡିଂଙ୍କ ଅଫିସର ବନି ଯାଇଥିଲା । ଯାହା କହୁଥିଲା, ତାହା ହଉଥିଲା, ଝପାଝପ୍ । ଫୋନ୍ ଲଗା କହୁଥିଲେ ଲାଗୁଥିଲା ସାଙ୍ଗେ ସାଙ୍ଗେ, ଭାରତର କୋଉ କୋଣକୁ ବି ହଉ । ଯାହା ସେ ସିଦ୍ଧାନ୍ତ ନେଉଥିଲା, ତାହା ଶେଷ ସିଦ୍ଧାନ୍ତ ଥିଲା, ତା' ଉପରକୁ କେହି ନଥିଲେ । ଛୁଟିରୁ ଡକରା ହୋଇଥିବା ଜଣେ କ୍ୟାପ୍‌ଟେନ୍ ଓ ଜଣେ ମେଜର ପେଖନା କରି କେଉଁଠି ଲୁଚୁଥିଲେ, ତାଙ୍କୁ ସେ ଠାବ କରିଥିଲା । ଯଥାକ୍ରମେ ବମ୍ବେର ଗୋଟେ ଗଳିରେ ଓ କେରଳର ଗୋଟେ ଗୁଳୁରାତି ପ୍ଲାଣ୍ଟେସନ୍ ପାଖରେ । ସେମାନେ ଫେରି ତା'ରି ହାତରୁ ଅର୍ଡର୍ ଧରି ଆଗକୁ ଚାଲିଯାଇଥିଲେ । ଅପରେସନ୍ ହାର୍ଡ୍‌ଓୟାର୍ ଆଉ ଯୁଦ୍ଧ ବନିଲା ନାହିଁ । ଅପରେସନ୍ ହୋଇ ରହିଗଲା । କିଏ କହିଲା ପ୍ରଧାନମନ୍ତ୍ରୀ ଡରିଗଲା । କିଏ କହିଲା ରୁଷିଆ ଡରିଗଲା, କିଏ କହିଲା ଆମେରିକା ମନା କଲା ।

## ଆ

"ଆ ଆଆଆର୍ । ହେଇ ଆର୍ । ଜଲ୍ଦି ଆ ।"

ସକାଳ ଖରାର ନୀରବତା ଚିରିଗଲା । ଯୁଦ୍ଧ ? ନାଁ । ଓମ୍‌କାର୍ ଆସୁଥିଲା । ହାବିଲ୍‌ଦାର ଓମ୍‌କାର ।

ଆରଣ୍ୟକଙ୍କୁ ୟୁନିଟ୍‌ରେ ସମସ୍ତେ ଆର୍ ବୋଲି ଡାକନ୍ତି । କାରଣ ଆରଣ୍ୟକ ପରି ଏତେ ଜଟିଳ ପାଟିଏ ନାଁ ଅଧିକାଂଶ ଆର୍ମି ଲୋକଙ୍କ ବୁଦ୍ଧିରେ/ପାଟିରେ ପଶେ ନାହିଁ ।

''କ'ଣ ହେଲା ?''

''ଗୋଟେ ରିଭଲଭର ଚୋରି ହୋଇଯାଇଛି ।''

ଆରଣ୍ୟକ କହିଲା ଓ ଠିଆ ହୋଇ ପଡିଲା ।

''କେବେ ? କୋଉଠୁ ?''

''ତମ ପିଲାଙ୍କ ଭିତରୁ କିଏ କରିଥିବ ।''

''ନାଁ, ନାଁ ଏମିତି କହନା ଓମ୍‌କାର୍‌ । ନୂଆ ପିଲାଙ୍କୁ ବଦନାମ୍ କରନା । ଧର, ଏଠି ଆମ ଭିତରେ କିଏ ଗୋଟେ ଟେରରିଷ୍ଟ୍ ଥିବ ! ସେ କାହିଁକି କରିବ ନାହିଁ ଯେ ? ଚାଲ ଦେଖିବା କଣ ହଉଛି ।''

ଇ

ଇନ୍ଦୁ ଆରଣ୍ୟକର ଝିଅ । ତିନିବର୍ଷ ବୟସରେ ତା'ମା' ଦିନେ ତାକୁ କଚେରୀକୁ ଅର୍ଡର୍ କରେଇ ନେଇଗଲା । ତା' ସାଙ୍ଗେ କ୍ରାନ୍ତି ବୟସ ପାଞ୍ଚବି ଚାଲି ଗଲା । ଆରଣ୍ୟକର ଦୋଷଥିଲା ଯେ, ସେ ବାପା ଥିଲା ମାଆ ନଥିଲା; ସେ ସ୍ତ୍ରୀ ପରି ନ କାନ୍ଦି ତଳକୁ ମୁହଁ ପୋତି ଠିଆ ହୋଇଥିଲା । ସ୍ତ୍ରୀ ତା' ପ୍ରତି ଅସଂଖ୍ୟ ଦୋଷ ଆରୋପ କରୁଥିବା ବେଳେ ସେ ପ୍ରତିବାଦ କରିନଥିଲା; ସ୍ତ୍ରୀ ଉପରେ କୌଣସି ଦୋଷ ଆରୋପ କରିନଥିଲା; ପିଲାଙ୍କୁ ମା' ବିରୁଦ୍ଧରେ ଶିଖେଇ ନଥିଲା । ମକଦ୍ଦମା ଲଢିବା ପାଇଁ ଲମ୍ବା ଛୁଟି ନେଇ ପାରିନଥିଲା ।

ଦ୍ବିତୀୟ ଦିନ କଚେରୀରେ ଶେଷ ଥର ଠିଆ ହୋଇଥିବା ବେଳେ, ଇଂଦୁକୁ ସେ ଶେଷ ଥର ଦେଖିଥିଲା, ସେ ଗୋଟାଏ ଦିନରେ ଗୋଟେ ଭୟଭୀତ କଙ୍କାଳର ଛବି ପାଲଟି ଯାଇଥିଲା । ଗୋଟାଏ ଦିନରେ ସେ କଣ କରେ ପିଲାଙ୍କୁ ଯେ ସେମାନେ ଏମିତି ହୋଇଯାଆନ୍ତି ? କ୍ରାନ୍ତି ଭୟଭୀତ ହରିଣ ଛୁଆ ପରି ତା' ପାଖକୁ ଦଉଡି ଆସି ଥିଲା ଓ ସେଇ ଭୟ ଧରି ଫେରିଯାଇଥିଲା ।

କେତେ ବର୍ଷ ଆଗେ ? କେତେ ଦିନର କଥା ? ଇନ୍ଦୁ, କ୍ରାନ୍ତି ଓ ତାଙ୍କ ମା'କୁ ଫେରାଇ ଆଣିବାକୁ ସେ କେତେଥର ଯାଇଥିଲା । ସ୍ତ୍ରୀର କଥା ଅନୁସାରେ ସବୁ କରିଥିଲା । ସ୍ତ୍ରୀର ବାପାର ଗୋଡ ଧରିଥିଲା, ତା' ମା'ର ଗୋଡ ଧରିଥିଲା, ତା'ସ୍ତ୍ରୀ ତା' ଉପରେ ଛେପ ପକେଇଲା ବେଳେ ରାଗିନଥିଲା । ଗାଁ ସାରା, ପାଖଆଖ ଗାଁ ସାରା ସେ ଶୁଣିଥିଲା ଯେ ସେ ସବୁଦିନ ମଦ ପିଇ ତା' ସ୍ତ୍ରୀକୁ ପିଟେ, ଯେମିତି ସବୁ ଆର୍ମି ଲୋକେ କରନ୍ତି, ଯଦିଓ ସେ ପ୍ରାୟ ପିଉନଥିଲା । ତା'ସ୍ତ୍ରୀ ଆସିଥିଲା ଓ ଚାଲିଯାଇଥିଲା । କାରଣ ତା'ସ୍ତ୍ରୀ କଥାରେ କୁଆଡେ ସେ ଯଥେଷ୍ଟ ଉତ୍ସାହ ଦେଖାଇ ନଥିଲା, ଯଦିଓ ଉତ୍ସାହ ଦେଖାଇଥିଲା, ସେ ଉତ୍ସାହ ତା' ମୁହଁରେ ପ୍ରତିଫଳିତ ହୋଇନଥିଲା, ଯଦିବା ଦିଶିଥିଲା, ସେଥିରେ ଆନ୍ତରିକତା ନଥିଲା ଓ ପୁଣି ଚାଲିଯାଇଥିଲା ।

''ସ୍ବାମୀ ସ୍ତ୍ରୀ ସଂପର୍କ ଏଇ ମାଂକଡସା ଜାଲର ସୂତା ଖିଅରେ ବଂଧାଯାଏ ନାହିଁ, '' ତା' ପିଲାଦିନର ସାଙ୍ଗ ନବୀନ ତାକୁ ଚିଠି ଲେଖିଥିଲା । କଳାକାର ନବୀନ ଭାରି ଭଲ ସାଙ୍ଗ ତା'ର । ଭାରି ଭଲ ଚିଠି ଲେଖିଥିଲା । ''କାରଣ ମାଂକଡସା ଜାଲ ଛିଣିଯାଏ । କାରଣ ଗୋଟେ ସ୍ତ୍ରୀ ମାଙ୍କଡସା ଦିନରେ କୋଡିଏଟି ପର୍ଯ୍ୟନ୍ତ ମାଂକଡସାକୁ କୋପୁଲେସନର ମୂହୂର୍ତ୍ତକ ପରେ ହିଁ ଜଳଖିଆ କରିଦେଇ ପାରେ । ପିଲାଙ୍କ ବିନା ତୋ' ମନ ଭାଙ୍ଗି ଯାଇଥିବ, ମୁଁ ଜାଣେ । ହେଲେ ପିଲାଙ୍କୁ ଥରେ ଚାଲିବାକୁ ଶିଖେଇ ଦେଲେ, ସେମାନେ ଚାଲିଯାଆନ୍ତି, ଆଉ ଫେରନ୍ତି ନାହିଁ । କେହି କାହା ପାଇଁ ବଞ୍ଚେ ନାହିଁ, କେହି କାହା ପାଇଁ ମରେ ନାହିଁ । ବଞ୍ଚିବା ପୋଖରୀରେ ଗାଧୋଇବା ପରି ନୁହେଁ, ନଈରେ ଗାଧୋଇବା

ପରି । କେହି ସେଇ ନଈରେ ଦୁଇଥର ଗାଧୋଇ ପାରେ ନାହିଁ । କାରଣ ଦ୍ୱିତୀୟଥର ଗାଧୋଇବା ବେଳକୁ ପ୍ରଥମ ଥରର ପାଣି ତଳକୁ ବୋହି ଯାଇଥାଏ ।''

ଆରଣ୍ୟକ ଆଉ ଫେରି ଯାଇ ନଥିଲା । ପ୍ରଥମେ କେତେ ଦିନ ଏକାଟିଆ କାନ୍ଦିଥିଲା, କବାଟ ବନ୍ଦ କରି । ତକିଆ ଭିତରେ ମୁହଁ ଗୁଞ୍ଜି । କାଳେ ଅନ୍ୟ ମାଷ୍ଟର୍‌ବାବୁ ମାନେ ଶୁଣିଦେବେ । କାଳେ ଅନ୍ୟ ରିକୃଟ ଶୁଣିଦେବେ । ଛଅଫୁଟ୍ ଲମ୍ବା ବଡି ବିଲ୍‌ଡର୍ ମାଷ୍ଟର ବାବୁ ହାବିଲ୍‌ଦାର ଆରଣ୍ୟକ, ତାଙ୍କ କୋର୍‌ର ସବୁଠୁ ଶିକ୍ଷିତ, ଜ୍ଞାନୀ ଓ ସମ୍ମାନିତ ଲୋକ ରିକୃଟ୍‌ଙ୍କ ପାଇଁ, ସେ ରିକୃଟ୍‌ମାନଙ୍କ ଆଗରେ କାନ୍ଦି ପାରିନଥାନ୍ତା ।

## ଈ

ଈରାବଂଶୁ ୟୁନିଟ୍‌ର କମାଣ୍ଡିଂଗ୍ ଅଫିସର୍ ଥିଲା । ସେ ଠିଆ ହୋଇଥିଲା, ନିଶକୁ ମୋଡୁଥିଲା ଓ ଆଖି ଛୋଟ ଛୋଟ କରି ସମସ୍ତଙ୍କୁ ସନ୍ଦେହରେ ଦେଖୁଥିଲା । ସେ ଯଦି ସତରେ ଗୋଟେ ପ୍ରଫେସନାଲ୍ ଚୋରଧରା ପୁଲିସ୍ ହୋଇଥାନ୍ତା, ତା'ହେଲେ ସହଜରେ ଜାଣି ଯାଇଥାନ୍ତା ଯେ ସେ ଜବାନ୍‌ମାନଙ୍କ ଭିତରେ ଚୋର ନଥିଲା । କିନ୍ତୁ ସେ ଚୋର ଧରା ପୁଲିସ୍ ନଥିଲା । ସେ ଏକ ଲେଫ୍‌ଟ୍‌ନାଣ୍ଟ୍ କର୍ଣ୍ଣେଲ୍ ଥିଲା । ଆର୍ମିରେ ତା'ର ଆଉ ଯାହା ଅପବାଦ ଥାଉ ନା କାହିଁକି ଚାଲାକ୍ ବୋଲି ଅପବାଦ ନ ଥିଲା ।

କିଛି ଅଂଦାଜ କରିନପାରି ସେ ପାଟି କରୁଥିଲା: 'କୁହ, ମୋତେ ଜଲଦି କୁହ ।'

ସେ ଜଣ ଜଣ କରି ପଚାରିଗଲା । ଅଲଗା ଅଲଗା ଡାକି । ପୁଣି ଦି' ଦି' ଜଣ କରି । ଖରା ଧାସ ସମସ୍ତଙ୍କ ମିଛକୁ ପୋଡ଼ି ସତ ଓ ସତକୁ ପୋଡ଼ି ମିଛ କରିଦେବା ପର୍ଯ୍ୟନ୍ତ । କିଏ କୋଉଠି ଥିଲା ସକାଳଠୁ । କିଏ କିଏ ସେଦିନ ଆସିଥିଲେ ଆର୍ମରିକୁ ଓ ତା ଆଗଦିନ । କ୍ୟାଡେଟ୍ ଭିତରୁ କିଏ କିଏ ଅନୁପସ୍ଥିତ ଥିଲା କୋଉଠି କୋଉଠି କେତେବେଳୁ କେତେବେଳୁ । ଲମ୍ବା ଚଉଡ଼ା କାମ ହେଲା, ଲେଖା ହେଲା, ପ୍ରାୟ ଶହେ ପୃଷ୍ଠାର କାଗଜପତ୍ର, ଜମାନବନ୍ଦୀ । କାଗଜପତ୍ର ଏତେ ମୋଟା ହୋଇଗଲା ଯେ, ତା' ଭିତରୁ ଭଲ କିଏ ଭେଲ କି, ସେ ବୁଝିବା ଆଉ ଗୋଟେ କାରଖାନା । ଈରାବଂଶୁ ସେ କାଗଜ ବଣ୍ଡିଲ୍ ଉପରେ ଅତି ଗୋପନୀୟ ଲେଖିଲା ଓ ଆଲମାରୀରେ ରଖି ଚାବି ପକେଇ, ଚାବିକାଠି ପକେଟ୍‌ରେ ରଖିଲା । ସେ ପରେଡ୍ କରି ଖସୁଥିବା ଓପରଓଳି ଖରାରେ ଧାଡ଼ିହୋଇ ଠିଆ ହୋଇଥିବା କ୍ୟାଡ଼େଟ୍‌ମାନଙ୍କ ମୁହଁକୁ ନିରେଖିଲା, ସତେକି ସମସ୍ତଙ୍କ ମୁହଁ ଗୋଟେ ଗୋଟେ କାଚ ଆଲମିରାର ପଛପଟ ମସ୍ତିଷ୍କ ଭିତରେ ଲୁଚାଯାଇଛି । ଶେଷ ମୁଣ୍ଡରେ ପହଁଚି ସେ କ୍ୟାଡ଼େଟ୍‌ମାନଙ୍କ ପଛପଟେ ପାରେଡ୍ କଲା ସତେକି କାଚ ଆଲମିରାର କାଚଟା ମୁହଁରେ ନୁହେଁ, ମୁଣ୍ଡର ପଛପଟେ ଲାଗିଛି ଓ ସେଠିବି ନ ପାଇ ଆଗପଟେ ଆଉ ଗୋଟେ ପାରେଡ୍ ମାରି ଧାଡ଼ି ଶେଷରେ ପହଞ୍ଚିବା ବେଳକୁ, ଯେବେ ସମସ୍ତେ ଭାବିଲେ ସେ ଆଉଥରେ ପଛପଟୁ ବୁଲି ପୁଣି ଆଗକୁ ଆସିବ, ସେ ଫଲ୍ ଆଉଟ୍ ନ କରେଇ ସିଧା ମାର୍ଚ୍ଚ କରି ତା' ଘରକୁ ଚାଲିଗଲା ।

ଅପେକ୍ଷା କରି କରି ଫଲ୍ ଆଉଟ୍ ହେଲା ବେଳକୁ ସଂଜ ।

## ଉ

ଉପରୁ, ସତେକି ଶୂନ୍ୟରୁ ବଡ଼ ହନୁ ମାଙ୍କଡ଼ଟି କୁଦା ମାରିଥିଲା । ଆରଣ୍ୟକ ଦୁଃଖରେ ବାରଣ୍ଡାରେ ବସିଥିଲା । କୋଉ ଗୋଟେ ନୂଆ ରିକୃଟ୍‌ର କାମ ଯେ ଚୋରି । ନ ହେଲେ ଏମିତି ବୋକାଙ୍କ ପରି ଚୋଋି ହୁଅନ୍ତାନି । ଚୋରି ହବା ସାଙ୍ଗେ ସାଙ୍ଗେ ଚୋରି ଆବିଷ୍କାର ହୁଅନ୍ତାନି । ମିଛରେ ଏଇନେ ସେମାନେ ବି ବଦନାମ୍‌ରୁ କାଣିଚାଏ ଲଭିବେ ।

ଘରକୁ ପଶିବା ବେଳକୁ ଗୋଟେ ବଡ଼ ମାଈ ମାଙ୍କଡ଼ ଛୋଟ ଆମ୍ବ ଗଛତଳେ ଶୋଇଥିଲା । ଗୋଟେ ଛୋଟ ମାଙ୍କଡ଼ ତା' ଗୋଡ଼ ପାଖେ ବସି କେପୁଲେସନ୍‌ର ଅଭିନୟ କରୁଥିଲା ଓ ଦାନ୍ତ ଗିଜିଡ଼ଉଥିଲା । ତା' ପରେ ମାଈ ମାଙ୍କଡ଼ଟି ଚାରି ଗୋଡ଼ରେ ଠିଆ ହୋଇଥିଲା ଓ ତା' ଉପରେ ଛୋଟ ମାଙ୍କଡ଼ଟି ପ୍ରଥମେ ଛୋଟ ପିଲା ପରି ଓ ତା'ପରେ କୋପୁଲେସନ୍‌ର ଅଭିନୟ କରି ସବାର ହୋଇଥିଲା । ସେତିକିବେଳେ ବୁଢ଼ା ହନୁଟି ବଡ଼ ଆମ୍ବଗଛକୁ କୁଦା ମାରି ସାନ ଆମ୍ବ ଗଛକୁ ଆସିଥିଲା, ସେଠୁ ତଳକୁ । ଯେ ଛୋଟ ହନୁକୁ ବେକ ପାଖେ ଧରିଥିଲା, ବୁଢ଼ା ହନୁର ହଳଦିଆ ଲମ୍ବା ଦାନ୍ତ ରାକ୍ଷସର ଦାନ୍ତପରି ଦିଶୁଥିଲା ଓ ସେ ଛୋଟ ହନୁଟିକୁ ଉପରକୁ ଫିଙ୍ଗି ଦେଇଥିଲା । ଛୋଟ ଆମ୍ବଗଛ ଉପରେ ପଡ଼ିଥିଲା ।

ମାଈ ହନୁଟି ବୁଢ଼ାହନୁ ପାଖକୁ ଯାଇଥିଲା । ବୁଢ଼ା ହନୁ ତା' କାନ ଧରିଥିଲା । ମାଈ ହନୁ ଚାରି ଗୋଡ଼ରେ ଠିଆ ହୋଇ ବୁଢ଼ା ହନୁ ପାଖେ ଠିଆ ହୋଇଥିଲା, ପଛ କରି । ପୁଣି ପିଠିରେ ଶୋଇଥିଲା ।

ଉ

ଉର୍ଦ୍ଧତନ ଅଧିକାରୀ ବୋଲି ଈରାବଂଶୁର ଆଡ୍‌ଡ୍ରା ଚୌଡ଼ା ଅଲଗା । ତା' ବଙ୍ଗଳା ଅଲଗା । ତା' ବଙ୍ଗଳାରେ ପ୍ରଶସ୍ତ ଲନ୍ । ବଂଗଳା ଚାରିପଟେ ଅନାବଶ୍ୟକ ତାରବାଡ଼ ଯାହା ସପ୍ତାହରେ ଥରେ ରଂଗ କରାଯାଏ । ଆଗପଟେ ଓ ପଛପଟେ ଅନାବଶ୍ୟକ ଚବିଶ ଘଣ୍ଟା ସନ୍ତ୍ରୀ ।

ଈରାବଂଶୁର ପୁଅ ରତମ୍ବରର ବୟସ ଚାରି । ପାଠ ପଢ଼ିବାକୁ ଛୋଟ । (ନର୍ସରୀ/ଫର୍ସରୀକୁ ପାଠ ବୋଲି ଏଠି ଗଣା ଯାଉ ନାହିଁ) ଓ ଘରେ ରହିବାକୁ ବଡ଼ବୋଲି ସେ ଏକୁଟିଆ, ଅନାବଶ୍ୟକ ତାର ବାଡ଼; ଅନାବଶ୍ୟକ ସନ୍ତ୍ରୀ ଡେଇ କ୍ୟାଣ୍ଟନ୍‌ମେଣ୍ଟର ଅଂଚଳ ପାଖରେ, ଯୋଉଁଠି ଛୋଟ ନଈ (ନାମାନ୍ତରରେ ବଡ଼ ଝରଣାଟିଏ ବହି ଯାଉଥିଲା, ଯେଉଁ ଅପବାଦ-ପୂର୍ଣ୍ଣ ଝରଣା ଉପରେ ଏକ ପୋଲ ଥିଲା, ଯେଉଁ ପୋଲର ପ୍ରକୃତ ନାମ ହିଡ଼ ହେବାର କଥା ) ଓ ଯେଉଁ ଝରଣା ନେଇ କ୍ୟାଣ୍ଟନମେଣ୍ଟ ଓ ରାଜସ୍ୱ ବିଭାଗ ଭିତରେ କଳି ଲାଗିଥିଲା ଓ ଯେଉଁ ଝରଣାର ପାଣି ନେଇ ପାକିସ୍ଥାନ ମଧରେ ଏକ ଅନୁଚ୍ଚ କନ୍ଦଳ ରହି ଆସିଥିଲା, ସେଇଠି ବାଲିରେ ପାଦ ରଖି ବାଲିଘର ଖେଳ ଖେଳୁଥିଲା ଓ ଖେଳ ତାକୁ କେହି ଶିଖେଇ ନଥିଲେ । କିନ୍ତୁ ଯଥାକ୍ରମେ ତା'ର ପୁଅ ସାଂଗ ବିଷଦ ଏହାକୁ ଝିଅଙ୍କ ଖେଳ ଓ ତାର ଝିଅ ସାଂଗ ଦରିଣୀ ଏହାକୁ କଙ୍କଡ଼ା ମାନଙ୍କ ଖେଳ ବୋଲି ଅପବାଦ ଦେବାରୁ ସେ ଏକୁଟିଆ ଏ ଖେଳ ଖେଳୁଥିଲା । ପାଣିରେ ବୋଧେ ରେଜା କୁଲିମାନେ ଗାଧୋଇ ଥିଲେ, ସେମାନେ କିଛି କହୁଥିଲେ ଯାହା ସେ ବୁଝିପାରୁ ନଥିଲା ଓ ଗୋରୀ ରେଜା କୁଲିମାନେ ପବନରେ ଲୁଗା ଫୋପାଡ଼ି ଦେଇ ଠୋ, ଠୋ ହସୁଥିଲେ । କାଳେ ସେମାନଙ୍କ ହସିବା ସାଙ୍ଗେ ତା'ର ଏହି ହାସ୍ୟାସ୍ପଦ ଖେଳରେ କିଛିସମ୍ପର୍କଥିବ ।ସେଇଡରରେସେଅପବାଦପୂର୍ଣ୍ଣପୋଲରୁପାଣିସୁଅରତଳଆଡ଼କୁଚାଲିଯାଇଥିଲା । ଯେଉଁଠି ବିସ୍କୁଟ ସଗାରେଟ୍, ସାବୁନ ଓ କଣ୍ଡମ ଖୋଳ କମ୍‌ଥିଲା ଓ ଯେଉଁଠି ପାଣିପୋକ, କଙ୍କଡ଼ା, ବିଛା, ନେଳି ଘାସ ଫୁଲ ଓ ନରମ କାଦୁଅ ବେଶିଥିଲା । ସେଇଠି ବାଲିରେ ବରଂ ଅଧା ବାଲି ଅଧା କାଦୁଅ ଘର ଗଢୁଥିଲା ଓ ସେତିକି ବେଳେ ଥଣ୍ଡା ନିଦା ଲାଗିଥିଲା ବାଲିରେ ଲତପତ କଣ୍ଢେଇଟିଏ ପରି ଯାହାକୁ ସେ ପ୍ରଥମେ କଂକଡ଼ା ବୋଲି ଭାବିଥିଲା, ଓ କଂକଡ଼ା ଅଥବା କଣ୍ଢେଇଟି ଚଂକି ନଥିବାରୁ କଣ୍ଢେଇଟି ଧରି ରତମ୍ବର ଦଉଡ଼ି ଥିଲା ସନ୍ତ୍ରି ପାଖକୁ । ଡ୍ୟାଡ଼ି ବାରଣ୍ଡାରେ ଉତ୍ତେଜିତ ହୋଇ ପ୍ୟାରେଡ୍ କରୁଥିଲେ ଓ ସେଠୁ ଗାଧୁଆ ଘର ବେସିନ୍‌ରେ ପାଣି ଟ୍ୟାପ୍ ତଳେ ଥୋଇଥିଲା ଓ ଗାଧୁଆ ଘରର

ୱାସ୍ ବେସିନରୁ ଏକ ଖେଳ-ସୁଲଭ କଣ୍ଢେଇ ପରିବର୍ତ୍ତେ ଏକ ହତ୍ୟା-ସୁଲଭ ରିଭଲ୍‌ଭର ବାହାରି ଥିଲା ।

ଗ

ଗଡମ୍ବର ପାଟି କରିଥିଲା, ''ଡ୍ୟାଡ଼ି ମମ୍ମି ଦେଖ,'' ପ୍ରଥମେ ମମ୍ମି ଦଉଡ଼ି ଆସିଥିଲେ ଓ ରିଭଲଭରଟିକୁ ଛୁଇଁବାକୁ ଯାଉଥିଲା ବେଳେ ପଛେ ପଛେ ଡାଡ଼ି ଆସି ପାଟିକରି 'ଏଇ ଛୁଅଁ ନା' ବୋଲି କହିଥିଲେ । ତା'ପରେ ସେ ବେସିନ୍ ତିନି ପାଖରେ ବୁଲି ସେଇଟି ରିଭଲ୍‌ଭର ଅଥବା କଣ୍ଢେଇ ଅଥବା କଙ୍କଡ଼ା ଆଉଥରେ ଦେଖିଥିଲେ । ବେସିନ୍‌ର ଚତୁର୍ଥ ପାଖକୁ ସେ ଯାଇପାରି ନ ଥିଲେ । କାରଣ ସେ ପେଟ କାନ୍ଥ ଥିଲା ।

''ଡୋଣ୍ଟ ଟଚ୍ ଇଟ୍'' ଡ଼ାଡ଼ି ପୁଣିଥରେ ଇଂରାଜୀରେ କହିଥିଲେ ଓ ଫୋନ୍ ପାଖକୁ ଯାଇ ଅପରେଟ୍‌ରକୁ ଖବର ଦେଲେ ମେଜରକୁ ଆସିବାକୁ । ମେଜର ଅଫିସ୍ ଆସିଥିଲେ ଓ ସମସ୍ତେ ଫଲଇନ୍ ହୋଇଥିଲେ । ଜୱାନ ଏନ୍‌ସିଓ, ରିକ୍ରୁଟ୍ ଓ ବ୍ୟାଟ୍‌ମ୍ୟାନ୍ ଓ ଡାକ୍ତର ଓ ନର୍ସ ।

ଗେଟ୍ ପାଖେ ଥିବା ମିଲିଟାରୀ ପୋଲିସ୍‌କୁ ଗାଧୁଆ ଘରକୁ ଡକରା ହୋଇଥିଲା । ସେ ରିଭଲ୍‌ଭର୍ ଖୋଲି ତା' ଭିତରେ ଛଅଟି ଗୁଳି ଆବିଷ୍କାର କଲା । ଗୁଳିକୁ ଅଲଗା ରଖିଲା ଓ ରିଭଲ୍‌ଭର୍‌କୁ ରୁମାଲରେ ବାନ୍ଧିଲା ।

''ଫୁଟାଣିଆ ତହରା !'' କମାଣ୍ଡିଂ ଅଫିସର ଇରାବଂଶୁ କହିବାକୁ ଚାହିଁଥିଲା, ଯାହାକୁ ଇଂରାଜୀରେ ସେ କହିଥିଲା, ''ଫ୍ୟାଷ୍ଟିଡ଼ିଅସ୍ ବାଷ୍ଟାଡ଼'' ସତେକି ସେଥିରେ ଆଂଗୁଠି ଛାପା ଥିଲା ଓ ସେ ସେଇ ଆଂଗୁଠି ଛାପାକୁ ଚୋର ଧରିଦେବ ।

ଡ୍ରେସ୍ ଚଢ଼େଇ ଇରାବଂଶୁ ଅଫିସ୍ ବାହାରି ଯାଇଥିଲା । କାଲି ଝଡ଼ ଓ ଲୁ ବହୁଥିଲା, ଦକ୍ଷିଣରୁ ଉତ୍ତରକୁ । ସବୁ ସବୁ ବାଲିର ତାପ ସତେକି ନିଖୁଣ ପିଚୁରାସ୍ତା ଓ ରଙ୍ଗକରା ଇଟା ଧାଡ଼ିର ବଂଧେଇ ଡେଇଁ ଚାଲି ଯାଉଥିଲେ । ଅଫିସ୍ ବାହାରେ, ଖରାରେ, ବିଭିନ୍ନ ଫର୍ମେସନ୍‌ରେ ଲୋକେ ଠିଆ ହୋଇଥିଲେ । ଧୂଳି ଓ ଖରା ସେମାନଙ୍କ ପାଟିରେ ପକ୍ଷି ଖାଦ୍ୟ ନଳୀକୁ ସିଝେଇ ଦେଇଥିଲା । କିନ୍ତୁ ସେମାନେ କିଛି ନ ହେବା ପରି ଠିଆ ହୋଇଥିଲେ ।

ଅଫିସ୍‌ଘର ପଥରରେ ତିଆରି ହୋଇଥିଲା । ଧୂଳି ଝଡ଼ରୁ ରକ୍ଷା ପାଇବା ପାଇଁ ସେ ଘରେ ଦୁଇ ପରସ୍ତ କାନ୍ଥ ଥିଲା । ଦରଜା ନୁଆଣିଆ ଥିଲା ଦୁଇ ପରସ୍ତ କାନ୍ଥରେ ସାମ୍ନାସାମ୍ନି ହୋଇ ଦୁଇହଳ ମାତ୍ର ପଥର ଜାଲି ଝରକା ଥିଲା । ପଥର ଜାଲି ଝରକାକୁ ଆବୋରି ଇରାବଂଶୁ ବସିଥିଲା ଓ ଯାହା ଥଣ୍ଡା ପବନ ଆସୁଥିଲା ତାକୁ ତା'ର ବିଶାଳକାୟ ଓ ଶୃଙ୍ଖଳାଶ୍ରୟୀ ଦେହରେ ଅଟକେଇ ଦେଇଥିଲା । ମେଜର ବ୍ୟାଟନ୍ ଧରି ଦୋରୋଗା ପରି ଠିଆ ହୋଇଥିଲା । ମିଲିଟାରୀ ପୁଲିସ୍ ସବ୍‌ଜାନ୍ତା ପରି ହସୁଥିଲା ।

ଜଣଜଣ କରି ଭିତରକୁ ସମସ୍ତଙ୍କୁ ଡକା ହେଉଥିଲା ଓ ମେଜର ସେମାନଙ୍କୁ ପଚାରୁଥିଲା । ସକାଳର ସବୁ ଡ଼ସିଅର୍ ଇରାବଂଶୁ ସାମ୍ନାରେ ଥୁଆ ହୋଇଥିଲା ଓ ସେ ସତେକି ସେ ସବୁକୁ ନିବିଷ୍ଟ ଚିତ୍ତରେ ପଢୁଥିଲା । ସେ କିନ୍ତୁ ସମସ୍ତଙ୍କୁ ସନ୍ଦେହ-ଜନକ ଅପରାଧି ହିସାବରେ ନିରୀକ୍ଷଣ କରୁଥିଲା, ଓ ତା' ସନ୍ଦେହ ଯେତେ ବେଶି ହେଉଥିଲା, ସେ ସେତେ ବେଶୀ ଜୋରରେ ତା' ନିଶ ମୋଡୁଥିଲା ଓ ତା' ଆଖି ସେତେ ଛୋଟ ଛୋଟ କରୁଥିଲା ।

# ଏ

ଏକତ୍ରିଂଶ ରିକ୍ରୁଟ୍‌ଟି ଦୋଷୀ ବୋଲି ଧରା ପଡ଼ିଗଲା । ଅବଶ୍ୟ ତା ଧରା ପଡ଼ିବା ସାଙ୍ଗେ ଭରାବଂଶୁର ନିଶ ମୋଡ଼ିବା ବା ଆଖି କୁଞ୍ଚିବାର କୌଣସି ଭୂମିକା ନ ଥିଲା । ଏକତ୍ରିଂଶ ରିକ୍ରୁଟ୍‌ଟି, ଯାହାର ନାମ ଓଝା ଥିଲା, ସେ ଏକ ଘରକିଆ ଥିଲା । ତାକୁ କେହି କେହି କବି ଓ କେହି କେହି ପାଗଳ ବୋଲି କହୁଥିଲେ । ଦିପହରେ ଦେଇଥିବା ଏକରାରନାମା ଅନୁଯାୟୀ ସେ ବାରଟାରୁ ଗୋଟେ ଭିତରେ ଫ୍ଲାଗପୋଷ୍ଟ ପାଖେ ଇଟାରେ ଚୂନ ଦେଉଥିଲା । କିନ୍ତୁ ତା'ର ପାଉଁଶିଆ କଟାକ୍ଷ ଓ ତା' ସର୍ଜେଣ୍ଟର ବକ୍ତବ୍ୟ ଅନୁଯାୟୀ ସେ ହସ୍‌ପିଟାଲ୍ ଯାଇଥିଲା । ହସ୍‌ପିଟାଲରେ ବୋଧେ ସେ କିଛି ସମୟ ବସିଥିଲା, କିନ୍ତୁ କୌଣସି ଡାକ୍ତରକୁ ଦେଖେଇ ନଥିଲା ଓ ହଷ୍ଟେଲ୍‌କୁ ଫେରିଥିଲା ସିକ୍ ବୋଲି କହି । କିନ୍ତୁ ହଷ୍ଟେଲ୍‌ରେ ସିକ୍‌ରେ ଥିବା ହରମିନ୍ଦର ତାକୁ ଦେଖିନଥିଲା । ସନ୍ତ୍ରୀଟିଏ ଆଗ ଦିନ ବାରଟା ପଇଁତାଳିଶରୁ ଗୋଟାଏ ଭିତରେ ଓଝାକୁ ନଈ ଆଡ଼କୁ ଯିବାର ଦେଖିଥିଲା; ଅନ୍ୟତ୍ର ଓଝା କ୍ରମେ ସ୍ୱୀକାର କରୁଥିଲା ଯେ, ହଁ, ହଁ, ସେ ନଈ ଆଡ଼େ ଯିବାର ଦେଖିଥିଲାତ ? ନାଁ ତା'ର ତ ମନେ ପଡୁନାହିଁ ।

# ଐ

ଐତିହ୍ୟରେ ନଥିଲା ଏମିତି ପିସ୍ତଲ୍ ଚୋରି । ହଁ ରାଇଅଟ୍‌ସ୍ ବେଳେ ହୋଇଥିଲା, ସେ ବେଳ ଅଲଗା ଥିଲା । ସେ କଳଂକିତ ଇତିହାସ କେହି ମନେ ପକେଇବାକୁ ଚାହାନ୍ତି ନାହିଁ । କେବେ କେବେ ଗୋଟେ ଗୋଟେ ଜବାନ୍ ଯୁଦ୍ଧରୁ ବନ୍ଧୁକ ଧରି ନିଖୋଜ ହୋଇଯାଆନ୍ତି ତେବେ ସେ ଯୁଦ୍ଧ ବେଳର କଥା ଅଲଗା । କିନ୍ତୁ ବେସ୍ ୟୁନିଟ୍‌ରୁ ! ଐତିହ୍ୟ ବି ନଥିଲା ଏମିତି ଚମତ୍କାର ସ୍ପିଡ୍‌ରେ ଧରା ପଡ଼ିବା ।

ଆରଣ୍ୟକ ପକେଟ୍‌ରେ ହାତ ଭର୍ତ୍ତି କରି ଘରକୁ ଫେରୁଥିଲା । ଯେତେହେଲେ ଓଝା ତା'ର ଛାତ୍ର ପରି । ଏକଥା ସତ ତିନିମାସ ଆମେ, ସେ ତାକୁ ଜାଣି ଥିଲା । ଏକଥା ସତ ତିନି ଦିନ ପରେ ସେ ଆଉ ତାକୁ ଜାଣିବ ନାହିଁ, କାରଣ ଓଝାତ ଆଉ ସ୍ଥାୟୀ ଚାକିରୀରେ ନାହିଁ ଯେ ତା'ର ରେଗୁଲାର କୋର୍ଟ୍‌ମାର୍ଶାଲ୍ ହେବ । ଚଟାପଟ ଟର୍ମିନେସନ୍ ହୋଇଯିବ, କେସ୍ ବି ହେବ ନାହିଁ, ସେଥିରେ ହଜାର ଖୋଳତାଡ଼, ବଦନାମ୍, ଅପିଲ୍ ଓ ଓକିଲ ।

ଅଥଚ ଆରଣ୍ୟକ ଓ ଓଝା ଭିତରେ କଣ ଗୋଟେ ଅତି ଅବୁଝା ରହିଗଲା । ଓଝା ବିଷୟରେ ଆରଣ୍ୟକ କିଛି ଜାଣି ପାରିଲା ନାହିଁ ଏ ତିନିମାସରେ । ଖାଲି, "ମାଷ୍ଟର୍‌ଜୀ ନମସ୍ତେ ।" ଚୀନର ମାନଚିତ୍ର । ପାକିସ୍ଥାନର ୟୁନିଫର୍ମ । ରକ୍ତ ସଂଚାଳନ । ଛୁଟି ଦରଖାସ୍ତ କିପରି ଲେଖାଯାଏ । ଅଂଧାରରେ ବାଦୁଡ଼ି କିପରି ଦେଖେ । ରାଡାର୍ କିପରି ଦେଖେ । ଅଥଚ ଓଝା ପିସ୍ତଲ କାହିଁକି ଚୋରି କଲା ସେ ଜାଣିଲା ନାହିଁ ।

କ'ଣ ଗୋଟେ ବଡ଼ ଆମ୍ବଗଛକୁ କୁଦା ମାରିଲା । ହନୁ ହବ ବୋଧେ । ଆରଣ୍ୟକ ଅନେଇଲା । ଉପରୁ ମାଙ୍କଡ଼ ଛୁଆଟିକୁ ତଳକୁ ଜୋରରେ କିଏ ଫୋପାଡୁଥିଲା । ଆରଣ୍ୟକ ଅନେଇଲା । ଉପରୁ ବୁଢ଼ା ହନୁ । ତଳେ ଛୁଆ ହନୁଟି ପଡ଼ିଗଲା ବେଳେ ମାଈ ହନୁଟି ତାକୁ ଧରି ଘିରେଇ ଘରେଇଁ ଗଛ ଉପରକୁ ଫୋପାଡୁଛି । ବୁଢ଼ାହନୁ ତାକୁ ଧରି ପକେଇ ତଳକୁ ଫୋପାଡୁଛି ।

ଆରଣ୍ୟକ ଆମ୍ବଗଛ ମୂଳକୁ ଗଲା । ମାଈ ହନୁ ଆଖିରେ ରାଗ, ଖରାରେ ସେ ଦିଶୁଛି ଅସୁରୁଣୀ ପରି ଯେ ଗୋଟେ ଗୋଡ ନିଆଁରେ ଭର୍ତ୍ତି କରି ଆଉ ଗୋଡ଼ ସେକି ହୁଏ । ସେ ଖିଙ୍କାରି ଆସିଲା । ଆରଣ୍ୟକ ଦୁଇପାଦ ମଝିରେ ଛୁଆ ହନୁଟି । ମଣିଷ ଭିତରେ ଥିବା ଚୁମ୍ବକ ଶକ୍ତି ଓ ଅନ୍ୟାନ୍ୟ ସାଇକିକ୍ ଜିନିଷ ବିଷୟରେ ତା'ର ଭାରି ବିଶ୍ୱାସ । ତା' ଗୋଡ଼ ପାଖେ ଛୁଆ ମାଙ୍କଡଟି ଜାକିଜୁକି ବସିଛି, ମାଈ ମାଙ୍କଡଟି ଖଣ୍ଡେ ଦୂରରେ ଠିଆ ହେଇଛି । ଏକ ଭୟରେ ସେ ମାଈ ମାଙ୍କଡକୁ ଅନେଇଛି, ସତେକି ତା' ତୃତୀୟ ନୟନରୁ ଅଗ୍ନି ସ୍ଫୁରିତ ହେବ ଓ ମାଈ ହନୁକୁ ପୋଡ଼ିଦେବ । ଆରଣ୍ୟକ କାରାଟେ ଭଂଗୀରେ ଠିଆ ହେଲା । ଉପରୁ ଅଣ୍ଡିରା ହନୁଟି ଖେଁ ଖେଁ କଲା କିନ୍ତୁ ତଳକୁ ଅନେଇଲା ନାହିଁ ।

ଆରଣ୍ୟକ ଠିଆ ହେଇରହିଲା ।

ସତେକି ହାରିଯାଇଛନ୍ତି, କିନ୍ତୁ, ସମ୍ପୂର୍ଣ୍ଣ ପରାସ୍ତ ହୋଇ ନାହାନ୍ତି, ସେମିତି ଖତେଇ ହୋଇ ଦୁଇ ବଡ଼ ହନୁ ଚାଲିଗଲେ । ଆରଣ୍ୟକ ବାରଣ୍ଡାକୁ ଆସିଲା । ତା ପଛେ ପଛେ ଛୁଆ ହନୁ । ଛୁଆହନୁକୁ ସେ ଡେଟଲ ପାଣିରେ ପୋଛି ଦେଲା ଓ ଚିନାବାଦାମ ଖାଇବାକୁ ଦେଲା ।

## ଓ

ଓମ୍‌କାର ସକାଳୁ ସକାଳୁ ପହଂଚିଲା ।

''ରାତି ଚାଲିଯାଏ । ଇଣ୍ଟରୋଗେସନ୍ ଚାଲିଲା । ଆଜି ଟର୍ମିନେଟ୍ ହୋଇଯାଉଛି ।

''କ'ଣ ପାଇଁ ସେ ଏମିତି କଲା ? ଆଜିକାଲି ଚାକିରି ପାଇବା ଯୋଉ କଷ୍ଟ, ଚାକିରି ଗଲା । ରେକର୍ଡ଼ ସବୁଦିନ ଖରାପ । ପୁଲିସ୍ ଭେରିଫିକେସନ୍‌ରେ ସିଭିଲିଅନ୍ ଚାକିରିବି ପାଇବ ନାହିଁ ।''

''ସେ କଣ କହିଲା ଜାଣୁ ? କହିଲା ଚାକିରିରେ ଭର୍ତ୍ତି ହେଇଥିଲା ଖାଲି ପିସ୍ତଲ୍ ଚୋରି କରିବ ବୋଲି । ଏମିତି କଥାତ ଆମେ ଆଗରୁ ଶୁଣିଛୁ, ହେଲେ ଯେ କିଛି ଚୋରି ଡକାୟତି କରିବା ପାଇଁ ନୁହେଁ । କି କୋଉ ଆତଙ୍କବାଦୀଙ୍କ ବ୍ରେନ୍‌ୱାଶିଂ ପାଇଁ ନୁହେଁ । ଏକୋଇଶି ବର୍ଷ ତଳେ ତା ମା' ତା ବାପାକୁ ଛାଡ଼ି ଚାଲି ଆସିଥିଲା କିମ୍ବା ତା' ବାପା ତା ମା'କୁ ତଡ଼ି ଦେଇଥିଲା । ଏକୋଇଶ ବର୍ଷ କାଳ ତା' ମା' ତାକୁ ଦେଖିବାକୁ ଛାଡ଼ିନାହିଁ ତା ବାପାକୁ । ଏକୋଇଶ ବର୍ଷ କାଳ ତା ବ୍ରେନ୍‌ୱାଶିଂ କରିଛି ତା' ମା', ତା ବାପା ବିରୁଦ୍ଧରେ । ସେ ଚାକିରି କରିଥିଲା । ଏଇଥି ପାଇଁ ଯେ, ରିଭଲ୍‌ଭର ଚୋରି କରିବ, ଓ ତା' ବାପାକୁ ହତ୍ୟା କରିବ ଓ ସେ ପୁଣିଥରେ ନାଁ ବଦଳେଇ ଗାଁ ବଦଳେଇ ଚାକିରି କରିବ । ପୁଲିସ୍ ହଉ, ସି.ଆର୍.ପି. ଫ ହଉ, କଉଥିରେ ବି ବନ୍ଧୁକ କି ରିଭଲଭର୍ ଚୋରି କରିବ ଓ ତା' ବାପାକୁ ହତ୍ୟା କରିବ ।''

## ଔ

ଔରସ୍ୟକୁ ଥରେ କଣ ଚାଲିବାକୁ ଶିଖେଇ ଦେଲେ ସେ ଚାଲିଯାଏ ଓ ଫେରେନାହିଁ । ସତେ କଣ ଜୀବନ ପୋଖରୀରେ ନୁହେଁ, ନଦୀରେ ଗାଧୋଇବା ପରି ଓ ଏକା ନଦୀରେ ଦୁଇଥର ଗାଧୋଇ ହୁଏ ନାହିଁ ଅବା ଔରସ୍ୟ ଓଝା ପରି ପୁଣିଥରେ ଫେରିଆସେ ?

# ରେବେକାର କଙ୍କାଳ

ପୁଷ୍ପାଞ୍ଜଳି ନାୟକ

ଜୀବନ ତୁଚ୍ଛ ମନେହୁଏ ଜ୍ୟୋତିର । ଏ ଏମିତି ଏକ ଯନ୍ତ୍ରଣା, କାହା ପାଖରେ କହି ହୁଏନା କି ସହି ହୁଏନା ।କଅଣଭାବିବେଅନ୍ୟମାନେ ?ଯଦିସେମାନେଜାଣିବେ,ସେଇଅହଂକାରୀଝିଅଟିବ୍ୟକ୍ତିଗତ ଜୀବନରେକେତେଦୁର୍ବଳ,କେତେଅସହାୟ ?ପ୍ରାଣରସେଇଗୋପନଇଲାକାରେକେତେନିଃସଂଗ, କେତେ ଦୁଃଖୀ ? ଯେଉଁଠି ତା' ଲାଗି ଅହରହ ରେବେକା ନାମରେ କୁହୁକିନୀ ନାରୀଟିଏ ଗୋଡ଼ ଲମ୍ୱାଇ ବସିଛି । ଜିଅନ୍ତା ମାଂସରେ ଯା'ର ଲୋଭ । ଉଷୁମ ରକ୍ତରେ ଯା'ର ତୃପ୍ତି ।

ଅଥଚସବୁଦିନେଏମିତିହୁଏନା ।ଥରେଥରେରେବେକାତା'କକ୍ଷଭିତରକୁପଶିପାରେନା । ସେ ଦରଜା ସଶବ୍ଦରେ ବନ୍ଦ କରି ଶୁଭ୍ରାଂଶୁଙ୍କ ବକ୍ଷରେ ଆଖି ବୁଜିଦିଏ ।ସ୍ୱପ୍ନରେ ବିଭୋର ହୋଇଯାଏ । ତାଙ୍କର ବଳିଷ୍ଠ ଆଶ୍ଳେଷ ଭିତରେ ପିଷ୍ଟ ହେଉ ହେଉ ଭାବିବାକୁ ଚେଷ୍ଟା କରେ, ଏଇ ମୁହୂର୍ତ୍ତ ଜୀବନର ପରମ ମୁହୂର୍ତ୍ତ ମାତ୍ର । ସମର୍ପଣର ଏଇ ଲଗ୍ନ, ବାଞ୍ଛିତ ପୁରୁଷ ସହିତ ଏକ ହୋଇଯିବାର ଏଇ କ୍ଷଣ । ରେବେକା ବୋଲି କେହି କେବେ ନ ଥିଲା ।

ଶୁଭ୍ରାଂଶୁଙ୍କର ବକ୍ଷରେ ମଥା ରଖି ସେ ସ୍ମୃତିଚାରଣ କରେ । ପ୍ରଥମ ପ୍ରେମର ସେଇସବୁ ବ୍ୟଥାସ୍ନିଗ୍ଧ ସ୍ମୃତି ବର୍ଷା ହୋଇଯାଏ । ସେ ଶୀତଳ ହୋଇଯାଏ । ଶୁଭ୍ରାଂଶୁ ତା'ର ଚିରଦିନ ତା'ର , ଚିରଦିନ ତାର । କେବେ ରେବେକାର ନ ଥିଲେ କି ହେବେନାହିଁ ।

ଜହ୍ନରାତି ଭଳି ଶୀତଳ ଆଶ୍ୱାସନା ନେଇ ଶୁଭ୍ରାଂଶୁଙ୍କର ସୁଠାମ ବାହୁ ଦୁଇଟି ଲମ୍ୱିଆସେ । ଜହ୍ନଭିଜା ଚାନ୍ଦିନୀ ଭଳି ସେ ସୁଖରେ, ସନ୍ତୋଷରେ ଝଟକି ଉଠେ ।

ସବୁଦିନେ ଏମିତି ହୁଏନା ।

ଦିନେ ଦିନେ ସମୟ ଅଟକିଯାଏ । ରେବେକା ଅବା ବନ୍ଧଟିଏ ହୋଇଯାଏ ।

ତା'ର ଦିନ ଢଁଡେନା, ରାତି କଟେନା ।

ହଠାତ୍ ଦେଖେ ଜ୍ୟୋତି, ସେ ଯାଇଥିବା ସଭାରେ ଗୋଟାଏ କୋଣରେ ରାଜରାଣୀ ଭଳି ଅଳଙ୍କାର ବିମଣ୍ଡିତା ହୋଇ ରେବେକା ବସିଛି ବା ତା' ସହରରେ ହେଇଥିବା କୌଣସି ଉତ୍ସବରେ ମଞ୍ଚ ଉପରୁ ବିଭିନ୍ନ ସାମାଜିକ ସମସ୍ୟା ଉପରେ ଭାଷଣ ଦେଇଛି ।

ଚାହିବନି, ଚାହିବନି, ଭାବୁ ଭାବୁ ଜ୍ୟୋତି ଚାହିଦିଏ । ଯିବନି, ଯିବନି ଭାବୁ ଭାବୁ ସେ ସଭା ଭିତରକୁ ପଶିଯାଏ ।

ରେବେକା !

ଏକଦା ଶୁଭ୍ରାଂଶୁଙ୍କର ପ୍ରଥମ ପତ୍ନୀ । ଆଜି ଜଣେ ପ୍ରତିଷ୍ଠିତା ସମାଜ ସେବିକା ଏବଂ ସହରର ଜଣେ ରାଜନୈତିକ ନେତାଙ୍କର ଧର୍ମପତ୍ନୀ । ଯଦିଓ ତାକୁ ସେବିକା ବୋଲି ଭାବି ପାରେନି ଯେ ତା'ର ଧାରଣା ତା'ର ଏଇ ପଦ ପଛରେ ରହିଛି ତା'ର ସ୍ୱାମୀଙ୍କର ରାଜନୈତିକ ପ୍ରତିପତ୍ତି ଏବଂ ସମାଜର ବିଭିନ୍ନ ମହଲରେ ତାଙ୍କର ଅକୁଣ୍ଠ ପଦଚାରଣା ।

କେତେବେଳେ ରେବେକା ଶାଶ୍ୱତୀ ହୋଇଯାଏ, କେତେବେଳେ ଶାଶ୍ୱତୀ ରେବେକା ।

ଅସହାୟ ଭାବରେ ତା'ର ବେତ୍ରାଘାତରେ ଉକ୍ତାକ୍ତ ହେଉ ହେଉ ଜ୍ୟୋତି ଥରେ ଥରେ ଭାବିବସେ, ଜଣେ ପୁରୁଷ ଜୀବନରେ ଦ୍ୱିତୀୟ ନାରୀ ହେବାର ଭୁଲ ସେ କଲା କାହିଁକି ?

ସେ ଜାଣିଥିଲା, ଜଣେ ପୁରୁଷ ଜୀବନରେ ଦ୍ୱିତୀୟ ନାରୀ ହେବାରେ ଅନେକ ଦୁଃଖ ଅଛି, ହେଲେ ସେ ଦୁଃଖ ଏମିତି ଅତଳସ୍ପର୍ଶୀ ହେବ, ତା'ର ଧାରଣା ନ ଥିଲା ।

ଅଥଚ ଏସବୁ ତ କିଛି ନୂଆକଥା ନୁହେଁ ।

ଶୁଭ୍ରାଂଶୁତ ତାକୁ ପ୍ରଥମରୁ କିଛି ଲୁଚାଇ ନ ଥିଲେ । ଭଲ ପାଇବାର ସେଇ ପ୍ରଥମ ଦିନରୁ ସେ ତ ଜାଣିଥିଲା, ତାଙ୍କର ଏକ ଅତୀତ ଅଛି, ଯେଉଁ ଅତୀତରେ ସେ ନ ଥିଲା ।

କୌଣସି ଦିନ ସେ ଅତୀତର ମୁଖ ଖୋଲିବାକୁ ସେ ଆଗ୍ରହ ଦେଖାଏ ନାହିଁ ତାକୁ ଭୟ ଲାଗେ । ଅଥଚ ତା'ର ଶାନ୍ତିରେ ରହିବା ହୁଏନାହିଁ କେତେବେଳେ ନା କେତେବେଳେ କେଉଁ ନା କେଉଁଥିଲରେଅତୀତରଗହ୍ୱରଉପରୁପ୍ରସ୍ତରଖସିପଡ଼େ ।ରେବେକାରୂପନେଇଶାଶ୍ୱତୀଉଠିଆସେ ।

ଜ୍ୟୋତି ବୁଝେ, ଶୁଭ୍ରାଂଶୁ ରେବେକାକୁ ଆହୁରି ଭୁଲି ନାହାନ୍ତି । ଅନ୍ତତଃ ଏ ଜୀବନରେ ରେବେକାର ଗ୍ରାସରୁ ତା'ର ମୁକ୍ତି ନାହିଁ ।

ସେଥର ପୁରୀ ସମୁଦ୍ର କୂଳରେ ସେଇ ନିଛାଟିଆ ଜହ୍ନରାତି । ଭରା ସମୁଦ୍ରର ଉତ୍ତାଳ ଜୁଆର ବେଳାଭୂମିରେ ମଥା ପିଟୁଛି । ଝାଉଁବଣର ମର୍ମର ଧ୍ୱନି । ଭରାଜ୍ୟୋସ୍ନାର ସେଇ ଅନିନ୍ଦ୍ୟ ରୂପ ଦେଖୁ ଦେଖୁ ସେ ଅନ୍ୟମନସ୍କ ହୋଇଯାଇଥିଲା ।

ମନର ଆବେଗରେ ସେ କହି ଉଠିଥିଲା, ମୁଁ କେବେ ଏଠାକୁ ଆସିନି । ତମେ ଆସିଥିଲ ?

ହଁ, ଆସିଛି । ଶୁଭ୍ରାଂଶୁଙ୍କର ଉତ୍ତର ।

ପଚାରିବନି, ପଚାରିବନି ଭାବୁ ଭାବୁ ସେ ପଚାରି ଦେଇଥିଲା, ଏକା ?

ନା, ଶାଶ୍ୱତୀ ଥିଲା ।

ଜ୍ୟୋତିର ଉତ୍ତର ସମୁଦ୍ରରେ ଭଟ୍ଟା ପଡ଼ିଯାଇଥିଲା ଯେମିକି ।

ଅସହାୟ ଭାବେ ଶୁଭ୍ରାଂଶୁଙ୍କ ମୁହଁକୁ ଅନାଇ ଦେଖିଥିଲା, ସେ ଅସ୍ୱାଭାବିକ ଭାବେ ଗମ୍ଭୀର ଆଉ ବିଷର୍ଣ୍ଣ ହୋଇ ଉଠିଛନ୍ତି । କି ଏକ ଗଭୀର ବେଦନାର ଛାୟାରେ ତାଙ୍କ ମୁଖର ଜ୍ୟୋତି ମ୍ଳାନ ହୋଇ ଯାଇଛି ।

ହୋଟେଲ୍‌କୁ ଫେରିବା ରାସ୍ତାରେ ଦୁଇଜଣ ନିର୍ବାକ୍ ଥିଲେ ।

ସେଦିନ ଅନେକ ରାତ୍ରିରେ ହୋଟେଲର ନିଭୃତ କକ୍ଷରେ ଜିରୋପାୱାରର ବଲ୍‌ବ ଭଳି ନିସ୍ତେଜ ଆଖିରେ ସ୍ୱାମୀଙ୍କୁ ନିରେଖୁ ନିରେଖୁ ସେ ପ୍ରଚଣ୍ଡ କ୍ରୋଧ ଆଉ ଅଭିମାନରେ ଜଳି ଯାଉଥିଲା । ଇଚ୍ଛା ହେଉଥିଲା, ତାଙ୍କୁ ନିଦରୁ ଉଠାଇ ଗୋଟାଏ ମାତ୍ର କଥା ପଚାରନ୍ତା, ଶାଶ୍ୱତୀ ପ୍ରତି ଯଦି ତମର ଏତେ ଦୁର୍ବଳତା, କାହିଁକି ମତେ ଭଲ ପାଇଥିଲ ? ବିବାହ କରିଥିଲ ?

ସେ ପାରି ନ ଥିଲା ।

ୟୁନିଭର୍ସିଟିରେ ପଢ଼ିବା ବେଳେ ଶୁଭ୍ରାଂଶୁ ତା'ର ଅଧ୍ୟାପକ ଥିଲେ । ଗମ୍ଭୀର, ମିତବାକ୍ । ଥରେ ଦୁଇଥର ନୋଟ୍ ନେବା ଛଳରେ ଅଥବା କିଛି ଉତ୍ସବ ଲାଗି ନିମନ୍ତ୍ରଣ ନେଇ ବାନ୍ଧବୀମାନଙ୍କ ମେଳରେ ତାଙ୍କ ଘରକୁ ଯାଇଥିଲା ସେ । ଅଥଚ ତା'ଠାରେ ସେ କଅଣ ଦେଖିଲେ କେଜାଣି, ତା'ର ପ୍ରେମରେ ପଡ଼ିଗଲେ ।

ସେ ଶୁଣିଥିଲା, ଶୁଭ୍ରାଂଶୁ ଖୁବ୍ ଜ୍ଞାନୀ । ଦର୍ଶନଶାସ୍ତ୍ରରେ ଖୁବ୍ ଗଭୀର ଜ୍ଞାନ । ଜ୍ଞାନପାଗଳ ଲୋକ । ଦିନରାତି ବହି ଧରି ଥାଆନ୍ତି ।

ସେତିକିବେଳେ ଆଉ ଏକ କଥା ଶୁଣିଥିଲା ସେ । ତାଙ୍କର ଏହି ବହିପ୍ରୀତି ଲାଗି ଅଭିମାନରେ ତାଙ୍କ ସ୍ତ୍ରୀ ତାଙ୍କୁ ଛାଡ଼ି ଚାଲି ଯାଇଛନ୍ତି । ତା' ନ ହେଲେ ରୂପରେ ଗୁଣରେ ଏମିତି ସ୍ତ୍ରୀ ହୁଏନାହିଁ । ଆଉ ଆଜିଯାଏ ସେ ସ୍ତ୍ରୀକୁ ଭୁଲିନାହାନ୍ତି ସେ । ତା'ରି ବିରହରେ ସେ ଆଜି ଏତେ ବିଷଣ୍ଣ, ତା' ନ ହେଲେ ସେ ଆଗରୁ ଖୁବ୍ ଉଚ୍ଛଳ ଥିଲେ ।

ଆଉ ତା'ପରେ ହଠାତ୍ କୋଣାର୍କ ଝାଉଁବଣରେ ତାଙ୍କର ସେଇ ପ୍ରଶ୍ନ । ତମେ ମତେ ବିବାହ କରିବ ଜ୍ୟୋତି ? ମୋର ସାଥି ହେବ ?

ଶୁଭ୍ରାଂଶୁଙ୍କ କଣ୍ଠରେ ଆବେଗ ନ ଥିଲା, ଭାବପ୍ରବଣତା ନ ଥିଲା, ତାଙ୍କର କଣ୍ଠ ସ୍ପଷ୍ଟ ଏବଂ ଶୀତଳ । ରେବେକାର ସ୍ୱାମୀଙ୍କ ଭଳି ।

ତା' ବିବାହ ମଧ ହୋଇଥିଲା ଖୁବ୍ ଶୀଘ୍ର ଏବଂ ନିରାଡ଼ମ୍ବର ଭାବେ । ବେଦୀ ବାହାଘର କିମ୍ବା କୌଣସି ଆଡ଼ମ୍ବର ବିରୋଧରେ ସେ ଥିଲେ । ଉତ୍ତର ଦେଇଥିଲେ, ମୋର ସେଭଳି ବାହାଘର ଥରଟିଏ ହୋଇଥିଲା ।

ତଥାପି-ତା'ର ରେବେକା କଥା ମନେ ପଡ଼ି ନ ଥିଲା, ଯଦିଓ ବାହାଘରରେ ପାଇଥିବା ଅଜସ୍ର ବହି ଭିତରେ ଅନ୍ୟତମ ଥିଲା ରେବେକା ।

ମନେପଡ଼ି ଯାଇଥିଲା ଯେତେବେଳେ ବାହାଘର ପରେ ପ୍ରଥମ କରି ଶୁଭ୍ରାଂଶୁଙ୍କ ଘରେ ପାଦ ଦେବାକ୍ଷଣି ଆତ୍ମୀୟସ୍ୱଜନ, ଚାକରବାକର ତାକୁ ଅନୁକମ୍ପାର ଦୃଷ୍ଟି କାଢ଼ି କୁହାକୁହି ହୋଇଥିଲେ, ନିହାତି ସାଧାରଣ, ଶାଶ୍ୱତୀ ଭଳି ନା ଅଛି ରୂପ ନା ଆକର୍ଷଣୀ କ୍ଷମତା । ତା'ଛଡ଼ା ଝିଅଟାକୁ ପଦେ କଥା ବି କହି ଆସେନି, ନା ଷ୍ଟାଇଲ ଜଣା, ନା ଆଉ କିଛି । ଶାଶ୍ୱତୀର ସ୍ମାର୍ଟନେସ୍ ଅବା ବ୍ୟକ୍ତିତ୍ୱର କାଣିଚାଏ ମଧ ଝିଅଟା ଦେହରେ ନାହିଁ ଏମିତି ତଳକୁ ମୁହଁପୋତି ବସିବା, ପଦେ କଥା କହିବାକୁ ଯାଇ ଦଶଥର ଛେପ ଢ଼ୋକିବା, ଶାଶ୍ୱତୀ ପାଖେ ଏସବୁ ଭାବି ହୁଏନି ।

ସେଇଦିନ ବୁଝିଥିଲା ଜ୍ୟୋତି, ଖାଲି ଆତ୍ମୀୟସ୍ୱଜନ କିମ୍ବା ଚାକରବାକରଙ୍କ ଆଖିରେ ନୁହେଁ, ଶୁଭ୍ରାଂଶୁଙ୍କର ମନରେ ମଧ ଅବଶିଷ୍ଟ ଜୀବନ ତାକୁ ଶାଶ୍ୱତୀ ସହିତ ବସିବାକୁ ପଡ଼ିବ । ରୂପ, ଗୁଣ, ଶିକ୍ଷା, ସଂସ୍କୃତିରେ ସେଇ ନାରୀଟି ସବୁଦିନେ ତା'ର ପ୍ରତିଦ୍ୱନ୍ଦୀ ହୋଇ ରହିଯିବ । ହୁଏତ ଶୁଭ୍ରାଂଶୁଙ୍କ ଭଲ ପାଇବାରେ ମଧ ।

ସେମାନେ କହନ୍ତି, ତାଙ୍କର ଅତ୍ୟଧିକ ବହିପ୍ରୀତି ଯୋଗୁଁ ଶାଶ୍ୱତୀ ତାଙ୍କୁ ଛାଡ଼ି ଯାଇଥିଲା । ଭାରି ଅଭିମାନିନୀ ଝିଅ । ହେବନି ? କେଉଁ ପରିବାରର ଝିଅ ? ଆଉ ଶୁଭ୍ରାଂଶୁ ତାକୁ ଏବେ ବି ଝୁରୁଛନ୍ତି । ଖାଲି ପଛରେ କହି ସେମାନେ ତୁଷ୍ଟ ରହନ୍ତି ନାହିଁ, କେବେ କେବେ ସାମ୍ନାସାମ୍ନି ଆକ୍ରମଣ କରନ୍ତି, ଶାଶ୍ୱତୀ ସହିତ ତ ତାଙ୍କର ଏତେ ପ୍ରେମ ଥିଲା, ସେ ତମକୁ ବାହାହେଲେ କେମିତି ? ଝିଅ ସତରେ ଖୁବ୍ ଭଲ । ଯେମିତି ଶିକ୍ଷିତା, ସେମିତି ମାର୍ଜିତା । ରୋଷେଇ, ସିଲେଇ ସବୁ ବିଦ୍ୟାରେ ଧୁରନ୍ଧର । ସେମାନଙ୍କର ରାଜଯୋଟକ ଥିଲା । କଅଣ ଯେ ହେଲା, ସେମାନଙ୍କ ଭିତରେ ।

ଜ୍ୟୋତି ଏସବୁ କଥା ଶୁଭ୍ରାଂଶୁଙ୍କୁ କହି ପାରେନା । କେତେବେଳେ କହିବ ? ଅଧେ ସମୟ ତ ଲାଇବ୍ରେରୀରେ, ବାକି ସମୟ ତ ସେ କେଉଁ ସୁଦୂର ରାଜ୍ୟର ଚିନ୍ତାରେ ଯେମିତି ନିମଗ୍ନ ହୋଇ ଯାଇଥାନ୍ତି ।

ସେ ଥରେ ଥରେ ଭାବେ, ସେ ମଧ୍ୟ ଶାଶ୍ୱତୀ ଭଳି ତାଙ୍କୁ ଛାଡ଼ି ଚାଲିଯିବ ବା ଆତ୍ମହତ୍ୟା କରିବ ।

X X X

ପିଲାଦିନୁ ଭଲ ଛାତ୍ରୀ ହିଁ ଥିଲା ଜ୍ୟୋତି । ସବୁବେଳେ ଶ୍ରେଣୀରେ ପ୍ରଥମ ହୋଇ ଆସୁଥିଲା, ଅନ୍ତତଃ ସୁମନ ଆସିବାଯାକେ ।

ସୁମନର ବାପା ସେ ପାଠ ପଢୁଥିବା ସ୍ଥାନକୁ ବଦଳି ହୋଇ ଆସିଥିଲେ । ପାଞ୍ଚଫୁଟ ଉଚ୍ଚତାର ଗେଡା ଚେହେରା । ରଙ୍ଗ ତା'ରି ଭଳି ମଇଳା । ପ୍ରଥମରୁ ତାକୁ ଦେଖି ବିଶେଷ ଭୟ କରି ନ ଥିଲା ଜ୍ୟୋତି । କାରଣ ସପ୍ତମଶ୍ରେଣୀର ବୃତ୍ତି ପରୀକ୍ଷାରେ ସୁମନ ତା' ଭଳି ବୃତ୍ତି ପାଇ ନ ଥିଲା । ସାଧାରଣ ଭାବେ ଦ୍ୱିତୀୟ ଶ୍ରେଣୀରେ ପାଶ୍ ହିଁ କରିଥିଲା ।

ହେଲେ ଅଷ୍ଟମ ଶ୍ରେଣୀର ଷାଣ୍ମାସିକ ପରୀକ୍ଷା ପରେ ହିଁ ତା' ଧାରଣା ବଦଳି ଗଲା । ସବୁ ବିଷୟରେ ସୁମନ ତାଠୁଁ ଅଧିକ ନମ୍ବର ରଖିଥିଲା । ଦୁଃଖ, ଅବସାଦ, ଈର୍ଷାରେ ମ୍ରିୟମାନ ହୋଇ ଯାଇଥିଲା ଜ୍ୟୋତି ।

ସେଇ ଯେ ଦ୍ୱିତୀୟ ହୋଇ ଯାଇଥିଲା ସେ, ଆଉ କେବେ ପ୍ରଥମ ହୋଇ ପାରିଲା ନାହିଁ । ବରଂ ଦିନକୁ ଦିନ ଅଧିକ ଦୁର୍ବଳ ହୋଇ ଯାଇଥିଲା । ସୁମନ କିନ୍ତୁ ଦିନକୁ ଦିନ ଅଧିକରୁ ଅଧିକ ଭଲ କରୁଥିଲା । ସେ ସବୁ ଦିନଗୁଡ଼ିକରେ ଜ୍ୟୋତି କିଛି କମ୍ କଷ୍ଟ ପାଉ ନ ଥିଲା । ସୁମନକୁ ସବୁ ଶିକ୍ଷକମାନେ ଖୁବ୍ ଭଲ ପାଉଥିଲେ । ଡ୍ରାମା, ନୃତ୍ୟ, ବକ୍ତୃତାରେ ତାକୁ ଆଗ ଡାକ ପଡୁଥିଲା । ସ୍କୁଲର ବାର୍ଷିକ ଉତ୍ସବରେ ଯେତେବେଳେ ସୁମନ ଦୃପ୍ତ ଭଙ୍ଗୀରେ ଷ୍ଟେଜ୍ ଉପରକୁ ଯାଇ ଅଲରାଉଣ୍ଡ କପ୍ ଗ୍ରହଣ କରୁଥିଲା, ନିଜ ଛାତିରେ ଶିଳବିଦ୍ଧର ଯନ୍ତ୍ରଣା ଅନୁଭବ କରୁଥିଲା ସେ । କେତେଥର ସେ ମନକୁ ଦୃଢ଼ କରି ସୁମନକୁ ହରାଇବାର ସଂକଳ୍ପ ନେଇ ବହି ଧରି ବସୁଥିଲା, ହେଲେ ପୃଷ୍ଠାଏ ଦି' ପୃଷ୍ଠା ପଢ଼ିବା ପରେ ହିଁ ସେ ଯୁଗପତ୍ କ୍ଳାନ୍ତି ଓ ବିଷାଦରେ ଅବସନ୍ନ ହୋଇ ପଡୁଥିଲା ।

ହୁଏତ କାହାରି ସ୍ନେହବୋଳା ହାତ ତାକୁ ଏ ବିପର୍ଯ୍ୟୟରୁ ରକ୍ଷାକରି ପାରିଥାନ୍ତା, ହେଲେ ଜ୍ୟୋତିର ବାପା ଥିଲେ ଅତ୍ୟନ୍ତ କଠୋର । ବିଶେଷ କରି ପିଲାଙ୍କ ପାଠପଢ଼ା ନେଇ । ତାଙ୍କର ସବୁ ପିଲା ଖୁବ୍ କୃତୀଛାତ୍ର ହୋଇଥିବା ବେଳେ ଜ୍ୟୋତି ଯେମିତି ଦିନକୁ ଦିନ ଦୁର୍ବଳ ହୋଇ ତାଙ୍କ ମୁହଁ କଳା କରି ଦେଉଥିଲା । ତେଣୁ ସେ ତାକୁ କ୍ଷମା କରୁ ନ ଥିଲେ । ବରଂ ସବୁବେଳେ ବ୍ୟଙ୍ଗ, ବିଦ୍ରୂପରେ ତାକୁ ରକ୍ତାକ୍ତ କରି ଦେଉଥିଲେ ।

ସେମାନେ ଅଲଗା କଲେଜରେ ପଢ଼ିବା ପରେ ମଧ୍ୟ ଜ୍ୟୋତି ସୁମନର ଖବର ରଖୁଥିଲା । ଆଉ ସତେ ଅବା ସୁମନକୁ ହରାଇବା ଉଦ୍ଦେଶ୍ୟରେ ସେ କବିତା ଲେଖିବାକୁ ଆରମ୍ଭ କରିଥିଲା ।

ସେଇ କଲେଜରେ ପଢୁ ପଢୁ ସେ ଖବର ପାଇଥିଲା, ସୁମନ ଆଇ.ଏସ୍.ସି ପରୀକ୍ଷାରେ ଫେଲ୍ ହୋଇ ଯାଇଛି ।

ଅନେକ ଦିନରୁ ହୁତାଶନ ଭଳି ଜଳୁଥିବା ସେଇ ଦାରୁଣ ଦୁଃଖ ହଠାତ୍ ଯେମିତି ଥପ୍‌କିନା ଲିଭି ଯାଇଥିଲା ।

ତା'ପରେ ଶୁଣିବାକୁ ପାଇଥିଲା ସେ, ସୁମନ ଗ୍ରାମସେବିକ ଟ୍ରେନିଂରେ ଯାଇଛି । ଆଉ ସେତେବେଳକୁ ଉଦୀୟମାନ କବି ହିସାବରେ ତା'ର ଅନେକ ସୁଖ୍ୟାତି ।

ହେଲେ ପ୍ରତିଷ୍ଠାର ସିଡ଼ିରେ ପାହୁଚ ପାହୁଚ ହୋଇ ଆଗେଇବା ବେଳକୁ ପୁଣି ଥରେ ଥକି ଯାଇଥିଲା ଜ୍ୟୋତି ।

ଶୁଭ୍ରାଂଶୁଙ୍କୁ ସ୍ୱାମୀ ଭାବେ ଗ୍ରହଣ କଲାବେଳେ ତାକୁ ଏ କଥା ମଧ୍ୟ ଗ୍ରହଣ କରିବାକୁ ପଡ଼ିଥିଲା. ତାଙ୍କର ଆଗରୁ ଥରେ ବାହାଘର ହୋଇଥିଲା । ଏ ତାଙ୍କର ଦ୍ୱିତୀୟ ବିବାହ । ଶୁଭ୍ରାଂଶୁ ତାକୁ ଅଦ୍ୱିତୀୟା ବୋଲି କହିଲେ ସୁଦ୍ଧା ସେ ଚିରଦିନ ଦ୍ୱିତୀୟା ହୋଇ ରହିବ । ତା ପାଖେ ପାଖେ ସବୁଦିନେ ରହିବ ଶାଶ୍ୱତୀ, ସ୍ମୃତି ହୋଇ, ଜ୍ୱାଳା ହୋଇ !

ଅଥଚ ଶାଶ୍ୱତୀ ପ୍ରଥମରୁ ଜ୍ୱାଳା ହୋଇ ନ ଥିଲା ।

ଜ୍ୱାଳା ହେଲା ସେଇଦିନଠାରୁ, ଯେଉଁଦିନ ସେ ଜାଣିଲା ଶାଶ୍ୱତୀ କଥା ନେଇ ଶୁଭ୍ରାଂଶୁ ଯେମିତି ଅସ୍ୱାଭାବିକ ଭାବେ ନୀରବ ।

ଶାଶ୍ୱତୀ କଥା ପଚାରିଲେ ତାଙ୍କ ମୁଖର ଦୃଷ୍ଟି ବଦଳି ଯାଏ । ଆହତ ସିଂହ ଭଳି ହିଂସ୍ର ହୋଇ ଉଠନ୍ତି ସେ । ଆଉ ଠିକ୍ ପରେ ପରେ କେଉଁ ଗଭୀର ଚିନ୍ତାରେ ମଗ୍ନ ହୋଇ ଯାଆନ୍ତି । କହନ୍ତି, ତମକୁ ଅନୁରୋଧ, ଶାଶ୍ୱତୀ କଥା ନେଇ ମତେ କେବେ କିଛି ପଚାରିବ ନାହିଁ । ମୁଁ ଖୁବ୍ ଅସୁସ୍ଥ ଅନୁଭବ କରେ ।

ଆଉ ତାକୁ ଜଳାଇବା ଲାଗି ଅବା ଶାଶ୍ୱତୀ ହଠାତ୍ ଦିନେ ତାର ସହରକୁ ଆସି ରହିଲା ।

ଏକାନ୍ତରେ ସେ ନିଜକୁ ତା' ସହିତ ତୁଳନା କରି ବସେ । ସଭାମଣ୍ଡପରୁ ଦାମୀ ଶାଢ଼ୀ ପିନ୍ଧି ଶ୍ୱାଶତୀ ଯେତେବେଳେ ବିଭିନ୍ନ ସାମାଜିକ ସମସ୍ୟା ଉପରେ ଭାଷଣ ଦେଉଥାଏ, ସେ ନିଜକୁ ବୁଝାଏ, ଶାଶ୍ୱତୀ ମନରେ ତା' ସ୍ୱାମୀଙ୍କ ଲାଗି ଦୁର୍ବଳତା ନାହିଁ । ଦୁର୍ବଳତା ଥିଲେ, ମମତା ଥିଲେ ସେ ଅନ୍ୟତ୍ର ବାହା ହୋଇ ପାରିଥାନ୍ତା ? ନିଶ୍ଚୟ ଶୁଭ୍ରାଂଶୁଙ୍କୁ ତ୍ୟାଗ କରିବା କଥା ନେଇ ତା' ମନରେ କୌଣସି ଅବଶୋଷ ନାହିଁ ।

ହେଲେ ଶୁଭ୍ରାଂଶୁ ?

ବାହାରକୁ ସେମାନଙ୍କର ସୁଖୀ ସଂସାର । ଅଥଚ ଜ୍ୟୋତି ଜାଣେ, ଏ ସୁଖ କେତେ ଛଳନାରେ ଭରା । ଥରେ ଥରେ ତା'ର ଭାବିବାକୁ ଇଚ୍ଛା ହୁଏ, ଶୁଭ୍ରାଂଶୁ ହୁଏତ ତାକୁ ଅନୁକମ୍ପାର ଦୃଷ୍ଟି ନେଇ ବିବାହ କରିଛନ୍ତି । ତା' ଭଳି ଶାନ୍ତଶିଷ୍ଟ, ସରଳ, ନିରାଡ଼ମ୍ବର ଝିଅଟିଏ ତାଙ୍କର ଦରକାର ଥିଲା । ଯିଏ କେବେ ଦାବୀ କରିବନି । ଅଧିକାର ସାବ୍ୟସ୍ତ କରିବାକୁ ଯିବନି । ଚୁପ୍‌ଚାପ୍ ଘର ସମ୍ଭାଳିବ ।

ପ୍ରତି ପୁରୁଷଙ୍କ ଭଳି ସେ ଦକ୍ଷ ଘରଣୀଟିଏ ଚାହିଁଥିଲେ । ଆଉ କିଛି ନୁହେଁ । ହୁଏତ ସେମାନଙ୍କ କଥା ସତ । ଶାଶ୍ୱତୀକୁ ସେ ଏବେ ବି ଝୁରୁଛନ୍ତି । ତା ସହିତ ତାଙ୍କର ବିବାହ ଏକ ସାମାଜିକ ଆବଶ୍ୟକତା ଥିଲା ।

ହୋମ କାଠ ଭଳି ନିଃଶବ୍ଦରେ ଝରିଯାଉ ଯାଉ ସେ ନିଜକୁ ନିଜେ ପ୍ରଶ୍ନ କରେ, କଅଣ ଲାଗି ଶୁଭ୍ରାଂଶୁଙ୍କର ଅତୃପ୍ତି ? କଅଣ ଲାଗି ସେ ଏତେ ଉଦାସୀନ ? ଆଉ ଶାଶ୍ୱତୀ ପ୍ରତି ଯଦି ତାଙ୍କର ଏତେ ଦୁର୍ବଳତା, ତା' ଜୀବନକୁ ନେଇ ଖେଳିଥିଲେ କାହିଁକି ?

ଏମିତିରେ ସ୍ୱାମୀ ହିସାବରେ ସେ ଖୁବ୍ ସହଜ, ଖୁବ୍ ସ୍ୱାଭାବିକ । ତା' ଲାଗି ତାଙ୍କର କର୍ତ୍ତବ୍ୟ ପାଳନରେ କୌଣସି ତ୍ରୁଟି ନାହିଁ ସାଂସାରିକ ଜୀବନର ପ୍ରତିଟି କାର୍ଯ୍ୟରେ ସେ ଯତ୍ନଶୀଳ, ଦାୟିତ୍ୱବାନ୍ ।

ହେଲେ କଅଣ ଯେମିତି ନାହିଁ ? ଆନ୍ତରିକତା ? ଯାହା ଦିନେ ଶାଶ୍ୱତୀ ଲାଗି ଥିଲା । ସ୍ୱତଃସ୍ଫୂର୍ତ୍ତତା, ଯା ଦିନେ ଶାଶ୍ୱତୀ ଲାଗି ଝରୁଥିଲା ।

ଅସହାୟଭାବେ ସେ କେବେ କେବେ ରେବେକା ଉପନ୍ୟାସଟି ସ୍ୱାମୀଙ୍କ ହାତକୁ ଟେକିଦିଏ । ସେ ପଢ଼ନ୍ତି ନାହିଁ ହସି କହନ୍ତି, ଏହା ତ ନାରୀ ମନସ୍ତତ୍ତ୍ୱ ଉପରେ ଲେଖା । ମୁଁ ଆଗରୁ ପଢ଼ିଛି ।

ସତରେ ସେ ଶାଶ୍ୱତୀକୁ ଝୁରୁଛନ୍ତି ? କାହିଁକି ଶାଶ୍ୱତୀ ବିରୁଦ୍ଧରେ ଧାଡ଼ିଏ କଥା କହନ୍ତି ନାହିଁ? କାହିଁକି ବିବାହ ବିଚ୍ଛେଦର କାରଣକୁ ଗୋପନ କରି ଯାଆନ୍ତି ?

କି ଦୁର୍ଯୋଗରେ ସେ ରେବେକା କିଣିଥିଲା ? କିଏ ଜାଣିଥିଲା, ରେବେକା ପୁଣିଥରେ ଜୀବନ୍ୟାସ ପାଇ ତା ସଜ୍ଜିତ କକ୍ଷରେ ପ୍ରତି ରାତିରେ ତାକୁ ନିର୍ଯ୍ୟାତିତ କରିବ ?

ସେଇ କଲେଜ ଜୀବନରୁ ରେବେକା ସହିତ ତାର ପରିଚୟ ।

କଲେଜରେ ଇଂରାଜୀ ଅନର୍ସର ଛାତ୍ରୀ ଥିଲା ସେ । ସେତିକିବେଳେ ହଠାତ୍ ଦିନେ ରେବେକା ନାମରେ ଉପନ୍ୟାସଟିଏ କିଣିଥିଲା ସେ । ଖୁବ୍ ସୁନ୍ଦର ଗଳ୍ପ । ଫ୍ରାନ୍‌ସର ଏକ ସମ୍ଭ୍ରାନ୍ତ ବଂଶୀୟ ବିପୁଳ ଐଶ୍ୱର୍ଯ୍ୟବାନ ବ୍ୟକ୍ତି ହଠାତ୍ ଗୋଟାଏ ହୋଟେଲରେ ଅକସ୍ମାତଭାବେ ଶିକ୍ଷା, ସଂସ୍କୃତି ଅବା ଆଭିଜାତ୍ୟହୀନ ଏକ ପରିଚାରିକାକୁ ଭଲ ପାଇ ବସିଛନ୍ତି । ବିନା ପଟ୍ଟଭୂମିକାରେ ସେ ତାକୁ ବିବାହ କରିଛନ୍ତି ଏବଂ ଘରକୁ ଆଣିଛନ୍ତି । ଝିଅଟିର ଏକମାତ୍ର ସୌନ୍ଦର୍ଯ୍ୟ ତା'ର ନିଷ୍ପାପତା ଓ ସରଳତା । ଭଦ୍ରଲୋକଙ୍କର ଏ ଅହେତୁକ ପ୍ରେମରେ ସେ ହତବାକ୍ ହୋଇଯାଇଛି । ଅନେକ ସ୍ୱପ୍ନ ନେଇ ସେ ଆସିଛି ତାର ସ୍ୱାମୀଙ୍କ ଘରକୁ । ଭଦ୍ରଲୋକଙ୍କୁ ସେ ଚିହ୍ନି ନାହିଁ ଅବା ଜାଣି ନାହିଁ ଜାଣିବା ମଧ୍ୟରେ ଏତକ ଜାଣିଛି, ସେ ବିପତ୍ନୀକ । ତାଙ୍କର ପ୍ରଥମ ସ୍ତ୍ରୀ ଏକ ନୌକା ଦୁର୍ଘଟଣାରେ ପ୍ରାଣ ହରାଇଥିଲେ । ସ୍ତ୍ରୀ ବିୟୋଗ ତାଙ୍କୁ ଏତେ ବିଚଳିତ କରିଥିଲା ଯେ ସେ ପାଗଳ ଭଳି ଘୁରି ବୁଲୁଥିଲେ ହୋଟେଲରୁ ହୋଟେଲ ସ୍ଥାନରୁ ସ୍ଥାନ ।

ଝିଅଟିର ବୟସ ଖୁବ୍ କମ୍ । ମନରେ ଅଜସ୍ର ସ୍ୱପ୍ନ । ହେଲେ ସ୍ୱାମୀଙ୍କ ଘରେ ପାଦ ଦେଲେ। ମାତ୍ରେ ତା'ର ସବୁ ସ୍ୱପ୍ନ ଧୂଳିସାତ୍ ହେଲା । ସେ ଘରର ପ୍ରତିଟି ବସ୍ତୁରେ ରେବେକାର ସ୍ପର୍ଶ । ପ୍ରତିଟି ପୁସ୍ତକରେ ତା'ର ହସ୍ତାକ୍ଷର । ଚାକରବାକରଙ୍କଠାରୁ ଆରମ୍ଭ କରି ଆତ୍ମୀୟସ୍ୱଜନ ଯାଏ ସମସ୍ତେ ରେବେକାର ସ୍ଥିତିରେ ପଞ୍ଚମୁଖ । ସେମାନଙ୍କ ମୁହଁରେ ରେବେକାର ରୂପର, ଗୁଣର ପ୍ରଶସ୍ତି । ରେବେକାର ରୂପର ବହ୍ନି ନିକଟରେ ଝିଅଟି ଅବା ସ୍ତିମିତ ପ୍ରଦୀପ ଶିଖାଟିଏ ମାତ୍ର । ପଡୋଶୀମାନଙ୍କ ମୁହଁରେ ମଧ୍ୟ ରେବେକାର ଭୂରି ଭୂରି ପ୍ରଶଂସା । ରେବେକା ଖୁବ୍ ସୁନ୍ଦରୀ ଥିଲା, ରେବେକା ଖୁବ୍ ରୁଚିସମ୍ପନ୍ନା ଥିଲା, ପୋଷାକରେ, ଆଚାରବ୍ୟବହାରରେ, ସାମାଜିକ ଅନୁଷ୍ଠାନରେ ସେ ଥିଲା ପ୍ରଜାପତି ଭଳି ଚପଳା, ଉଚ୍ଛଳା ।

ରେବେକା ! ରେବେକା ! ପ୍ରସାଦର ପ୍ରତିଟି ଇଟା, କଂକ୍ରିଟ୍‌ରେ ଯେମିତି ରେବେକାର ନାମ । ନାମର ପ୍ରତିଧ୍ୱନି ।

ଅଦ୍ଭୁତ ଏକ ହୀନମନ୍ୟତା ବୋଧରେ ଝିଅଟି ଦିନକୁ ଦିନ ବିବଶ ହୋଇ ପଡୁଥିଲା । ରେବେକା ପ୍ରତି ଈର୍ଷା ପ୍ରଭଞ୍ଜନ ଭଳି ତା'ର ହୃଦୟକୁ ଜାଳି ଦେଉଥିଲା । ସେ ଯନ୍ତ୍ରଣାକୁ ବହୁଗୁଣିତ କରିଥିଲା, ସ୍ୱାମୀଙ୍କର ନୀରବତା । ରେବେକା ପ୍ରସଙ୍ଗ ଉଠିଲେ ସ୍ୱାମୀ ମୌନ ହୋଇ ଯାଆନ୍ତି ଅବା । ଅଦ୍ଭୁତ ଏକ ଯନ୍ତ୍ରଣାରେ ତାଙ୍କ ମୁହଁ ବିକୃତ ହୋଇଉଠେ । ନିଃଶ୍ୱାସପ୍ରଶ୍ୱାସର ଗତି ଖରତର ହୋଇ ଉଠେ । ଶିଳବିଦ୍ଧ, ଆହତ ସିଂହ ଭଳି ସେ ହିଂସ୍ର, ଅସ୍ଥିର ହୋଇ ଉଠନ୍ତି ।

ଝିଅଟି ତାଙ୍କର ଏ ପ୍ରତିକ୍ରିୟାର ଅର୍ଥ କରେ, ରେବେକାକୁ ହୁଏତ ଏବେ ବି ଗଭୀର ଭାବେ ଭଲ ପାଆନ୍ତି ସ୍ୱାମୀ । ତା'ର ଅବର୍ତ୍ତମାନରେ ସେ ଭାଂଗି ପଡ଼ିଛନ୍ତି । ହୁଏତ ନିଜ ଭିତରର ସେଇ ଶୂନ୍ୟତାକୁ ଭୁଲିବା ପାଇଁ ସେ ଦ୍ୱିତୀୟ ବିବାହ କରିଛନ୍ତି, କିନ୍ତୁ ରେବେକା ଛାୟା ଭଳି ତାଙ୍କୁ ଅନୁସରଣ କରି ଚାଲିଛି ।

ଝିଅଟିର ଜୀବନ ତାକୁ ଅର୍ଥହୀନ ଲାଗେ । ରେବେକା ପାଇଁ ସ୍ୱାମୀଙ୍କର ଗଭୀର ପ୍ରେମ ପାଖରେ ତା'ର ନାରୀତ୍ୱ ଲାଞ୍ଛିତ ହେଲା ଭଳି ତାକୁ ଲାଗେ । ସ୍ୱାମୀଙ୍କର ଆଲିଙ୍ଗନ ତାକୁ ନିଷ୍ପ୍ରାଣ ଲାଗେ । ସ୍ୱାମୀଙ୍କର ସବୁ କଥା ତାକୁ ପ୍ରାଣହୀନ ଲାଗେ । ସେ ବୁଝେ, ରେବେକାର ଭୂତରୁ ତା'ର ଏ ଜନ୍ମରେ ମୁକ୍ତି ନାହିଁ । ତା'ର ରୂପ, ଗୁଣ ସାରାଜୀବନ ସ୍ୱାମୀଙ୍କୁ ମୋହାଚ୍ଛନ୍ନ କରି ରଖିଥିବ, ସେ ଥିବ ଏମିତି ନାମମାତ୍ର ପତ୍ନୀ ହୋଇ ।

ହଠାତ୍ ଦିନେ ପରଦା ଅପସାରିତ ହୋଇଛି ।

ଝିଅଟି ଜାଣିଛି, ରେବେକାର ବାହାରେ ଯେଉଁ ପରିଚୟ, ଅନ୍ତରର ପରିଚୟ ତା' ନୁହେଁ । ସେ ଥିଲା କାଳନାଗୁଣୀ ଭଳି ଭୟଙ୍କରୀ, ନିଶାଚରୀ, ନଷ୍ଟ-ଚରିତ୍ର ଏକ ବାରବଧୂ । ତା'ର ରୂପରେ ଅନ୍ଧ ହୋଇ, ତାକୁ ଘରେ ସ୍ଥାନ ଦେଇ ସ୍ୱାମୀ ଏକ କାଳନାଗୁଣୀଙ୍କ ଘରକୁ ଆମନ୍ତ୍ରଣ କରିଥିଲେ । ନାଗୁଣୀର ବିଷାକ୍ତ ଦଂଶନରେ ତାଙ୍କର ବୈବାହିକ ଜୀବନ ବିଷାକ୍ତ ହୋଇ ଉଠିଥିଲା, ଲୋକଲଜ୍ଜ୍ୟା ଭୟରେ ସେ ନୀଳକଣ୍ଠ ଭଳି ଅନେକଦିନ ତା'ର ବିଷକୁ ପିଇଥିଲେ, ହେଲେ ଯେଉଁଦିନ ସେ ତାକୁ ତା'ର ପ୍ରେମିକ ସହିତ ନୈଶଅଭିସାରରେ ଦେଖିଲେ, ତାଙ୍କର ସମସ୍ତ ଧୈର୍ଯ୍ୟ ଧୂଳିସାତ ହେଲା । ସେଇ ପୂର୍ଣ୍ଣିମା ରାତିରେ ସେ ତାଙ୍କର ପତ୍ନୀକୁ ହତ୍ୟା ହିଁ କରିଥିଲେ ଏବଂ ତା'ର ମୃତଦେହକୁ ଏକ ନୌକାରେ ରଖି ସମୁଦ୍ରରେ ନୌକାଟିକୁ ଓଲଟାଇ ଦେଇଥିଲେ ।

ଏ ଘଟଣା ଉନ୍ମୋଚିତ ହେଲା ଅନେକ ଦିନ ପରେ । ଝିଅଟିର ଆଖି ଆଗରୁ ମଧ୍ୟ ଆଉ ଏକ ରହସ୍ୟର ପରଦା ଅପସାରିତ ହୋଇଗଲା ।

ରେବେକା ଅସାଧାରଣ ନ ଥିଲା । ଥିଲା ଏକ ସାଧାରଣ କୁହୁକିନୀ ନାରୀଟିଏ ମାତ୍ର । ଆଉ ତା' ସ୍ୱାମୀ ରେବେକାକୁ କେବେ ଭଲ ପାଉ ନ ଥିଲେ ।

ତା' ସ୍ୱାମୀ କେମିତି ହତ୍ୟା ଅଭିଯୋଗରୁ ମୁକ୍ତ ହେଲେ, ସେ ଅଲଗା କାହାଣୀ ।

କିନ୍ତୁ ଏ ଘଟଣା ପରେ ଝିଅଟି ତା'ର ମାନସିକ ଶାନ୍ତି ପୁଣି ଫେରି ପାଇଥିଲା । ସେ ବୁଝିଥିଲା, ସ୍ୱାମୀ ତା'ର ନୀଳକଣ୍ଠ ଭଳି ସବୁ ବିଷ ଗଳାଧଃକରଣ କରି ବିଷଜ୍ୱାଳାରେ ଜଳି ଆସିଛନ୍ତି । ତାକୁ ପାଇ ପୁଣି ସେ ଜୀବନର ସ୍ୱପ୍ନରେ ଭରି ଉଠିଛନ୍ତି । ସେ ସ୍ୱପ୍ନ ସାକାର କରିବା ଦାୟିତ୍ୱ ତା'ର ।

ପ୍ରଥମକରି ଝିଅଟି ପରିପୂର୍ଣ୍ଣ ନାରୀତ୍ୱର ଆବେଗରେ ସ୍ୱାମୀର ଛାତିରେ ମଥା ରଖିଛି । ରେବେକାର ଭୂତ ତା' କାନ୍ଧରୁ ଓହ୍ଲାଇ ଯାଇଛି । ରେବେକାର ବାହୁଛାୟାରୁ ସେମାନଙ୍କ ଜୀବନ ମୁକ୍ତ ହୋଇ ପୁଣି ସୂର୍ଯ୍ୟାଲୋକିତ ହୋଇ ଯାଇଛି ।

ହେଲେ ଆଉ ଜଣେ ରେବେକାର ଛାଇରେ ଜ୍ୟୋତିର ଜୀବନ ଆଜି ଜ୍ୟୋତି ହରାଇ ବସୁଛି । କିଏ ଦେବ ତାକୁ ଆଲୋକର ସନ୍ଧାନ ?

ସେ ପଚାରେ, ଆଚ୍ଛା, ମତେ ପାଇ ତମେ ସୁଖୀ ତ ?

ଶୁଭ୍ରାଂଶୁ ତାକୁ ଗଭୀର ଭାବରେ ନିଜ ଆଡ଼କୁ ଆକର୍ଷିତ କରି କହନ୍ତି, ଦେଖ, ମୋ ଜୀବନରେ ତମେ ପ୍ରଥମ ନାରୀ ନୁହଁ, କିନ୍ତୁ ନିଃସନ୍ଦେହରେ ତମେ ଶ୍ରେଷ୍ଠ ନାରୀ । ତମକୁ ପାଇଁ ମୁଁ ସୁଖୀ କି ନା, ସେକଥା କଅଣ ତମେ ଆହୁରି ବୁଝି ପାରିନ ?

ଜ୍ୟୋତିର ଦୁଇ ଆଖି ଆବେଗରେ ଛଳଛଳେଇ ଯାଏ ।

ସେ କୁଣ୍ଠିତ କଣ୍ଠରେ କହେ, ନାଇଁ, ମୁଁ ନିହାତି ସାଧାରଣ ଝିଅଟିଏ ତ । ରୂପର ଐଶ୍ୱର୍ଯ୍ୟ ମୋର ନାହିଁ । ଜ୍ଞାନ, ଖ୍ୟାତିରେ ମଧ୍ୟ ତମେ ମୋଠାରୁ ଅନେକ ଉଚ୍ଚରେ ।

ସେ କି ଏକ ବେଦନାରେ ଭାଙ୍ଗି ପଡ଼ୁ ପଡ଼ୁ ଉତ୍ତର ଦିଅନ୍ତି, ପୁରୁଷ ଲାଗି ନାରୀର ରୂପଟା ବଡ଼ କଥା ନୁହେଁ, ବଡ଼ କଥା ହେଲା ତା'ର ଆତ୍ମାର ସୌନ୍ଦର୍ଯ୍ୟ । ମୁଁ ସେଇ ସୌନ୍ଦର୍ଯ୍ୟର ପ୍ରେମରେ ପଡ଼ି ଯାଇଛି, କୁହ ମତେ କେବେ ଛାଡ଼ି ଚାଲିଯିବ ନାହିଁ

ତୀକ୍ଷଣ ଦୃଷ୍ଟିରେ ତାଙ୍କୁ ନିରୀକ୍ଷଣ କରେ ଜ୍ୟୋତି । ଶୁଭ୍ରାଂଶୁଙ୍କର ଏ ମନର କଥା ତ ?

ନା, ତାଙ୍କ କଣ୍ଠରେ ଏତେଟିକେ ଜଡ଼ତା ନାହିଁ । ମୁଖମଣ୍ଡଳରେ ଏତେଟିକେ ଛଳନାର ଛାୟା ନାହିଁ । ପରିତୃପ୍ତିର ଆଗରେ ଚିକ୍ ଚିକ୍ କରୁଛି ତାଙ୍କ ମୁହଁ ।

ଟିକେ ରହି ସେ ଉତ୍ତର ଦିଅନ୍ତି, ବିଶ୍ବାସ କର, ମୋ ଭିତରେ ଆଉ କୌଣସି ଅପୂର୍ଣ୍ଣତା ନାହିଁ ତମକୁ ପାଇ ମୁଁ ସବୁ ପାଇଛି ।

ହେଲେ ସେଇ ମଣିଷଟା ଥରେ ଥରେ କେମିତି ଦୂରର ଲାଗେ । ବେଳେବେଳେ କେଉଁଠି ଯେ ହଜିଯାଏ ? କଅଣ ଭାବୁଥାଏ ଏତେ ? ଜ୍ୟୋତିର ଉପସ୍ଥିତି ସତ୍ତ୍ୱେ ଲୋକଟା କେଉଁ ସୁଦୂର ରାଜ୍ୟର ଚିନ୍ତାରେ ଯେବେ ନିମଗ୍ନ ହୋଇଯାଏ, ତାର ମୁଖମଣ୍ଡଳର ବଳିଷ୍ଠ ମାଂସପେଶୀ ସବୁ ବି ଏକ ବେଦନାରେ କୁଞ୍ଚିତ ହୋଇଯାଏ । ସେ ଖୁବ୍ କ୍ଲାନ୍ତ ମନେ ହେଉଥାନ୍ତି; ଖୁବ୍ ଅବସନ୍ନ ମନେ ହେଉଥାନ୍ତି । ସେତେବେଳେ ତାଙ୍କୁ କିଛି ପଚାରିବାକୁ ଗଲେ ସେ ଏମିତି ରୂଢ଼ ହୋଇଉଠନ୍ତି, ଜ୍ୟୋତିର ମନେହୁଏ, ସେ ଯେମିତି ତାଙ୍କୁ ଚିହ୍ନେନାହିଁ ।

ଜ୍ୟୋତିର ସନ୍ଦେହ ଆସେ, ସେ ଆଉ ଶାଶ୍ୱତୀ କଥା ଭାବୁନାହାନ୍ତି ତ ?

X X X

ଆଚ୍ଛା; ଶୁଭ୍ରାଂଶୁଙ୍କ ସହ ତା'ର ଦେଖା ହେବାବେଳକୁ ତ ତା' ଜୀବନର ଦୀର୍ଘ ତେଇଶି ବର୍ଷ ବିତି ଯାଇଥିଲା । ସେତେ ଦିନ ଯାଏ ସେ କଅଣ କେବେ ହସି ନ ଥିଲା, ଆନନ୍ଦ ପାଇ ନ ଥିଲା ? ପୃଥିବୀର ରୂପ, ରସ, ଗନ୍ଧ ଆହରଣ କରି ନ ଥିଲା ? ହୋଇପାରେ, ସେ ଆନନ୍ଦ ଆଜିର ଆନନ୍ଦ ଭଳି ସର୍ବଗ୍ରାସି ନ ଥିଲା, ସେ ବେଦନା ଆଜିର ବେଦନା ଭଳି ଗଭୀର ନ ଥିଲା । ସେତେବେଳେ ସେ ଦୁହେଁ ଭିନ୍ନ ଦୁଇ ଗ୍ରହ ଭଳି ନିଜ ନିଜ କକ୍ଷରେ ଆକର୍ଷିତ ହୋଇ ନ ଥିଲେ । ସେ ସତ୍ୟ ତ ତା' ପକ୍ଷରେ ପୀଡ଼ାଦାୟକ ନୁହେଁ, ତେବେ କାହିଁକି ଶୁଭ୍ରାଂଶୁଙ୍କ ସେଇ ଅତୀତର କିୟଦଂଶ ତା ଲାଗି ଯନ୍ତ୍ରଣା ବୋହି ଆଣୁଛି ?

ଅଥଚ ରାତ୍ରିର ସେଇ ନିର୍ଜନ ମୁହୂର୍ତ୍ତଗୁଡ଼ା ଛଡ଼ା ଅନ୍ୟ ସମୟରେ ଜ୍ୟୋତି ବେଶ୍ ସହଜ । ଶୁଭ୍ରାଂଶୁ ଖୁବ୍ ନିଜର ଲାଗନ୍ତି । ତାଙ୍କ ହାତକୁ ଚା' କପ୍ ବଢ଼ାଇ ଦେଉ ଦେଉ ବା ଖାଇବାକୁ ଦେଉ ଦେଉ ତାକୁ ଲାଗେ, ସେ ଅବଶିଷ୍ଟ ଜୀବନ ତା'ର ହୋଇ ରହିବ । ଏ ସେମାନଙ୍କ ସଂସାର । ଯେଉଁଠିକୁ ଶାଶ୍ୱତୀ ଆଉ ଫେରିବ ନାହିଁ । ଶୁଭ୍ରାଂଶୁ କଲେଜ ପରେ ତା' ପାଖକୁ ହିଁ ଫେରିବେ । ତା ହୃଦୟକୁ । ଅଯୁତ ସ୍ନେହ ନେଇ ସେ ଦରଜା ଖୋଲିଦେବ । ସେମାନଙ୍କ ସମ୍ପର୍କ ଏଇ ଦିନର ଆଲୁଅ ଭଳି, ତା ମଥାର ସିନ୍ଦୁର ଭଳି, ତା' ଟ୍ରଙ୍କରେ ଗଚ୍ଛିତ ଥିବା ତାଙ୍କର ଚିଠିଗୁଡ଼ିକ ସତ୍ୟ । ଆଉ ସେ କେବେ ଶାଶ୍ୱତୀ ସହିତ ସିନେମା ଯିବେ ନାହିଁ । ଶାଶ୍ୱତୀ ଲାଗି ଶାଢ଼ୀ, ଗହଣା କିଣିବେ ନାହିଁ, ତା' ସହିତ ଗଳ୍ପ କରିବେ ନାହିଁ । ସେମାନଙ୍କ ସମ୍ପର୍କ ତୁଟି ଯାଇଛି । ଶାଶ୍ୱତୀ ବର୍ତ୍ତମାନ ଦୁଇଟି ସନ୍ତାନର ଜନନୀ । ଶୁଭ୍ରାଂଶୁଙ୍କ ଜୀବନପଟରୁ ଶାଶ୍ୱତୀ ଚିରଦିନ ଲାଗି ଲିଭି ଯାଇଛି ।

ହେଲେ ସନ୍ଧ୍ୟା ନଇଁ ଆସିବା କ୍ଷଣି ସତେ ଯେପରି ସେଇ ଉପନ୍ୟାସର ରେବେକା ଶାଶ୍ୱତୀର ରୂପ ନେଇ ତାକୁ ଜଳାଇବାକୁ ଆସେ । ଭୟଙ୍କର ଏକ ନିଶାଚରୀର ମୂର୍ତ୍ତି ଅବା ମୁକୁଳା କେଶ.

ଆରକ୍ତ ଚକ୍ଷୁ, ଦୃଷ୍ଟିରେ ସତେ ଅବା ଅଗ୍ନିର ଦାହିକାଶକ୍ତି । ମୁଖ ବ୍ୟାଦାନ କରି ସେ ଆସେ ଯେମିତି ଗ୍ରାସ କରିବାକୁ । ନିର୍ମମ ପ୍ରହାରରେ ଜ୍ୟୋତିକୁ ରକ୍ତାକ୍ତ କରିଦିଏ । ବିବଶ କରିଦିଏ, ନିରୁପାୟ ଭାବରେ ଜ୍ୟୋତି ଶୁଭ୍ରାଂଶୁଙ୍କୁ ଖୋଜେ । ଶୁଭ୍ରାଂଶୁଙ୍କ ମୁଖ ତା' ମନରେ ପ୍ରତିଭାତ ହୁଏନାହିଁ । ବିକଟ କରାଳ ବଦନା ସେଇ ଭୟଙ୍କର ନାରୀମୂର୍ତ୍ତି । ଚିତ୍କାର କରିଉଠେ ଜ୍ୟୋତି ।

ଶୁଭ୍ରାଂଶୁ ଉଠି ବସନ୍ତି । ତାକୁ ହଲାନ୍ତି, କଅଣ ହେଲା ?

X X X

ଜ୍ୟୋତି ଦେହରୁ ଗମ୍‌ଗମ୍ ହୋଇ ଝାଳ ବୋହି ଯାଇଥାଏ । ସେ ତାଙ୍କର ଛାତିରେ ମଥା ରଖି କାନ୍ଦିଉଠେ । ଶୁଭ୍ରାଂଶୁ ତାକୁ ପଚାରନ୍ତି, ସ୍ୱପ୍ନ ଦେଖୁଥିଲ ? ଏମିତି କାନ୍ଦନ୍ତି ?

ଜ୍ୟୋତି କହି ପାରେନା, ତା'ର ଗୋପନ ନିର୍ଯ୍ୟାତନାର କାହାଣୀ ।

କ୍ୟାଲେଣ୍ଡରର ପୃଷ୍ଠା ବଦଳିଛି । ଯା' ଭିତରେ ଆଉ ଦୁଇବର୍ଷ ବିତିଯାଇଛି । ଜ୍ୟୋତିର କୋଳ ଭରି ଆସିଛି ଗୋଟାଏ କୁନି ଝିଅ । ଶୁଭ୍ରାଂଶୁ ଭିତର ହୋଇଗଲେଣି ।

ଆଉ ଦଶଟା ସ୍ୱାମୀ ସ୍ତ୍ରୀଙ୍କ ଭଳି ସେମାନଙ୍କ ସଂସାର ଚିରାଚରିତ ରୀତିରେ ଗଡ଼ି ଚାଲିଛି । କୌଣସି ଉତ୍କଣ୍ଠା ନାହିଁ । ଶାନ୍ତ ନିସ୍ତରଙ୍ଗ ଜୀବନ । ସଂସାରର ଛୋଟ ବଡ଼ ଝଞ୍ଜାଳରେ ବ୍ୟସ୍ତ ରହି ଶାଶ୍ୱତୀ କଥା ଭାବିବାକୁ ତାକୁ ଆଗଭଳି ସମୟ ମିଳେ ନାହିଁ ।

କେବଳ ଏକ ପ୍ରଚଣ୍ଡ କ୍ଳାନ୍ତିରେ ଭାଙ୍ଗି ପଡୁ ପଡୁ ଦିନକୁ ଧନ ଶୁଭ୍ରାଂଶୁଙ୍କଠାରୁ ଘୁଞ୍ଚିଆସିଛି ଜ୍ୟୋତି । ଶାଶ୍ୱତୀ ଲାଗି ସ୍ୱାମୀଙ୍କର ଦୁର୍ବଳତାକୁ ଈର୍ଷା କରୁ କରୁ ସେ ପଥର ଭଳି ନିଥର ଆଉ ନିଷ୍ପନ୍ଦ ହୋଇଯାଇଛି । ଅସହାୟଭାବେ ତା'ର ବିଡ଼ମ୍ବିତ ଭାଗ୍ୟ ହାତରେ ସେ ନିଜକୁ ଟେକି ଦେଇଛି । ଭାବିଛି, ଶାଶ୍ୱତୀକୁ ତା' ସ୍ୱାମୀ ଯେତେ ଭଲ ପାଆନ୍ତୁ, ସେ ବାଧା ଦେବ ନାହିଁ । ଖାଲି ଘୁଞ୍ଚିଯିବ । ଥାଆନ୍ତୁ ସିଏ ଶାଶ୍ୱତୀ ପ୍ରେମରେ ମଗ୍ନ ହୋଇ, ସେ ନିଜକୁ ଶୁଖାଇ ଦେବ ।

ତେଣୁ ସେ ଆଗଭଳି ଅଳି କରେ ନାହିଁ । ଅଭିମାନ କରେ ନାହିଁ । ଶାଶ୍ୱତୀ କଥା ପଚାରେ । ନାହିଁ ।

ସେଦିନ ଶୁଭ୍ରାଂଶୁଙ୍କର ପୁରୁଣା ଟ୍ରଙ୍କ ଖେଳାଉଥିଲା ଜ୍ୟୋତି ।

ତାଙ୍କର ବଦଳି ହୋଇ ଯାଇଛି । ନିକଟରେ ସେମାନେ ଅନ୍ୟ ସହରକୁ ଚାଲିଯିବେ । ଏସବୁ ଟ୍ରଙ୍କରେ କଳଙ୍କି ଲାଗି ଗଲାଣି । ଯିବା ଆଗରୁ ଏଗୁଡ଼ା ଫୋପାଡ଼ି ଦେବା ପାଇଁ ସ୍ଥିର ହୋଇଛି । ତେଣୁ ଗୋଟି ଗୋଟି କରି ସବୁ ଜିନିଷ ଘାଣ୍ଟି ସେ ଦରକାରୀ ଜିନିଷ, କାଗଜପତ୍ର ବାଛୁଥିଲା ।

ଟ୍ରଙ୍କ ଘାଣ୍ଟୁ ଘାଣ୍ଟୁ ଚମକି ଉଠିଲା ଜ୍ୟୋତି । ସାତବର୍ଷ ଧରି ତା'ର କଳ୍ପନାରେ ସଂଜିବିତ ସାପଟିଏ ସତେ ଅବା ଆଜି ଜୀବନ୍ୟାସ ପାଇଗଲା ।

ରେବେକାର ଚିଠି । ନା, ନା, ଶାଶ୍ୱତୀର ଚିଠି ।

ଜ୍ୟୋତିର ମନେହେଉଥିଲା, ସେଇ ବିଷାକ୍ତ ସାପ ସୁ ସୁ ଗର୍ଜନ କରୁଛି । ଇଫାପା ଖୋଲିଦେବା ମାତ୍ରେ ଫଣା ଟେକି ତାକୁ ଦଂଶନ କରିବ । ସେଇ ବିଷରେ ସେ ଅଚେତନ ହେବ, ହୁଏତ ଚିରଦିନ ଲାଗି ।

ଜ୍ୟୋତି ଅନୁଭବ କରି ପାରୁଥିଲା, ତା'ରି ଶିରାରେ ଶିରାରେ ସେଇ କାଳନାଗୁଣୀର ଫୁତ୍କାରର ସ୍ପର୍ଶ ।

ଖୋଲିବ ନା ଖୋଲିବନି ?

ଚେତା ହଜି ଯାଉଥିଲା ତା'ର ।

ତେବେ ଏ କଅଣ ? ଏମିତି ତ ସେ ଭାବି ନ ଥିଲା ?

ଶାଶ୍ୱତୀର ଏ କେଉଁ ରୂପ ସେ ଦେଖୁଛି ?

ଭଉଣୀର ବିବାହ ବେଳେ ଏକ ବିରାଟ ପୈତୃକ କୋଠାକୁ ଶୁଭ୍ରାଂଶୁ ବିକ୍ରି କରିଥିଲେ, ଆଉ ସେଇ ନେଇ ଶାଶ୍ୱତୀ ତାଙ୍କୁ ତୀବ୍ର ଆକ୍ଷେପ କରିଛି । ବୋଧେ ଏ ସେମାନଙ୍କ ମନୋମାଳିନ୍ୟର ପ୍ରଥମ କାରଣ ।

ଚିଠି ପରେ ଚିଠି । ଯେଉଁଥିରେ ଶାଶ୍ୱତୀର ସାଧାରଣ, ସ୍ୱାର୍ଥପର ମନଟି ସ୍ପଷ୍ଟ ହୋଇ ଉଠୁଛି । ଏଥିରେ କବିତା କାହିଁ ? ପ୍ରଣୟର ଆବେଦନ କାହିଁ ? ଏ ଯେ ନିହାତି ବୈଷୟିକ ମନଟିଏର ପ୍ରତିଛବି ମାତ୍ର ?

ଶାଶ୍ୱତୀ ଏତେ ଛୋଟ ଥିଲା ? ଏତେ ନୀଚ ? ଏଇମିତି ଏକ ସାଧାରଣ ଝିଅକୁ ସେ ଦୀର୍ଘ ସାତବର୍ଷ ଧରି ଭୟ କରି ଆସିଛି । ନିଜର ପ୍ରତିଦ୍ୱନ୍ଦ୍ୱୀ ଭାବି ଆସିଛି ? ଯିଏ ରୂପ ଆଉ ଯୌବନକୁ ଅକ୍ଷତ ରଖିବା ଲାଗି ଗୋଟାଏ ପରେ ଗୋଟାଏ ଗର୍ଭ ନଷ୍ଟ କରି ଚାଲିଥିଲା ଆଉ ଶୁଭ୍ରାଂଶୁ ଏଥିରେ ବାଧା ଦେଲା ପରେ ତାଙ୍କ କପାଳରେ ପୁରୁଷ ଜୀବନର ସେଇ ଚରମ ଲଜ୍ଜାକର କଳଙ୍କର ଟୀକା ବୋଳିଦେବାକୁ କୁଣ୍ଠା କରି ନ ଥିଲା ?

ଶେଷ ଚିଠିଟି ଶୁଭ୍ରାଂଶୁଙ୍କର । ହୁଏତ ପୋଷ୍ଟ ହୋଇନାହିଁ । ଶାଶ୍ୱତୀ ଏ କଅଣ ତମେ କଲ ? ଏ କେଉଁ କଳଙ୍କ ମୋ ମଥାରେ ବୋଳିଦେଲ ? ଯା ଅପେକ୍ଷା ତମେ ଯଦି ମତେ...

ଚେତା ହରାଇଥିଲା କି ଜ୍ୟୋତି ?

ଚେତା ଆସିଲା ବେଳକୁ ଘରସାରା ସ୍ତୁପଭର୍ତ୍ତି ଚିଠି ଭିତରେ ସେ ନିଜକୁ ଆବିଷ୍କାର କଲା । ଆଉ ଆଗରେ ହତସ୍ତମ୍ଭ ଶୁଭ୍ରାଂଶୁ ।

ଜ୍ୟୋତି ନିର୍ବାକ । ଶୁଭ୍ରାଂଶୁ ନତମୁଖ । ସାପର ଶବ୍ଦ ଅନେକବେଳୁ ବନ୍ଦ ହୋଇ ଯାଇଥିଲା ।

ସେଦିନ ରାତ୍ରୀରେ ପ୍ରଥମ କରି ତା ଶଯ୍ୟାରେ ରେବେକା ନ ଥିଲା । ପବନ ମହମହ ବାସୁଥିଲା । ଚିରଦିନର ସେଇ ଶଯ୍ୟା ହଠାତ୍ ଯେମିତି ଫୁଲରେ ଫୁଲରେ ଛାଇ ଯାଇଥିଲା । ଶୁଭ୍ରାଂଶୁଙ୍କ ଲାଗି ପ୍ରଥମ ଥର ଲାଗି ଏକ ଅନକୁଣ୍ଠିତ ମମତାରେ ସେ ଗୋଟିପଣେ ଭିଜି ଯାଉ ଯାଉ ଅନେକ ରାତିଯାଏ ଚେଇଁଥିଲା । ସେଇ ବାସର ରାତି ଭଳି ।

ସବୁଦିନର ସେଇ ମିତଭାଷୀ ଲୋକଟା ସେଦିନ ବି ନୀରବ ଥିଲା । କିନ୍ତୁ ତା'ର ଏ ନୀରବତାର ଅର୍ଥ ତା ପାଖରେ ଆଉ ଅବୁଝା ହୋଇ ରହି ନ ଥିଲା !

ଅନେକ ଦିନ ଧରି ପ୍ରଚଣ୍ଡ ଅଭିମାନ ଆଉ ଅବସାଦରେ ବନ୍ଦ ହୋଇ ଯାଇଥିବା ଜୀବନର କବାଟ ଖୋଲି ଯାଉଥିଲା । କାଚ ହୋଇ ଯାଇଥିବା ମନର ମଣି ପୁଣି ଝଟକୁଥିଲା, ଜୀବନର ସ୍ୱପ୍ନରେ, ଶୁଭ୍ରାଂଶୁଙ୍କ ଜୀବନରେ ଏକ ଏବଂ ଅନନ୍ୟ ହେବାର ପରିପୂର୍ଣ୍ଣ ଆନନ୍ଦରେ ।

ରେବେକା ଆଜି ତା' ଲାଗି ବହିଟିଏ ହୋଇ ଯାଇଥିଲା । ଜୀବନହୀନ ସ୍ମୃତିର କଙ୍କାଳଟିଏ ମାତ୍ର । ଜୀବନର ଅନେକ ତିକ୍ତ, ଅପରିତ୍ୟାଜ୍ୟ ସ୍ମୃତି ଭଳି ସ୍ମୃତିଟିଏ ମାତ୍ର । ସେ ସ୍ମୃତି ସହିତ ଘର କରିବାକୁ ତାକୁ ଆଉ ଡର ଲାଗୁ ନ ଥିଲା ।

# ଦ୍ୱୀପ

**ସରୋଜିନୀ ସାହୁ**

ଅନ୍ୟ ଦିନମାନଙ୍କଠୁଁ ବ୍ୟତିକ୍ରମ ଥିଲା ସେଦିନଟା । ଶିଶିରଭିଜା ସକାଳରେ ଅରୁନ୍ଧତୀ ଏକ୍‌ଲା ନ ଥିଲା । ଘରୁ ବାହାରିଲା ବେଳେ ସେ ଦେଖିଥିଲା ଇ-ସିକ୍‌ସ ର୍‌ୟାଙ୍କର ମିଷ୍ଟର ରାଓ୍ୱଳ, ଇ-ଓ୍ୱାନର ମିଷ୍ଟର ତିଓ୍ୱାରୀ, ଇ-ଫାଇଭର ମିଷ୍ଟର ମିଶ୍ର ତାଙ୍କ ଘର ସାମ୍‌ନା ଦେଇ ମଇଳା ପୋଷାକରେ, ଅତୁଆତତୁଆ ମୁଣ୍ଡରେ, ବାସି ମୁହଁରେ କିଛି ଦୁଃଖର ପ୍ରଲେପ ବୋଳି ଯାଉଥିଲେ । ଗଲାବେଳେ ଥରେ ମୁହଁପୋଡି କଣେଇକି ଚାହିଁଥିଲେ ସେମାନଙ୍କ ଘର ଆଡକୁ ।

ଠିକ୍ ସେତିକିବେଳକୁ ଅରୁନ୍ଧତୀ ଗୋଟେ ଡିଆଁରେ ବାରଣ୍ଡାରୁ ଟେନିସ୍ କୋର୍ଟ । ଟେନିସ୍ କୋର୍ଟରୁ ଚଞ୍ଚଳପାଦରେ ସେଇ ତିନିଜଣଙ୍କୁ ଅତିକ୍ରମକରି ଆଗେଇ ଯାଇଥିଲା, ସତେ ଯେମିତି କିଛି ଘଟିନାଇଁ ବା ସେ ଆଶ୍ଚର୍ଯ୍ୟ ହୋଇନାଇଁ ସେମାନଙ୍କୁ ଏତେ ସକାଳୁ ଏଇ ବେଶପୋଷକରେ ଦେଖି । କାରଣ, ଅରୁନ୍ଧତୀ ଜାଣିସାରିଥିଲା ଘଟଣାଟି କ'ଣ । ତେଣୁ ଯେପର୍ଯ୍ୟନ୍ତ ସେ ଆଗ ମୋଡରେ ପହଞ୍ଚିଯାଇ ନାହିଁ ଓ ସେମାନଙ୍କ ଆଖି ସାମ୍ନାରୁ ଦୂରେଇଯାଇ ନାହିଁ, ସତେ ଯେମିତି ସେ ପର୍ଯ୍ୟନ୍ତ ତା'ର ରକ୍ଷା ନାହିଁ । କେତେବେଳେ କିଏ ହୁଏତ ଶୁଣେଇଦବ ସେଇ ସମ୍ବାଦଟି ଓ ତା'ପରେ ଗୋଟେ ନ ଯଯୌ ନ ସ୍ଥତୌ ଅବସ୍ଥାର କେମିତି ସାମ୍‌ନା କରିବ ସେ !

ସବୁ ପ୍ରକାରର ସାମାଜିକ ବିଧି-ବିଧାନକୁ ମୁଠା ଭିତରର ପବନ ଭଳି, ଆଞ୍ଜୁଳାର ପାଣି ଭଳି ଖସିପଳେଇବା - ଏଇଟା କ'ଣ ତା'ର କମ୍ପ୍ଲେକ୍‌ସ ନା ଅସାମାଜିକତା ?

ଖୁବ୍ ଚଞ୍ଚଳପାଦରେ କଲୋନୀଟା ପାର୍‌ହୋଇଗଲାପରେ ତା'ର ମନେହେଇଥିଲା, ନିବୁଜ କୋଠରୀର ଦୁଆର ଝରକା ଖୋଲିଦେଲା କିଏ ଓ ସକାଳ ପୁଣି ପାଲଟିଯାଏ ଶିଶିରଭିଜାର ଅନୁଭୂତିରେ । ପ୍ରତିଦିନ ସେ ଅଫିସର୍ସ କଲୋନୀ ପାରିହେବାପରେ ଷ୍ଟାଫକ୍ୱାର୍ଟର ଆଡ଼ିକୁ ଡେଇଁ, ଲେବର କଲୋନୀ ପାଖ ବଡରାସ୍ତାରେ ଛିଡାହୁଏ ବସ୍ ଧରିବା ପାଇଁ ।

ଏ ପାଖରେ ଷ୍ଟାଫ ଓ ଲେବରମାନେ ରହୁଥିବାରୁ, ଅଫିସର୍ସ କଲୋନୀର ଅନେକେ ପସନ୍ଦ କରିପାରନ୍ତି ନାଇଁ ଅରୁନ୍ଧତୀର ସେଇପଟେ ଦେଇ ଯିବାଆସିବାକୁ । ଅଫିସରମାନଙ୍କ ଘୃଣା ଓ ଅସନ୍ତୋଷରୁ ଦିନେ ଷ୍ଟାଫ ଓ ଅଫିସର୍ସ କ୍ୱାଟର ମଝିରେ ଯାଇଥିବା ପିଚୁ ରାସ୍ତାରେ ଗୋଟେ ପାଚେରୀ ଉଠେଇ ଦିଆଯାଇଥିଲା । ସେଇ ବର୍ଷ ହୋଲିରେ କିନ୍ତୁ, ଷ୍ଟାଫ କଲୋନୀର ଦୁର୍ଦ୍ଦାନ୍ତ ପିଲାଗୁଡାଙ୍କର ପୁଞ୍ଜିଭୂତ କ୍ରୋଧ ମାଟିରେ ମିଶେଇ ଦେଇଥିଲା ପାଚେରୀଟିକୁ । ହୋଲିର ଦୁଇ ତିନିଦିନ ପରେ ଦ୍ୱିଗୁଣିତ ବଳ ଓ ଭୟାବହତା ନେଇ ପୁଣି ଥରେ ଛିଡାହେଉଥିଲା ଗୋଟେ ନୂଆ ପାଚେରୀ ଯାହାର ନାଆଁ ଦେଇଥିଲା ଅରୁନ୍ଧତୀ 'ବର୍ଲିନ ପ୍ରାଚୀର' । ସେଇ ବର୍ଲିନ୍ ପ୍ରାଚୀର କଡରୁ ଜଣଙ୍କ ବାଡି ଭାଙ୍ଗି ଲୋକମାନେ ଅଫିସର୍ସ କଲୋନୀ ପଟକୁ ରାସ୍ତାଟେ ଖୋଲି ଦେଇଥିଲେ । ସେଇ ରାସ୍ତାଦେଇ ଅରୁନ୍ଧତୀ ଯାଉଥିଲା ପ୍ରତିଦିନ ।

ଘରୁ ବାହାରିବା ପୂର୍ବରୁ ଡ୍ରେସିଂ ଟେବୁଲ୍ ସାମ୍ନାରେ ନିଜକୁ ଫୁଲଟିଏ ପରି ସଜଉଥିଲା ବେଳେ, ଝରକାବାଟେ ଗୋଟେ ଝଲକରେ ସେ କେବଳ ଦେଖିଥିଲା ମିସେସ୍ ରାଓ୍ବଲ୍ ଓ ମିସେସ୍ ମିଶ୍ରଙ୍କୁ । ଅକାରଣରେ ଚିନ୍ତିତ ଓ ତତ୍ପର ଥିଲେ ଦିହେଁ - କୁଆଡିକି ବାହାରିବାର ପ୍ରସ୍ତୁତି ଭିତରେ ଥିଲେ ଯେମିତି, ବୁଝିହଉଥିଲା ସ୍ପଷ୍ଟ ଭାବରେ । ଅରୁନ୍ଧତୀ ତେଣୁ ଆଦିତ୍ୟକୁ ନିଦରୁ ଉଠେଇ କହିଥିଲା : ଏ , ଉଠ । ଶୁଣୁଚ କି, ଏମ୍.ଡି. ଙ୍କ ମା' ବୋଧହୁଏ ଚାଲିଗଲେ । ମୋର ତ ଆଉ ଟାଇମ୍ ନାହିଁ, ମୁଁ ଯାଉଚି । ତମେ ଅନ୍ତତଃ ଥରେ ଯାଇ ବୁଲି ଆସିବ । ନ ହେଲେ କଥାଟା ଯେତିକି ଖରାପ ହେବନି ତା'ଠୁଁ ଆମର ଏଇଠି ରହିବାଟା ଆହୁରି କଷ୍ଟକର ହେଇଯିବ ।

ଆଦିତ୍ୟ ଆଖିରୁ ଉଡିଯାଇଥିଲା ଆଳସ୍ୟ । ଅରୁନ୍ଧତୀ ଯେ ତା' ଉପରେ ଦାୟିତ୍ୱଟେ ଲଦିଦେଇ ଆରାମ୍‌ରେ ଖସି ପଳଉଚି, ସେ ବୁଝିପାରିଥିଲା । ତମେ ଗୋଟେ କାମ କରୁନ, କହିଥିଲା ଆଦିତ୍ୟ, ଯିବା ରାସ୍ତାରେ ତାଙ୍କ ଘରଆଡେ ଥରେ ମୁହଁ ମାରିଦେଇ ଚାଲିଯାଅ ।

ଅରୁନ୍ଧତୀ ପର୍ସରେ ଡୁପ୍ଲିକେଟ୍ ଚାବି, ରୁମାଲ୍ ଇତ୍ୟାଦି ରଖୁଥିଲା । ନାହିଁ ମୁଁ ଯାଇପାରିବିନି - କହିଥିଲା ଅରୁନ୍ଧତୀ । ଏମିତିରେ ତ ମୋର ସମୟ ହେଇଯାଉଚି । ଆଉଥରେ ତାଙ୍କ ଘରେ ପଶିଲେ ଅଧଘଣ୍ଟା ଘଣ୍ଟାଏ ଆଗରୁ ତ ବାହାରିହେବ ନାହିଁ । କ'ଣ ଅସୁବିଧା ତମର ଯିବାରେ ? ତମର ତ ଏବେ ଅଫିସ ଯିବାର ନାହିଁ । ତା'ଛଡା ଏମ୍.ଡି. ଘରକୁ ଯାଉଚ ଯେତେବେଳେ, ଅଫିସ୍ ନ ଗଲେ ବି କିଛି ହବନି ।

ଅରୁନ୍ଧତୀ ଖସିଆସିଥିଲା, ଯଦିଓ ସେ ଜାଣେ ଆଦିତ୍ୟ ତା' ଅପେକ୍ଷା ଆହୁରି ଅସାମାଜିକ ଥିଲା ପ୍ରକୃତିରେ । ଠିକ୍ ସମୟରେ ସେଦିନ ବସ୍ ପାଇଥିଲା ଅରୁନ୍ଧତୀ । ଠିକ୍ ସମୟରେ ପହଞ୍ଚିଥିଲା ବି । କିନ୍ତୁ ଠିକ୍ ଭାବରେ କାମ କରି ପାରି ନ ଥିଲା ।

ଆଦିତ୍ୟ ଯାଇଥିବ କି ନାହିଁ । ନ ଯାଇଥିଲେ ଘଟଣା ଯେ ଅନ୍ୟ ରୂପ ନେବ, ଏଇଭଳି ଚିନ୍ତାରେ ଅନ୍ୟମନସ୍କ ହେଇପଡିଥିଲା ଅରୁନ୍ଧତୀ । ଅଥଚ କିଛିଦିନ ଆଗରୁ, ବର୍ଲିନ ପ୍ରାଚୀରର ଆରପଟରେ ଥିଲାବେଳେ ଏଇଭଳି ଫର୍ମାଲିଟିଜ୍ ବିଷୟରେ ଆଦୌ ଚିନ୍ତା କରି ନଥାନ୍ତା ବୋଧହୁଏ ଅରୁନ୍ଧତୀ । ଆଦିତ୍ୟର ପ୍ରମୋଶନ୍ ହୁଏ ଓ ସେମାନେ ଚାଲିଆସନ୍ତି ଏ ପାଖକୁ ।

ପ୍ରମୋଶନ୍ ପରେ ସବୁଠୁଁ ବେଶୀ ବ୍ୟସ୍ତ ହୋଇଥିଲା ଅରୁନ୍ଧତୀ ଏ ପାଖକୁ ଚାଲିଆସିବା ପାଇଁ । ବହୁଦିନରୁ ତା' ଛାତିତଳେ ଖୋଳଉଥିଲା, ସେ ରହୁଥିବା କଲୋନୀଟି ପ୍ରତି ଘରୁ ବାହାରିଲା ମାତ୍ରେ ଅଧାଲଙ୍ଗଳା ଛୁଆଙ୍କ କୋଳାହଳ, ଉକୁଣୀ ବାଛୁଥିବା ସ୍ତ୍ରୀଲୋକଙ୍କ ଭିଡ, ଅଣ୍ଡରଓୟାର୍ ପିନ୍ଧି ବିନା କାରଣରେ ଘର ଭିତରକୁ ଧସେଇ ପଶିଆସି ପାନଖିଆ ପାଟିରେ ଦେଖଉଥିବା ଆତ୍ମୀୟତା ତା' ପାଖରେ ବଡ ଅସହ୍ୟ ହେଇ ପଡିଥିଲା । ପ୍ରମୋଶନ୍ ପରେ ଆଦିତ୍ୟକୁ ତେଣୁ ସେ କହିଥିଲା ଦେଖ ବାବା, ଆଉ ନୁହେଁ । ଏଇ କଲୋନୀରେ ରହିଲେ ପିଲାଗୁଡା ମୋର ଅମଣିଷ ହେଇଯିବେ, ଏଠିକାର ଅସଭ୍ୟ ପିଲାଙ୍କ ସଙ୍ଗେ ମିଶି ମିଶି ।

ଅଥଚ ଅଫିସର କଲୋନୀପଟରେ କୌଣସି କ୍ୱାର୍ଟର ଖାଲି ନଥିଲା ବା ନିକଟରେ ଖାଲି ହବାର ନଥିଲା । ଏକଦା ଗେଷ୍ଟହାଉସ୍ ଥିବା ସେଇ ଘରଟି, ଏବେ ବୟସ ବଢିଯାଇଥିବାରୁ, କିଛିଟା ରୁଗ୍ଣ ଓ ଅସୁନ୍ଦର ଦିଶୁଥିଲା । ତା'ଛଡା କିଏ ଯେମିତି କାଟିକରି ଛିଡେଇ ଦେଇଚି ଘରଟିକୁ ଅନ୍ୟ ଘରମାନଙ୍କଠୁଁ । ସମ୍ପୂର୍ଣ୍ଣ ଅଲଗା ଥିବା ଏଇ ଘରଟିର ବାଁ ପାଖରେ ଗଡଖାଇ ସଦୃଶ ଦଶ-ପନ୍ଦର ଫୁଟ ଗଭୀରର ନାଳଟିଏ ଥିଲା ଆଉ ଡାହାଣପଟେ ଶହେଫୁଟ ଛାଡି ଦେଲେ ପିଚୁରାସ୍ତା ।

ସେମାନଙ୍କର ଏପଟକୁ ଚାଲିଆସୁଥିବା କଥା ଶୁଣି କିଛି ଲୋକ ମନା କରିଥିଲେ ସେମାନଙ୍କୁ: ଆପଣମାନେ ଯାଉଛନ୍ତି ଯେ, ଚଳିପାରିବେ ସେଠି ? ସେଠିକାର ଲୋକଙ୍କର ବଡ କଂପ୍ଲେକ୍ସ । କିଛି ଲୋକ ଏଇଥିପାଇଁ ମନା କରିଥିଲେ ସେମାନଙ୍କୁ ଯେ, ଘରଟିର ଆଖପାଖରେ କୌଣସି ଘର ନ ଥିବାରୁ ଚୋର ପଶି ବାନ୍ଧି ପକେଇଲେ ବି ଡାକ ଶୁଣିବାକୁ କେହି ନାହାନ୍ତି । କେହି କେହି ଭୂତ-ବଙ୍ଗଳା ବୋଲି ଭାବୁଥିଲେ ଘରଟିକୁ, ଲାଲ୍‌ରଙ୍ଗର ଏକୁଲା ଘରଟେ ଥିଲା ବୋଲି । ଏସବୁ ସତ୍ତ୍ୱେ ଅରୁନ୍ଧତୀର ପସନ୍ଦ ହେଇ-ଯାଇଥିଲା ଘରଟି, ଯେଉଁଦିନ ଆଦିତ୍ୟ ସ୍କୁଟର ପଛରେ ବସେଇ ନେଇ ଆସିଥିଲା ତାକୁ ଦେଖେଇବା ପାଇଁ । କହିଥିଲା : ଭଲ କରି ଭାବି ଦେଖ, ତମ ଇଚ୍ଛା ହେଲେ ଆସିବ, ନ ହେଲେ ନାଇଁ । ପଛରେ କିନ୍ତୁ ମତେ ଆଉ ଦୋଷ ଦେବନି ।

ସେ ଋତୁଟା ଥିଲା ହୁଏତ ବର୍ଷ ଶେଷରେ ଶରତ । ସେଇ ମାତ୍ର ଗାଧେଇଥିଲା ଘରଟି, ଅରୁନ୍ଧତୀ ସ୍କୁଟର ପଛରେ ବସି ପହଞ୍ଚିଥିଲା ବେଳକୁ । ପାହାଡ ଶୀର୍ଷରେ ଏକୁଲା ଗୋଟେ ଲାଲ୍‌ରଙ୍ଗର ଘର । ପ୍ରତିଟି ବଖରା ଗୋଟେ ଗୋଟେ ହଲ୍ । ବେଡ୍‌ରୁମ୍‌ରେ ତିନୋଟି ଝରକା । ରୋଷେଇ ଘରେ ଗ୍ୟାସ୍, ହିଟର୍ ଓ ଅନ୍ୟାନ୍ୟ ଜିନିଷ ରଖିବା ପାଇଁ ଥାକ । ଡାଇନିଂ ସ୍ପେଶ୍‌ଟି ବେଶ୍ ଲମ୍ବା । ବେସିନ୍ ଷ୍ଟାଣ୍ଡରେ ବେସିନ୍‌ଟି ନଥିବାରୁ ଟିକିଏ ଦୁଃଖିତ ହେଇଥିଲା ଅରୁନ୍ଧତୀ । ସଙ୍ଗେ ସଙ୍ଗେ ନୂଆ ବେସିନ୍‌ଟିଏ ଲଗେଇବ ବୋଲି ଭାବି ନେଇଥିଲା ସିଏ । ବାଥ୍‌ରୁମ୍‌ରେ କମୋଡ୍ ଓ ବାଥ୍‌ଟବ୍ । ସମଗ୍ର ବାଂଲୋଟିକୁ ଘେରି ରହିଥିଲା ଆମ୍ବ, ନିମ୍ବ, ଶାଳ, ରିଠା, ପିଜୁଳି, ଚାରକୋଳି ରତିଆରି ବଗିଚା । ଏକଦା ଫୁଲଗଛରେ ବଗିଚା ଥିଲା ହୁଏତ । ଏବେ ହତଶ୍ରୀ ପାଚେରୀବିହୀନ । କେତୋଟି ବୋଗେନ୍‌ଭିଲା ଏଠି ସେଠି ଲଟେଇ ପଡିଛନ୍ତି ଯାହା । ବାରଣ୍ଡାରେ ଛିଡାହେଲେ ପାହାଡର ଗଡାଣି ତଳକୁ ଦେଖାଯାଏ ହ୍ରଦଟେ । ଆଉ ଟିକେ ଆଖି ପହଁରେଇଲେ ନଦୀ ।

ଘରର ବାରଣ୍ଡାଟି, ଯାହା କି ଥିଲା ଏ ଘରର ଅନ୍ୟତମ ଆକର୍ଷଣ, ଦେଖିଲାକ୍ଷଣି ମନ ହେବ, କିଛି ଗାର୍ଡନ ଚେୟାର ଆଣି ସଜେଇ ଦିଆଯାନ୍ତା କି ବାରଣ୍ଡାଟିକୁ । କେହି ରହୁ ନଥିବାରୁ ଗୋବର ଓ ଛେଳି ଲଣ୍ଡିରେ ଭର୍ତ୍ତି ହେଇଯାଇଥିଲା ।

ଯେତେବେଳେ ଛେଳିଲଣ୍ଡି ଗୋବର ଓ ମୂତ ଦାଗକୁ ଡେଇଁ ତାଲା ଖୋଲିଥିଲା ଆଦିତ୍ୟ, ସେତେବେଳେ ଅରୁନ୍ଧତୀ କହିଥିଲା : ଏତେ ବଡ ଘର ! ନିଜକୁ ହଜିଗଲା ଭଳି ଲାଗୁଛି । ଏମିତି ଅନୁଭୂତିଟେ ହୋଇଥିଲା ଆଗରୁ ତା'ର, ଯେଉଁଦିନ ଆଦିତ୍ୟ ତାକୁ ଗାଁରୁ ନେଇ ଆସିଥିଲା ପ୍ରଥମ କରି ଚାକିରୀ ଜାଗାକୁ । ରିକ୍‌ସାରୁ ଓହ୍ଲେଇ ତାଲା ଖୋଲିଥିଲା ଆଦିତ୍ୟ । ସାମ୍ନାରେ ବାଉଣ୍ଡରୀ ନଥିବା, ମେସ୍ ଘର ଭଳି, ରାସ୍ତାରୁ ଓହ୍ଲେଇଲେ ହିଁ ଡ୍ରଇଁରୁମ୍ - ଦୁଆର ଖୋଲୁ ଖୋଲୁ କହିଥିଲା ଅରୁନ୍ଧତୀ, ଏତେ ଛୋଟ ଘର ? ମୋ' ନାକ ଯେ ପିଚି ହେଇଗଲା ଭଳି ଲାଗୁଛି କାହିଁରେ ? ଆଦିତ୍ୟ ଜାଣେ , କୌଣସିଥିରେ ସନ୍ତୁଷ୍ଟ କରିହେବ ନାଇଁ ଅରୁନ୍ଧତୀକୁ । ତେଣୁ ସେ ଚୁପ୍ ରହିଥିଲା ।

ଅରୁନ୍ଧତୀ ବଡ ଘରଟିର ଭିତରକୁ ପଶିଯାଇ ମୁହଁ ଉପରେ ଆଞ୍ଜୁଳା କରି ଡାକିଥିଲା ଝୁମୁ - ଝୁମୁ-ଝୁମୁ ପ୍ରତିଧ୍ୱନିଟେ ଫେରି ଆସିଥିଲା ତତ୍‌କ୍ଷଣାତ୍ । ବାଦ୍‌ଶା ଡାକିଥିଲା ପୁଅର ନାଆଁ ଧରି । ଚାରିକାନ୍ଥ ଡାକିଥିଲେ, ବାଦ୍‌ଶା ବାଦ୍‌ଶା ।

ପ୍ରତିଧ୍ୱନି ସଙ୍ଗେ ପୁଅ ଝିଅଙ୍କୁ ଖେଳିବାକୁ ଛାଡିଦେଇ, ଘର ସାମ୍ନାରେ ଥିବା ନାଆଁ ନ ଜଣା ଆକାଶ ଛୁଆଁ ଗଛର ଲମ୍ବିଲା ଡାଳରୁ ଟସର ଖୋଷା ସଂଗ୍ରହ କରିଥିଲା । ଏଇ ସୁନେଲୀ କୁଡିଆ ଗୁଡିକ ସହ ଆଗରୁ ପରିଚୟ ନ ଥିଲା ଅରୁନ୍ଧତୀର ।

ବେଡରୁମ୍‌ର ବାଁପଟ କାନ୍ଥଟା ପାଣି ସୋକ୍ କରି ମାନଚିତ୍ର ତିଆରି ହେଇଥିଲେ ବି, ଟଏଲେଟ୍‌ଟା ମଳିଛା ଦିଶୁଥିଲେ ବି ଘରଟିର ପ୍ରେମରେ ପଡିଯାଇଥିଲା ଅରୁନ୍ଧତୀ ଓ କହିଥିଲା, ଗୋଟେ ଭଲ ଦିନ ଦେଖି ଚାଲିଆସିବା ଏଠିକି ।

ଗୋଟେ ଉଷ୍ଣମ୍ ସୁଖ- ଅଫିସର୍ କଲୋନୀକୁ ଚାଲିଆସିବାରେ ଲଙ୍ଗଳା ପିଲାଙ୍କ ମେଳା ନାହିଁ, ହଇହଲ୍ଲା ଚିତ୍କାରର ଗ୍ରାମ୍ୟ ଛାପ ନାହିଁ ! ବର୍ଲିନ୍ ପ୍ରାଚୀରର ଏପାଖ ଆଉ ସେପାଖରେ ଏଇଟାଇ ବୋଧହୁଏ ତଫାତ୍ । କହିଥିଲା ଅରୁନ୍ଧତୀ ଆଦିତ୍ୟକୁ ।

କିନ୍ତୁ ସବୁକିଛିର ଯେମିତି ଗୋଟେ ସ୍ୱତନ୍ତ୍ର ଚେହେରା ଅଛି । ଗୋଟେ ଆଉ ଗୋଟେ ଠୁଁ ଅଲଗା । ସେମାନେ ଏପଟକୁ ଆସିବା ପରଦିନ ଇ-ସିକ୍ସ ର୍‍ୟାଙ୍କର ପିଚୁ ରାସ୍ତା ଆରପାଖର ଉତ୍ତରପ୍ରଦେଶୀ ମିଶ୍ର ସାହେବଙ୍କୁ ଅଚାନକ, ତା' ବାରଣ୍ଡାରେ ବସି ତାରି ପିଲାମାନଙ୍କ ସଙ୍ଗେ ଖେଳୁଥିବାର ଦେଖି ଚମତ୍କୃତ ଓ ମୁଗ୍ଧ ହେଇଯାଇଥିଲା ଅରୁନ୍ଧତୀ । ଇ-ସିକ୍ସ ର୍‍ୟାଙ୍କର ଗୋଟେ ଅଫିସର୍ ତା'ପିଲାଙ୍କୁ ପିଠିରେ ଲଦି ଖେଳୁଛି ? ଆଉ ସେମାନେ କୋଉ ମଣିଷରେ ମଣିଷ ? ଏଇମାତ୍ର ଇ-ଓ୍ୱାନ୍ ହେଲେ । ତାକୁ ଦେଖି ମିଶ୍ର ସାବ୍ କହିଥିଲେ : ନମସ୍ତେ ଭାଉଜ, ସାହୁ ସା'ବ୍ ନାହାନ୍ତି କି ଘରେ ? ଯଦିଓ ସାହୁ ସାଙ୍ଗକୁ ସାହାବ ପଦଟା ଭଲ ଶୁଭୁ ନ ଥିଲା, ତଥାପି ଖୁସି ହେଇଥିଲା ଅରୁନ୍ଧତୀ । ବର୍ଲିନ ପ୍ରାଚୀରର ଆରପାଖେ ସାହୁବାବୁ ଡାକରେ ପରିଚିତ ଥିଲା ଆଦିତ୍ୟ । ଏବେ ଷ୍ଟାଟସ୍‌ର କାନ୍ଧ ଡେଇଁ ହେଇଯାଇଚି ସାହେବ୍ ।

ସେଦିନ ଆଦିତ୍ୟକୁ କହିଥିଲା ଅରୁନ୍ଧତୀ, ମିଶ୍ର ସାହାବ୍ ଭାରି ଭଲ ଲୋକ । ଏତେଟିକେ ବି ଗର୍ବ ନାହିଁ ତାଙ୍କର ।

ହସିଥିଲା ଆଦିତ୍ୟ : ଏ ଲୋକଗୁଡାଙ୍କୁ ଏମିତିରେ ଚିହ୍ନିବା ମୁସ୍କିଲ । ଦେଖିକି ମିଶୁଥିବ ।

ରାଗିଯାଇଥିଲା ଅରୁନ୍ଧତୀ । ସବୁ ଜାଗାରେ ତମେ କିଛି ନା କିଛି ଖୁଣ ଦେଖୁଥିବ ।

ଆଦିତ୍ୟକୁ ଅସ୍ୱୀକାର କଲେ ବି ଖୁବ୍ ଅଳ୍ପଦିନ ଭିତରେ ଏପଟର ଜୀବନ ସହ ତା'ର ପରିଚିୟ ହେଇଯାଇଥିଲା ଓ କିଛି ତିକ୍ତ ଅନୁଭୂତି ବି ମିଳିଥିଲା ତାକୁ । ପାଚେରୀ ସେପାଖରୁ ପ୍ରମୋଶନ୍ ପାଇଁ ଏପାଖକୁ ଆସିଥିବାରୁ, ଅନ୍ୟ ଅଫିସର୍‌ମାନେ ଟିକେ ଅଲଗା ଆଖିରେ ଦେଖୁଥିଲେ ତାଙ୍କ ପରିବାରକୁ । ଏପାଖର ଉପର ପାହାଚ, ମଝି ପାହାଚ, ତଳ ପାହାଚ ଗ୍ରେଡେସନ୍‌ରେ ନିଜକୁ ସାମିଲ୍ କରିପାରିଲାନି ଅରୁନ୍ଧତୀ । ତା'ଛଡା ଏମିତିସବୁ ଛୋଟ ବଡ ବହୁ ଘଟଣା ତା' ସଙ୍ଗେ ଘଟିଗଲା ଯେ ଏତେ ଖୋଲା ମେଲା ଜାଗାଟିଏରେ ବି ତା' ନିଃଶ୍ୱାସ ରୁନ୍ଧି ହୋଇଗଲା ଭଳି ଲାଗିଥିଲା ।

ଗୋଟେ ଜିଲ୍ଲାର ଲୋକ ବୋଲି ମିସେସ୍ ନାୟକ ଦିନେ ବୁଲି ଆସିଥିଲେ ତାଙ୍କ ଘରକୁ । ତରବର ହେଇ କୋବି ପକୋଡି ବନେଇଥିଲା ଅରୁନ୍ଧତୀ । ନାକଟେକି କୋବି ପକୋଡିଟେ ମୁହଁକୁ ନେଇ ରୋକ୍‌ଠୋକ୍ କହିପକେଇଥିଲେ ମିସେସ୍ ନାୟକ : ଆମ ପିଲାମାନେ ବିନା ସସ୍‌ରେ ପକୁଡି ମୁହଁରେ ଦେବେନି ।

ଚମକି ପଡିଥିଲା ଅରୁନ୍ଧତୀ । କେତେ ଛୋଟିଆ କଥାଟେ ସସ୍ । ଲୁହ ଭଳି ଫୋଟିହେଇଯାଇଥିଲା ନାଁତିରେ । କେତେ ସହଜରେ ଦେଖ, ଦେଖେଇଦେଲେ ଶ୍ରେଣୀ ବୈଷମ୍ୟ, ଅଥଚ ମିସେସ୍ ନାୟକଙ୍କଠୁଁ ଯଥେଷ୍ଟ ଶିକ୍ଷିତା ଅରୁନ୍ଧତୀ ହଜମ କରିନେଲା ସବୁ ।

ଥରେ ଛୁଟିକୁ ଫେରି ମିସେସ୍ ମିଶ୍ର ତାଙ୍କ ବଗିଚାରୁ ଥାଇ, ଅରୁନ୍ଧତୀକୁ ଦେଖିବାମାତ୍ରେ ଚିଲ୍ଲେଇ ଚିଲ୍ଲେଇ ପାଟି କରିବା ଆରମ୍ଭ କରିଦେଇଥିଲେ : କେମିତି ବଗିଚାର କୋବି, ମୂଳା, ଗାଜର ଚାଲିଯାଉଚି ? ଏତେଦିନ ତ କେବେ ଚୋରି ହଉନଥିଲା ! ଲୋକମାନଙ୍କର ସାହସ ଦେଖ ! ଅରୁନ୍ଧତୀକୁ

ହୁଏତ ଖରାପ ଲାଗି ନ ଥା'ନ୍ତା କଥାଟି, ମିସେସ୍ ମିଶ୍ର ରାସ୍ତାରେ ଯାଉଥିବା ଚିହ୍ନା ଲୋକଙ୍କୁ ଯେତେ ଡାକିଡାକି ସେଇ ସମାନ ଘଟଣା କହୁଥିଲେ ବି । କିନ୍ତୁ ଯେଉଁ ସମୟରେ ସେ କହିବା ଆରମ୍ଭ କରିଦେଲେ ତାଙ୍କର ଆଦୌ ଚୋରି ହଉ ନ ଥିଲା, ସେତେବେଳେ ଖୁବ୍ ବାଧିଥିଲା ଅରୁନ୍ଧତୀକୁ କଥାଟି ।

ଅପମାନଟିକୁ ହଜମ କରିନେଇଥିଲେ ବି ଅରୁନ୍ଧତୀ କହିପାରି ନ ଥିଲା, ବର୍ଲିନ୍ ପ୍ରାଚୀର ସେପଟର ଲୋକ ଚୋର ନୁହନ୍ତି । କହିପାରି ନ ଥିଲା, ପାଚେରୀ ସେପାଖେ ମୁଁ ପାଞ୍ଚବର୍ଷ ଥିଲି, ସେଭଳି ଚୋରି କରିବା ଅଭ୍ୟାସ ମୋର ନାହିଁ, ପଚାରି ଦେଖ । କହିପାରି ନ ଥିଲା, ଆପଣଙ୍କ ପାଖଘର ପର୍ସନାଲ ଅଫିସରଙ୍କ ମିସେସ୍ ଓ ଚାକରାଣୀ ମିଶି କୋବି, ମୂଳା, ଗାଜର ଚୋରୋଇନବାର ଆମେ କେତେଥର ଦେଖିଚୁ ବୋଲି ।

ବରଂ ଏଇସବୁ ଘଟଣା ନିଜକୁ ଯଥାସମ୍ଭବ ସଙ୍କୁଚିତ କରେଇନେଇଥିଲା ସିଏ । ଆଦିତ୍ୟକୁ କହିଥିଲା -

: ବୁଝିଲ, ଆମ ଘରଟା ଗୋଟେ ଦ୍ୱୀପ । ଚାହିଁଲେ ଅଫିସର କଲୋନୀ ସଙ୍ଗେ ମିଶିବା । ଚାହିଁଲେ ସିନିୟର ଷ୍ଟାଫ୍ । ଚାହିଁଲେ ବର୍ଲିନ୍ ପ୍ରାଚୀରର ଆରପଟର ଲୋକଙ୍କ ସଙ୍ଗେ ମିଶିବା ଅଥଚ କେବଳ ରବିବାର ସଂନ୍ଧ୍ୟାଟିକୁ ଛାଡିଦେଲେ ଅନ୍ୟ କୌଣସିଦିନ ତାକୁ ସମୟ ମିଳୁ ନଥିଲା, ତା'ର ସୁନ୍ଦର ବାରଣ୍ଡାଟିରେ ବସି ପ୍ରକୃତି ଦେଖିବାକୁ । ତା'ର ସୁନ୍ଦର ପକ୍କା ଚଉତାରେ ବୁଲି ଟସର ଖୋଷା ସଂଗ୍ରହ କରିବାକୁ କି ପାଖପଡିଶାର ସୁଖ ସମୃଦ୍ଧିକୁ ଉଙ୍କିମାରି ଦେଖିବାକୁ ।

କିନ୍ତୁ ଏପାଖରେ ରହିବା ପରେ ଅରୁନ୍ଧତୀ ଅନ୍ତତଃ ଏତିକି ଜାଣି ନେଇଥିଲା ଯେ ଏପଟର ଲୋକ ଗୁଡା ଅସହାୟ । ନିଜସ୍ୱ ଇଚ୍ଛା-ଅନିଚ୍ଛାକୁ ବିକ୍ରି କରିଦେଇଛନ୍ତି ବହୁଦିନୁ । ଚାହିଁଲେ ମନଖୋଲି ଗୀତ ପଦେ ଗାଇପାରିବେନି, ନାଚି ବି ।

ସବୁ ଯେମିତି ରିମୋଟ କଣ୍ଟ୍ରୋଲରେ ଚାଲେ ଏଠି ଓ ରିମୋଟ କଣ୍ଟ୍ରୋଲ ଥାଏ ଜଣକ ହାତରେ, ସେ ହେଲେ ଏମ୍.ଡି. । କିଏ କେତେ ଭାବରେ ତାଙ୍କୁ ଖୁସି କରେଇ ପାରିବ, ପ୍ରତିଯୋଗିତା ବି ଲାଗିଯାଏ ଏଠି ।

ଏସବୁରୁ ବହୁ ଦୂରରେ ଥିଲା ବୋଲି ଧାରଣା ଥିଲା ଅରୁନ୍ଧତୀର । ଏଇଥିପାଇଁ କି ନା ସେ ଲେଡିଜ କ୍ଲବର ମେମ୍ବର ହେଇଥିଲା, ନା ସେ କାହାରି ଘରକୁ ବୁଲିଯାଉଥିଲା । କିନ୍ତୁ ସେ ଯେ ମୁକ୍ତ ନୁହେଁ, ଜାଣିନେଇଥିଲା ସେଦିନ, ଯେଉଁଦିନ ମିସେସ୍ ଏମ.ଡି. ମର୍ଣ୍ଣିଂଓ୍ୱାକ୍‌ରେ ବାହାରିଥିଲାବେଳେ, ତାକୁ ଦେଖି ପଚାରିଥିଲେ : କେମିତି ଲାଗୁଚି ଏ ଜାଗା ? କିଛିଟା ଚମତ୍କୃତ ଓ ଆଶ୍ଚର୍ଯ୍ୟ ବି ହେଇଥିଲା ଅରୁନ୍ଧତୀ ମିସେସ୍ ଏମ.ଡି. ତାକୁ ଚିହ୍ନନ୍ତି ଜାଣି ।

: ଭଲ । ସଂକ୍ଷିପ୍ତ ଉତ୍ତରଟିଏ ଦେଇ ହସିଦେଇଥିଲା ସିଏ ।

: ଆପଣଙ୍କ ଘରେ ଯାହା ଯାହା ସବୁ ହୁଏ, ଆମ ଘରକୁ ଦେଖାଯାଏ କହି, ହସିଦେଇ, ଖୁବ୍ ଜଲ୍‌ଦି ପାଦରେ, ଗଡଖାଇ ସଦୃଶ ନାଳ ଉପରର ପୋଲିଆ ପାର୍ ହେଇ ଚାଲିଯାଇଥିଲେ ।

ହସଟା କ'ଣ ଆପଣାର ଥିଲା ? ନା ଅଲଗା କିଛି ? ଅଡୁଆ ସୂତାଟେ ଭଳି ହସଟା ମୁଣ୍ଡ ଭିତରେ ଛନ୍ଦି ହେଇଯାଇଥିଲା । ତା'ଘର ଚାରିପଟେ ଏତେ ଗଛ । ତା'ବାଦ୍ ବି କୋଉ ଫାଙ୍କରେ ଲୋକ ଦେଖିନିଅନ୍ତି ତାଙ୍କ ଘରକୁ । ଯା'ପରେ ଅରୁନ୍ଧତୀର ମନେ ହେଇଥିଲା ସେ ଚାଲିଆସିଚି ଏମ.ଡି.ଙ୍କ ରିମୋଟକଣ୍ଟ୍ରୋଲ ଭିତରକୁ ।

ଯା'ପରେ କଟକଣା ଜାରି ହେଇଯାଇଥିଲା ଅରୁନ୍ଧତୀର ଘରେ । ଚାଲିବାରେ, ହସିବାରେ, କଥା କହିବାରେ, ଝଗଡା ଲାଗିବାରେ, ଡିସ୍କୋ ନାଚିବାରେ, ବାରଣ୍ଡାର ଲୁହାକୁ ଧରି ମାଙ୍କଡ

ପରି ଝୁଲିବାରେ, କୁଞ୍ଚି ଆଉ ଗଞ୍ଜି ଉପରେ, ଅନଭ୍ୟସ୍ତ ଲଙ୍ଗଳା ପାଦ ଉପରେ, ଖାଲି ଦିହରେ ରହିବାକୁ ଭଲ ପାଉଥିବା ଚାକର ଉପରେ, ସୁବବେଳେ ମାରପିଟ୍ ହଉଥିବା ପିଲାଙ୍କ ଉପରେ, ହିତାହିତଜ୍ଞାନ ଭୁଲି ପୌରୁଷ ଦେଖଉଥିବା ଆଦିତ୍ୟ ଉପରେ ।

: ଏଇଟା ଆଉ ଷ୍ଟାଫ୍ କଲୋନୀ ନୁହଁ, କହିଥିଲା ଅରୁନ୍ଧତୀ, ଅନାର୍ଯ୍ୟ ଭଳି ଏତେବଡ ପାଟି କର କାହିଁକି ?

: କେବେ ଶିଖିବ ଆଉ ? ଏତେ ବଡ ବଡ ପିଲା ହେଲଣି, ବାହାରକୁ ଖାଇବା ଜିନିଷ ନେଇ ଆସନ୍ତି ? ଖାଲି ପାଦରେ ମାଟିକୁ ଯିବାକୁ କିଏ କହିଚି ତମକୁ ?

କାହିଁକି ମାମା ? କାହିଁକି ଆମେ ବାହାରେ ନାଚିବା ନି କି ଖାଇବାନି ? ଆଗେ ତ ସେମିତି କହୁ ନଥିଲ ତମେ ?

: ନାଇଁ ପୁଅ ସେମିତି କରନ୍ତିନି । ଦୂରରେ ଡାୟନଟେ ଅଛି, ଦେଖିନବ ।

: ଡାୟନ୍ ମାନେ କ'ଣ ମା ?

: ଡାହାଣୀ । ସେସବୁରୁ କ'ଣ ପାଇବ ତମେ ? ତମେ ସେମିତି କରିବନି ତ ।

ଅରୁନ୍ଧତୀର କ୍ରମଶଃ ଭଏ ଗୋଟେ ଅସହାୟତାରେ ପରିଣତ ହୋଇଯାଇଥିଲା । କାରଣ, କୋଉଦିନ ସେ କୋଉ ଶାଢୀ ପିନ୍ଧୁଚି, ତା' ଘରକୁ କିଏ ଆସିଚି, କାର୍‌ରେ କି ହୀରୋହୋଣ୍ଡାରେ, ସବୁ ଖବର ତାଙ୍କ ଘରେ ପହଞ୍ଚିଯାଉଥିଲା ।

: ଆପଣଙ୍କ ବାପା ଆସିଛନ୍ତି ନା ? ରାସ୍ତାରୁ ଜିପ୍‌ରେ ଉଠେଇ ନେଇ ପଚାରିଥିଲେ ମିସେସ୍ ଏମ.ଡି.

: କେମିତି ଜାଣିଲେ ? ପଚାରିଲା ଅରୁନ୍ଧତୀ ।

: ମିସେସ୍ ମିଶ୍ର କହୁଥିଲେ ।

ଏବେ ଅରୁନ୍ଧତୀ ବୁଝିନେଇଥିଲା କୋଉ ଆଖି ଦେଇ ମିସେସ୍ ଏମ୍.ଡି. ଦେଖନ୍ତି ତା'ଘରକୁ ।

ବୋଧହୁଏ ସେଇଥିପାଇଁ ମିସେସ୍ ଏମ୍.ଡି.ଙ୍କ ଶାଶୁ ଅର୍ଥାତ୍ ଏମ୍.ଡି. ସାହେବଙ୍କ ମା' ମରିଯିବାର ଘଟଣା ଜାଣି ସୁଦ୍ଧା ଅରୁନ୍ଧତୀ ଖସି ଆସିଥିବାରୁ ଗୋଟେ ପ୍ରକାର ଅପରାଧବୋଧ ଓ ଭୟ ଭିତରେ ରହିଥିଲା । ତେଣୁ ଖୁବ୍ ଶୀଘ୍ର ସେ ଫେରିଆସିଥିଲା ଘରକୁ । ଘରେ ପହଞ୍ଚି ଦେଖିଥିଲା, ଚାରିଆଡେ ଗୋଟେ ନିସ୍ତବ୍ଧତା, ଶୂନ୍‌ଶାନ୍ । ମାଛିଟିଏ ବି ଯେମିତି ବୁଲୁନି କଲୋନୀ ଭିତରେ । ଦୁଇ ତିନିଦିନ ହେଲା ଚାରିଆଡେ ଛାଇ ଯାଇଥିବା ବିଷର୍ଣ୍ଣ ଭାବର ଯେ ଯେମିତି ଅନ୍ତିମ ମୁହୂର୍ତ୍ତ ।

କେବେଠୁଁ ଏମ୍.ଡି.ଙ୍କ ମା' ଅସୁସ୍ଥ ଥିଲେ ଜଣା ନଥିଲା ଅରୁନ୍ଧତୀକୁ । ତେବେ, ସପ୍ତାହକ ତଳେ ମିସେସ୍ ମିଶ୍ରଙ୍କ ମୁହଁରୁ ସେ ଶୁଣିଥିଲା ଖବରଟି : କ'ଣ କରିବି କହନ୍ତୁ ? ଆଜି ପପୁର ଜନ୍ମଦିନ । ନ କରିଲେ ନ ହୁଏ । ଏପଟେ ଏମିତି ଘଟଣାଟେ ଘଟିଯାଇଛି ଜାଣିଲେଣି କି ନାଇଁ ? ଏମ୍.ଡି.ଙ୍କ ମା' କଟକ ମେଡିକାଲରେ ଭର୍ତ୍ତି ହେଇଛନ୍ତି ।

: ସତେ ନା କ'ଣ ? ପଚାରିଥିଲା ଅରୁନ୍ଧତୀ ।

: ସମସ୍ତେ ଜାଣନ୍ତି, ଆପଣ କେମିତି ଜାଣିନାହାଁନ୍ତି ? ସିଭିଲ୍‌ର ଏକ୍‌ଜିକ୍ୟୁଟିଭ ଇଞ୍ଜିନିୟର ରାଉତ୍, ଆକାଉଣ୍ଟସ୍ ଅଫିସର ପାଢୀ, ପର୍ସନାଲ୍ ଅଫିସର, କିଏ ଆଉ ଏଠି କାମ କରୁଚି କି ? ସବୁ ଯାଇ ସେଇଠି ପଡିଛନ୍ତି । ବୁଢୀ ଏକଦମ୍ ଲାଷ୍ଟ ଷ୍ଟେଜ୍ । ମୁଁ ଭଗବାନଙ୍କୁ ଡାକୁଚି ଆଜି ଦିନଟା କେମିତି ଭଲରେ ଭଲରେ ପାର ହେଇଯାଉ । ଆପଣ ବି ମୋ ପାଇଁ ଡାକନ୍ତୁ । ଏମିତି ଅବସ୍ଥାରେ ବାର୍ଥଡେ ପାଳିବା ଠିକ୍ ହବ ? ବଡ ଚିନ୍ତିତ ଭାବରେ ପଚାରି ପକେଇ ଥିଲେ ମିସେସ ମିଶ୍ର ପୁଣିଥରେ ।

ମିଶ୍ର ସାହେବ ଘର ବାର୍ଥଡେ ପାଳନ କରିଥିଲେ ଲୁଚେଇ ଲୁଚେଇ ଅଳ୍ପ କେତେଜଣ ବିଶ୍ୱସ୍ତ ବନ୍ଧୁଙ୍କୁ ଡାକି । ବୁଢୀ ମରି ନଥିଲା ବର୍ଲିନ୍ ପ୍ରାଚୀରର ଏପାଖରେ, ତେଣୁ ସପ୍ତାହକ ତଳୁ ଉଦାସଭାବଟେ ରାଜତ୍ୱ କରୁଥିଲା । କାହାରି ଘରୁ ଟି.ଭି.ର ଶବ୍ଦ ନାହିଁ, ଘୁଙ୍ଗୁର ଆଉ ତବ୍‌ଲାର ଶବ୍ଦ ବି । କଡା ଇସ୍ତ୍ରୀକରା ଶାଢୀର ସାନ୍ଧ୍ୟଭ୍ରମଣ ନାହିଁ, କ୍ଲବ୍‌ରେ ରମି ନାହିଁ ।

ପୂର୍ବଦିନ ସଂଧ୍ୟାରେ ମିସେସ୍ ମିଶ୍ର ତାଙ୍କୁ କହିଥିଲେ : ଜାଣିଲେଣି ନା ଆମ୍ବୁଲାନ୍‌ସ ଯାଇଛି ଏଇଠୁ । ମତେ ଲାଗୁଚି ବୁଢୀ ବୋଧେ ଚାଲିଗଲା । ପର୍ସନାଲ ଅଫିସର ଆସିଥିଲେ ଏଇଠୁ ଆମ୍ବୁଲାନ୍‌ସ ନେଇ ଦଶଟା ଆଡକୁ ଖଣ୍ଡେ ଫେରିଯାଇଛନ୍ତି । କିଛି ନ ହେଇଥିଲେ ଆମ୍ବୁଲାନ୍‌ସ କାହିଁକି ଗଲା ? ସେମାନେ ଯେକୌଣସି ମୁହୂର୍ତ୍ତରେ ଫେରି ଆସିପାରନ୍ତି । ଆପଣ ପ୍ରସ୍ତୁତ ଥାଆନ୍ତୁ, ଖବର ପାଇଲାକ୍ଷଣି ବାହାରିବା ।

ବାହାରକୁ ପିନ୍ଧିଗଲା ଭଳି ଶାଢୀ ଖଣ୍ଡେ ପିନ୍ଧି ପ୍ରାୟ ପ୍ରସ୍ତୁତ ହେଇ ରହିଥିଲା ଅରୁନ୍ଧତୀ । ତରବରରେ ରୁଟି ତର୍କାରୀ ବି କରିରଖିଥିଲା ରାତି ପାଇଁ । ବାରମ୍ବାର ଝରକାବାଟେ ଦେଖିଯାଉଥିଲା ସେ, କେଉଁ ମୁହୂର୍ତ୍ତରେ ମିସେସ୍ ମିଶ୍ର ଆସି ଡାକିବେ କି ?

ନା, ଅରୁନ୍ଧତୀ ଶୋଇବା ପର୍ଯ୍ୟନ୍ତ ସେମିତି କିଛି ଘଟି ନଥିଲା ହୁଏତ । ମିସେସ୍ ମିଶ୍ର ଡାକିବାକୁ ଆସି ନଥିଲେ ତାଙ୍କୁ । କିନ୍ତୁ ସକାଳୁ ରାଓଲ୍‌ସାବ୍, ମିଶ୍ରସାବ୍ ପ୍ରଭୃତିଙ୍କ ମଳିଛା ଚେହେରାରୁ ସେ ଜାଣିନେଇଥିଲା ରାତିରେ ହୁଏତ ଫେରିଆସିଛନ୍ତି ସେମାନେ ଓ ରାତାରାତି ବ୍ୟାପିଯାଇଚି ଖବରଟି ଚାରିଆଡକୁ ।

ଅରୁନ୍ଧତୀର ହଠାତ୍ ମନେହେଉଥିଲା, ମିସେସ୍ ଏମ.ଡି. ସତେ ଯେମିତି ଗଛପତର ଫାଙ୍କରୁ ଦେଖିପାରିଛନ୍ତି ତାକୁ । ଡରିଗଲା ସିଏ । କଥାଟା ଖରାପ୍ ହେଇପାରେ, ଅନ୍ତତଃ ଥରେ ଯାଇ ବୁଲିଆସିବା ଉଚିତ୍ ତା'ର ।

ଅରୁନ୍ଧତୀ ବାହରୁଥିଲା ଏମ୍.ଡିଙ୍କ ଘରକୁ । ସତେଯେମିତି ବାସ୍ନାଟେ ଚହଟିଯାଇଥିଲା ଚାରିଆଡକୁ । ମିସେସ୍ ମିଶ୍ର ତାଙ୍କ ସଦା ବାଳ ଶୁଖଉଥିଲେ, ଅରୁନ୍ଧତୀକୁ ପାଖକୁ ଡାକି କହିଲେ; ଆପଣ ମିସେସ୍ ଏମ୍.ଡି. ପାଖକୁ ବାହାରିଛନ୍ତି ବୋଧହୁଏ ।

: ହଁ, ଶବ କ'ଣ ଶ୍ମଶାନକୁ ଚାଲିଗଲାଣି ?

: କେବେଠୁଁ । ଏଇତ ମୁଁ ଗାଧେଇକି ବାହାରୁଚି । ତଥାପି ଆପଣ ଥରେ ବୁଲି ଆସିବା ଉଚିତ୍ । ହଁ, ଏଇ ଶାଢୀ କିନ୍ତୁ ବଦଳେଇ ଦେଇଯାଆନ୍ତୁ । କିଛି ଗୋଟେ ଡଲ୍‌କଲର୍ ଶାଢୀ ପିନ୍ଧିକି ଯିବେ - ପାଦରେ ସ୍ଲିପର୍ ଫ୍ଲିପର୍ ।

ଅରୁନ୍ଧତୀ ଏମ୍.ଡିଙ୍କ ଗେଟ୍ ପାଖେ ପହଞ୍ଚିଲାବେଳକୁ ତା' ଛାତି ଦୁର୍ ଦୁର୍ ହୋଇ ଥରୁଥିଲା । ଦରୁଓ୍ୱାନ୍‌ଠୁଁ ବୁଝି ଜାଣିଥିଲା ଯେ ମେମ୍‌ସା'ବ୍ ଅଛନ୍ତି । ବାରଣ୍ଡାରୁ ହଲ୍‌କୁ ପଶିବା ପାଇଁ ଦୋଦୋପାଞ୍ଚ ହେଉଥିଲାବେଳେ ଏମ୍.ଡି. ଘର ସୁଇପର୍‌ଟି ଭିତରୁ ବାହାରି ଆସି କହିଥିଲା, ମେମ୍‌ସା'ବ୍‌କୁ ଖୋଜୁଛନ୍ତି ? ତା'କଥା ସରୁ ନ ସରୁଣୁ ମିସେସ ଏମ୍.ଡି. ତରବର ପାଦରେ ହଲ୍‌ଘର ଭିତରକୁ ପଶି ଆସିଥିଲେ, ବୋଧହୁଏ କୌଣସି କାମରେ । ତାକୁ ଦେଖିପକେଇବା ମାତ୍ରେଇ କହିଲେ : ଆରେ ଆସନ୍ତୁ, ଆସନ୍ତୁ ।

କ'ଣ କରିବ ଅରୁନ୍ଧତୀ ? ଛିଡାହେବ କି ବସିବ ? ସମବେଦନାପକ କି ଭାଷା କହିବ, ବୁଝିପାରୁ ନ ଥିଲା । ''ଆପଣ ଟିକେ ବସନ୍ତୁ, ମୁଁ ଆସୁଛି'' କହି ମିସେସ୍ ଏମ୍.ଡି. ଭିତରକୁ ଚାଲିଯାଇଥିଲେ । ଅରୁନ୍ଧତୀ ହଲ୍‌ଘରଟାରେ ଏକଲା ବସି ରହିଥିଲା । ସାମନାର ସେଣ୍ଟରଟେବୁଲ୍‌ରେ ଦି'ଟା ବଡ ପ୍ଲେଟରେ

ନମକିନ୍ ଓ ମିଠା ଥୁଆ ହୋଇଥିଲା । ଅରୁନ୍ଧତୀର କାହିଁକି କେଜାଣି ଏମିତି ହିଁ ମନେ ହେଉଥିଲା: ସମଗ୍ର ଘରଟିର ଅସ୍ତିତ୍ୱ ସେଇ ପ୍ଲେଟ୍ ଦିଇଟିରେ ସୀମାବଦ୍ଧ ହୋଇ ରହିଯାଇଥିଲା ।

ପ୍ରାୟ ପାଞ୍ଚ ମିନିଟ୍ ପରେ ଫେରିଆସିଥିଲେ ମିସେସ୍ ଏମ୍.ଡି । ବାଥ୍ରୁମ୍‌ରୁ ବାହାରୁଥିଲେ । ''ଏ କେତେଦିନ ଖାଇବା ଶୋଇବା କିଛି ଠିକ୍ ଠିକଣା ନାଇଁ ତ । ତା' ଛଡା କାଲି ରାତିଟାସାରା ତେଡ଼୍‌ବଡିକୁ ଜଗିବସିଚୁ । ମତେ ବହୁତ ଭଲ ପାଉଥିଲେ ମୋ' ଶାଶୁ; ମୋ'ରି ହାତରୁ ପାଣି ପାଇଲାପରେ ଆଖି ବୁଜିଲେ ।'' କାହିଁକି କେଜାଣି ଅରୁନ୍ଧତୀର ଠିକ୍ ସେତିକିବେଳକୁ ମନେପଡିବାକୁ ଥିଲା, ସେ କୋଉଠୁ ଶୁଣିଥିଲା ବି କଥାଟି ଯେ, କାଳେ ମିସେସ୍ ଏମ୍.ଡି. ତାଙ୍କ ଶାଶୁଙ୍କୁ ନିଜର ଅନ୍ୟତମ ବେଡ୍‌ରୁମ୍‌ରେ ନ ରଖି ଚାକରଙ୍କ ପାଇଁ ଉଦ୍ଦିଷ୍ଟ ଘରଟିରେ ରହିବାକୁ ଦେଇଥିଲେ ବଞ୍ଚିଥିବାବେଳେ । ମିସେସ୍ ଏମ୍.ଡି. ମିଠା ଆଡକୁ ହାତ ବଢେଇ ନିଅନ୍ତୁନା ମିଠା, ନିଅନ୍ତୁ ବୋଲି କହିଥିଲେ ।

: ନାଇଁ, ଥାଉ

: ନମକିନ୍ ନିଅନ୍ତୁ

: ନାଇଁ, ନାଇଁ । ମୁଣ୍ଡ ହଲେଇ ନାହିଁ କରିଥିଲା ଅରୁନ୍ଧତୀ ।

ଏଇ ସମୟରେ ମିସେସ୍ ନାୟକ ବାସନରେ କିଛି ଜିନିଷ ନେଇ ପଶି ଆସିଥିଲେ । ତାଙ୍କ ଆଖିଗୁଡା କାନ୍ଦି କାନ୍ଦି ଫୁଲିଲା ଫୁଲିଲା ଦିଶୁଥିଲା । ସେ ଅରୁନ୍ଧତୀ ଆଡକୁ ଆଦୌ ଅନେଇଲେ ନାଇଁ ବି । ବାଲି ରଖି ଦୀପ ଜାଳିଲେ କି ? ଲୁହାକଣ୍ଟାଟେ ପିଟିବାକୁ ହବ କାନ୍ଥରେ, ମିସେସ ଏମ୍.ଡିଙ୍କ ଆଡକୁ ଚାହିଁ କହିଥିଲେ ସିଏ ।

ଏଇ କାମରବେଳେ ଅଯଥା ବେଶୀ ସମୟ ବସିବା ଉଚିତ ହବନି ଭାବି ଉଠି ଛିଡାହେଇଥିଲା ଅରୁନ୍ଧତୀ : ଆପଣଙ୍କର ତ ବହୁତ କାମ ଥିବ ଏବେ ।

: ହଁ, କାମ ତ ରହିବଇ ।

: ମୁଁ ସକାଳୁ ଆସି ପାରିଥାନ୍ତି, ମତେ ଜଣା ନଥିଲା ଆଦୌ । କହିଥିଲା ଅରୁନ୍ଧତୀ । ଏକଦମ୍ ସକାଳୁ ମୁଁ ଘରୁ ବାହାରିଯାଏ ତ । ହସିଥିଲେ ମିସେସ୍ ଏମ୍.ଡି. । ପୁଣି କଠିନତାଟେ ଫେରିଆସିଥିଲା ତାଙ୍କ ମୁହଁକୁ ।

: କେମିତି ଜଣା ନଥିଲା ଆପଣଙ୍କୁ ? ଆପଣଙ୍କ ମିଷ୍ଟରଙ୍କୁ ତ ମୁଁ ଦେଖିଚି, ଶବ ଉଠିଲାବେଳେ ସେ ଏଇଠି ଥିଲେ !

ଅରୁନ୍ଧତୀ ଧରାପଡିଗଲା - ଯେମିତି ଲାଜରେ ମୁହଁଟା ଲାଲ ହେଇଗଲା ତା'ର । କିଛି କହିପାରିଲାନି ସେ । ଧୀରେ ଧୀରେ ଫେରିଆସିଥିଲା ସେ ତା' ଘରକୁ । ଦି'ଟା ଆଖି ଯେମିତି ତା'ପଛରେ, ତାକୁ ଅନୁସରଣ କରୁଥିଲା; ଏମିତି ମନେହେଉଥିଲା ତା'ର । ସୁନ୍ଦର ବାରଣ୍ଡାଟିରେ ଛିଡା ହେଇଥିଲା ସିଏ । ତା'ର ମନେ ହେଉଥିଲା ଗଛପତର ଫାଙ୍କରୁ ଦି'ଟା ଆଖି ତାକୁ ଦେଖୁଚି । ଘର ଭିତରେ ପଶିଯାଇ କବାଟ ଦେଇଦେଲା । ସେ ଚାହିଁଥିଲା ଏମିତି ନିର୍ଜନ ଦ୍ୱୀପଟେ । ହେଲେ, ପୃଥିବୀରେ ଏମିତି ଗୋଟେ ଦ୍ୱୀପ ଅଛି କି, ଯେଉଁଠି ଆଉଗୋଟେ ମଣିଷର ପାଦ ପଡି ନଥିବ ?

# ସତୀ

ସଦାନନ୍ଦ ତ୍ରିପାଠୀ

ଅସୁର ବଂଶ ଅନେକ ବର୍ଷ ତଳୁ ସମୂଳ ଲୋପ ପାଇଗଲାଣି ବୋଲି ଯେଉଁ ଭ୍ରାନ୍ତ ଧାରଣା ଆମ ଭାରତୀୟମାନଙ୍କର ଥିଲା, ତାହା ଗତବର୍ଷ ଏଇ ଦିନ ଭାଙ୍ଗି ଚୁରମାର ହେଇଗଲା । କେମିତି କେଜାଣି ବଞ୍ଚି ରହିଥିବା ଗୋଟିଏ ଅସୁର ସମ୍ପର୍କରେ ସେତିକିବେଳେ ଯାଇ ଖବର ମିଳିଲା, ଯେତେବେଳେ ସେଇ ଅସୁରଟି ପ୍ରତ୍ୟକ୍ଷ ଦିବାଲୋକରେ ଜୟପୁରର ଜନୈକ କୋଟିପତିଙ୍କ ଏକମାତ୍ର ଅଲିଅଳ ତଥା ସୁନ୍ଦରୀ କନ୍ୟା ସତୀକୁ ତାଙ୍କ ଦୁର୍ଭେଦ୍ୟ ପ୍ରାସାଦ ଭିତରୁ ଉଠାଇ ନେଇଗଲା । ଶେଷସୁଦ୍ଧା ସମସ୍ତେ ଜାଣିବାକୁ ପାଇଲେ ଯେ ସେଇ ଅସୁରଟିର ନାଁ ଥିଲା ରାଜ୍ ଓ ତା'ର ଆସ୍ଥାନ ଥିଲା ବିନ୍ଧ୍ୟ ପର୍ବତର ଗୋଟିଏ ଅଗମ୍ୟ ଢାଲୁ ଶଯ୍ୟାରେ ।

ଅସୁରଟି ଥିଲା ବନ ମାୟାବୀ । କେତେବେଳେ ଓ କେମିତି ଯେ ସିଏ ସହରର ମଝିରେ ଜନବହୁଳ ବସତି ଅଞ୍ଚଳରେ ଥିବା ଉକ୍ତ କୋଟିପତିଙ୍କ ପ୍ରାସାଦ ଭିତରକୁ ପ୍ରବେଶ କଲା, କେହି ତା'ର ଟେର ପାଇ ପାରିଲେ ନାହିଁ; ଅଥଚ ସତୀକୁ ତା'ର ଶୟନକକ୍ଷରୁ ଉଠାଇ ନେଲାବେଳେ ସତୀର ଚିତ୍କାର ଶୁଣି ଅନ୍ୟମାନେ ଆସିବା ବେଳକୁ ତାକୁ ନେଇ ସେ ଆକାଶରେ ଉଡ଼ିବା ଆରମ୍ଭ କରି ସାରିଥିଲା । ସେତେବେଳେ ଅସୁରଟିର ପାପୁଲିର ଦୀପାଳିରେ ଇତଃସ୍ତତଃ ହେଉଥିବା ସତୀ, ଧଳା ବସନ ପିନ୍ଧିବାରୁ ହୁଏତ ଦିଶୁଥିଲା ଗୋଟିଏ ପ୍ରକମ୍ପିତ ଦୀଖାଣିପା ପରି ଓ ଅସୁରଟି କ୍ରମେ ଉର୍ଦ୍ଧ୍ୱକୁ ଉର୍ଦ୍ଧ୍ୱକୁ ଉଠିଯାଇ ଶେଷରେ ଗୋଟିଏ ମେଘଖଣ୍ଡ ଭଳି ଦିଶି କୁଆଡ଼େ ମିଳାଇଗଲା । ତା' ପରଠାରୁ ଅନେକ ଦିନ ଯାଏଁ ଆଉ କିଛି ଖବର ମିଳିଲା ନାହିଁ ।

ଦୁର୍ଘଟଣାଟି ଘଟିଯିବା ପରେ ଅବଶ୍ୟ ଦେଶର ସମସ୍ତ ଛୋଟ ବଡ ଅନୁଷ୍ଠାନ ତାର ନିନ୍ଦାବାଦ କଲେ, ଶାସକ ତଥା ବିରୋଧୀ ଦଳର ସମସ୍ତ ନେତା ବିବୃତି ଦେଇ କହିଲେ ଯେ ତାହା ଖୁବ୍ ଦୁର୍ଭାଗ୍ୟଜନକ, ପୋଲିସ୍ ତଥା ଗୋଇନ୍ଦା ବିଭାଗର କତିପୟ କର୍ମଚାରୀ ବେତନଭୋଗୀ ହିସାବରେ ସେମାନଙ୍କର ଯେତେଦୂର ଦୌଡାଦୌଡ଼ି କରିବା ଓ ଯେତିକି କାଗଜପତ୍ର ବା ଫାଇଲ କାମ କରିବା କଥା କଲେ, ପ୍ରାୟ ସମସ୍ତ ଖବରକାଗଜ ପ୍ରକାଶ ସଂସ୍ଥା ସେମାନଙ୍କ କାଗଜରେ ନିଜର ଆଭିମୁଖ୍ୟ ତଥା ଆବଶ୍ୟକତାକୁ ଦୃଷ୍ଟିରେ ରଖି ଖବର ଓ ଫିଚର୍ ପ୍ରକାଶ କଲେ, ଅନେକ ଖବରକାଗଜ ଓ ପତ୍ରିକାରେ ସତୀର ବିଭିନ୍ନ ଭଙ୍ଗୀର ଫଟୋ ସବୁ କଳାଧଳା ବା ରଙ୍ଗୀନ ହେଇ ପ୍ରକାଶ ପାଇଲା ଓ ତାକୁ ଖୋଜି ଆଣିଦେବା ଲୋକକୁ ଦଶଲକ୍ଷ ଟଙ୍କାର ନଗଦ ପୁରସ୍କାର ଦିଆଯିବ ବୋଲି ସତୀର କୋଟିପତି ବାପାଙ୍କ ତରଫରୁ ଘୋଷଣା କରାଗଲା, ଯେଉଁସବୁ ପତ୍ରିକାର କଭର ପୃଷ୍ଠାରେ ସତୀର ଆକର୍ଷଣୀୟ ଫଟୋ ଛପା ଯାଇଥିଲା ସେଗୁଡିକ ଗରମ ପିଠା (ହଟ୍ କେକ୍) ଭଳି ବିକ୍ରୀ ହେଲା । ବିରୋଧୀ ଦଳଗୁଡିକର ମୁଖପତ୍ରମାନଙ୍କରେ ନିରାପତ୍ତା ବ୍ୟବସ୍ଥାର ଅଧଃପତନ ହେତୁ ଏପରି ଅଭୂତପୂର୍ବ ଦୁର୍ଭାଗ୍ୟଜନକ ଘଟଣା ଘଟିଥିବାରୁ ପ୍ରଧାନମନ୍ତ୍ରୀ ତୁରନ୍ତ ଇସ୍ତଫା ଦିଅନ୍ତୁ ବୋଲି ମଧ୍ୟ ଦାବୀ ହେଲା ଓ ଏପରିକି

ଗୋଟିଏ ପାନମସଲା ତିଆରି କରୁଥିବା କମ୍ପାନୀ ତାଙ୍କ ପାନ ମସଲାର ପ୍ରଚାର ପାଇଁ ଦୁଇ ମିନିଟିଆ ସିନେମାଟିଏ ମଧ୍ୟ ପ୍ରସ୍ତୁତ କରି ପ୍ରଦର୍ଶନ କଲେ, ଯାହାର ବିଷୟବସ୍ତୁ ହେଲା ଗୋଟିଏ ଛୋଟ ଚଡି ଓ ଛାତିକୁ ଅଧା ଆବୃତ କରି ପାରୁଥିବା ବ୍ରେସିୟର୍‌ଟିଏ ପିନ୍ଧି ଗାଧୁଆଘରୁ ବାହାରୁଥିବା ଅବସ୍ଥାରେ ସୁଗଠିତା ସୁନ୍ଦରୀ ଷୋଡଶୀଟିଏ ତା' ସାମ୍ନାରେ ଠିଆହୋଇ ଅଟ୍ଟହାସ୍ୟ କରୁଥିବା ଗୋଟିଏ ଅସୁରକୁ ଦେଖିବ ଅଥଚ ଭୟଭୀତ ନହୋଇ ପଚାରିବ : ତମର ମତଲବ କ'ଣ ? ଅସୁର ଉତ୍ତର ଦେବ - ମୁଁ ତୁମକୁ ଅପହରଣ କରି ନେବାକୁ ଚାହେଁ । ତହୁଁ ଝିଅଟି କହିବ : ମତେ ନେଇ ତମେ ଯାହା ପାଇବ ତା'ଠୁ ଅଧିକ ପାଇବ ଏଇ ପାନ-ମସଲାରୁ । ଏହା କହି ଝିଅଟି ତା' ଶେଯ ଉପରେ ପଡିଥିବା ତକିଆତଳୁ ପାନମସଲାର ପୁଡିଆଟିଏ ବାହାର କରିବା ପାଇଁ ନଇଁ ପଡିବା ମାତ୍ରେ ତା'ସ୍ତନର ତିନି ଚତୁର୍ଥାଂଶ ଦେଖା ଯିବ ଓ ପୁଡିଆଟି ଅସୁରର ହାତରେ ଥୋଇ : ନିଅ, ଖାଇଦେଖ, ବୋଲି କହିବା ପରେ ସେ ଫୁଲଶର ମାରିବା ପରି ହସିବ । ଅସୁର ପୁଡିଆଟି ଚିରି ସେଥିରୁ ଅଳ୍ପ ପାନମସଲା ପାଟିରେ ପକାଇବା ମାତ୍ରେ ଚିତ୍କାର କରିବ : ବାଃ... ବାଃ ଓ ତା'ପରେ ଖୁସି ମନରେ, ସହାସ୍ୟ ବଦନରେ ସମ୍ପୃକ୍ତ ପାନମସଲାର ଗୁଣଗାନ କଲା ଭଳି ଗୀତଟିଏ ଗାଇ ଗାଇ ଆକାଶ ମାର୍ଗରେ ଏକାକୀ ଉଡିଯିବ । ଏପଟେ ଝରକା ପାଖରେ ଥାଇ ଝିଅଟି ଅସୁରକୁ ଟା... ଟା କରୁଥିବ ।

ଜୟପୁର ସହରରେ କୋକୁଆ ଭୟ ଖେଳି ଯାଇଥିଲା । ଲୋକମାନେ ଠିକ୍ ଅନୁମାନ କରି ପାରୁନଥିଲେ, ଅସୁରଟି ସତୀକୁ ଖାଇବା ପାଇଁ ନେଲା କି ମଣିଷ ସମାଜରେ ପ୍ରାୟତଃ ଘଟୁଥିବା ଏପରି ଅପହରଣର କାରଣ ବା ଉଦ୍ଦେଶ୍ୟ ଯାହା, ସେପରି କିଛି ଅଭିସନ୍ଧିରେ ଅପହରଣ କଲା ।

କାରଣ ଯାହା ବି ହେଉ, ପରିଣତି ହେଲା ବଡ ବିଚିତ୍ର । ଅସୁର ଭୟରେ ସହରର ବାଇଜୀମାନେ ସେମାନଙ୍କ ମୁଜରା ବନ୍ଦ କରିଦେଲେ । ଲାଇସେନ୍‌ସପ୍ରାପ୍ତ ଗଣିକାମାନେ ବି ବାହାରକୁ ବାହାରିଲେ ନାହିଁ ଓ ସମସ୍ତେ ଘରର ଯାବତୀୟ ପ୍ରବେଶ ପଥକୁ ଏପରି ଭାବେ ଚୁଙ୍ଗାଚୁଙ୍ଗି କରି ବନ୍ଦ କରି ରଖିଲେ, ଯେମିତିକି ଅସୁରଟି ମାଛି ରୂପରେ ଆସିଲେବି ଘର ଭିତରକୁ ପ୍ରବେଶ କରି ପାରିବ ନାହିଁ । କୁକୁର ରଖି ନଥିବା ଲୋକ ମଧ୍ୟ ଗେଟ୍‌ରେ ବୋର୍ଡ ଝୁଲାଇ ରଖିଲେ ଯେଉଁଥିରେ ଲେଖାଥିଲା : କୁକୁର ପ୍ରତି ସାବଧାନ ଓ ଦରଜାରେ ଲେଖିଦେଲେ ବିନା- ଅନୁମତିରେ ପ୍ରବଶେ ନିଷେଧ ।

'ସତୀ ଅପହରଣ ଘଟଣା' ପରେ ଅବଶ୍ୟ ଆଉ ସେପରି କୌଣସି ଅପ୍ରୀତିକର ଘଟଣା ଘଟିଲା ନାହିଁ । କିନ୍ତୁ ସତୀର ଭାଗ୍ୟ ବା ଭବିଷ୍ୟତ ନେଇ ଲୋକମାନେ କେବଳ ହାଉ ହାଉ ହେଇ ଆଲୋଚନା କରିବା ଛଡା ଅନ୍ୟ କିଛି ବ୍ୟବସ୍ଥା କରିପାରୁ ନଥିଲେ । କେହି କେହି ଉପରକୁ ଦେଖାଇ କହୁଥିଲେ : ସିଏ ଯାହା କରିବ ତା'ର ଇଚ୍ଛା । 'ଦଇବ ଦଉଡି ମଣିଷ ଗାଈ' । କେହି କେହି ତଥାପି ସରକାରଙ୍କ ଉପରେ ଆସ୍ଥା ପ୍ରକଟ କରୁଥିଲେ ଓ କେହି କେହି କହୁଥିଲେ ବିରୋଧୀ ଦଳ ଯଦି ଯା'ଭିତରକୁ ଆସି ଯାଆନ୍ତି, ତେବେ କିଛି ହେଇ ପାରିବ ।

ମାସାଧିକ କାଳ ବିତି ଯାଇଥିଲା ।

ସତୀର ଗୋଟେ ପ୍ରେମିକ ଥିଲା । ତା'ର ନାଁ ତ୍ରିବିକ୍ରମ । ସେ ସୈନ୍ୟ ବିଭାଗରେ ଚାକିରୀ କରୁଥିଲା । ପଦସ୍ଥ । ତା' ବାପା ବି ଜୟପୁରର ଜଣେ ଧନଶାଳୀ ବ୍ୟକ୍ତି । ସତୀ ସାଙ୍ଗେ ତା'ର ବିବାହ ହେବା କଥା ଥିଲା ।

'ସତୀ ଅପହରଣ ଘଟଣା' ସମ୍ପର୍କରେ ଖବର ପାଇବା ପରେ ତ୍ରିବିକ୍ରମ ଛୁଟି ଦରଖାସ୍ତ ଦେଇଥିଲା । ଅଥଚ ଛୁଟି ମଞ୍ଜୁର ହେବା ପାଇଁ ଅନେକ ଦିନ ଲାଗିଲା ।

ଦିନେ ସେ ତା'ର ବନ୍ଧୁକ ସହ ଗୋଟିଏ ଜିପରେ ଆସି ଜୟପୁରରେ ପହଞ୍ଚିଲା । ତା'ପରେ ଅନେକେ ଆଶାବାଦୀ ହୋଇଉଠିଲେ ଓ ସୁପ୍ତ ଆଲୋଚନାଟି ପୁନଶ୍ଚ ଜାଗ୍ରତ ହୋଇଉଠିଲା ।

କାଳବିଳମ୍ୱ ନକରି ତ୍ରିବିକ୍ରମ ତା'ର ବନ୍ଧୁକ ଓ ଜିପ୍ ନେଇ ଏକା ଏକା ସତୀର ସନ୍ଧାନରେ ବାହାରି ପଡିଲା ଯଦିଓ ତାକୁ ତା' ଆତ୍ମୀୟସ୍ୱଜନମାନେ ବାରଣ କରିବା ଛଳରେ ବାରମ୍ୱାର କହି ସାରିଥିଲେ ଯେ ସତୀ ଆଉ ମିଳିବନି । ମିଳିଲେ ବି ସିଏ ଆଉ ସତୀ ହେଇ ନଥିବ ବା ହୁଏତ ଜୀବନରେ ନଥିବ ।

ତ୍ରିବିକ୍ରମ ପିଲାଦିନେ ତା'ର ଆଈ ମା'ଠାରୁ ଅସୁର ଅସୁରଣୀଙ୍କ ବିଷୟରେ ଅନେକ କାହାଣୀ ଶୁଣିଥିଲା, ମନେ ରଖିଥିଲା ମଧ୍ୟ । ତେଣୁ ସେ ଜାଣିଥିଲା, ଅସୁରମାନେ ପାହାଡ ପର୍ବତ ଇଲାକାରେ ଗୁମ୍ଫାମାନଙ୍କରେ ରହନ୍ତି । ଅତଏବ କୌଣସି ସହରତଳି ଅଞ୍ଚଳରେ, ପରିତ୍ୟକ୍ତ କୋଠା ଭିତରେ, କୌଣସି ବ୍ୟଭିଚାରଗ୍ରସ୍ତ ହୋଟେଲ କିମ୍ୱା ବଦନାମ ଗଳିରେ ସତୀକୁ ଖୋଜିଲା ନାହିଁ ଅଥବା କେଉଁ ଗାଁ ପାଖିଆ ଜଙ୍ଗଲର ବୁଦା ଗୁଡିକୁ ଆଡେଇ ଦେଖିଲା ନାହିଁ ଯେ କାଳେ ଅସୁର ସତୀକୁ ସେଇଠି ଲୁଚାଇ ରଖିଥିବ । ସେ ସିଧା ଜିପ୍‌ରେ ଅନେକ ଦୁର୍ଗମ ପାହାଡ ପର୍ବତ ଇଲାକାକୁ ଯାଇ ରୀତିମତ ପରିଶ୍ରମ କରି ଝାଳନାଳ, ଖଣ୍ଡିଆ ଖାବରା ହୋଇ ସତୀକୁ ଖୋଜିଲା ରାତିଦିନ ଏକାକାର କରି । ଶେଷରେ ବିନ୍ଧ୍ୟ ପର୍ବତରେ ସେ ଯାଇ ସତୀର ସନ୍ଧାନ ପାଇଲା ।

ପାଇ ନଥାନ୍ତା । ଭାଗ୍ୟକୁ ସେ ଜିପ୍ ଠିଆ କରାଇ ଚାରିଆଡେ ଦୃଷ୍ଟି ବୁଲାଉ ଥିବାବେଳେ ଦର୍ପଣ ପ୍ରତିଫଳନ ପରି ଗୋଟିଏ ରଶ୍ମି ତା'ଆଖି ଉପର ଦେଇ ବୁଲିଗଲା ଓ ତା'ପରେ ସେ ସଚେତନ ହେଇ ଦେଖିଲା, ସୂର୍ଯ୍ୟର ବିପରୀତ ଦିଗରୁ ବାରମ୍ୱାର ଏମିତି ରଶ୍ମି ଏକାଧିକ ସଂଖ୍ୟାରେ ତା'ଉପରେ ପଡୁଚି, ସେ ବିସ୍ମିତ ହେଲା । ସେପରି ଏକ ନିର୍ଜନ ଇଲାକାରେ ଦର୍ପଣର ପ୍ରତିଫଳନକୁ ନେଇ ସେ କିଛି ସିଦ୍ଧାନ୍ତ ନେଇ ପାରୁନଥିଲା ଓ ଇତିମଧ୍ୟରେ ସତୀ କଥା ଭୁଲିଯାଇଥିଲା । ସୈନ୍ୟ ବିଭାଗରେ କାମ କରୁଥିବା ହେତୁ ଭୌତିକ କାଣ୍ଡ ଉପରେ ସେ ବିଶ୍ୱାସ ରଖୁନଥିଲା ଓ ଥିଲା ବଡ ସାହସୀ । ସେ ତୁରନ୍ତ ନିଜ ବନ୍ଧୁକ ବାହାର କରି ଦୃଢ ଭାବେ ଧରିଲା । ତା'ପରେ ପାହାଡର ବିଭିନ୍ନ ଅଂଶ ଉପରେ ଘନ ଘନ ଦୃଷ୍ଟି ବୁଲାଇଲା । ଏକ ସମୟରେ ସେ ଆବିଷ୍କାର କଲା, ପର୍ବତର ଗୋଟିଏ ଢାଲୁ ଶଯ୍ୟାରେ ଖୁବ୍ କ୍ଷୁଦ୍ରକାୟ ଦିଶୁଥିବା କେହି ଜଣେ ସୁନେଲୀ ଦେଖାଯାଉଛି ।

ହଠାତ୍ ତା'ର ସତୀ କଥା ମନେପଡିଲା । ସେ ଚିତ୍କାର କଲା : ସ..ତୀ...ଈ...ଈ କିଛି ପ୍ରତ୍ୟୁତ୍ତର ଆସିଲାନି । କେବଳ ପ୍ରତିଧ୍ୱନି ।

ତ୍ରିବିକ୍ରମ ଆଉ ବିଳମ୍ୱ କଲା ନାହିଁ । କାନ୍ଧରେ ବନ୍ଧୁକ ଗଳାଇ ଦ୍ରୁତଗତିରେ ପର୍ବତର ସେହି ଢାଲୁ ଅଞ୍ଚଳ ଆଡକୁ ଅଗ୍ରଗତି କଲା । ଯଥେଷ୍ଟ କମ୍ ସମୟ ମଧ୍ୟରେ ସେ ଯାଇ ସେଇଠି ପହଞ୍ଚିଲା ବେଳକୁ ଲହୁଲୁହାଣ । ସତୀ ତଥାପି ସେଇଠି ସେମିତି ଏପଟ ସେପଟ ହେଉଥିଲା ଓ ସେ ପିନ୍ଧିଥିଲା ଅନେକ ଛୋଟ ଛୋଟ ଦର୍ପଣ ଖଚିତ ଏକ ଚିତ୍ରବିଚିତ୍ର ସନେଲୀ ଶାଢୀ ।

ତ୍ରିବିକ୍ରମର ପ୍ରଥମ ପ୍ରଶ୍ନ : ଅସୁର କୋଉଠି ?

ସତୀ ଉତ୍ତର ଦେଲା : ଖାଦ୍ୟ ଅନ୍ୱେଷଣରେ ।

ତ୍ରିବିକ୍ରମର ଦ୍ୱିତୀୟ ପ୍ରଶ୍ନ : ତମେ ଏ ଶାଢ଼ୀ କୋଉଠୁ ପାଇଲ ?

ସତୀ କହିଲା : ମୁଁ ଯାହା କିଛି ବି ଦରକାର ବୋଲି କହୁଚି, ଅସୁର ଅଳ୍ପସମୟ ଭିତରେ କୋଉଠୁ ନା କୋଉଠୁ ସଂଗ୍ରହ କରି ଆଣି ଦେଉଚି । ଆହୁରି ଅନେକ ଶାଢ଼ୀ, ଲୁଗାପଟା ମଧ୍ୟ ଆଣି ଦେଇଚି । ସେଥିରୁ ଅଧିକାଂଶରେ ଏମିତି ଦର୍ପଣ ସବୁ ଲାଗିଚି । ମୋର ବିଶ୍ୱାସ ଥିଲା, ତମେ ନିଶ୍ଚୟ କେବେ ଦିନେ ମତେ ଉଦ୍ଧାର କରିବାକୁ ଆସିବ । ଦିନବେଳା ତ ଅସୁର ଏଇଠି ରହେନି । ମୁଁ ଏମିତିକା ଲୁଗାସବୁ ପିନ୍ଧି ଦିନସାରା ଏଇ ପାହାଡ ଉପରେ ବୁଲୁଥାଏ । ମୁଁ ଜାଣିଥିଲି, ତମେ ଯଦି କେବେ ଆସି ପର୍ବତ ତଳେ ଠିଆହେବ ତେବେ ମୋର ଏଇ ଲୁଗାରେ ଲାଗିଥିବ ଦର୍ପଣର ପ୍ରତିଫଳନ ହିଁ ତୁମକୁ ମୋ ପର୍ଯ୍ୟନ୍ତ ଆଣିବାରେ ସହାୟକ ହେବ ।

ତ୍ରିବିକ୍ରମର ତୃତୀୟ ପ୍ରଶ୍ନ : ତମ ଗୁମ୍ଫାଟି କୋଉଠି ?

ସତୀ ହସିଲା ଓ କହିଲା : ଆମ ଗୁମ୍ଫା କଣ ? କୁହ ଅସୁରର ଗୁମ୍ଫା । ସେଇଟା ପର୍ବତର ସେପଟେ । ଜାଣ, ମତେ ପ୍ରତିଦିନ କେତେ କଷ୍ଟକରି ଏ ଉପରକୁ ଆସବାକୁ ପଡେ ?

ତ୍ରିବିକ୍ରମର ଚତୁର୍ଥ ପ୍ରଶ୍ନ: ଅସୁର ତମକୁ କିଛି ମନ୍ଦ ବ୍ୟବହାର କରିନି ତ ?

ସତୀ କହିଲା : ତୁମକୁ ହୁଏତ ବିଶ୍ୱାସ ଲାଗିବନି, କିନ୍ତୁ ମୁଁ ଯାହା ଦେଖୁଛି ଇଏ ଗୋଟେ ଖୁବ୍ ହୃଦୟବାନ ଅସୁର । ଅନେକ ମଣିଷଙ୍କ ଠାରୁ ମଧ୍ୟ ଉତ୍ତମ ପ୍ରକୃତିର । ମତେ ଆଣି ଏଇ ଗୁମ୍ଫାରେ ରଖିବା ପରଠାରୁ ସେ ମତେ ଛୁଇଁ ମଧ୍ୟ ନାହିଁ ।

ତ୍ରିବିକ୍ରମର ପଞ୍ଚମ ପ୍ରଶ୍ନ ଆଶ୍ଚର୍ଯ୍ୟମିଶା ସ୍ୱରରେ, ତେବେ ସିଏ ତୁମକୁ ଅପହରଣ କରି ଆଣିଥିଲା କାହିଁକି ?

ସତୀ ମୁରୁକି ହସି ଉଚ୍ଚାରଣ କଲା : ବିଚରା ! ଓ କହିଚାଲିଲା : ସେ ମୋତେ ବାହା ହେବାକୁ ଚାହେଁ । ବାହା ହେବାପାଇଁ ଆଣିଚି ବୋଲିତ କହିଲା । କିନ୍ତୁ କିଛି ଜବରଦସ୍ତି କରିନି । ମୁଁ ତାକୁ କହିଛି ଯେ, ଆହୁରି ବର୍ଷେ ଯାଏଁ ମୋର 'କୁମାରୀବ୍ରତ' ପାଳନ କରିବାକୁ ଅଛି । ଏ ବ୍ରତ ତିନିବର୍ଷ ପାଇନ କରାଯିବା କଥା । ମୋର ଦୁଇବର୍ଷ ଗଲାଣି । ବ୍ରତ ପାଳନ କରୁଥିବା ବେଳେ କେବଳ ଫଳମୂଳ, କ୍ଷୀର ଆଦି ଭକ୍ଷଣ କରି ରହିବାକୁ ପଡେ । ପାକ କରାଯାଉଥିବା ଖାଦ୍ୟ ଓ ପୁରୁଷର ଅଂଗ ସ୍ପର୍ଶ କରିବା ସମ୍ପୂର୍ଣ୍ଣ ନିଷେଧ । ଅସୁର ଅବଶ୍ୟ ବଡ ମାୟାବୀ । ଅଥଚ ମୁଁ ତାକୁ ମାୟାରେ ଭୁଲାଇ ଦେଇଚି । ସିଏ ପ୍ରତିଦିନ ସଂଧ୍ୟାରେ ମୋ ପାଇଁ ଯାବତୀୟ ପକ୍ୱଫଳ ସଂଗ୍ରହ କରି ଆଣି ଦେଉଚି । ମୋର ପାଖ ଲାଗୁନାହିଁ । ଆଶ୍ଚର୍ଯ୍ୟ କଥା, ଅସୁର ନିଜେ ବି କେବଳ ଫଳମୂଳ ଖାଏ । ଜୀବ ହତ୍ୟାକରେ ନାହିଁ । ସାତ୍ତ୍ୱିକ ଭାବେ ବଞ୍ଚେ । ସେଇଥିପାଇଁ ବୋଧେ ତାର ପ୍ରକୃତି ଗୁଡିକ ମଧ୍ୟ ଜଣେ ଉନ୍ନତ ଧରଣର ମଣିଷପରି ହେଇପାରିଚି । ଆଉ ଗୋଟେ ମଜା କଥା ଶୁଣିବ ? ଏ ଅସୁରଟିର ଗୋଟେ ନାଁ ଅଛି । ତା'ର ନାଁ କୁଆଡେ ରାଜ୍ !

ସତୀ ମନ ଖୋଲି ହସିଲା । ତାର ଦାନ୍ତରୁ ମୁକ୍ତା ଝରି ପଡୁଥିଲା । ତ୍ରିବିକ୍ରମ ମୋହବିଷ୍ଟ ହୋଇ ତା ଆଡକୁ ଚାହିଁ ରହିଲା ଓ କହିଲା : ତୁମକୁ ବିବାହ କରିବା ପାଇଁ ପାଇବା ପାଇଁ କେବଳ ଅସୁର କାହିଁକି, ଯେ କୌଣସି ଦେବତା ବି ଲାଳାୟିତ ହୋଇପଡିବ ଓ କଠୋରରୁ କଠୋରତର ତପସ୍ୟା କରିବାକୁ ମଧ୍ୟ ପଛଘୁଞ୍ଚା ଦେବନାହିଁ । ତମେ ଯେ କହିଲ ତମେ ଅସୁରକୁ

ମାୟାରେ ଭୁଲାଇ ଦେଇଚ, ତାହା ଠିକ୍ କଥା । ତମ କଥାର ମାୟାରେ ନୁହଁ, ତମ ରୂପର ମୋହରେ ତମ ଲାଳିତ୍ୟର ମାୟାରେ ସିଏ ଭୂଲି ଯାଇଚି । ତୁମକୁ ପାଇବା ପାଇଁ ବର୍ଷଟିଏ ଅପେକ୍ଷା କରିବା କିଛି ସେମିତି ବଡ ଧରଣର ସାଧନା ନୁହେଁ । ଏମିତିତ ମୁଁ ବି ତୁମକୁ ବର୍ଷ ବର୍ଷ ଧରି ଅପେକ୍ଷା କରିଆସିଚି । ତୁମକୁ ମୁଁ ପିଲାଦିନରୁ ଜାଣିଚି, ଅନେକ ବର୍ଷ ହେଲା ଭଲପାଇଚି । ଅଥଚ ତୁମକୁ କେବଳ ଚୁମାଟିଏ ଦେବାପାଇଁ ମୋର ନିରୀହ ଇଚ୍ଛାକୁ ତମେ ବାରମ୍ବାର ଖୁବ୍ ସହଜରେ ଟାଳି ଦେଇଚ । କହିଚ ବିବାହ ପୂର୍ବରୁ ପରସ୍ପରର ଅଙ୍ଗ ସ୍ପର୍ଶ କରିବା ମଧ୍ୟ ପାପ । ତାହା ହିଁ ଭାରତୀୟ ପରମ୍ପରା । ମୁଁ ତୁମକୁ ବାରମ୍ବାର କହିଚି ଶାରୀରିକ ସତୀତ୍ୱ ବିଲ୍‌କୁଲ ଗୁରୁତ୍ୱପୂର୍ଣ୍ଣ ନୁହେଁ । ଅନେକ ବିଦେଶୀ ଶବ୍ଦକୋଷରୁ ସତୀତ୍ୱ, କୁମାରୀତ୍ୱ ଭଳି ଶବ୍ଦ ସବୁ ଉଠିଗଲାଣି । ତଥାପି ତମେ ଭୁଲି ନାହଁ । ବରଂ ପ୍ରତିଥର ମତେ ହିଁ ଭୁଲାଇ ଦେଇଛ । ସେ ଦୃଷ୍ଟିରୁ ଦେଖିବାକୁ ଗଲେ ରାଜ୍‌ଭଳି ମୂର୍ଖ ଅସୁରଟିକୁ ଭୁଲାଇ ଦେବା ତମ ପକ୍ଷରେ କିଛି କଷ୍ଟକର କଥାନୁହେଁ ।

କଥା ବନ୍ଦ କରି ତ୍ରିବିକ୍ରମ ଆଶ୍ୱସ୍ତ ହେଇଥିବା ପରି ଦିଶିଲା ଓ ଆତ୍ମତୃପ୍ତିର ହସଟିଏ ହସି ଶେଷ ପ୍ରଶ୍ନ ପଚାରିଲା : ଯଦି ତୁମକୁ ଏହି କୁତ୍ସିତ ଓ ବିଶାଳକାୟ ଅସୁରଟି ସହ ବିବାହ କରିବାକୁ ପଡେ, ତମେ କଣ କରିବ ?

: କୁତ୍ସିତ ଓ ବିଶାଳକାୟ ଅସୁର ? ସତୀ ଭ୍ରୂକୁଂଚିତ କଲା : ସେ ବଡ ମାୟାବୀ । ମତେ ଏଇ ଗୁମ୍ଫା ପର୍ଯ୍ୟନ୍ତ ଆଣିବା ପରଠାରୁ ସେ କେବେ ବି ନିଜ ରୂପ ଧାରଣ କରିନାହିଁ । ମତେ ଆଣିବା ପାଇଁ ସେ ମାଛି ରୂପରେ ମୋ ଶୋଇବାଘର ଭିତରକୁ ଗଲା ଓ ଆଣିବା ବେଳକୁ ଅସୁର ପାଲଟି ଗଲା । ଏଇଠି ପହଞ୍ଚିବା ପରଠାରୁ ସିଏ ଗୋଟେ ରଜାପୁଅ ପରି ଚେହରା ଧରିଚି । ମୋତେ ଭୁଲାଇବାକୁ ଚେଷ୍ଟା କରୁଛି । ସିଏ କହୁଚି, କୌଣସି ବିପଦ ନପଡିଲେ, ମୋ ଆଗରେ ସେ ଆଉ କେବେ ବି ନିଜ ରୂପ ଧାରଣ କରିବ ନାହିଁ ।

ତ୍ରିବିକ୍ରମ କହିଲା : ଭାଗ୍ୟର କଥା, ଅସୁରଟି ତମଠାରେ ପୁରାପୁରି ବଶ ହେଇ ଯାଇଚି ! ତେବେ ଆମକୁ ତୁରନ୍ତ ତା କବଳରୁ ମୁକ୍ତି ପାଇବାର ଉପାୟ ବାହାର କରିବାକୁ ପଡିବ । ମୁଁ ଭାବୁଚି, ଗୁମ୍ଫା ଭିତରେ ଯଦି ମତେ ଲୁଚି ରହିବାକୁ ଟିକିଏ ଜାଗା ମିଳିଯାଏ, ତେବେ ଆଜି ରାତିରେ ହିଁ ତାକୁ ଗୁଳିକରି ହତ୍ୟା କରିବି ।

ସତୀ କାତର ଭାବେ ବାରଣ କଲା : ନା, ନା, ତମେ ସେ ଭୁଲ୍ କରନା । ଅସୁରମାନେ କଣ ସେମିତି ମରନ୍ତି ? ୟା'ର ଜୀବନ ନାଟିକା କୋଉ ସମୁଦ୍ର କି ହ୍ରଦ କି ପୋଖରୀର ସାତତାଳ ପଙ୍କ ଭିତରେ ପୋତା ଯାଇଥିବା ଫରୁଆ ଭିତରେ ଫରୁଆ, ତା ଭିତରେ ଫରୁଆ ପୁଣି ସେ ଫରୁଆ ଭିତରେ ଫରୁଆ ହେଇ ତା' ଭିତରେ ଥିବା ଭଅଁରଟେ କି ମାଛିଟେ ଦେହରେ ଥିବ । ସେଇଟିର ମୁଣ୍ଡ ଗଣ୍ଡି ଦି'ଖଣ୍ଡ କଲେ ଯାଇ ଇଏ ମରିବ ।

ତ୍ରିବିକ୍ରମ ତାଚ୍ଛଲ୍ୟ କଲା: ହେଃ ଏସବୁ ତ ବୁଢୀ ଅସୁରଣୀ ଗପ କଥା ଶୁଣି ତମେ କହୁଚ । ସେ କାଳର ଅସୁର ଓ ଏବର ଅସୁର ଭିତରେ କଣ କିଛି ବି ତଫାତ୍ ନାହିଁ ? ତମେତ ପୁଣି କହୁଚ, ଏ ଅସୁର ରାଜପୁତ୍ର ଭଳି ଦେଖାଯାଏ । ଉତ୍ତମ ମଣିଷ ପରି ବ୍ୟବହାର କରେ !

ସତୀ ଯୁକ୍ତି କଲା : କ'ଣ ହେଲା ସେଇଥିଁ ? ବିପଦ ପଡିଲେ ଅସୁର ପୁଣି ନିଜ ରୂପ ଧାରଣ କରିବ ନାହିଁ ? ତା'ଛଡା, ରାତିରେ ଗୁମ୍ଫା ଭିତରେ, ଶୋଇଥିବା ଅବସ୍ଥାରେ ସତକୁ ସତ ସେ ଯଦି ତମ ଗୁଳିରେ ମରିଯାଏ, ତେବେ ଆମେ ସେଇ ଗୁମ୍ଫା ଭିତରେ ହିଁ ଶେଷ ନିଃଶ୍ୱାସ

ତ୍ୟାଗ କରିବା । କାରଣ, ରାତିରେ ଗୁମ୍ଫାର ଦ୍ୱାର ବନ୍ଦ ରଖିବା ପାଇଁ ସିଏ ଯେତେ ବଡ ପଥରଟି ଗୁମ୍ଫା ମୁହଁରେ ରଖେ, ତାକୁ ଘୁଞ୍ଚାଇବା ପାଇଁ ଶତ ସିଂହର ବଳ ଦରକାର ।

ତ୍ରିବିକ୍ରମ କହିଲା : ଆଚ୍ଛା, ଆଚ୍ଛା ! ତା'ହେଲେ ଆମକୁ ଅନ୍ୟ ଉପାୟ ଦେଖିବାକୁ ପଡିବ । ତମେ ନହେଲେ ଗୋଟେ କାମ କର । ଆଜି ରାତିରେ ଅସୁରକୁ ପରୋକ୍ଷ ଭାବେ ପଚାରି ବୁଝି ନିଅ, ତା'ର ଜୀବନ ନାଟିକା କୋଉଠି ଅଛି । ତା'ପରେ ତାକୁ ନିଧନ କରିବା ଦାୟିତ୍ୱ ମୋର ।

ସତୀ କହିଲା : ଠିକ୍ ଅଛି !

ତା'ପରେ ସେ ଦୁହେଁ ଗୁମ୍ଫା ପାଖକୁ ଆସିଲେ । ଗୁମ୍ଫା ଭିତରେ ତ୍ରିବିକ୍ରମ ନିଜର ଲୁଚି ରହିବା ପାଇଁ ଜାଗା ପାଇଗଲା ।

ସନ୍ଧ୍ୟା ହେଲା । ଅନ୍ଧାର ବହଳ ହେଲା । ପୂର୍ବଦିନର ବଳକା ଫଳମୂଳରୁ କିଛି ଖାଇ ନେଇ ତ୍ରିବ୍ରିକମ ଲୁଚି ରହିଲା ଗୋଟେ ପଥର ଆଡୁଆଳରେ । ତା'ର ଗୋଟେ ସନ୍ଦେହ ଥିଲା । କିନ୍ତୁ ସେ ବିଷୟରେ ସତୀକୁ ସେ କିଛି ପଚାରିଲା ନାହିଁ । ସତୀକୁ ଆଣିବା ପରେ, ତା'ର କହିବା ଅନୁଯାୟୀ, ଅସୁର ଅନେକଗୁଡିଏ ମହମବତୀ, ଗୋଟେ ଗ୍ୟାସ ଲାଇଟ, ଗୋଟେ ଡ୍ରମ କିରୋସିନୀ, ଅନେକ ଦିଆସିଲି ଆଣି ଦେଇଥିଲା ଓ ସନ୍ଧ୍ୟା ହେବାଠାରୁ ସକାଳଯାଏଁ ଗୁମ୍ଫା ଭିତରକୁ ଆଲୋକିତ ରଖିବା ପାଇଁ ସତୀର ଇଚ୍ଛାକୁ ଅସୁର ସଶ୍ରଦ୍ଧ ସ୍ୱୀକୃତି ଦେଇଥିଲା । ଗୁମ୍ଫା ଭିତରଟି ଆଲୋକିତ ରହିଲେ ଆପେ ତା'ର ସନ୍ଦେହ ମୋଚନ ହେଇ ପାରିବ ବୋଲି ତ୍ରିବିକ୍ରମ ସେ ବିଷୟରେ ସତୀକୁ କିଛି ବି ପଚାରିବାକୁ ଉଚିତ ମନେକଲା ନାହିଁ । ଗୁମ୍ଫା ଭିତରେ ମାତ୍ର ଗୋଟିଏ ଖଟ ଥିଲା, ଯଦିଓ ଖଟଟି ଏବଂ ତା'ଉପରେ ପଡିଥିବା ଶେଯଟା ଖୁବ୍ ନୂଆ ଜଣାପଡୁଥିଲା । ତ୍ରିବିକ୍ରମ ପଥର ଉହାଡରେ ଲୁଚିଯିବା ପରେ ସତୀ ଯାଇ ସେଇ ଖଟରେ ଗଡିଲା । ସାରା ଗୁମ୍ଫା ଭିତରେ ଅନ୍ୟ କେଉଁଠି ଅସୁରର ଶୋଇବା ବ୍ୟବସ୍ଥା ହେଇଥିବା ପରି ଜଣାଗଲା ନାହିଁ । ସତୀ କ'ଣ ତା'ହେଲେ ମିଛ କହୁଚି ? ତ୍ରିବିକ୍ରମ ଚିନ୍ତିତ ହେଇପଡିଲା ।

ଅସୁର ଆସିଲା । ଗୁମ୍ଫାର ଦ୍ୱାର ଦେଶରେ ପହଞ୍ଚିବା ମାତ୍ରେ ଦୋଷୀଟିଏ ଭଳି କହିଲା : ତୁମକୁ ଭୋକ ଲାଗିବଣି ସତୀ ! ମୋର ବିଳମ୍ବ ହେଇଗଲା । ନିଅ, ଏ ଫଳତକ ଖାଇଦିଅ । ଏହା କହି ଅସୁର ଗୋଟିଏ ଫଳ ଭର୍ତ୍ତି ନୂଆ ଝୁଲାମୁଣି ସତୀ ଆଡକୁ ବଢାଇ ଦେଲା ।

ମୁଣିଟିକୁ ସନ୍ତର୍ପଣରେ ନେଉ ନେଉ ସତୀ କହିଲା : ମୁଁତ ଖାଇ ସାରିଲିଣି ।

ଅସୁର ପଶ୍ଚାତାପ କଲା : ଇସ୍ କି ଲଜ୍ଜା, କି ଲଜ୍ଜା ! ମୋର ବିଳମ୍ବ ହେବାରୁ ସିନା ତୁମକୁ ବାସି ଫଳ ଖାଇ ପେଟ ଭର୍ତ୍ତି କରିବାକୁ ହେଲା ! ଏତିକି କହିସାରି ହଠାତ୍ ଅସୁର ସୁଁ ସୁଁ କରି ଘନଘନ ନିଃଶ୍ୱାସ ଟାଣିଲା ଓ ଗୁମ୍ଫାର ଚତୁର୍ଦ୍ଦିଗକୁ ତରଙ୍ଗ ତରଙ୍ଗ ଚାହିଁ ପ୍ରଶ୍ନ କଲା : କ'ଣ ଏମିତି ମଣିଷ ମଣିଷ ଗନ୍ଧଉଛି ?

ତାହା ଶୁଣି ତୁରନ୍ତ ସତୀ କାନ୍ଦିବାର ଅଭିନୟ କଲା ଅଥବା ସତକୁ ସତ କାନ୍ଦି ପକାଇ କହିଲା : ମୁଁ ତୁମକୁ କେତେଥର ବା ନ କହିଚି, ମତେ ଖାଇ ଦେଇ ତମେ ନିଜର ମନବୋଧ କର । ମତେ ଆଉ ଏମିତି ହନ୍ତସନ୍ତ କର ନାହିଁ ! ମୋ ଛଡା ତ ଆଉ କେହି ମଣିଷ ଏଇଠି ନାହାଁ, କାହାରି ଆସିବା ସମ୍ଭବ ନୁହେଁ । ତା'ପରେ ବି ତୁମକୁ ମଣିଷ ମଣିଷ ଗନ୍ଧଉଚି ଯଦି, ମତେ ଖାଅ ।

ଅସୁର ଅଭିମାନ କଲା : ନାଇଁ ନାଇଁ, ସେମିତି କହି ମୋ ମନରେ ଦୁଃଖ କାହିଁକି ଦେଉଛ ? ମୁଁ ଆସିବା ବେଳେ ପାହାଡ ତଳେ ଗୋଟେ ମୋଟରଗାଡି ଠିଆ ହେଇଥିବା ଦେଖିଲିତ, ମତେ ସେତେବେଳୁ ଖାଲି ମଣିଷ ମଣିଷ ଗନ୍ଧଉଚି, ମୁଁ କ'ଣ କରିବି ? କାଳେ କିଏ ଶିକାର କରିବାକୁ ଆସିଥିବେ । ଆମର ସେଥିରେ କ'ଣ ଅଛି ?

ତା'ପରେ ସତୀ ସ୍ମିତ ହସି ମହନୀୟ ଚାହାଣୀରେ ଅସୁର ଉପରେ କଟାକ୍ଷ ହାଣିଲା ଓ ତା' ଓଠରେ ହସ ଲାଖି ରହିଥିବା ଅବସ୍ଥାରେ ହିଁ ଖଟରେ ଗଡିପଡିଲା ।

ଅସୁର ମଧ୍ୟ ସତୀ ଶୋଇଥିବା ଖଟଠାରୁ ବେଶ କିଛି ଦୂରରେ, ତଳେ ଗଡିପଡିଲା । ଖଟ ଉପରୁ ମୁଣ୍ଡ ଉଠାଇ ସତୀ ବିରକ୍ତ ହେବାର ଅଭିନୟ କରି ଅଥବା ପ୍ରକୃତରେ ବିରକ୍ତ ହେଇ କହିଲା : ଶେଯ ନହେଲା ନାଇଁ, ଆଜି ମଧ୍ୟ ତଳେ ପକାଇ ଶୋଇବାକୁ ନିଜ ପାଇଁ ତାଳପତ୍ର କିଛି ଆଣିଲନି ନା ! ଅସୁର ଦେହ ଧାରଣ କରିଥିବା ବେଳେ ତମେ ତାଳପତ୍ର ଉପରେ ଶୋଉଥିଲ । ଏବେ ଏ କୋମଳ ମଣିଷ ଶରୀରକୁ ଯାହା କଷ୍ଟ ଦେଉଚ ! ମୋ କଥା ତମେ କାହିଁକି ବା ଶୁଣିବ ? ମୁଁ ତମର କିଏ କି ?

ଅସୁର ଉଠି ବସି ପଡିଲା ଓ ଗଦଗଦ କଣ୍ଠରେ କହିଲା : ସେକଥା ନୁହେଁ ସତୀ । କେବଳ ମଣିଷ ଶରୀର କାହିଁକି, ମତେ ତ ଲାଗୁନି ତମ ସହ ଏଇ କିଛିଦିନ ରହିବା ଭିତରେ ମୁଁ ସତକୁ ସତ ମଣିଷ ପାଲଟି ଗଲିଣି । ମତେ ବି ପ୍ରକୃତରେ ତଳେ ଶୋଇବା ପାଇଁ ଭଲ ଲାଗୁନି । ତଥାପି ତମର ବ୍ରତ ସରିବା ଯାଏଁ କଠୋର ସଂଯମ ପାଳନ କରିବା ପାଇଁ ମୁଁ ଏପରି କରୁଚି ।

ଅଚାନକ ସତୀ ପ୍ରସଙ୍ଗ ବଦଳାଇ ଆଶଙ୍କା ପ୍ରକାଶ କଲା : ଆଜି ମୋର ମନ ଭାରି ପାପ ଛୁଉଁଚି । ତମର ବିନା ସାହାଯ୍ୟରେ ମୁଁ ତ ଆଉ ମଣିଷମାନଙ୍କ ପାଖରେ ପହଞ୍ଚି ପାରିବି ନାହିଁ । ପହଞ୍ଚିଲେ ବି ତମେ ମତେ ଅପହରଣ କରି ଆଣିଥିବାରୁ ମତେ ଆଉ ମଣିଷ ସମାଜ ଗ୍ରହଣ କରିବ ନାହିଁ । ତମ ବିନା ମୋର ଗତି ନାହିଁ କି ମୁକ୍ତି ନାହିଁ । କାଳେ ଯଦି ଦୈବାତ ତମେ ମରିଯାଅ ମୋର କ'ଣ ହବ ?

ଅସୁର ଅଟ୍ଟହାସ କରିବା ବଦଳରେ ଦୁଃଖିତ ହେଇଥିବା ପରି କହିଲା : ମୁଁ ମରିଯିବି ? ମୁଁ ତ ମରିବାକୁ ଚାହେଁ । ଅସୁର ଜନ୍ମରୁ ପାର ପାଇବା ପାଇଁ, ମୁକ୍ତି ପାଇଁ ତ ମୁଁ ତୁମକୁ ଅପହରଣ କରି ଆଣିଚି ।

ସତୀ ଆଶ୍ଚର୍ଯ୍ୟ ହେଇ ଉଚ୍ଚାରଣ କଲା : ଏତ ବଡ ବିଚିତ୍ର କଥା !

: ହିଁ । ଶୁଣିବାକୁ ଚାହୁଁଛ ଯଦି ଶୁଣ । ଅସୁର କହିଚାଲିଲା : ଅବଶ୍ୟ ମୁଁ ଏସବୁ କଥା ତମର ବ୍ରତ ଶେଷ ହେବା ପୂର୍ବରୁ କହିବାକୁ ଚାହୁଁ ନଥିଲି ।

ମଝିରେ ହଠାତ୍ ସତୀ କହିଉଠିଲା : ନା, ନା, କିଛି ଯଦି ସେମିତି ଆପତ୍ତିଜନକ କଥା ହେଇଥାଏ, ତମେ ବରଂ ମତେ କୁହ ନାହିଁ ।

ଅସୁର କହିଲା : ଆପତ୍ତିଜନକ କଥା କିଛି ନାଇଁ, କେବଳ ମୋର ଯୋଜନା ପଣ୍ଡ ହେଇଯିବା ଆଶଙ୍କାରେ ମୁଁ ତୁମକୁ ଏତେଦିନ ଯାଏଁ ସେସବୁ କଥା କହୁ ନଥିଲି । କିନ୍ତୁ ଏବେ ମୋର ହୃଦ୍‌ବୋଧ ହେଇ ସାରିଲାଣି ଯେ, ତମେ ଜଣେ ଖୁବ୍ ଭଲ ଝିଅ । ସମସ୍ତ ସତୀ ନାରୀ ଏମିତି ହିଁ ହେଇଥିବେ ।

: ମୁଁ ଜଣେ ସତୀ ହେଇଥିବି ତମେ କେମିତି ବିଶ୍ୱାସ କରୁଚ ? ସତୀ ପଚାରିଲା ।

ଅସୁର କହିଲା : କେବଳ ତମର ନାଁ ସତୀ ବୋଲି ଯେ, ତମେ ଜଣେ ସତୀ, ସେକଥା

ମୁଁ କହୁ ନାହିଁ । ତେବେ ପ୍ରକୃତରେ ତମେ ତମର ନାମକରଣର ସାର୍ଥକତା ବଜାୟ ରଖିଚ । ବହୁ ଅନୁସନ୍ଧାନ ପରେ ମୁଁ ସେକଥା ଜାଣିପାରିଚି । ଯାହା ପାଇଁ ମୁଁ ଦୀର୍ଘ ବାରବର୍ଷ ଏଇ ଗୁମ୍ଫା ଭିତରେ, ରୁଦ୍ଧ ଦ୍ୱାରରେ, ନଖାଇ ନପିଇ ତପସ୍ୟା କରିଚି, ତାକୁ ଭଲ ରୂପେ ନଚିହ୍ନି ମୁଁ ଏତେଦୂର ନେଇ ଆସିବାର ମୂର୍ଖାମୀ କରନ୍ତି ?

: ମୋ ପାଇଁ ତମେ ବାରବର୍ଷ ତପସ୍ୟା କଲ ? ସତୀ ପ୍ରକୃତରେ ଆଶ୍ଚର୍ଯ୍ୟ ହେଇ ପଚାରିଲା ଓ ଇତିମଧ୍ୟରେ ସେ ଖଟରୁ ଓହ୍ଲାଇ ଠିଆ ହେଇ ପଡିଥିଲା ।

ଅସୁର କହିଚାଲିଲା : ଠିକ୍ ତମ ପାଇଁ ନହେଲେ ବି, ତମଭଳି ଜଣକ ପାଇଁ ମୁଁ ବାରବର୍ଷ ତପସ୍ୟା କରିଚି । ଅବଶ୍ୟ ମୁଁ ସୃଷ୍ଟି ହେଲା ବେଳକୁ ରାଜବଂଶ ସବୁ ଲୋପ ପାଇ ସାରିଥିଲାଣି । ନଚେତ୍ ମତେ ଆଉ ତପସ୍ୟା କରିବାକୁ ପଡିନଥାନ୍ତା । ମୁଁ ସୃଷ୍ଟି ହେଲା ବେଳକୁ ଅସୁର ବଂଶ ବି ସମ୍ପୂର୍ଣ୍ଣ ଭାବେ ନିପାତ ହେଇ ସାରିଥିଲା । କିଛି ହଜାର ବର୍ଷ ତଳେ ତଥାପି ବଞ୍ଚିରହିଥିବା କିଛି ଅସୁର, ମଣିଷମାନଙ୍କ ଭିତରେ ଦୈବୀଗୁଣ ସହିତ ଅନେକ ଆସୁରିକ ପ୍ରବୃତି ମଧ୍ୟ ଆସ୍ତେ ଆସ୍ତେ ସ୍ଥାନ ପାଉଥିବା ଦେଖି ଲଜ୍ଜାରେ ମିଳିତଭାବେ ଆତ୍ମହତ୍ୟା କରିସାରିଥିଲେ । ତଥାପି ମତେ ଈଶ୍ୱର ପୁନଶ୍ଚ ଅସୁର କରି ସୃଷ୍ଟି କଲେ । ଈଶ୍ୱର ବଡ ନିଷ୍ଠୁର ।

: ଈଶ୍ୱର ତୁମକୁ ସୃଷ୍ଟି କଲେ ? ପ୍ରଶ୍ନଟି ପଚାରି ପ୍ରବଳ ଉତ୍ସୁକତାର ସହିତ ସତୀ ଯାଇ ଅସୁରଠାରୁ ମାତ୍ର ଦୁଇହାତ ଦୂରରେ ଠିଆ ହେଲା ।

ଅସୁର କହିଲା : ହଁ । କୌଣସି ଜନ୍ମରେ କେହି ପ୍ରାଣୀ ଯଦି ଅପରିସୀମ ଓ ଅସହ୍ୟ ପାପକାର୍ଯ୍ୟରେ ଲିପ୍ତ ରହେ, ତେବେ ତା'ର ପ୍ରତିଫଳ ସ୍ୱରୂପ ଅନେକ ଅନେକ ବର୍ଷହେଲା ଈଶ୍ୱର ତାକୁ ଅତିବେଶୀରେ ମର୍ତ୍ତ୍ୟରେ ମଣିଷ ରୂପରେ ଜନ୍ମ ଦିଅନ୍ତି । କାହାକୁ ଅସୁର ଭାବେ ସୃଷ୍ଟି କରିବା ପ୍ରଥା ପ୍ରାୟ ଉଠି ଯାଇଥିଲା । ମୁଁ ପୂର୍ବ ଜନ୍ମରେ ଗୋଟିଏ ସମୃଦ୍ଧିଶାଳୀ ରାଷ୍ଟ୍ରର ସର୍ବେସର୍ବା ଥିଲି । ମୁଁ ସ୍ୱୀକାର କରୁଚି କି ମୁଁ ଅନେକ ପାପକାର୍ଯ୍ୟ କରିଚି । ମଣିଷ ହେଇ, ମଣିଷ ସମାଜରେ ଶତ୍ରୁ ଭଳି ଅନେକ ପଦକ୍ଷେପ ନେଇଛି । ତଥାପି ମୋର ଅସୁର ରୂପେ ସୃଷ୍ଟି ହେବାର ନଥିଲା । ଈଶ୍ୱର ବୋଧେ ଅନ୍ୟକିଛି ଅଭିଶାପ ଖୋଜି ପାଇଲେ ନାହିଁ ।

ସତୀ ଠିଆ ହେଇଥିବା ଜାଗାରେ ବସି ସାରିଥିଲା ଓ ଅସୁର କହିଚାଲିଥିଲା : ଈଶ୍ୱର ମତେ ଅସୁର ହେଇଯିବାକୁ ଅଭିଶାପ ଦେବା ମାତ୍ରେ ମୁଁ କାତର ହେଇପଡିଲି । ମୋର ମୁକ୍ତିର ଉପାୟ ପଚାରିଲି । ଈଶ୍ୱର ସାମାନ୍ୟ ପ୍ରସନ୍ନ ଥିଲେ । କହିଲେ : ଯେଉଁ ଦିନ ମୁଁ ଗୋଟେ ସତୀ ରାଜକନ୍ୟାର ଶରୀର ଦଖଲ କରି ପାରିବି ସେଦିନ ଯାଇ ମତେ ମୁକ୍ତି ମିଳିବ । କିନ୍ତୁ ମର୍ତ୍ତ୍ୟକୁ ଆସିବା ପରେ ଜାଣିପାରିଲି ଈଶ୍ୱର ମୋ ସହିତ କପଟ କଲେ । ବୋଧହୁଏ ତାଙ୍କର ଇଚ୍ଛା ମୁଁ ଚିରକାଳ ଏମିତି ଅସୁର ହେଇ ରହିଥାଏଁ । ମର୍ତ୍ତ୍ୟରେ ଯେ, ଆଉ ରାଜପୁରୁଷ ବା ରାଜକନ୍ୟା ନାହାନ୍ତି, ସମସ୍ତେ କେବଳ ରାଜାଭଳି ଧନୀ ହେବାର ଲାଳସାରେ ବିଭିନ୍ନ ପ୍ରକାର କଦର୍ଯ୍ୟ କାମରେ ବି ଲିପ୍ତ ଅଛନ୍ତି, ତାହା ଈଶ୍ୱରଙ୍କୁ ଅଗୋଚର ନଥିବ । ତଥାପି ମୁଁ ହତାଶ ହେଲି ନାହିଁ । ମର୍ତ୍ତ୍ୟରେ ଯେ, ଆଉ ରାଜା ବୋଲି କେହି ନାହାନ୍ତି, ତେଣୁ ରାଜକନ୍ୟା ବି ନାହାନ୍ତି ତାହା ଈଶ୍ୱରଙ୍କୁ ଜଣାଇ ଦେବା ସହିତ ମୁକ୍ତିର ଅନ୍ୟ ଉପାୟ ପଚାରିବା ପାଇଁ ତାଙ୍କ ସହିତ ମୋର ସାକ୍ଷାତ ହେବା ଜରୁରୀ ଥିଲା । ତାଙ୍କର ସାକ୍ଷାତ ପାଇବା ପାଇଁ ମତେ ତପସ୍ୟା କରିବାକୁ ପଡିଲା । ବାରବର୍ଷ ପରେ ସେ ମୋର ଡାକ ଶୁଣିଲେ ଓ ଉଭା ହେଇ କହିଲେ : ତମେ କାହିଁକି ମତେ ସ୍ମରଣ କଲ, ମୁଁ ଜାଣିଚି । ମୁଁ ତୁମର ଧୈର୍ଯ୍ୟ ଓ ମୁକ୍ତିପ୍ରତି ନିଷ୍ଠାର ପରୀକ୍ଷା କରୁଥିଲି ।

ତମେ କହିବାକୁ ଚାହୁଁଛତ, ରାଜକନ୍ୟା ନାହାନ୍ତି, ରାଜାଙ୍କଭଳି ଧନୀ ଲୋକ ଅଛନ୍ତି । ଠିକ୍ ଅଛି । ସେମିତି ଏକ ପରିବାର ସତୀ କନ୍ୟା ମାଧ୍ୟମରେ ମଧ୍ୟ ତମେ ମୁକ୍ତିର ବୈକୁଣ୍ଠରେ ପହଞ୍ଚିପାରିବ ।

ସତୀ ଆମୋଦିତ ଭାବେ ପଚାରିଲା : ତମର କଣ ବିଶ୍ୱାସ ହୁଏ, ଏବେବି ପୃଥିବୀରେ ସତୀ ନାରୀ ଅଛନ୍ତି ?

ଅସୁର ଦୃଢତାର ସହିତ କହିଲା : ନିଶ୍ଚୟ । ସେ କଥା ମଧ୍ୟ ମୁଁ ଈଶ୍ୱରଙ୍କୁ ପଚାରିଥିଲି । ଈଶ୍ୱର କହିଲେ, ଯଦି ମୁଁ ସେଭଳି ଜଣକୁ ଖୋଜି ପାଇବାରେ ସଫଳତା ପାଇବା ପୂର୍ବରୁ ପୃଥିବୀର ଶେଷତମ ସତୀ ନାରୀଟି ତା'ର ପବିତ୍ରତା ହରାଇ ବସେ, ତେବେ ଆପଣାଛାଏଁ ମୁଁ ମୁକ୍ତି ପାଇଯିବି । ତେଣୁ, ସତୀ ଜଣେବି ଯଦି ପୃଥିବୀରେ ନାହିଁ, ମୁଁ ତେବେ ତଥାପି ଅସୁରଭାବେ ବଂଚିରହିଚି କେମିତି ? ଅବଶ୍ୟ ବିଭିନ୍ନ ରୂପ ଧାରଣ କରି ବିଭିନ୍ନ ସ୍ଥାନରେ ଅନୁସନ୍ଧାନ କରିବା ଭିତରେ ମୋର ଅନେକ ବର୍ଷ ବିତିଯାଇଛି । ତମକୁ ଏଠାକୁ ଆଣିବା ଯାଏଁ ମୁକ୍ତିର ନିଶାରେ ମୁଁ ମସ୍‌ଗୁଲ ଥିଲି । ପ୍ରକୃତରେ ମୁଁ ତମକୁ ବିବାହ କରିବାକୁ ଚାହେଁ ବୋଲି ଯାହା କହିଥିଲି, ତାହା ମିଛକଥା । ଅସଲରେ ତମ ସହ ଥରେ ମାତ୍ର ଶାରୀରିକ ସମ୍ପର୍କ ସ୍ଥାପିତ ହେବା ପରେ ମୁଁ ନିସ୍ତେଜ ହେଇଯିବି ଓ ମୋର ପ୍ରାଣବାୟୁ ଉଡିଯିବ । ତା'ପରେ ମୁକ୍ତି ପାଇ ମୁଁ ଯାଇ ବୈକୁଣ୍ଠରେ ବସିବି । କିନ୍ତୁ ତମ ସହ ଏତେଦିନ ରହିବା ପରେ ମୁଁ ନିଜଠାରେ ପରାଜିତ ବୋଧକରୁଚି । ତମଭଳି ଜଣେ ମହୀୟାନ ନାରୀକୁ ମୁଁ କାହିଁକି ଉଠାଇ ଆଣିଲି ବୋଲି ଭାବୁଚି ବରଂ ମୁଁ ମୁକ୍ତି ନପାଇଥାନ୍ତି ନାଇଁ । ମୋତେ କେବଳ ମୁକ୍ତି ଦରକାର । ସେଇଥିପାଇଁ ତୁମକୁ ଏଠାକୁ ଆଣିବା ପରେ ମୁଁ ତମସହ ବଳାତ୍କାର ବି କରିପାରିଥାନ୍ତି । କିନ୍ତୁ ତମର ଇଚ୍ଛା ବିରୁଦ୍ଧରେ ତୁମର ମର୍ଯ୍ୟାଦା ହାନୀ କରିବାକୁ ମୁଁ ମୋଟେ ଚାହିଁ ନାହିଁ । ମୋର ମୁକ୍ତି ତୁମ ହାତରେ । ତୁମର ଈଶ୍ୱରଙ୍କୁ ମୋଟେ ଚାହିଁନାହିଁ । ପ୍ରାର୍ଥନା କରିବା ଦ୍ୱାରା ମତେ ଯଦି ମୁକ୍ତି ମିଳିଯାଆନ୍ତା, ତେବେ ମୁଁ ଅଧିକ ଖୁସି ହୁଅନ୍ତି । ଈଶ୍ୱର ସମୟ ସମୟରେ ବଡ ଦୟାଳୁ । ତମେ ଚେଷ୍ଟା କରିପାର ।

ଅସୁରର ଉପାଖ୍ୟାନ ଶୁଣୁଶୁଣୁ ସତୀର ଆଖିକୁ ଲୁହ ଆସି ଯାଇଥିଲା; କିନ୍ତୁ ସେ ଈଶ୍ୱରବିଶ୍ୱାସୀ ନଥିଲା । ସେ କହିଲା : ମୁଁ ଚାହୁଁଚି, ତମେ ଶୀଘ୍ର ମୁକ୍ତିପାଅ ! କିନ୍ତୁ ମୋ ମାଧ୍ୟମରେ ତାହା ସମ୍ଭବ ନୁହେଁ । କାରଣ ମୋର ଜଣେ ପ୍ରେମିକ ଅଛି ।

ସେଥିରେ ଯାଏ ଆସେ କ'ଣ ? ଅସୁର କହି ଲାଗିଲା : ଭଅଁରର ସାନ୍ନିଧ୍ୟ ପାଇନଥିବା ଫୁଲ ମୋର ଦରକାର । ତା'ର ଚହଟୁଥିବା ବାସ୍ନାକୁ ବାଟରେ ଯାଉଥିବା ଲୋକ ଆଘ୍ରାଣ କଲେ କଣ ଫୁଲର ପବିତ୍ରତା ନଷ୍ଟ ହେଇଯାଏ ? ତମ ପ୍ରେମିକକୁ ତମେ କେବଳ ମନ ଦେଇଥିବ ସିନା !

: ଯାହାକୁ ପିଲାଟି ଦିନରୁ ଭଲ ପାଉଚି, କେବଳ ମନ ଦିଆନିଆରେ ତାକୁ ସନ୍ତୁଷ୍ଟ ରଖି ହୁଅନ୍ତା ? ଆଜିକାଲି ପ୍ରେମରେ ପଡିଥିବା କେହି ଝିଅ, ବିବାହ ପର୍ଯ୍ୟନ୍ତ ତା' ଶରୀର ପବିତ୍ରତା ବଜାୟ ରଖି ପାରୁଛି ବୋଲି ତମେ ବିଶ୍ୱାସ ରଖୁଛ ? ସତୀ ପ୍ରଶ୍ନ କଲା ।

ଅସୁର ପ୍ରତିବାଦ କଲାଭଳି କହିଲା : କାହିଁକି ନୁହେଁ ?

ସତୀ ଦରଦୀ କଣ୍ଠରେ ଅଭିନୟ କଲା : କିନ୍ତୁ ରାଜ୍ ! ମୋର ନାଁଟି କେବଳ ସତୀ । ମୁଁ ଦୁଃଖିତ, ମୋ ମାଧ୍ୟମରେ ତମର ମୁକ୍ତି ପାଇବାର ସ୍ୱପ୍ନ କେବଳ ସ୍ୱପ୍ନରେ ହିଁ ରହିଯିବ ।

ସତୀର କହିବା ନ ସରୁଣୁ ଅସୁର ତା' ଗାଲରେ ଗୋଟେ ଶକ୍ତ ଚାପୁଡା ଦେଲା ।

ଝଡବେଗରେ ଉଠିଯାଇ ସେ ଗୁମ୍ଫାରେ ଦ୍ୱାରଦେଶରୁର ପଥରଟିକୁ ହଟାଇଦେଲା ଓ ବାହାରକୁ ଯାଇ ନିଜର ମୁଣ୍ଡବାଳ ଝିଙ୍କି, ଛାତି ବିଦାରି, ନିଜକୁ ପ୍ରହାରକରି ଗର୍ଜନ କଲା: ଈଶ୍ୱର, ତମେ ବଡ ଦଗାବାଜ୍ । ତା'ପରେ ସେ ଦୌଡି ଦୌଡି ଯାଇ ବଡ ବଡ ଗଛମାନଙ୍କ ଦେହରେ ଧକ୍କା ଖାଇଲା । ତା ଧକ୍କାରେ ଗଛଗୁଡିକ ଉପୁଡି ଯାଉଥିଲା । ସେ ଗର୍ଜନ କରି ଚାଲିଥିଲା । ଯାଉଥିଲା, ସତେ କି ଈଶ୍ୱରଙ୍କ ତଣ୍ଟି ଚିପିଦେବ । ସେ କିଛି ଦୂର ଚାଲିଯିବା ପରେ ପଥର ଉହାଡରୁ ବାହାରି ଆସି ତାକୁ ଗୁଳି ମାରିବାପାଇଁ ତ୍ରିବିକ୍ରମ ବନ୍ଧୁକ ସଜିଲ କଲା । ସତୀ ବାରଣ କଲା : ନା ଗୁଳି ମାରନି । ସେମିତିରେ ସେ ମରିବ ନାହିଁ । ବରଂ ଗୁଳି ଫୁଟିବା ଶବ୍ଦ ହେବା ମାତ୍ରେ, ଏବେ ଯେପରି ଭାବେ ତାର ବିଶ୍ୱାସ ତୁଟିଯାଇଚି, ସେ ଫେରିଆସି ମତେ ଓ ତୁମକୁ ଅବିଳମ୍ବେ ହତ୍ୟା କରିବ ।

ତ୍ରିବିକ୍ରମ ପ୍ରଶ୍ନକଲା : ତମେ ତାକୁ ମିଛକଥା କାହିଁକି କହିଲ ?

ସତୀ ଯୁକ୍ତି କଲା : ତା'ଛଡା ଆଉ ଉପାୟ କଣଥିଲା ?

ତ୍ରିବିକ୍ରମ ବିସ୍ମୟ ପ୍ରକାଶ କଲା : ତମ ଠାରେ ନିଶ୍ଚୟ କିଛି ଯାଦୁ ଅଛି । ମୁଁ ଆଶ୍ଚର୍ଯ୍ୟ ହେଉଚି, ଅସୁରଟି ଏତେ ସହଜରେ କେମିତି ତମ କଥାକୁ ବିଶ୍ୱାସ କରିଗଲା ! ମୋର ଏବେ ବିଶ୍ୱାସ ହେଉଚି, ଅସୁର ଯେ, ତମର ମର୍ଯ୍ୟାଦା କ୍ଷୁର୍ଣ୍ଣ କରିନାହିଁ, ଏକଥା କହି ମଧ୍ୟ ତମେ ଆମ ଲୋକମାନଙ୍କ ମନରେ ବିଶ୍ୱାସ ଜନ୍ମାଇ ପାରିବ ।

ସତୀ ହଠାତ୍ ଗମ୍ଭୀର ହେଇଗଲା । ପ୍ରଶ୍ନ କଲା : ଯଦି ନପାରେ ? ମତେ କଣ ଅଗ୍ନି ପରୀକ୍ଷା ଦେବାକୁ ପଡିବ ?

ତ୍ରିବିକ୍ରମ ସ୍ମିତ ହସି କହିଲା : ଅଗ୍ନିପରୀକ୍ଷା ନ ଦେଲେ ବି, ସମାଜରେ ରହିବାକୁ ହେଲେ, ସମାଜ ଦ୍ୱାରା ଅନୁମୋଦିତ ବ୍ୟବସ୍ଥା ଗ୍ରହଣ କରିବାକୁ ତ ପଡିବ ।

ସତୀ ଜେରାକଲା : ଯଦି ମୁଁ ତାହା ଗ୍ରହଣ କରି ନପାରେ ?

ତ୍ରିବିକ୍ରମ ବୁଝାଇଲା : ସେମିତି କଣ ହୁଏ ?

ଏଥର ସତୀ କଠୋର ସ୍ୱରରେ ପ୍ରଶ୍ନକଲା : ତମେ କଣ ଭାବୁଚ ?

: ମୋ ଭାବିବାରେ କଣ ଅଛି ? ତ୍ରିବିକ୍ରମ ହତଭମ୍ବ ଭାବେ କହିଲା ?

: ତମେ ଜଣେ ସାହସୀ ପ୍ରେମିକ ନୁହଁ । ସତୀ ତା'ର ନିଷ୍ପତ୍ତି ଶୁଣାଇଲା ଓ କହିଲା : ବିକ୍ରମ ! ପୁରୁଷର ମୁକ୍ତି ପାଇଁ ନାରୀର ସୃଷ୍ଟି । ମୃତ୍ୟୁ ପର୍ଯ୍ୟନ୍ତ ଲଜ୍ଜାଜନକ ଘୃଣ୍ୟ ଜୀବନଟିଏ ବଞ୍ଚିରହିବାକୁ ନୁହେଁ ।

ରାତି ତଥାପି ପାହି ନଥିଲା । ଜହ୍ନ ଆଲୁଅରେ ସତୀ ଦେଖି ପାରୁଥିଲା କିଛି ଦୂରରେ ଅସୁର ଗଛ ଦେହରେ ଯାଜ ବାଡେଇ ହେଉଚି ଓ ତା'ର ଚିତ୍କାର ସତୀକୁ ଶୁଣାଯାଉଥିଲା । ହଠାତ୍ ସତୀ ଚିତ୍କାର କଲା : ରାଜ୍ ........ ! ରାଜ୍........... !

ଅସୁରର ଗର୍ଜନ ବନ୍ଦ ହେଲା । ସତୀ ଆଉଥରେ ଡାକିଲା : ରାଜ୍ !

ଝଡବେଗରେ ରାଜ୍ ଗୁମ୍ଫା ଆଡକୁ ଆସୁଥିବା ଦେଖାଗଲା । ସତୀ ତ୍ରିବିକ୍ରମକୁ କହିଲା : ତମେ ଏବେ ଏ ଗଛ ଉହାଡରେ ଲୁଚିଯାଅ ।

ଅସୁର ଆସି ସତୀ ପାଖରେ ଠିଆହେଲା । ସତୀ ତାକୁ କୋଳେଇ ନେଲା । କହିଲା : ମୁଁ ଅନୁତପ୍ତ, ତୁମକୁ ମିଛ କଥା କହିଛି । ମୋ ଜରିଆରେ ତମେ ମୁକ୍ତିର ଅନ୍ୱେଷଣ କରିପାର । ମୁଁ ପ୍ରସ୍ତୁତ ।

କହିସାରି ଅସୁରକୁ ବନ୍ଧନମୁକ୍ତ କରିବାପରେ ସତୀ ଗୁମ୍ଫା ଆଡକୁ ଅଗ୍ରସର ହେଲା । ଅସୁର ତାକୁ ଅନୁସରଣ କଲା ।

ଗୁମ୍ଫା ଭିତରକୁ ଯିବାପରେ ସତୀ କହିଲା : ଦ୍ୱାର ବନ୍ଦ କର ।

: ଅସୁର ପ୍ରତିବାଦ କଲାନି । ମୋର ପ୍ରାଣବାୟୁ ଉଡିଯିବା ପରେ ତମେ ଆଉ ଏଇ ପଥରଟିକୁ ଘୁଞ୍ଚାଇ ବାହାରକୁ ଯାଇ ପାରିବ ନାହିଁ ।

ସତୀ ଆଦେଶ ଦେଲା : ବନ୍ଦକର, ମୁଁ କହୁଚି ।

ଅସୁର ଅବମାନନା କରିପାରିଲା ନାହିଁ । ସେ ଦ୍ୱାର ମୁହଁରେ ପଥରଟି ରଖିଦେବା ମାତ୍ରେ ତ୍ରିବିକ୍ରମ ପଥର ପାଖକୁ ଆସିଗଲା । ଭିତରକୁ ଦେଖିପାରିବା ଭଳି କୌଣସି ସୁଯୋଗ ନଥିଲା । ତେବେ ସେ ସତୀ ଓ ରାଜ୍‌ର କଥାବାର୍ତ୍ତା ଶୁଣିପାରୁଥିଲା । ଏକ ସମୟରେ ସତୀ କହିଲା : ରାଜ, ତମେ କେତେ ସରଳ ! କେତେ ଭଲ ତମେ ରାଜ୍ ।

ତା'ପରେ ଅନେକ ସମୟ ଯାଏଁ ଆଉକିଛି ଶୁଣାଗଲା ନାହିଁ ।

ଶେଷରେ ସତୀର କଣ୍ଠସ୍ୱର ପଥର ଆରପଟରୁ ଶୁଭିଲା : ବିକ୍ରମ ! ଶକ୍ତି ଥିଲେ, ଦ୍ୱାର ମୁହଁରୁ ଏ ପଥର ହଟାଅ । ସତ୍‌ସାହସ ଥିଲେ ମତେ ତମ ସାଙ୍ଗରେ ନେଇଯାଅ । ତମର ଯଦି ପ୍ରଥମେ ମୃତ୍ୟୁହୁଏ, ତେବେ ତମ ଚିତାରେ ଝାସ ଦେବାକୁ ମୁଁ ଏଣିକି ପ୍ରସ୍ତୁତ ।

# ନୈବେଦ୍ୟ

**ସ୍ମିତା ବାଗ୍ଚୀ**

ଖାଇ ବସିବା ବେଳଠୁଁ ଅନୁପମ ଲକ୍ଷ୍ୟ କରୁଛି ପୂର୍ଣ୍ଣିମା କେମିତି ଅନ୍ୟମନସ୍କ । ସେଇ ହସ୍ପିଟାଲ୍ରୁ ଫେରିବା ପରଠାରୁ ହିଁ ଏମିତି । ହୁଏତ ସେ କେଉଁ ରୋଗୀ ବିଷୟରେ ଭାବି ହେଉଛି ବା ଆସନ୍ତା ସେମିନାରରେ ପଢ଼ିବା ପାଇଁ ସ୍ଥିର କରିଥିବା ପେପର୍ ଚିନ୍ତା ମୁଣ୍ଡରେ ରହିଛି । କିନ୍ତୁ ଅନୁପମର ମନ କହୁଥିଲା ଘଟଣାଟା ଏତେ ସରଳ ନୁହଁ । ଯେତେ କ୍ଲାନ୍ତ ହେଲେ ବି ଶ୍ୱେତା କଥାର ପୁଣି ଜବାବ ପୂର୍ଣ୍ଣିମା ଦେବ ନାହିଁ, ଏହା କ'ଣ କେବେ ହୋଇଛି ? ଝିଅର ଅଧାପିଲାଳିଆ ପ୍ରଶ୍ନ ସେଇମିତି ପ୍ରଶ୍ନରେ ହିଁ ରହିଯାଉଛି ।

''ଆଜି ହସ୍ପିଟାଲରେ କାହା ସାଙ୍ଗରେ ଝଗଡ଼ା କରିଛ ନା କ'ଣ ?'' ଅନୁପମ ଆଉ ଧରି ନ ପାରି ପଚାରି ଦେଲା ।

''ଏଁ ?'' ପୂର୍ଣ୍ଣିମା ମୁଣ୍ଡ ଟେକିଲା, ''ନାଇଁ ଯେ.... ଜାଣ, ବେଳେବେଳେ ଇଚ୍ଛା ହେଉଛି ସବୁ ଛାଡ଼ିଛୁଡ଼ି ଦେଇ ତୁମ ସାଙ୍ଗରେ କ୍ଲିନିକ୍‌ରେ ବସିଯିବି ।''

ଅନୁପମ ମନେ ମନେ ସାମାନ୍ୟ ଆଶ୍ଚର୍ଯ୍ୟ ହେଲା । କିନ୍ତୁ ଉପରେ ସେ ଭାବ ନ ଦେଖାଇ ହସିକରି କହିଲା, ''ୟୁ ଆର୍ ଅଲଓଏଜ୍ ୱେଲକମ୍ ମ୍ୟାଡାମ୍ ।''

''ଓହୋ ମାମା, ଆସ ।'' ଶ୍ୱେତା ପୂର୍ଣ୍ଣିମାର ହାତ ଧରି ଟାଣିବା ଆରମ୍ଭ କଲାଣି ।

''ଆସୁଛିରେ ମା,'' ପାଣି ଗ୍ଲାସେ ଢକ ଢକ କରି ପିଇ ଦେଇ ଶ୍ୱେତାକୁ କାଖେଇ ଉଠିଗଲା ସେ ।

ଅନୁପମ ମୁହଁରେ ହସ ଖେଳିଗଲା । ଏଇଟା ମା' ଝିଅଙ୍କର ନିତିଦିନିଆ ରୁଟିନ୍ । ସ୍କୁଲରୁ ଫେରି ଖାଇଦେଇ ଶ୍ୱେତା ଅପେକ୍ଷା କରି ବସିଥିବ କେତେବେଳେ ମାମା ହସ୍ପିଟାଲ୍‌ରୁ ଫେରିବ । ଆଉ ପୂର୍ଣ୍ଣିମା ଖାଇ ସାରିବା କ୍ଷଣି ତାକୁ ଟାଣି ନେଇଯିବ ଘର ଭିତରକୁ । ମାମାଠୁଁ ଗୋଟିଏ ଗପ ଶୁଣି ତା'ରି କୋଳରେ ଶୋଇଯିବ । ସବୁଦିନିଆ ଅଧଘଣ୍ଟିଆ ପୋଗ୍ରାମ । ଏଠି ଅନୁପମର କୌଣସି ଭୂମିକା ନାହିଁ ।

ନା, ତା' ମନରେ ଏଥିପାଇଁ କେବେ ଖଟ୍‌କା ଲାଗି ନାହିଁ କେତେ ସମୟ ବା ପୂର୍ଣ୍ଣିମା ପାଏ ଝିଅ ସାଙ୍ଗରେ କଟାଇବାକୁ । ଶ୍ୱେତା ଶୋଇ ପଡ଼ିବାକ୍ଷଣି ସେ ପୁଣି ବାହାରିଯିବ ହସ୍ପିଟାଲ୍ । ଆଉ ଅନୁପମ ତ କ୍ଲିନିକ୍ ଯାଉ ଯାଉ ସନ୍ଧ୍ୟା ପାଞ୍ଚଟା, ସାଢ଼େ ପାଞ୍ଚଟା ।

ଆଜି ସେ ପୂର୍ଣ୍ଣିମା ତା' ସାଙ୍ଗରେ ମିଶିକରି ପ୍ରାଇଭେଟ୍ ପ୍ରାକ୍‌ଟିସ୍ କରିବା କଥା କହିଲା ।

ଆଶ୍ଚର୍ଯ୍ୟ !!

ଅନୁପମ ପ୍ରଥମ ବର୍ଷ ମେଡ଼ିକାଲ ପଢ଼ିବା ବେଳରୁ ପୂର୍ଣ୍ଣିମାକୁ ଜାଣିଛି । ପରିଚୟ ହେବାର ସେହି ପ୍ରଥମ ଦିନ ହିଁ ସେ ଜାଣି ପାରିଥିଲା ଏ ଝିଅଟି ଭିନ୍ନ । ଅନ୍ୟ ଦଶଜଣଙ୍କ ଭଳି

ନୁହେଁ । ସେଥିପାଇଁ ହୁଏତ ତାକୁ ଶ୍ୟାମଳ ରଙ୍ଗର ସେଇ ପତଳୀ ଝିଅଟି ଭାରି ଭଲ ଲାଗି ଯାଇଥିଲା । ସାଙ୍ଗମାନେ ଥଟ୍ଟା କରିଥିଲେ, ହସିଥିଲେ । ଅନୁପମ ଭଳି ହ୍ୟାଣ୍ଡସମ୍ ପିଲା, ମା' ବାପାଙ୍କର ଗୋଟିଏ ବୋଲି ପୁଅ । ଇଚ୍ଛା କରିଥିଲେ ଆକାଶର ଚାନ୍ଦକୁ ତୋଳି ଆଣି ପାରିଥାଆନ୍ତା । ସେ ପୁଣି ଝାବୁଡ଼ି ଧରୁଛି ପାଦତଳର ମୁଠାଏ ମାଟିକୁ ।

ଅନୁପମ କାହାକୁ କିଛି କୈଫିୟତ୍ ଦେଇ ନ ଥିଲା । ଏଇଟା ତା'ର ବ୍ୟକ୍ତିଗତ ନିର୍ଣ୍ଣୟ, ତା ନିଜ ଜୀବନକୁ ନେଇ । ସେ କ'ଣ ଅନ୍ୟମାନଙ୍କର ସମାଲୋଚନା ଶୁଣି ନିଷ୍ପତ୍ତି ବଦଳେଇ ଦେବ ?

ନା, ଆଦୌ ନୁହେଁ ।

ପୂର୍ଣ୍ଣିମା ଅତି ବ୍ରିଲିୟାଣ୍ଟ, ଏକଥା ତ କେହି ଅସ୍ୱୀକାର କରି ପାରିବେ ନାହିଁ । ସ୍କୁଲ ଜୀବନରେ ପ୍ରଥମ ଛଡ଼ା କେବେ ଦ୍ୱିତୀୟ ହୋଇନାହିଁ । ମେଡ଼ିକାଲ୍ କଲେଜରେ ମଧ୍ୟ ତାର ସେହି ଗୌରବ ଅକ୍ଷୁର୍ଣ୍ଣ ରହିଲା । ସମସ୍ତଙ୍କୁ ଟପି ଯାଇ ସେ ପ୍ରଥମ ହେଲା । ସ୍ୱର୍ଣ୍ଣ ପଦକ ପାଇଲା । ଅନ୍ୟମାନେ ହୁଏତ ଭାବିଥିଲେ ପୂର୍ଣ୍ଣିମାର ବୌଦ୍ଧିକତା ଅନୁପମକୁ ତା' ପ୍ରତି ଆକର୍ଷିତ କରିଛି । କେହି କେହି ବି ପଚାରି ମଧ୍ୟ ଦେଇଥିଲେ । ଅନୁପମ କେବେ କାହାକୁ କିଛି କହିନାହିଁ, କେବଳ ହସି ଦେଇଛି ମାତ୍ର ।

ଅସଲ କାରଣଟା ଅନ୍ୟମାନଙ୍କୁ କହିବାର କ'ଣ କୌଣସି ଆବଶ୍ୟକତା ଥିଲା ? କେବଳ ସେ ନିଜେ ଜାଣିଲେ ଇ ଯଥେଷ୍ଟ ।

ବାସ୍ତବରେ ପୂର୍ଣ୍ଣିମାର ଶ୍ୟାମଳ ତ୍ୱଚା ତଳେ ସେ ଆବିଷ୍କାର କରିଥିଲା ଏକ ଅତି ଉଜ୍ଜ୍ୱଳ ଚରିତ୍ର, ପରିଷ୍କାର ହୃଦୟ ଏବଂ ସେଇଠି ଚକ୍ ଚକ୍ କରୁଥିଲା ଏକ ଆଦର୍ଶ ।

ସେବା ମନୋବୃତ୍ତିର ।

ଅନେକ ହୁଏତ ସେବା ମନୋବୃତ୍ତି ନେଇ ଡାକ୍ତରୀ ପଢ଼ନ୍ତି । କିନ୍ତୁ ପଢ଼ାସାରି ଚାକିରି ଆରମ୍ଭ କରିବାବେଳକୁ ସେ ଆଦର୍ଶର ଅର୍ଦ୍ଧେକ ଘୋରି ହୋଇଯାଇଥାଏ । ଆଉ ଯେଉଁ ଅଂଶଟି ରହିଥାଏ, ସେଇଟି ମଧ୍ୟ ଘର କରିବା, ଗାଡ଼ି କିଣିବା ନିଶାରେ ମାଡ଼ି ମକଚି ହୋଇ କେଉଁ କୋରଡ଼ ଭିତରେ ପଶିଯାଏ ।

କିନ୍ତୁ ଅନୁପମ ପ୍ରଥମରୁ ହିଁ ଜାଣିପାରିଥିଲା ପୂର୍ଣ୍ଣିମା ସେ ଦଳରୁ ଜଣେ ନୁହେଁ । ସେଥିପାଇଁ ହୁଏତ ଝିଅଟି ପ୍ରତି ତା' ମନରେ ଥିବା ସମ୍ମାନ ଶୀଘ୍ର ଭଲ ପାଇବାରେ ପରିଣତ ହୋଇଯାଇଥିଲା ।

ନା, ତା' ପ୍ରେମ ଏକତରଫା ନ ଥିଲା । ପୂର୍ଣ୍ଣିମା ମଧ୍ୟ ଆକର୍ଷିତ ହୋଇ ପଡ଼ିଥିଲା ଏଇ ସବୁବେଳେ ମଜା ମଜା କଥା କହି ହସାଉଥିବା, ଯୁବକଟି ପ୍ରତି । ଦୁଇ ଜଣଙ୍କର ଭଲ ପାଇବା ରୂପ ନେଲା ବିବାହରେ । ଏମ୍.ଡ଼ି. କରିବା ବେଳେ ସମସ୍ତଙ୍କର ଆଶୀର୍ବାଦ ନେଇ ନୂତନ ଜୀବନ ଆରମ୍ଭ କଲେ ଅନୁପମ ଓ ପୂର୍ଣ୍ଣିମା ।

ସାତ ବର୍ଷ ହୋଇଗଲା । ଏଇ ତ କାଲି ପରି ଲାଗୁଛି !!

ଅନୁପମ ମୁହଁରେ ହସ ଖେଳିଗଲା । ସେ କିଛି ଭୁଲ ନିଷ୍ପତ୍ତି ନେଇ ନାହିଁ ଆଉ କେଉଁ ସୁନ୍ଦରୀକୁ ବାହା ହୋଇଥିଲେ ସେ କ'ଣ ସତରେ ଏତେଟା ସୁଖୀ ହୋଇପାରି ଥାଆନ୍ତା ?

ଚାକିରି ଆରମ୍ଭ କରିବା ପରେ ମଧ୍ୟ ପୂର୍ଣ୍ଣିମା ତା'ର ଆଦର୍ଶ ପଥରୁ ବିଚ୍ୟୁତ ହୋଇ ନଥିଲା । ଯେତେବେଳେ ତାକୁ ଭଲ ଭଲ ପ୍ରାଇଭେଟ୍ ହସ୍‌ପିଟାଲ୍‌ରୁ ମୋଟା ଦରମାର ଚାକିରି

ଅପର ମିଳିଥିଲା, ସେତେବେଳେ ସେ ବସ୍ତୁବାଦୀ ମୋହରେ ଭାସି ଯାଇ ନଥିଲା ।

ଟଙ୍କା ତ ଅପର୍ଯ୍ୟାପ୍ତ ମିଳିବ । କିନ୍ତୁ ରିସର୍ଚ୍ଚ ?

ମେଡ଼ିକାଲ୍ କଲେଜ ସହିତ ଯୋଡ଼ା ହସ୍‌ପିଟାଲ୍‌ରେ ଯୋଗ ଦେଲା ପୂର୍ଣ୍ଣିମା । ଆଉ ପ୍ରାୟ ସେଇ ଏକା ସମୟରେ ଅନୁପମ ତା' ବାପାଙ୍କ ପଲିକ୍ଲିନିକ୍‌ରେ ପ୍ରାଇଭେଟ୍ ପ୍ରାକ୍‌ଟିସ୍ ଆରମ୍ଭ କଲା । ମଝିରେ ମଝିରେ ସେ ଯେ ପୂର୍ଣ୍ଣିମାକୁ ତା' ସହିତ ମିଶି ପ୍ରାକ୍‌ଟିସ୍ କରିବା କଥା କହି ନାହିଁ ତା' ନୁହ; କିନ୍ତୁ ଜୋର୍ ଦେଇ ନୁହଁ । ପୂର୍ଣ୍ଣିମାର ଯେ ଏଥିରେ ମତ ନାହିଁ, ଏକଥା କ'ଣ ତାର ଅଜଣା ? ପୂର୍ଣ୍ଣିମା ପାଇଁ ରୋଗୀ ସେବା ସାଙ୍ଗରେ ସେମିନାର, ରିସର୍ଚ୍ଚ, କନ୍‌ଫରେନ୍‌ସ ଏସବୁର ମୂଲ୍ୟ ବହୁତ ବେଶୀ ।

ତଥାପି ଏହି ବ୍ୟସ୍ତ ଜୀବନରୁ ସେ ଚେଷ୍ଟା କରି ଅଧଘଣ୍ଟାଏ କାଢ଼ି ନିଏ କେବଳ ଝିଅ ପାଇଁ ।

ଅନୁପମ ମା' ଝିଅଙ୍କର ଏହି ନିଜସ୍ୱ ସମୟ ଟିକକକୁ ସମ୍ମାନ ଦିଏ । ଦାଣ୍ଡ ଘରେ ପତ୍ରିକା ଧରି ବସେ, କେବେହେଲେ ବିରକ୍ତ କରେ ନାହିଁ । ଘରେ କାମ କରୁଥିବା ସ୍ତ୍ରୀଲୋକ କମଳାକୁ ମଧ୍ୟ ସେ କହି ରଖିଛି ଏଇ ସମୟରେ ସେ ଯେମିତି ପୂର୍ଣ୍ଣିମାକୁ ଆଜି ରାତିରେ କ'ଣ ରନ୍ଧା ହେବ ବା ତେଲ ସରି ଆସିଲାଣି ଏଭଳି କଥାରେ ବିବ୍ରତ ନ କରେ ।

ଅନୁପମର ଚିନ୍ତାରେ ବ୍ୟାଘାତ ସୃଷ୍ଟି କରି କଲିଂବେଲ୍ ବାଜିଲା । ଶୋଇବା ଘର ଆଡ଼େ ଥରେ ଆଖି ବୁଲେଇ ଆଣି କବାଟ ଖୋଲିଲା ସେ ।

ପୁରନ୍ଦର ।

ହସ୍‌ପିଟାଲ୍‌ର ପିଅନ ଏଇ ପୁରନ୍ଦର । ଆଉ ତା' ପାଖରେ ଜଡ଼ିକିଆ ହୋଇ ଠିଆ ହୋଇଛି ଖଦଡ଼ ପିନ୍ଧା ମଧ୍ୟବୟସ୍କ ଲୋକଟିଏ ।

''ନମସ୍କାର ଆଜ୍ଞା । ମ୍ୟାଡ଼ାମ୍ ନାହାନ୍ତି କି ?'' ପୁରନ୍ଦର ମହୁବୋଳା ସ୍ୱରରେ ପ୍ରଶ୍ନ କଲା ।

ଅଜାଣତରେ ଅନୁପମର ମୁହଁ ଟିକିଏ କଠିନ ହୋଇଗଲା । କାହିଁକି କେଜାଣି ହସ୍‌ପିଟାଲର ଏଇ ଲୋକଟିକୁ ସେ ଆଦୌ ସହି ପାରେ ନାହିଁ କଳା ହୋଇ ଗେଡ଼ା ଲୋକଟିଏ, ପାଞ୍ଚଫୁଟ ହେବ କି ନ ହେବ । ଅଥଚ ଆଖିର ଚାହାଣୀରେ ସଂସାର ଯାକର ଧୂର୍ତ୍ତତା ଭରି ରହିଛି । କିଏ କେଜାଣି କହୁଥିଲା ଯେ ହସ୍‌ପିଟାଲ୍‌ରେ ସବୁ କାଗଜପତ୍ର କାମ ଶୀଘ୍ର କରେଇ ଦେବାର ପ୍ରତିଶ୍ରୁତି ଦେଇ ଅଶିକ୍ଷିତ ଗରୀବ ରୋଗୀଙ୍କ ପକେଟ୍‌ରୁ ପଇସା ଝଡାଏ ସେ ।

''ଆଜ୍ଞା ମ୍ୟାଡ଼ାମ୍....'' ଆଉ ଥରେ ଦୋହରେଇଲା ପୁରନ୍ଦର ।

''ହଁ, ଅଛନ୍ତି, ଝିଅକୁ ଶୁଆଉଛନ୍ତି । କ'ଣ ଦରକାର ଥିଲା କି ?''

କିଛି ନାହିଁ ଆଜ୍ଞା, ମୋ ଗାଁରୁ ଗୁଆଘିଅ କିଛି ଆସିଥିଲା ଯେ ଭାବିଲି ମ୍ୟାଡାମ୍ ଯଦି ରଖନ୍ତେ...''

ଅନୁପମ କିଛି କହିବା ପୂର୍ବରୁ ଭିତରୁ ପୂର୍ଣ୍ଣିମା ବାହାରି ଆସିଲା ।

''କଥା କ'ଣ ପୁରନ୍ଦର ?''

ଖବରକାଗଜ ଗୁଡ଼ା ହୋଇଥିବା ଗୋଟିଏ ବଡ଼ ହର୍ଲିକ୍ସ ବୋତଲ ବଢ଼େଇ ଦେଉ ଦେଉ ପୁରନ୍ଦର କହିଲା, ''ଏ ମୋ ଦାଦି ପୁଅ ଭାଇ, ଆଜ୍ଞା । ଗାଁରେ ତା'ର ବହୁତ ଗାଈ ବାଛୁରୀ, ଘର ତିଆରି ଗୁଆ ଘିଅ ନେଇ ଆସିଛି, ଆପଣ ଯଦି....''

''ଠିକ୍ ଅଛି । କେତେ ଦାମ୍ ?'' ପୂର୍ଣ୍ଣିମା ଥଣ୍ଡା ଗଳାରେ ପଚାରିଲା ।

ପୁରନ୍ଦର ଯେମିତି ତଟସ୍ଥ ହୋଇଗଲା । ଥ ଥ ମ ମ ହୋଇ କହିଲା, ''ଆଜ୍ଞା, ଦାମ୍ ? ଛି ଛି ଏ କି କଥା ମ୍ୟାଡାମ୍ ! ଘର ତିଆରି ଘିଅ । ମୁଁ ଅଳ୍ପ ଟିକିଏ ଘେନି ଆସିଲି । ଆପଣ ଦାମ୍ କଥା କହୁଛନ୍ତି ? ....ଛି ଛି ।''

ପୂର୍ଣ୍ଣିମା ସ୍ଥିର ଦୃଷ୍ଟିରେ ତାକୁ ଟିକିଏ ଦେଖିଲା । ''ଆଉ କିଛି କହିବ ?''

ମୁଣ୍ଡ ତଳକୁ ନୁଆଇଁ ନେଇ ହେଁ ହେଁ ହୋଇ ପୁରନ୍ଦର କହିଲା, ''ମ୍ୟାଡାମ୍, ମଦନାଇ ସ୍ତ୍ରୀଟା କିଛି ମାସ ହେଲାଣି ଭାରି ଭୋଗୁଛି । ଗାଁ ପାଖ ସ୍ୱାସ୍ଥ୍ୟ କେନ୍ଦ୍ରରେ ଦେଖାଇଥିଲା । ଡାକ୍ତର କହୁଛନ୍ତି ରକ୍ତ କମ୍ । ପେଟରେ ପିଲା ପ୍ରତି ଭୟ । ଆପଣ ଯଦି....''

''କାଲି ମୋର ଓ.ପି.ଡ଼ି. ତାକୁ ଆସିବାକୁ କହିବ ।''

ସ୍ୱରକୁ ଆଉ ଟିକିଏ ନୁଆଁଇ ପୁରନ୍ଦର କହିଲା, ''ବୁଧବାର ଦିନର ଯୋଉ ଭିଡ଼ ଆଜ୍ଞା । ତା ନମ୍ବର ଆସୁ ଆସୁ ହୁଏତ ଦି'ପହର ଗଡ଼ିଯିବ । ପୁଣି ଶନିବାର ଦିନକୁ ନମ୍ବର ପଡ଼ିବ । ଆପଣ ଯଦି ପ୍ରଥମେ...''

ତଳ ଓଠ ଉପରେ ଦାନ୍ତର ଚାପ ଦେଇ ପୂର୍ଣ୍ଣିମା ଗମ୍ଭୀର ହୋଇଗଲା । ମୁହୂର୍ତ୍ତେ ସେଇମିତି ଚୁପ୍ ରହି ହଠାତ୍ ଘର ଭିତରକୁ ଚାଲିଗଲା ସେ । ପର୍ସରୁ ପଚାଶ ଟଙ୍କାର ନୋଟ୍‌ଟିଏ ଆଣି ପୁରନ୍ଦର ହାତକୁ ବଢ଼େଇ ଦେଇ ବେଶ୍ କଠିନ ସ୍ୱରରେ ସେ କହିଲା, ''ତୁମ ଭାଇକୁ କାଲି ଓ.ପି.ଡ଼ି.କୁ ଆସିବାକୁ କହିବ । ତାଙ୍କ ନମ୍ବର ଯେତେବେଳେ ଆସିବ, ସେତିକିବେଳେ ହିଁ ମୁଁ ତାକୁ ଦେଖିବି । ଆଉ ହଁ, ପୁରନ୍ଦରକୁ ତୀକ୍ଷଣ ଦୃଷ୍ଟିରେ ଚାହିଁଲା ସେ, ''ଆମ ଘରେ ଗୁଆ ଘିଅ ବା ସେଇଭଳି କିଛିର ବ୍ୟବହାର କମ୍ । ଆଉ କେବେ ଏଇମିତି ଜିନିଷ ଧରି ଏଠିକୁ ଆସିବନି ।''

କବାଟ ବନ୍ଦ କଲା ପୂର୍ଣ୍ଣିମା । ଅନୁପମ ସୋଫାରେ ବସି ପତ୍ରିକାଟିଏକୁ ଓଲଟାଉ ସବୁ ଲକ୍ଷ୍ୟ କରୁଥିଲା । ତା'ରି ପାଖରେ ବସିପଡ଼ି ପୂର୍ଣ୍ଣିମା କହି ପକେଇଲା, ''ଦେଖୁଛ ଲୋକଟାର ସାହସ ? ଘିଅ ବୋତଲ ଧରି ଆସିଛି କ'ଣ ନା ତା' ଭାଉଜକୁ ମୁଁ ଆଗ ଦେଖିବି । ଆଉ ଯେଉଁ ରୋଗୀମାନେ କେଉଁ ଦୂରଦୂରାନ୍ତରୁ ଆସି ଅପେକ୍ଷା କରି ରହିଛନ୍ତି... ! ମଣିଷ କେତେ ବେଶୀ ହୀନ ହୋଇପାରେ !!''

ଅନୁପମ ହସିପକାଇଲା । ''ଗୁଆ ଘିଅ, ପିଠା, ଶାଢ଼ୀ ଏସବୁ ତ ଡାକ୍ତର ହେବାର ଫ୍ରିଞ୍ଜ୍ ବେନିଫିଟ୍‌ସ୍ । ଆଉ ତୁମ ଭଳି ନାଁ କରା ଗାଇନାକୋଲୋଜିଷ୍ଟ ହେଲେ କଥା ତ ନାହିଁ । ଖାଲି ଟିକିଏ କଣେଇ କରି ଚାହିଦିଅ ବାସ୍ । ଘରେ ପର୍ବତ ପ୍ରମାଣ ଜିନିଷ ଗଦା ହୋଇଯିବ ।''

ପୂର୍ଣ୍ଣିମା ଯଦି ଅନୁପମକୁ ଜାଣି ନଥାନ୍ତା, ତେବେ ନିଶ୍ଚୟ ବହୁତ ରାଗି ଯାଇଥାଆନ୍ତା । କିନ୍ତୁ ଉପରେ ଉପରେ ଯେତେ ଥଟ୍ଟା ମଜା କରୁ ନା କାହିଁକି ଅନୁପମ ଭଳି ସଚୋଟ୍ ଆଦର୍ଶବାଦୀ ମଣିଷ କେତେଜଣ ଅଛନ୍ତି ?

ସ୍ୱାମୀ ମୁହଁକୁ ଚାହିଁ ସେ ଟିକିଏ ହସି ଦେଲା । ''ଫ୍ରିଞ୍ଜ ବେନିଫିଟ୍‌ସ୍ ତ ପର କଥା । ଏବେ ନିଜ ଝାଳବୁହା ପଇସାରେ କିଣା ହୋଇଥିବା ଦାର୍ଜିଲିଂର ଚାହା କପେ ଚଳିବ ?''

ଅନୁପମ ସାମ୍ନାକୁ ଝୁକି ବସି ଚଟ୍ କରି ପଚାରି ଦେଲା, ''କାହା ଝାଳବୁହା ପଇସା ? ମୋର ନା ତୁମର ? ତୁମର ଯଦି ହୁଏ, କୌଣସି ଆପତ୍ତି ନାହିଁ । ମୋର ହେଲେ ଭାବିବାକୁ ପଡ଼ିବ ।''

ଗୋଟିଏ ସ୍ନିଗ୍ଧ ଚାହାଣୀରେ ଅନୁପମକୁ ଭୁତୁଭୁତୁ କରେଇ ଦେଇ ପୂର୍ଣ୍ଣିମା ଉଠିଗଲା । ନିଜ ହାତରେ ଚାହା କରିଆଣି ଗୋଟିଏ କପ୍ ସ୍ୱାମୀ ହାତରେ ଧରେଇ ଦେଲା ସେ ।

ଚାହାର ମିଠା ବାସ୍ନାରେ ଲୁଚିଯାଉଥିଲା କିଛି ସମୟ ଆଗରେ ଅସ୍ୱସ୍ତିକର ଘଟଣାଟା । ତଥାପି ପୂର୍ଣ୍ଣିମା ସେଇ କଥା ପକେଇଲା, ''ଜାଣ, ଏଇ ଭଳିଆ ଘଟଣା ପ୍ରାୟ ସବୁଦିନ ଦେଖି ଦେଖି ଆଉ ଭଲ ଲାଗୁନି । ... ଆଜି ଗୋଟିଏ ରୋଗୀ ଆସିଥିଲା । ଫାଷ୍ଟ ପ୍ରେଗ୍‌ନାନ୍‌ସି । କିନ୍ତୁ ଟ୍ରିପ୍‌ଲେଟ୍‌ସ ପେଟରେ । ଏମିତି ଏକାଠି ତିନିଟା ପିଲା ହେବା ଆମର ଏହା ଭିତରେ କେବେ ହୋଇନି । ମୁଁ ଭାବିଲି ଆମ ଷ୍ଟୁଡେଣ୍ଟମାନଙ୍କ ପାଇଁ ଏଇଟା ଗୋଟିଏ ବଡ଼ ସୁଯୋଗ । ତେବେ ପେସେଣ୍ଟର ସ୍ୱାମୀ କହିଲା ଯେ ପ୍ରାଇଭେଟ୍ ରୁମ୍ ନ ମିଳିଲେ ସେ ସ୍ତ୍ରୀକୁ ଏଠି ରଖାଇବ ନାହିଁ । ରୁମ୍ ଖାଲି ଥିଲା । କିନ୍ତୁ ଅଧଘଣ୍ଟା ପରେ ଆଡ଼ମିନିଷ୍ଟ୍ରେଟର ଫୋନ୍ କରି କହିଲେ ଯେ କୋଉ ମିନିଷ୍ଟରଙ୍କର ଭଉଣୀ ଆସିବେ । ତାଙ୍କୁ ରୁମ୍ ଦେଇ ପୁଣି ମନା କରିଦେଲେ ?''

''କି ଆଶ୍ଚର୍ଯ୍ୟ ! ତୁମେ ଆଡ଼ମିନିଷ୍ଟ୍ରେଟରଙ୍କୁ କିଛି କହିଲ ନାହିଁ । ଥରେ ରୁମ୍ ଦେଇ ପୁଣି ମନା କରିଦେଲେ ?''

''ସେ ବି ନାଚାର ! ମୁଁ ନିଜେ ଯାଇ ପଚାରିଥିଲି । ସେ କ'ଣ କହିଲେ ଜାଣ ? ସେ କହିଲେ ଯେ ଯଦି ସେ ମିନିଷ୍ଟରଙ୍କ ଭଉଣୀକୁ ରୁମ୍ ନ ଦିଅନ୍ତି, ତେବେ ତାଙ୍କର କୋଉ ଛୋଟ ଜାଗାକୁ ବଦଳି ହୋଇଯିବ । ଏ ମିଠା ଧମକ ସେ ପାଇ ସାରିଛନ୍ତି । ତାଙ୍କର ହୁଏତ ଆପତ୍ତି ନାହିଁ । ହେଲେ ଏଇ ସେଦିନ ବଦଳି ହୋଇ ଏଠିକୁ ଆସିଲେ । ତାଙ୍କ ପୁଅର ପୁଣି ସ୍କୁଲର ଶେଷ ବର୍ଷ । କେତେଟା ସ୍କୁଲ ବଦଳେଇବ ସିଏ ? ଛାଡ଼ । ଏମିତିଆ କଥା ସବୁ ପକେଇଲେ ବଡ଼ ବେଶୀ ଡ଼ିପ୍ରେସ୍‌ଡ୍ ଲାଗିବ । ମୁଁ ଆସୁଛି । ରାଉଣ୍ଡର ବେଳ ହୋଇଗଲାଣି ।'' ପୂର୍ଣ୍ଣିମା ତରବର ହୋଇ ବାହାରିଗଲା ।

ସେଇ ଯେ ବାହାରିଗଲା, ଫେରୁ ଫେରୁ ରାତି ସାଢ଼େ ସାତ । କ୍ଲିନିକ୍‌ରୁ ଫେରିବା ବାଟରେ ଅନୁପମ ହିଁ ତାକୁ ଘରକୁ ନେଇ ଆସେ । ଘରେ ପଶୁ ପଶୁ ହିଁ ଶ୍ୱେତାର ବାହାନା ଆରମ୍ଭ ହୋଇଯାଏ । ''କାହିଁ ଏତେ ଡେରି କଲ ? ମୋ ଚକଲେଟ୍ କାହିଁ ? ଆଜି ମୁଁ ଦିଇଟା ଗପ ଶୁଣିବି ।'' ଏମିତି କାହା ସାଙ୍ଗରେ କାହାର ତାଳ ନଥିବା କେତେ କଥା ।

ଆଜି ମଧ୍ୟ ସେ ସେଇମିତି ଆରମ୍ଭ କରିଥିଲା । ତା'ରି କଥା ଶୁଣୁ ଶୁଣୁ ପୂର୍ଣ୍ଣିମା ଧୂଆଧୂଇ ହେଲା । ଲୁଗା ବଦଳେଇ ଆସିଲା ।

ତା' ସାମ୍ନାରେ କମ୍ପି ଟେବୁଲ୍ ଉପରେ ଜଳଖିଆ ରଖୁ ରଖୁ କମଳା କହିଲା, ''ମା ମ, ବୁଢ଼ାଟାଏ କିଏ ଦୁଇଥର ଆସି ଫେରିଲାଣି ।''

''କୋଉ ବୁଢ଼ା ?''

''ମୁଁ କି ଚିହ୍ନିଛି ? କ'ଣ କହିଲା ନରସିଂହପୁରରୁ ନା କୋଉଠୁ ଆସିଛି । କୋଉ ମଲ୍ଲୀର ବାପ । କ'ଣ ଜାଣ ନାଁଟା କହିଲା - ସଦାଶିବ ନା ଗଦାଧର... ''

''ଓହୋ'' ପୂର୍ଣ୍ଣିମା ଅନୁପମକୁ ଚାହିଁଲା, ''ଏ ସେଇ ମଲ୍ଲୀର ବାପା । କହୁ ନ ଥିଲି ସେଦିନ ମଲ୍ଲୀ କଥା । ଶାଶୁଘରେ....''

ଗରୀବ ଚାଷୀଟିଏ ଗଦାଧର ବିଶ୍ୱାଳ । ଗୋଟିଏ ବୋଲି ଝିଅ ତା'ର ମଲ୍ଲୀ । ବାହାଘରର ବାଇଶ ବର୍ଷ ପରେ ଜନ୍ମ ହୋଇ ସ୍ୱାମୀ ସ୍ତ୍ରୀ ଦୁଇଜଣ ଆଖିର ମଣି କରି ରଖିଥିଲେ ତାକୁ । ମଲ୍ଲୀ ଉଣେଇଶ ବର୍ଷର ହେବା ପରେ ଭଲ ଘର, ଭଲ ବର ଦେଖି ବାହା ମଧ୍ୟ

ଦେଇଥିଲେ । ସବୁ ଠିକ୍ ଚାଲିଥିଲା । ଶାଶୁଘରେ ଆଦର ଯତ୍ନରେ ମଲ୍ଲୀ ଚଳୁଥିଲା । କିନ୍ତୁ ଗୋଟାଏ ବିଷୟ ନେଇ ସମସ୍ତେ ଟିକିଏ ମନସ୍ତାପରେ ଥିଲେ । ମଲ୍ଲୀ ପେଟରେ ପିଲା କେଇମାସ ଭିତରେ ନଷ୍ଟ ହୋଇଯାଉଥିଲା । ବଡ଼ ଡାକ୍ତରଖାନାରେ ଦେଖାଇବା ପରେ ଜଣାପଡ଼ିଲା ଯେ ମଲ୍ଲୀ ଦେହରେ କିଛି ଗୋଟିଏ ଅସୁବିଧା ଅଛି; ଯେଉଁଥି ପାଇଁ ସେ ନଅମାସ ଗର୍ଭ ସମ୍ଭାଳିବାକୁ ଅକ୍ଷମ । ଏକଥା ଜଣାପଡ଼ିବା ପରେ ହଠାତ୍ ମଲ୍ଲୀର ଆଦର କମିଗଲା । ତା' ଶାଶୁଘରେ ପୁଅକୁ ଆଉଥରେ ବାହା କରିବା କଥା ଚିନ୍ତା କରିବା ଆରମ୍ଭ କରିଦେଲେ ।ଠିକ୍ ଏଇମିତିକା ସମୟରେ ମଲ୍ଲୀକୁ ନେଇ ଗଦାଧର ବିଶ୍ୱାଳ ଆସିଥିଲା ପୂର୍ଣ୍ଣିମା ପାଖକୁ । ଆଉ ପୂର୍ଣ୍ଣିମାର ଚିକିତ୍ସାରେ ଯତ୍ନରେ ପୁଅଟିଏ କୋଳରେ ଧରି ଦଶଦିନ ତଳେ ଗାଁକୁ ଫେରିଯାଇଛି ।

ତେବେ ? ପୁଣି ତା'ର କ'ଣ ଅସୁବିଧା ହେଲା କି ? କିଛି ତ ସେମିତି ହେବା କଥା ନୁହଁ । ପୂର୍ଣ୍ଣିମା ଟିକିଏ ଅନ୍ୟମନସ୍କ ହୋଇପଡ଼ିଲା ।

କମଳା ପୁଣି ଆସି କବାଟ ପାଖରେ ଠିଆ ହେଲା ।

''ମା ମ, ସେଇ ବୁଢ଼ା ଆଉଥରେ ଆସିଛି ।''

''ଆଚ୍ଛା, ମୁଁ ଆସୁଛି, ତୁ ତାକୁ ବସିବାକୁ କହ ।''

ଦାଣ୍ଡରେ କେବେ କେମିତି ଘରକୁ ଚାଲି ଆସୁଥିବା ରୋଗୀଙ୍କ ପାଇଁ ବେଞ୍ଚ ପଡ଼ିଛି । ଅଥଚ ସେଇ ବେଞ୍ଚଠାରୁ ଦୂରରେ କାନ୍ଥ ସାଙ୍ଗରେ ପ୍ରାୟ ମିଶିଯାଇ ମାଟିରେ ବସିଛି ଗଦାଧର ବିଶ୍ୱାଳ । ଅଧା ମଇଳା ଧୋତି ସାଙ୍ଗରେ ଠାଏ ଠାଏ କଣା ହୋଇଯାଇଥିବା ଗଞ୍ଜିଟିଏ । କାନ୍ଧରେ ଚଦର । ପାଖରେ ମଇଳା କନା ଗୁଡ଼ା ହୋଇ ପୁଟୁଳିଟିଏ ।

ପୂର୍ଣ୍ଣିମାକୁ ଦେଖି ଉଠି ଆସି ଅଣ୍ଟା ବାଙ୍କି ପ୍ରଣାମ କଲା ଗଦାଧର, ''ମା'... ଡାକ୍ତରାଣୀ ମା' ମୋର' ତଣ୍ଟି ଜକେଇ ଆସୁଛି । ଆଖି ଦୁଇଟାରେ ପାଣି ଜମି ଆସିଲାଣି ।''

'କ'ଣ ହେଲା ?' ସାମାନ୍ୟ ବ୍ୟସ୍ତ ଗଳାରେ ପୂର୍ଣ୍ଣିମା ପଚାରିଲା, ''ଝିଅ ନାତି ଭଲ ଅଛନ୍ତି ତ ?''

ହଁ ମା ସବୁ ଭଲ । ଚଦରରେ ଆଖି ପୋଛିଲା ଗଦାଧର, ମା' ଗୋ, ତମ ଯୋଗୁଁ ମୋ ଝିଅର ଭାଗ୍ୟ ଫେରିଲା । ତା' ଶାଶୁଘର ଲୋକ ଆସିଥିଲେ । କେତେ ଆଦର । କେତେ ଦରବ ନେଇ ଆସିଥିଲେ ସେମାନେ । ଶାଶୁ ତ ତା' ପାଖ ଛାଡୁ ନାହାନ୍ତି । ସବୁ ତମ ପାଇଁ ମା' ।

''ଆଚ୍ଛା ଆଚ୍ଛା ଠିକ୍ ଅଛି ।'' ପୂର୍ଣ୍ଣିମା ସ୍ୱସ୍ତିର ନିଶ୍ୱାସ ନେଲା । ଏଇ ଖବର ତେବେ ଦେବାକୁ ବୁଢ଼ା ଆସିଥିଲା ?

ଆହା କି ସରଳିଆଟେ ସତରେ ।

'ହଉ ମଉସା, ତୁମେ ଏବେ ଯାଅ । ମୁଁ ଯାହା କହିଥିଲି କରିବ । ନାତିର ଅଯତ୍ନ କରିବ ନାହିଁ । ମାସେ ପରେ ଝିଅକୁ ଡାକ୍ତରଖାନାକୁ ଆଣି ମତେ ଦେଖାଇବ !'' ପୂର୍ଣ୍ଣିମା ନରମ ସ୍ୱରରେ କହିଲା । କେବଳ ଏତିକି ଖବର ଦେବା ପାଇଁ ଜଣେ ଏତେ ଗୁଡାଏ ବସ୍ ଖର୍ଚ୍ଚ କରି ପକେଇଲା । ଗରୀବ ଚାଷୀଟିଏ, କେତେ ବା ଆୟ ?

ଆହା !

ପୂର୍ଣ୍ଣିମା ଭିତରକୁ ଯିବା ପାଇଁ ଗୋଡ଼ ବଢ଼େଇଲା । ଗଦାଧର କିନ୍ତୁ ଉଠିଲା ନାହିଁ

''ମା'... '' କେମିତି ମିଳେଇ ଯାଇ କହି ଉଠିଲା ସେ । ପୂର୍ଣ୍ଣିମା ରହିଗଲା, ହଁ, କ'ଣ ହୋଇଛି କି ?''

ଏଥର ଗଦାଧର ସାହସ ପାଇଲା । ଉଠି ଆସି ପାଖରେ ଥିବା ମଇଳା ପୁଟୁଳିଟାକୁ ପୂର୍ଣ୍ଣିମା ପାଦ ତଳେ ରଖିଦେଲା । ''ମା, ତମ ପାଇଁ ଏ ବୁଢ଼ା ପୁଅ ଏଇଟା ନେଇ କରି ଆସିଛି । ତମେ ଗ୍ରହଣ କର ମା' ।''

ହଠାତ୍ ପୃଥିବୀଟା କ'ଣ ସୂର୍ଯ୍ୟ ଚାରିପାଖରେ ଘୂରୁ ଘୂରୁ ମୁହୂର୍ତ୍ତେ ସ୍ତବଧ୍ ହୋଇଗଲା କି ?

ପୂର୍ଣ୍ଣିମା ଯେମିତି କିଛି ଶବ୍ଦ ଶୁଣିପାରୁ ନାହିଁ, କିଛି କଥା ବୁଝିପାରୁ ନାହିଁ ଦିନ ଯାକର ଘଟଣା ସବୁ ଏକାଠି ହୋଇ କେମିତି ଅଣନିଶ୍ୱାସୀ କରି ପକାଉଛନ୍ତି ତାକୁ ।

ଶେଷରେ, ଶେଷରେ ଏଇ ସରଳ ବୁଢ଼ାଟି ମଧ...

ପୂର୍ଣ୍ଣିମାର ନିଜ ଉପରେ ସନ୍ଦେହ ହେଲା । ସତରେ କ'ଣ ତା' ଆଖିରେ, ତା' ବ୍ୟବହାରରେ ଗୋଟିଏ ଲୋଭୀ ସତ୍ତା ସବୁବେଳେ ଝଲମଲ କରୁଛି । କାହିଁକି, ତେବେ କାହିଁକି ଏମିତି ?

ଏ ଗଦାଧର ବିଶ୍ୱାଳ ପୁଣି ଏତେଟା ସାହସ କଲା ! କେମିତି ?

ଖୁବ୍ କମ୍ ରାଗୁଥିବା ପୂର୍ଣ୍ଣିମାର ଦେହ ଭିତରଟା ଯେମିତି ଗୋଳେଇ ହୋଇଗଲା । ମୁଣ୍ଡ ଭିତରେ ବିସ୍ଫୋରଣଟାଏ ହୋଇ ଗଲାକି ? ସେ ଚିତ୍କାର କରି ଉଠିଲା, ଚାଲିଯାଅ ଏଠୁ । ନେଇଯାଅ ତୁମର ଜିନିଷ ସବୁ । ତୁମର ସାହସ କେମିତି ହେଲା ?''

ସ୍ୱୀର ପାଟିରେ ଭିତରୁ ଅନୁପମ ଉଠି ଆସିଲା ।

''କ'ଣ ହୋଇଛି ?''

ତଟସ୍ଥ ଗଦାଧର ଦୂରକୁ ଛିଟିକି ଯାଇଛି ସେତେବେଳକୁ । ତାକୁ ଓ ତା ପାଖରେ ଥିବା ପୁଟୁଳି ଦେଖି ଅନୁପମ କିଛି କିଛି ଅନୁମାନ କରିପାରୁଥିଲା ।

ସେ କଠିନ ସ୍ୱରରେ ଗଦାଧରକୁ ପୁଣି ପଚାରିଲା, ''କ'ଣ ହୋଇଛି ? କ'ଣ ନେଇକରି ଆସିଛ ? କାହିଁକି ତୁମେ ସବୁ ଏମିତି କର ?''

ହାତ ଯୋଡ଼ି ପ୍ରାୟ କାନ୍ଦ କାନ୍ଦ ହୋଇଗଲା ଗଦାଧର, ''ରାଗନି ବାବୁ, ରାଗନି ।''

ଥର ଥର ହାତରେ ପୁଟୁଳି ଖୋଲୁ ଖୋଲୁ ସେ କହିପକେଇଲା, ''ହୀରା ଜହରତ କାହୁଁ ପାଇବି ବାବୁ ? ଘର ବାଡ଼ିଆଡ଼େ ପାଟକପୁରା କଦଳୀ ଗଛଟାଏ । କେବେ ଢାଣ ଲଗେଇଥିଲି । ଏତେଦିନକେ ପ୍ରଥମ କାନ୍ଧି ପଡ଼ିଲା । ମଲ୍ଲୀ ମା' ଆଜି ସେଇଟାକୁ ବିକ୍ରି କରିବାକୁ ବଜାରକୁ ନେଇ ଯାଉଥିଲା । ମୁଁ କହିଲି, ଗଛର ପ୍ରଥମ ଫଳ । ମତେ କେଇଟା ଦେ, ମୁଁ ଡାକ୍ତରାଣୀ ମା'କୁ ଦେଇ ଆସିବି ।' ସେଇ ଛଅଟା କଦଳୀ ନେଇ ଆସିଛି ବାବୁ, ମୋ ମା' ପାଇଁ ।''

ପୁଟୁଳି ଖୋଲା ସରିଥିଲା ସେତିକି ବେଳକୁ । ଦୁଇ ହାତରେ ନୈବେଦ୍ୟ ଦେବା ଭଙ୍ଗୀରେ ଗଦାଧର ବିଶ୍ୱାଳ ଟେକି ଧରିଥିଲା ଛଅଟି ପାଚିଲା ପାଟକପୁରା କଦଳୀ ।

# ଲେଖକ ପରିଚିତି

**ବସନ୍ତ କୁମାର ଶତପଥୀ (1913-1994)**

ଜନ୍ମ ମୟୂରଭଂଜ ପାଣ୍ଡଡ଼ା ଗ୍ରାମ । 1938 ମସିହାରେ ରେଭେନ୍ସା କଲେଜରୁ ଇଂରେଜି ସାହିତ୍ୟରେ ଏମ୍.ଏ. ପାଶ୍ କରି ପ୍ରଥମେ ସ୍କୁଲ୍‌ରେ ଶିକ୍ଷକତା, ପରେ ଇଂରେଜୀ ସାହିତ୍ୟର ଅଧାପକ ଭାବରେ କାର୍ଯ୍ୟ କରି 1970 ମସିହାରେ ସରକାରୀ ଚାକିରିରୁ ଅବସର ଗ୍ରହଣ କରିଥିଲେ । ଅଧୁନାଲୁପ୍ତ 'ଭଂଜ ପ୍ରଦୀପ', 'ମୟୂରଭଂଜ ଷ୍ଟେଟ୍ ଗେଜେଟ୍' ଓ ଇଂରେଜୀ ତ୍ରୈମାସିକ 'ମୟୂରଭଂଜ କ୍ରନିକଲ୍'ର ସେ ସଂପାଦନା କରିଥିଲେ । ଜଣେ ବିଶିଷ୍ଟ ଗାଳ୍ପିକ, ସମାଲୋଚକ ଏବଂ ରମ୍ୟ ରଚନା ରଚୟିତା ଭାବରେ ଖ୍ୟାତ । ଜୀବନ ପ୍ରତି ତୀକ୍ଷ୍ଣ ତାର୍ଯ୍ୟକ ଦୃଷ୍ଟି ତାଙ୍କ ଗଳ୍ପର ବୈଶିଷ୍ଟ୍ୟ । 'ଏଣ୍ଟି ରୋମାଣ୍ଟିକ୍' ଗଳ୍ପଗୁଚ୍ଛ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଏବଂ ଶ୍ରେଷ୍ଠ ଗଳ୍ପ ରଚନା ପାଇଁ 'ଝଂକାର' ପୁରସ୍କାର ଦ୍ୱାରା ସମ୍ମାନିତ ହୋଇଥିଲେ ।

**ଭୁବନେଶ୍ୱର ବେହେରା (1916)**

ଜନ୍ମ ତତ୍‌କାଳୀନ ଦେଶୀୟ ରାଜ୍ୟ କଳାହାଣ୍ଡିର ଏକ ଗ୍ରାମରେ । ବିଶିଷ୍ଟ ଶିକ୍ଷାବିତ୍, ଖ୍ୟାତନାମା ଇଞ୍ଜିନିୟର୍ । ସମ୍ବଲପୁର ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି । ଜଣେ ସମାଜ-ସଚେତନ କଥାଶିଳ୍ପୀ ଭାବରେ ସୁପରିଚିତ । 'କଥା ଓ ଲଥା' ଏବଂ 'ଫର ଫର ଉଡ଼େ' ତାଙ୍କ ଦୁଇଟି ସ୍ମରଣୀୟ ଗଳ୍ପ ସଂକଳନ । ମନନଶୀଳ ପ୍ରବନ୍ଧ ସଂକଳନ 'ଶୁଣ ପରୀକ୍ଷ' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ଏବଂ ଆତ୍ମଜୀବନୀମୂଳକ ରଚନା 'ଗାଁର ଡାକ' ପୁସ୍ତକ ଲାଗି ସାରଳା ପୁରସ୍କାର ଦ୍ୱାରା ସମ୍ମାନିତ ।

**ବ୍ରହ୍ମାନନ୍ଦ ପଣ୍ଡା (1922-1996)**

ଜନ୍ମ ଗଞ୍ଜାମ ଜିଲ୍ଲାର ସେରଗଡ଼ ଚିକିଲି ଗ୍ରାମରେ । 1940 ମସିହାରେ ଗାନ୍ଧିଜୀଙ୍କ ଡାକରାରେ ସ୍ୱାଧୀନତା ସଂଗ୍ରାମରେ ଯୋଗଦେବା ପାଇଁ କଲେଜ ପରିତ୍ୟାଗ । 1954 ମସିହାରେ ଓଡ଼ିଶା ପ୍ରଗତିଶୀଳ ଲେଖକ ସଂଘର ସଂପାଦକ ଏବଂ 1955 ମସିହାରେ ଓଡ଼ିଶା ଗଣତାନ୍ତ୍ରିକ ଯୁବସଂଘର ସାଧାରଣ ସଂପାଦକ ଥିଲେ । 'ପ୍ରଭାତି' ଓ 'ସ୍ୱରୂପ' ସାହିତ୍ୟ ପତ୍ରିକାର ସଂପାଦନା କରୁଥିଲେ । 1967 ଏବଂ 1973 ମସିହାରେ ଓଡ଼ିଶାରୁ ରାଜ୍ୟସଭାକୁ ନିର୍ବାଚିତ । ମାର୍କ୍ସବାଦୀ ଭାବାଦର୍ଶ ଓ ମନସ୍ତାତ୍ତ୍ୱିକ ଗଳ୍ପ ରଚନା ପାଇଁ ଓଡ଼ିଆ କଥା ସାହିତ୍ୟରେ ସୁପରିଚିତ। ପ୍ରକାଶିତ ଗଳ୍ପଗ୍ରନ୍ଥ 'ସାଧାରଣ ସତ୍ୟ', 'ଭୋକିଲା କଳା', 'ଆତ୍ମ ପରିଚୟ' ''କଳା ଓ କଳ୍ପନା'', 'ଫଲ୍‌ଗୁର ବନ୍ୟା' ଏବଂ ''ପ୍ରାନ୍ତ ଯମକ'' ।

**ଅଚ୍ୟୁତାନନ୍ଦ ପତି (1927)**

ଯାଜପୁର ସହରରେ ଜନ୍ମ । ସରକାରୀ ହାଇସ୍କୁଲ୍‌ର ପ୍ରଧାନଶିକ୍ଷକ ଭାବରେ ଚାକିରିରୁ ଅବସର ଗ୍ରହଣ । ଓଡ଼ିଆ କଥା ସାହିତ୍ୟରେ ସମାଜର ଅବହେଳିତ ହେୟ ଓ ଅପାଂକ୍ତେୟ ମାନବ ଜୀବନର ସାର୍ଥକ ରୂପକାର ଭାବରେ ପରିଚିତ । ନିଜର କ୍ଷୁଦ୍ରଗଳ୍ପ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଓ 'ଝଙ୍କାର' ପୁରସ୍କାର ଦ୍ୱାରା ସମ୍ମାନିତ୍ । ଉଲ୍ଲେଖଯୋଗ୍ୟ ଗଳ୍ପଗ୍ରନ୍ଥ : 'ଅଶୁଭ ପୁତ୍ରର କାହାଣୀ', 'ଉଗ୍ରସେନ ଉବାଚ', 'ନିଆଁ ଜଳୁଛି', 'ସ୍ନାୟୁ ଓ ସନ୍ୟାସୀ' ଏବଂ 'ଚାରି ସଂଗାତ କଥା' ।

**ବିଜୟ କୃଷ୍ଣ ମହାନ୍ତି (1928)**

ପୁରୀ କୁଣ୍ଡେଇବେଣ୍ଟ ସାହିରେ ଜନ୍ମ । ଅନୁଭୂତିମୂଳକ ଓ ମନସ୍ତାତ୍ତ୍ୱିକ ଗଳ୍ପ ରଚନା ପାଇଁ ପାଠକମାନଙ୍କ ପାଖରେ ସୁପରିଚିତ । 'ପ୍ରଚକ୍ଷୁ' ଗଳ୍ପଗ୍ରନ୍ଥ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇବା ସଙ୍ଗେ ସଙ୍ଗେ କ୍ଷୁଦ୍ରଗଳ୍ପ ପାଇଁ 'ଝଙ୍କାର' ଏବଂ ଉତ୍କଳ ସାହିତ୍ୟ ସମାଜ ଗଳ୍ପ ସମ୍ମାନରେ ସମ୍ବର୍ଦ୍ଧିତ । ପ୍ରକାଶିତ ଗଳ୍ପଗ୍ରନ୍ଥ : 'ତଥାପି', 'ସ୍ୱପ୍ନଭଙ୍ଗ', 'ମ୍ଳାନଜ୍ୟୋସ୍ନା', 'ନିଭୃତ ସଂଳାପ', 'ପାଗଳା ସାହେବ' ଏବଂ 'ପ୍ରଚକ୍ଷୁ' ।

**ଦୁର୍ଗାମାଧବ ମିଶ୍ର (1929-1997)**

ନୟାଗଡ଼ ସହରରେ ଜନ୍ମ । ଏହ୍ଲାବାଦ ବିଶ୍ୱବିଦ୍ୟାଳୟରୁ ଅର୍ଥଶାସ୍ତ୍ରରେ ଏମ୍.ଏ. ପାଶ୍ କଲାପରେ 1952 ମସିହାରେ ଭାରତୀୟ ପୋଲିସ୍ ସେବାରେ ଯୋଗଦେଇ 1987 ମସିହାରେ ଚାକିରିରୁ ଅବସର ଗ୍ରହଣ କରିଥିଲେ । କଲିକତାରୁ ପ୍ରକାଶିତ 'ପ୍ରତିବେଶୀ' ଏବଂ ଭୁବନେଶ୍ୱରରୁ ପ୍ରକାଶିତ 'ସମାରୋହ' ଏବଂ 'ଦିବ୍ୟ ସଂଦେଶ'ର ସଂପାଦନା କରୁଥିଲେ । 1976 ମସିହାରେ ସାମଗ୍ରିକ ସାହିତ୍ୟ କୃତି ପାଇଁ ଓଡିଶା ଏକାଡ଼େମୀ ପୁରସ୍କାର ଏବଂ 1993 ମସିହାରେ ଉତ୍କଳ ସାହିତ୍ୟ ସମାଜ ଗଳ୍ପ ସମ୍ମାନ ଲାଭ କରିଥିଲେ । ପ୍ରକାଶିତ ଗଳ୍ପଗ୍ରନ୍ଥ 'ଜଉତିଷେ କହିଛନ୍ତି', 'ମନ୍ଦାକ୍ରାନ୍ତା', 'ତାରା ଓ ତିମିର', 'ଫଲ୍‌ଗୁରେ ବନ୍ୟା', 'ନିଷାଦର ନିଃଶବ୍ଦ ବାରଣ' ଏବଂ 'ଅପରାହ୍ନର ଗଳ୍ପ' ।

**ସାତକଡ଼ି ହୋତା (1929)**

ମୟୂରଭଞ୍ଜ ଜିଲ୍ଲା ବାଙ୍ଗିରିପୋଷି ଥାନା, ଜଗନ୍ନାଥଖୁଣ୍ଟାରେ ଜନ୍ମ । ଭାରତୀୟ ରେଳବାଇ ପରିବହନ ସେବାର ଜଣେ ବରିଷ୍ଠ ପ୍ରଶାସକ ଭାବରେ କାର୍ଯ୍ୟ କରି 1987 ମସିହାରେ ଅବସର ଗ୍ରହଣ କରିଛନ୍ତି । ବିଶିଷ୍ଟ ଔପନ୍ୟାସିକ ଏବଂ କ୍ଷୁଦ୍ରଗଳ୍ପ ଲେଖକ ଭାବରେ ସୁପରିଚିତ । 1990 ମସିହାରେ 'ଅଶାନ୍ତ ଅରଣ୍ୟ' ଉପନ୍ୟାସ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରିଛନ୍ତି । ସଂପ୍ରତି ଦୈନିକ ସମ୍ବାଦପତ୍ର 'ସମୟ'ର ସଂପାଦକ ଭାବରେ କାର୍ଯ୍ୟରତ । ପ୍ରକାଶିତ ଗଳ୍ପଗ୍ରନ୍ଥ : 'ବେଗମ୍ ସାହେବା', 'ଜଗନ୍ନାଥଙ୍କ ହସ', 'ନୀଳାଚଳକୁ ରାସ୍ତା', 'ଲଙ୍ଗଳା ରାଜା', 'ସାୟାହ୍ନର ଶୋଭା' ଏବଂ 'ସବା ଶେଷରେ' ।

**ଚନ୍ଦ୍ରଶେଖର ରଥ (1929)**

ବଲାଙ୍ଗୀର ସହରେ ଜନ୍ମ । 1952 ମସିହାରେ ଲକ୍ଷ୍ନୌ କ୍ୟାନିଂ କଲେଜରୁ ଏମ୍.ଏ. ପାଶ୍ କଲାପରେ ଇଂରେଜୀ ବିଭାଗର ଅଧ୍ୟାପକ ଭାବରେ ସରକାରୀ କଲେଜରେ ଅଧ୍ୟାପନା ।

ଚାକିରୀରୁ ଅବସର ଗ୍ରହଣ କରି କିଛିବର୍ଷ 'ସନ୍ ଟାଇମ୍ସ' ଇଂରେଜୀ ଦୈନିକୀରେ କାର୍ଯ୍ୟ କରିଥିଲେ । 1980 ମସିହାରେ 'ଅସୂର୍ଯ୍ୟ ଉପନିବେଶ' ଉପନ୍ୟାସ, 1982 ମସିହାରେ 'ସମ୍ରାଟ୍ ଓ ଅନ୍ୟମାନେ' ଗଳ୍ପଗ୍ରନ୍ଥ ଏବଂ 1997 ମସିହାରେ 'ସବୁଠାରୁ ଦୀର୍ଘରାତି' ଗଳ୍ପ ସଂକଳନ ପାଇଁ ସେ ଯଥାକ୍ରମେ ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଶାରଳା ପୁରସ୍କାର ଏବଂ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ଦ୍ୱାରା ସମ୍ମାନିତ । ପ୍ରକାଶିତ ଗଳ୍ପଗ୍ରନ୍ଥ : 'ଅନେକ ବନ୍ୟା ପରେ', 'ଅଶ୍ୱାରୋହୀର ଗଳ୍ପ', 'ସମ୍ରାଟ୍ ଓ ଅନ୍ୟମାନେ', 'ସବୁଜାଙ୍କ ସ୍ୱପ୍ନ', 'ଏତେ ପାଖରେ ସମୁଦ୍ର', 'ବାଘ ସବାର', 'ସ୍ୱପ୍ନବାହକ', 'ସବୁଠାରୁ ଦୀର୍ଘରାତି' ଏବଂ 'କ୍ରମଶଃ ଗଭୀର ନଈ' ।

**ନନ୍ଦିନୀ ଶତପଥୀ (1931)**

ଜନ୍ମସ୍ଥାନ କଟକ । ସଂଯତ, ସରଳ ବାକ୍ୟବିନ୍ୟାସ ଏବଂ ଜୀବନ ପ୍ରତି ମମତ୍ୱବୋଧ ଶ୍ରୀମତୀ ଶତପଥୀଙ୍କ ଗଳ୍ପକଳାର ବୈଶିଷ୍ଟ୍ୟ । 'କେତୋଟି କଥା' ଓ 'ସପ୍ତଦଶୀ', ମୌଳିକ ଗଳ୍ପଗ୍ରନ୍ଥ । 'ଲଜ୍ଜା' (ମୂଳଲେଖା : ତସ୍‌ଲିମା ନାସ୍‌ରିନ୍), 'ରେଭିନ୍ୟୁ ଟିକଟ' (ମୂଳଲେଖା : ଅମୃତା ପ୍ରିତମ୍) ଅନୁବାଦ ପାଇଁ ସେ ପାଠକମାନଙ୍କ ପାଖରେ ସୁପରିଚିତ । 'ରେଭିନ୍ୟୁ ଟିକେଟ୍' ଅନୁବାଦ ଲାଗି କେନ୍ଦ୍ର ସାହିତ୍ୟ ଏକାଡେମୀ ଏବଂ ସଫଳ ଅନୁବାଦ ପ୍ରତିଭା ପାଇଁ 'ସାହିତ୍ୟ ଭାରତୀ' ପୁରସ୍କାର ଲାଭ କରିଛନ୍ତି ।

**ଚଉଧୁରୀ ହେମକାନ୍ତ ମିଶ୍ର (1935)**

କଟକ ଜିଲ୍ଲା ଭେଡ଼ାରେ ଜନ୍ମ । ମନୋବିଜ୍ଞାନ ଓ ପ୍ରାୟୋଗିକ ଭାଷା ବିଜ୍ଞାନ କ୍ଷେତ୍ରରେ ସେ ଆନ୍ତର୍ଜାତିକ ଖ୍ୟାତି ଅର୍ଜନ କରିଛନ୍ତି । ଏହ୍ଲାବାଦ ବିଶ୍ୱବିଦ୍ୟାଳୟ, ଖଡ଼ଗପୁର ଆଇ.ଆଇ.ଟି.ରେ ଅଧ୍ୟାପନା ଏବଂ ଆଜମୀର୍ କ୍ଷେତ୍ରୀୟ ମହାବିଦ୍ୟାଳୟରେ ଅଧ୍ୟକ୍ଷ ଭାବରେ କାର୍ଯ୍ୟ କରିଛନ୍ତି । ବ୍ୟଙ୍ଗାତ୍ମକ ସରସ ଗଳ୍ପ ଓ ରମ୍ୟ ରଚନା ପାଇଁ ଓଡ଼ିଆ ସାହିତ୍ୟରେ ଖ୍ୟାତ । 'ନିଷିଦ୍ଧ ପୁସ୍ତକ' ଗଳ୍ପଗ୍ରନ୍ଥ ଲାଗି ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରିଛନ୍ତି । ପ୍ରକାଶିତ ଗଳ୍ପଗ୍ରନ୍ଥ : 'ତେଢ଼େଛା ଗଳ୍ପ', 'ଅଘଟଣ ସଂକଳନ', 'କୁରୁଳିଆ ଗଳ୍ପ', 'ହେମାକାନ୍ତଙ୍କ ହସଗୋଲା', 'ହାସ ପରିହାସ' ଓ 'ଶ୍ରେଷ୍ଠ ଗଳ୍ପ' ।

**ରବି ପଟ୍ଟନାୟକ (1935-1991)**

ଘର ରାଇରଙ୍ଗପୁର, ଜନ୍ମସ୍ଥାନ ବଣାଇ । ଭୂତତ୍ତ୍ୱ ବିଜ୍ଞାନରେ ସ୍ନାତକୋତ୍ତର ଡିଗ୍ରୀ ହାସଲ କଲାପରେ ଭାରତୀୟ ଭୂତାତ୍ତ୍ୱିକ ସର୍ବେକ୍ଷଣ ସଂସ୍ଥାରେ ଉଚ୍ଚ ପଦବୀରେ ଅବସ୍ଥାପିତ ହୋଇଥିଲେ । ଜୀବନ ଓ ଜଗତ ପ୍ରତି ବିଶ୍ଳେଷଣାତ୍ମକ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଯୋଗୁଁ ତାଙ୍କ ଗଳ୍ପଗୁଡ଼ିକ ପାଠକ ଓ ସମାଲୋଚକମାନଙ୍କ ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିଥିଲା । 'ହିରଣ୍ୟ ଗର୍ଭ' ଗଳ୍ପଗ୍ରନ୍ଥ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, 'ବନ୍ଧ୍ୟା ଗାନ୍ଧାରୀ' ଗଳ୍ପ ସଂକଳନ ଲାଗି ଶାରଳା ପୁରସ୍କାର, 'ବିଚିତ୍ରା ବର୍ଣ୍ଣା' ଗଳ୍ପ ସଂଚୟନ ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରିଥିଲେ । ଅନ୍ୟ ଉଲ୍ଲେଖଯୋଗ୍ୟ ଗଳ୍ପଗ୍ରନ୍ଥ : 'ଅନ୍ଧଗଳିର ଅନ୍ଧକାର', 'ବହୁରୂପୀ', 'ରାଗତୋଡ଼ି', 'ବିଷୁବରେଖା', 'ଛାୟାପୁତ୍ରର କାଳ', 'ଅମରି ଲତା' ଓ 'ପ୍ରେମ ଓ ପ୍ରତିମା' ।

**ଜଗନ୍ନାଥ ପ୍ରସାଦ ଦାସ (1936)**

ଜନ୍ମସ୍ଥାନ ବାଣପୁର, ପୁରୀ । ଉତ୍କଳ ଓ ଆହ୍ଲାବାଦ ବିଶ୍ୱବିଦ୍ୟାଳୟରୁ ଶିକ୍ଷାପ୍ରାପ୍ତି କଲା ଓ

ଇତିହାସରେ ପି.ଏଚ୍.ଡି. । ଭାରତୀୟ ପ୍ରଶାସନ ସେବାରୁ ସ୍ୱେଚ୍ଛାରେ ଅବସର ନେଇ ସାହିତ୍ୟ ସୃଷ୍ଟିରେ ନିଜକୁ ନିୟୋଜିତ କରିଛନ୍ତି । ତାଙ୍କର ଗବେଷଣାଧର୍ମୀ ଗ୍ରନ୍ଥ 'ଦେଶ କାଳ ପାତ୍ର' ଓଡ଼ିଆ ସାହିତ୍ୟରେ ସ୍ମରଣୀୟ କୀର୍ତ୍ତି । ଏକାଧାରରେ କବି, କଥାସାହିତ୍ୟିକ, ନାଟ୍ୟକାର ଏବଂ ଗବେଷକ । 'ଆହ୍ନିକ' କବିତା ସଂଚୟନ ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ ଓ ପ୍ରତ୍ୟାଖ୍ୟାନ । ନିଜସ୍ୱ ସ୍ୱତନ୍ତ୍ର ବାକ୍‌ଭଙ୍ଗୀ ଏବଂ କଥାବସ୍ତୁର ଅଭିନବତ୍ୱ ପାଇଁ ତାଙ୍କ ଗଳ୍ପଗୁଡ଼ିକ ବିଦଗ୍ଧ ପାଠକମାନଙ୍କ ଦ୍ୱାରା ଆଦୃତ । ପ୍ରକାଶିତ ଗଳ୍ପଗ୍ରନ୍ଥ : 'ଭବନାଥ ଓ ଅନ୍ୟମାନେ', 'ଦିନଚର୍ଯ୍ୟା', 'ଆମେ ଯେଉଁମାନେ', 'ସାକ୍ଷାତ୍‌କାର', 'ପ୍ରିୟ ବିଦୂଷକ' ଏବଂ 'ଶେଷ ପର୍ଯ୍ୟନ୍ତ' । 1998 ରେ ତାଙ୍କୁ ତାଙ୍କର ଗଳ୍ପ ସଂକଳନ '' ପ୍ରିୟ ବିଦୂଷକ' ଲାଗି ସମ୍ମାନଜନକ ଶାରଳା ପୁରସ୍କାରରେ ସମ୍ମାନିତ କରାଯାଇଛି ।

**ଉମାଶଙ୍କର ମିଶ୍ର (1937)**

ଜନ୍ମ ରଣପୁର, ଘର ନୟାଗଡ଼ । ରାଜନୀତି ବିଜ୍ଞାନରେ ଆହ୍ଲାବାଦ ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଆଇନ ଶାସ୍ତ୍ରରେ ଡିଗ୍ରୀ ହାସଲ କଲାପରେ ଓଡ଼ିଶା ପ୍ରଶାସନିକ ସେବାରେ ଯୋଗଦାନ ଏବଂ 1995 ମସିହାରେ ଚାକିରିରୁ ଅବସର ଗ୍ରହଣ । ଗଳ୍ପ ପାଇଁ 'ଝଙ୍କାର' ପୁରସ୍କାର ଏବଂ 'ବୋହୂବୋହୂକା' ଗଳ୍ପଗ୍ରନ୍ଥ ଲାଗି ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ । ଅନ୍ୟାନ୍ୟ ଉଲ୍ଲେଖଯୋଗ୍ୟ ଗଳ୍ପ ସଂକଳନ : 'କାହାଣୀ ସ୍ତବକ', 'ଶ୍ୱେତ ଅମୃତ', 'ତ୍ରିଶଙ୍କୁ', 'ନୂଆ ଶତାବ୍ଦୀର ଫଗୁଣ' ଏବଂ 'ମୋକ୍ଷଚକ୍ର' ।

**ବିଭୂତି ପଟ୍ଟନାୟକ (1937)**

ଜଗତ୍‌ସିଂହପୁର ଡିଙ୍ଗେଶ୍ୱର ଗ୍ରାମରେ ଜନ୍ମ । ରେଭେନ୍ସା କଲେଜରୁ ଇତିହାସ ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଓଡ଼ିଆ ଭାଷା ସାହିତ୍ୟରେ ଏମ୍.ଏ., ପି.ଏଚ୍.ଡି. ଡିଗ୍ରୀ ଲାଭ । ଓଡ଼ିଆ ଭାଷା ସାହିତ୍ୟର ପ୍ରାଧ୍ୟାପକ ଭାବରେ 1995 ମସିହାରେ ସରକାରୀ ଚାକିରିରୁ ଅବସରଗ୍ରହଣ । ଔପନ୍ୟାସିକ, ଗାଳ୍ପିକ ଏବଂ ସାହିତ୍ୟ ସମାଲୋଚକ ଭାବରେ ସୁପ୍ରତିଷ୍ଠିତ । 'ଅଶ୍ୱମେଧର ଘୋଡ଼ା' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, ଗଳ୍ପ ପାଇଁ 'ଝଙ୍କାର' ପୁରସ୍କାର, ସାମଗ୍ରିକ ସାହିତ୍ୟ କୀର୍ତ୍ତି ପାଇଁ 'ବିଷୁବ ସମ୍ମାନ' ଏବଂ ଶାରଳା ପୁରସ୍କାର, ଉତ୍କଳ ସାହିତ୍ୟ ସମାଜ ଦ୍ୱାରା ପ୍ରଥମ ଉପନ୍ୟାସ ପୁରସ୍କାରରେ ସମ୍ମାନିତ । ଅନିୟମିତ ଗଳ୍ପପତ୍ର 'ଗଳ୍ପ'ର ସଂପାଦକ । ପ୍ରକାଶିତ ଗଳ୍ପଗ୍ରନ୍ଥ : 'ଶ୍ରେଷ୍ଠ ଗଳ୍ପ' (ହର ପ୍ରସାଦ ଦାସଙ୍କ ଦ୍ୱାରା ସଂପାଦିତ), 'ଆଖି ବୁଜିଦେଲେ ସତ୍ୟଯୁଗ', 'ମନ ଭଲ ନାହିଁ', 'ରାଜକନ୍ୟାର ଦୁଃଖ' 'କଳିକାଳ' ଏବଂ 'ଜୀବନର ଜଟିଳତା' ।

**ବିଜୟ ପ୍ରସାଦ ମହାପାତ୍ର (1938)**

ଜନ୍ମସ୍ଥାନ : ପୁରୀ । ଓଡ଼ିଆ ଭାଷା ଓ ସାହିତ୍ୟରେ ଏମ୍.ଏ., ପି.ଏଚ୍,ଡି. ଡିଗ୍ରୀ ହାସଲ କଲାପରେ ଅଧ୍ୟାପକ ଭାବରେ କର୍ମମୟ ଜୀବନ ଆରମ୍ଭ । ସିଲ୍‌ଚର୍ ଠାରେ କେନ୍ଦ୍ରୀୟ ଆସାମ ବିଶ୍ୱବିଦ୍ୟାଳୟରେ ଭାଷା ବିଜ୍ଞାନ ବିଭାଗର ପ୍ରଫେସର୍ ଭାବରେ ସେ କାର୍ଯ୍ୟ କରିଛନ୍ତି । କାହାଣୀର ଚମତ୍କାରିତା ଅପେକ୍ଷା ଭାବରେ ଗଭୀରତା ତତ୍ତ୍ୱର ମହାପାତ୍ରଙ୍କ ଗଳ୍ପର ବୈଶିଷ୍ଟ୍ୟ । ପ୍ରକାଶିତ ଗଳ୍ପଗ୍ରନ୍ଥ : 'ପ୍ରେମଗଳ୍ପ', 'ଗୋଲାପ ବଗିଚାର ଗଳ୍ପ', 'କଳାପାନ ଗୋଲାମର ଗଳ୍ପ'.

'ପୂଜାରୀର ଗଳ୍ପ', 'କଣ୍ଢେଇଙ୍କ ଗଳ୍ପ' ଏବଂ 'ଅଦିନିଆ ଗଳ୍ପ' । ସେ 1994 ମସିହାରେ କ୍ଷୁଦ୍ରଗଳ୍ପ ରଚନା ପାଇଁ 'ଝଂକାର' ପୁରସ୍କାର ଏବଂ 'ଅନ୍ୟସ୍ରୋତର ଗଳ୍ପ' ଗ୍ରନ୍ଥ ଲାଗି ଉତ୍କଳ ସମ୍ମାନ ଲାଭ କରିଛନ୍ତି ।

### ପ୍ରତିଭା ରାୟ (1944)

ଜଗତସିଂହପୁର ଜିଲ୍ଲା ବାଲିକୁଦା ଥାନା ଅନ୍ତର୍ଗତ ଅଳାବୋଳ ଗ୍ରାମରେ ଜନ୍ମ । ଏମ୍.ଇଡି ଡିଗ୍ରୀ ହାସଲ କଲାପରେ ସରକାରୀ ମହାବିଦ୍ୟାଳୟରେ ଅଧ୍ୟାପନା । ଏ ପର୍ଯ୍ୟନ୍ତ ତାଙ୍କର ପନ୍ଦରଟିରୁ ଊର୍ଦ୍ଧ୍ୱ ଉପନ୍ୟାସ, ସମପରିମାଣରେ କ୍ଷୁଦ୍ରଗଳ୍ପ ସଂକଳନ ଏବଂ ଗୋଟିଏ ଭ୍ରମଣ କାହାଣୀ ଗ୍ରନ୍ଥ ପ୍ରକାଶିତ । ସେ 'ଶିଳା ପଦ୍ମ' ଉପନ୍ୟାସ ପାଇଁ 1985 ମସିହାରେ ଓଡିଶା ସାହିତ୍ୟ ଏକାଡେମୀ, ପୌରାଣିକ ଉପନ୍ୟାସ 'ଯାଜ୍ଞସେନୀ' ଲାଗି 1989 ଏବଂ 1991 ମସିହାରେ ଯଥାକ୍ରମେ ଶାରଳା ଓ ମୂର୍ତ୍ତିଦେବୀ ପୁରସ୍କାର ଲାଭ କରିଛନ୍ତି । 1995 ମସିହାରେ ବିଷୁବ ପୁରସ୍କାର ଦ୍ୱାରା ମଧ୍ୟ ସମ୍ମାନିତ । ପ୍ରକାଶିତ ଗଳ୍ପ ଗ୍ରନ୍ଥ : 'ସାମାନ୍ୟ କଥନ', 'ଅସମାପ୍ତ', 'ହାତ ବାକ୍ସ', 'ଘାସ ଓ ଆକାଶ', 'ଚନ୍ଦ୍ରଭାଗା ଓ ଚନ୍ଦ୍ରକଳା', 'ଅବ୍ୟକ୍ତ', 'ଇତି ବୃତ୍ତକ', 'ହରିତ୍ ପତ୍ର', 'ପୃଥକ ଈଶ୍ୱର', 'ମୋକ୍ଷ' ଏବଂ 'ସ୍ୱନିର୍ବାଚିତ ଶ୍ରେଷ୍ଠ ଗଳ୍ପ' ଇତ୍ୟାଦି ।

### ପ୍ରଫୁଲ୍ଲ କୁମାର ତ୍ରିପାଠୀ (1945)

ଜନ୍ମ : ଦେଶଭଟଲି, ସମ୍ବଲପୁର । ଇଂରେଜୀରେ ଏମ୍. ଏ ଏବଂ ପି.ଏଚ୍.ଡି ଡିଗ୍ରୀଧାରୀ ଏହି କବି ଓ କଥା ଶିଳ୍ପୀ ବର୍ତ୍ତମାନ ପ୍ରାଧ୍ୟାପକ ଭାବରେ ଓଡିଶା ସରକାରଙ୍କ ଶିକ୍ଷା ବିଭାଗରେ କାର୍ଯ୍ୟ କରୁଛନ୍ତି । ଗଳ୍ପ, କବିତା ରଚନା ସହିତ ଭାଷା ଚର୍ଚ୍ଚା ଓ ଚିତ୍ରାଙ୍କନରେ ମଧ୍ୟ ସେ କୃତିତ୍ୱ ଅର୍ଜନ କରିଛନ୍ତି । 'ନିଜ ସିଂହାସନ' ଗଳ୍ପ ଗ୍ରନ୍ଥ ପାଇଁ ସେ ଓଡିଶା ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଛନ୍ତି । ପ୍ରକାଶିତ ଗଳ୍ପ ଗ୍ରନ୍ଥ 'ଆୟତନ', 'ସପ୍ତାହ ଓ ଅନ୍ୟ ସାତ' ଏବଂ 'ନିଜ ସିଂହାସନ' ।

### ରାମଚନ୍ଦ୍ର ବେହେରା (1945)

କେନ୍ଦୁଝର ଜିଲ୍ଲା ବର୍ହାଟିପୁରା ଗ୍ରାମରେ ଜନ୍ମ । ଇଂରାଜୀରେ ବନାରସ ହିନ୍ଦୁ ବିଶ୍ୱ ବିଦ୍ୟାଳୟରୁ 1969 ମସିହାରେ ଏମ.ଏ. ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟରୁ 1985 ରେ ପି.ଏଚ୍.ଡି. ଡିଗ୍ରୀ ଲାଭ । ଇଂରାଜୀ ବିଭାଗର ଅଧ୍ୟାପକ । 1981 ମସିହାରେ କ୍ଷୁଦ୍ର ଗଳ୍ପ ପାଇଁ ବିଷୁବ ପୁରସ୍କାର, 1991 ମସିହାରେ 'ଓଁକାର ଧ୍ୱନି' ଗଳ୍ପ ଗ୍ରନ୍ଥ ଲାଗି ଶାରଳା ପୁରସ୍କାର ଏବଂ 1993 ମସିହାରେ 'ଅଭିନୟର ପରିଧି' ଉପନ୍ୟାସ ପାଇଁ ଓଡିଶା ସାହିତ୍ୟ ଏକାଡେମୀ ପୁରସ୍କାର ପାଇଛନ୍ତି । ପ୍ରକାଶିତ ଗଳ୍ପ ଗ୍ରନ୍ଥ 'ଦ୍ୱିତୀୟ ଶ୍ମଶାନ, 'ଅଚିହ୍ନା ପୃଥିବୀ', 'ଅବଶିଷ୍ଟ ଆୟୁଷ', 'ଓଁକାର ଧ୍ୱନି', 'ବଞ୍ଚି ରହିବା' ଏବଂ 'ଭଗ୍ନାଂଶର ସ୍ୱପ୍ନ' ।

### ଉତ୍ତମ କୁମାର ପ୍ରଧାନ (1946)

କଳାହାଣ୍ଡି ଜିଲ୍ଲା କଣ୍ଡାମାଳ ଗ୍ରାମରେ ଜନ୍ମ । ରେଭେନ୍ସା କଲେଜରୁ ଅର୍ଥନୀତିରେ ସ୍ନାତକୋତ୍ତର ଡିଗ୍ରୀ ଲାଭ । ପ୍ରଥମେ ଓଡିଶା ପ୍ରଶାସନିକ ସେବା ଏବଂ ପରେ ଓଡିଶା ଅର୍ଥ ସେବାରେ କର୍ମରତ । ତାଙ୍କର କ୍ଷୁଦ୍ରଗଳ୍ପ ସଂକଳନ 'ନଚିକେତାର ହାତ' ଓଡିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ । ପ୍ରକାଶିତ ଗଳ୍ପ ଗ୍ରନ୍ଥ : 'ବୁଢିଆଣୀ ଓ ବୃଦ୍ଧ ପ୍ରଜାପତି', 'ନଚିକେତାର ହାତ' ଏବଂ 'କଳାହାଣ୍ଡିରେ କଥାକାର' ।

**ପଦ୍ମଜ ପାଳ (1947)**

ଜଗତସିଂହପୁର କାଦୁଅପଡା ନିକଟସ୍ଥ କୁଶିଙ୍ଗା ଗ୍ରାମରେ ଜନ୍ମ । ଦର୍ଶନ ଶାସ୍ତ୍ରରେ ଏମ.ଏ. ଏବଂ ଏମ୍. ଫିଲ୍ ଡିଗ୍ରୀ । ତର୍କ ଓ ଦର୍ଶନ ଶାସ୍ତ୍ରର ଅଧ୍ୟାପକ । ଗଳ୍ପ ରଚନା ପାଇଁ 'ଝଙ୍କାର' ଓ 'ଧରିତ୍ରୀ' ପୁରସ୍କାର ଏବଂ 'ଦୁର୍ଗ ପତନର ବେଳ' ଉପନ୍ୟାସ ଲାଗି ଭୁବନେଶ୍ୱର ପୁସ୍ତକ ମେଳା ପୁରସ୍କାର ଓ ଓଡିଶା ସାହିତ୍ୟ ଏକାଡେମୀ ପୁରସ୍କାରରେ ସମ୍ମାନିତ । ପ୍ରକାଶିତ ଗଳ୍ପଗ୍ରନ୍ଥ : 'ନିଷିଦ୍ଧ ଅରଣ୍ୟ', 'ଅପେକ୍ଷା କର ମୁଁ ଫେରୁଛି','ଇଗଲର ନଖଦାନ୍ତ' ଏବଂ 'ସବୁଠୁ ସୁନ୍ଦର ପକ୍ଷୀ' ।

**ଯଶୋଧାରା ମିଶ୍ର (1951)**

ଜନ୍ମସ୍ଥାନ ସମ୍ବଲପୁର । ଇଂରେଜୀ ସାହିତ୍ୟରେ ଏମ୍.ଏ., ପାସ୍ କରି ସଂପ୍ରତି ମଧ୍ୟପ୍ରଦେଶ ଭୋପାଳରେ ଅଧ୍ୟାପନା କରୁଛନ୍ତି । ଜଣେ ସଫଳ ଗଳ୍ପ ଲେଖିକା ଭାବରେ 'ଝଙ୍କାର' ଏବଂ ଭୁବନେଶ୍ୱର ପୁସ୍ତକମେଳା ସାହିତ୍ୟ ପୁରସ୍କାର ଦ୍ୱାରା ସମ୍ମାନିତ । 'ଜହ୍ନ ରାତି' ଗଳ୍ପ ସଂକଳନ ପାଇଁ ଓଡିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ମଧ୍ୟ । ପ୍ରକାଶିତ ଗଳ୍ପ ଗ୍ରନ୍ଥ : 'ଦ୍ୱୀପ ଓ ଅନ୍ୟାନ୍ୟ ଗଳ୍ପ', 'ଜହ୍ନ ରାତି' ଏବଂ 'ଦେଖଣାହାରୀ' ।

**ଜଗଦୀଶ ମହାନ୍ତି (1951)**

ମୟୂରଭଞ୍ଜ ଜିଲ୍ଲାର ଗୋରୁ ମହିଷାଣୀରେ ଜନ୍ମ । ନୂତନ ଚିନ୍ତା ଭାବନାର କଥାଶିଳ୍ପୀ ଭାବରେ ସୁପରିଚିତ । କ୍ଷୁଦ୍ରଗଳ୍ପ ପାଇଁ 'ଝଙ୍କାର' ଓ 'ଧରିତ୍ରୀ ପୁରସ୍କାର ଏବଂ 'କନିଷ୍ଠ କନିଷ୍ଠ' ଉପନ୍ୟାସ ଲାଗି ଓଡିଶା ସାହିତ୍ୟ ଏକାଡେମୀ ପୁରସ୍କାର ଦ୍ୱାରା ସମ୍ବର୍ଦ୍ଧିତ । ପ୍ରକାଶିତ ଗଳ୍ପ ଗ୍ରନ୍ଥ : 'ଏକାକୀ ଅଶ୍ୱାରୋହୀ', 'ଦକ୍ଷିଣ ଦୁଆରୀ ଘର' 'ଈର୍ଷା ଏକ ଋତୁ', 'ଆଲବମ୍' ଓ 'ଦିପହର ଦେଖି ନଥିବା ଲୋକଟିଏ' ।

**ଦାଶ ବେନହୁର (1953)**

ସମସାମୟିକ ଓଡିଆ କଥା ସାହିତ୍ୟରେ ଏକ ପରିଚିତ ଛଦ୍ମନାମ । ପ୍ରକୃତ ନାମ ଜିତେନ୍ଦ୍ର ନାରାୟଣ ଦାଶ । ଜନ୍ମ ସ୍ଥାନ ନୟାଗଡ ଜିଲ୍ଲା ଖଣ୍ଡପଡା । ରାଜନୀତି ବିଜ୍ଞାନରେ ସ୍ନାତକୋତ୍ତର ଡିଗ୍ରୀ ହାସଲ ପରେ ବର୍ତ୍ତମାନ ସରକାରୀ କଲେଜରେ ଅଧ୍ୟାପନା କରୁଛନ୍ତି । ଓଡିଶା ସାହିତ୍ୟ ଏକାଡେମୀ ଏବଂ ଉତ୍କଳ ସାହିତ୍ୟ ସମାଜ ଫକୀର ମୋହନ ଗଳ୍ପ ସମ୍ମାନରେ ସମ୍ମାନିତ । ପ୍ରକାଶିତ ଗଳ୍ପ ଗ୍ରନ୍ଥ : 'ନାଭି ସମୁଦ୍ର', 'ସମୟ ସଂପର୍କ', 'ପଦ୍ମ ଘୁଅି ଘୁଅି ଯାଉଛି', 'ଚିତ୍ରିତ ଚଉପାଶ', 'ଛାଇ ନିଦ' ଏବଂ 'ଅକ୍ଷର ଅରଣ୍ୟ' ଓ 'ଡେଣା' ।

**ହୃଷୀକେଶ ପଣ୍ଡା (1955)**

କଳାହାଣ୍ଡି ଜିଲ୍ଲା ଖରିଆରରେ ଜନ୍ମ । ରସାୟନ ଶାସ୍ତ୍ରରେ ଏମ୍.ଏ. ଏବଂ ପି.ଏଚ୍,ଡି. ଡିଗ୍ରୀ ଲାଭ କରି ବର୍ତ୍ତମାନ ଭାରତୀୟ ପ୍ରଶାସନ ସେବାରେ କର୍ମରତ । ଗାଳ୍ପିକ ଓ ଔପନ୍ୟାସିକ ଭାବରେ ସୁପରିଚିତ । 'ସୁନାପୁଟର ଲୋକେ' ଉପନ୍ୟାସ ପାଇଁ ଭୁବନେଶ୍ୱର ପୁସ୍ତକ ମେଳା ସାହିତ୍ୟ ପୁରସ୍କାର ଲାଭ କରିଛନ୍ତି । ଉଲ୍ଲେଖ ଯୋଗ୍ୟ ଗଳ୍ପ ଗ୍ରନ୍ଥ : 'ବାହାରେ ଛିଡା ହୋଇଥିବା ଲୋକ' 'ରେବତୀ' 'ରାଜପୁତ୍ର' 'ସାହାବ ଦେବତା' ଏବଂ 'ପ୍ରୌଢ ଭାବନା' ।

**ପୁଷ୍ପାଞ୍ଜଳି ନାୟକ (1955)**

ବାଲେଶ୍ୱର ଜିଲ୍ଲା ବାଲିଆପାଳରେ ଜନ୍ମ । ଇଂରେଜୀ ସାହିତ୍ୟରେ ଏମ.ଏ. ଏବଂ ବି.ଇ.ଡି.

ଡିଗ୍ରୀ ହାସଲ କରି ଚାନ୍ଦିପୁର ଇଂଲିସ ମିଡିୟମ୍ ସ୍କୁଲରେ ଶିକ୍ଷୟିତ୍ରୀ । ଗଳ୍ପ ଲାଗି ବିଷୁବ ଏବଂ ସୁଚରିତା ପୁରସ୍କାରରେ ସମ୍ମାନିତ । ପ୍ରକାଶିତ ଗଳ୍ପ ଗ୍ରନ୍ଥ : 'ପୂର୍ବରାଗ', 'ଅଶ୍ରୁନଦୀର ସ୍ରୋତ' ଏବଂ 'ପ୍ରପ୍ନ ଫେରି ନାହିଁ' ।

**ସରୋଜିନୀ ସାହୁ (1956)**

ଜନ୍ମ ସ୍ଥାନ : ଢେଙ୍କାନାଳ । ମଧୁସୂଦନ ଆଇନ୍ ମହାବିଦ୍ୟାଳୟରୁ ଆଇନ୍‌ରେ ସ୍ନାତକ, ରେଭେନ୍ସା ମହାବିଦ୍ୟାଳୟରୁ ଓଡିଆରେ ସ୍ନାତକୋତ୍ତର ଉପାଧି ପରେ ସଂପ୍ରତି ବେଲ୍‌ପାହାଡ କଲେଜରେ ଅଧ୍ୟାପନା । କ୍ଷୁଦ୍ର ଗଳ୍ପ ପାଇଁ 1981 ରେ ବିଷୁବ ପୁରସ୍କାର, 1993 ରେ 'ଝଙ୍କାର' ପୁରସ୍କାର, 1993 ରେ ଭୁବନେଶ୍ୱର ପୁସ୍ତକ ମେଳା ଭୋଇ ପୁସ୍ତକ ପୁରସ୍କାର ଏବଂ ସେହି ବର୍ଷ ତାଙ୍କର 'ଅମୃତ ପ୍ରତୀକ୍ଷାରେ' ଗଳ୍ପ ସଂକଳନ ପାଇଁ ଓଡିଶା ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଛନ୍ତି । ପ୍ରକାଶିତ ଗଳ୍ପ ଗ୍ରନ୍ଥ : ' ସୁଖର ମୁହାଁ ମୁହିଁ', 'ନିଜ ଗହୀରରେ ନିଜେ', 'ଅମୃତର ପ୍ରତୀକ୍ଷାରେ', 'ତରଳି ଯାଇଥିବା ଦୁର୍ଗ' ଏବଂ 'ଚୌକାଠ' ।

**ସଦାନନ୍ଦ ତ୍ରିପାଠୀ (1956)**

ଗଂଜାମ ଜିଲ୍ଲା ଶେରଗଡ ଥାନା କୃପାସିନ୍ଧୁପୁର ଗ୍ରାମରେ ଜନ୍ମ । ଏମ୍.ଏ., ଏଲ.ଏଲ.ବି. ଡିଗ୍ରୀ ହାସଲ କଲାପରେ ବର୍ତ୍ତମାନ ଷ୍ଟେଟ୍‌ବ୍ୟାଙ୍କରେ କର୍ମରତ । କ୍ଷୁଦ୍ର ଗଳ୍ପ ପାଇଁ ବିଷୁବ (ପ୍ରଜାତନ୍ତ୍ର) ପୁରସ୍କାର, ଭୁବନେଶ୍ୱର ପୁସ୍ତକ ମେଳା ସାହିତ୍ୟ ପୁରସ୍କାର, ଗଙ୍ଗାଧର ମେହେର (ପରିଷଦ) ସମ୍ମାନ ଓ ଅଖିଳ କଥା ସମ୍ମାନ ଲାଭ କରିଛନ୍ତି । ପ୍ରକାଶିତ ଗଳ୍ପ ଗ୍ରନ୍ଥ :'ଅନ୍ୟ ଜଣେ ସଦାନନ୍ଦ ତ୍ରିପାଠୀଙ୍କ ମୃତ୍ୟୁପରେ', 'ରଙ୍ଗନାଥ ଘଡେଇ', ଯେଉଁ ବାଟରେ ଯିଏ' ଏବଂ 'ନିଜ ନିଜ ନିୟମ' ।

**ସୁସ୍ମିତା ବାଗ୍‌ଚୀ (1960)**

ଜନ୍ମସ୍ଥାନ : କଟକ । ଦିଲ୍ଲୀ ବିଶ୍ୱ ବ୍ରିଦ୍ୟାଳୟରୁ ସ୍ନାତକୋତ୍ତର ଡିଗ୍ରୀ ପରେ ଦିଲ୍ଲୀ ବିଶ୍ୱବିଦ୍ୟାଳୟ ଅଧୀନରେ ଅଧ୍ୟାପିକା ଭାବରେ କର୍ମମୟ ଜୀବନ ଆରମ୍ଭ । ବର୍ତ୍ତମାନ ପାରିବାରିକ ପତ୍ରିକା 'ସୁଚରିତା'ର ସହଯୋଗୀ ସଂପାଦିକା । ପ୍ରଥମ କ୍ଷୁଦ୍ର ଗଳ୍ପ ସଂକଳନ 'ଆକାଶ ଯେଉଁଠି କଥା କହେ' 1994 ମସିହାରେ ଓଡିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ । ଅନ୍ୟ ପ୍ରକାଶିତ ଗଳ୍ପ ଗ୍ରନ୍ଥ : 'ଛାଇ ଏବଂ ପାଖ ମଣିଷ', 'ନୈବେଦ୍ୟ' ଏବଂ 'ଦିନକୂଳ, ଅନ୍ୟ ଢେଉ' ।

printed at JJ Offset Printers, Delhi-110035

1898 ମସିହା ଅକ୍ଟୋବର ସଂଖ୍ୟା 'ଉତ୍କଳ ସାହିତ୍ୟ' ପୃଷ୍ଠାରେ ପ୍ରକାଶିତ ଫକୀର ମୋହନ ସେନାପତିଙ୍କ ରଚିତ 'ରେବତୀ' ଓଡ଼ିଆ ସାହିତ୍ୟରେ ପ୍ରଥମ ଆଧୁନିକ କ୍ଷୁଦ୍ରଗଳ୍ପ ଭାବରେ ଚିହ୍ନିତ ହୋଇଛି । ସେଦିନଠୁ ଆଜିଯାଏଁ ଗତ ଏକ ଶତାବ୍ଦୀ ମଧ୍ୟରେ ଓଡ଼ିଆ କ୍ଷୁଦ୍ରଗଳ୍ପର ଆଙ୍ଗିକ ଓ ଆତ୍ମିକରେ ବହୁବିଧ ବିକାଶ ଘଟିଛି । ଓଡ଼ିଆ ପ୍ରକାଶନ ସଂସ୍ଥାର ବିକାଶ ପୂର୍ବରୁ ପତ୍ରପତ୍ରିକାମାନେ ଥିଲେ ଓଡ଼ିଆ କ୍ଷୁଦ୍ରଗଳ୍ପର ଅନ୍ତୁଡ଼ିଶାଳ । ବିଂଶ ଶତାବ୍ଦୀର ଚତୁର୍ଥ ଓ ପଞ୍ଚମ ଦଶକ ଥିଲା ଓଡ଼ିଆ କ୍ଷୁଦ୍ରଗଳ୍ପର କ୍ରାନ୍ତିକାଳ । ଷଷ୍ଠ-ସପ୍ତମ ଦଶକରେ ସମକାଳର ସାମାଜିକ-ରାଜନୈତିକ ଘଟଣା-ଅଘଟଣ, ସ୍ୱପ୍ନ-ଦୁଃସ୍ୱପ୍ନ, ଆଶା-ନିରାଶାର ଚିତ୍ର ଓଡ଼ିଆ କ୍ଷୁଦ୍ରଗଳ୍ପରେ ଫୁଟି ଉଠିଥିଲା । 1975 ମସିହାରେ ଜରୁରୀ ପରିସ୍ଥିତି କାଳରେ ନାଗରିକ ସ୍ୱାଧୀନତା ବାଧାପ୍ରାପ୍ତ ହେଲା ଏବଂ ତତ୍କାଳୀନ ଓଡ଼ିଆ କ୍ଷୁଦ୍ରଗଳ୍ପରେ ତାହା ପ୍ରତିଫଳିତ ହେଲା । ସମାଜରେ ଘଟୁଥିବା ନାରକୀୟ ଘଟଣାବଳୀ ପରବର୍ତ୍ତୀ ସମୟର ଓଡ଼ିଆ କ୍ଷୁଦ୍ରଗଳ୍ପରେ କେବଳ ଯେ ଚିତ୍ରିତ ହେଲା ତା ନୁହେଁ, ତାହାର ନିନ୍ଦା ବା ବିରୋଧ କଳାତ୍ମକ ଅଭିବ୍ୟକ୍ତିରେ କରାଗଲା । ସମାଜ-ବାସ୍ତବତା ଯେ ସମକାଳୀନ ଓଡ଼ିଆ କ୍ଷୁଦ୍ରଗଳ୍ପର ମୂଳପିଣ୍ଡ, ଏହି ସଂକଳନରେ ସ୍ଥାନିତ ଗଳ୍ପମାନ ପାଠକରି ତାହା ହୃଦୟଙ୍ଗମ କରିହେବ ।

ଏହି ସଂକଳନର ସଂପାଦକ ଡଃ ବିଭୂତି ପଟ୍ଟନାୟକ ଜଣେ କୃତବିଦ୍ୟ ଔପନ୍ୟାସିକ, ଗାଳ୍ପିକ, ସଂପାଦକ ତଥା ସମାଲୋଚକ । ତାଙ୍କ ରଚିତ 'ବଧୂ ନିରୁପମା', 'ସୁଲତାନା' ଆଦି ଉପନ୍ୟାସ ପର୍ଯ୍ୟାପ୍ତ ପାଠକୀୟ ଲୋକପ୍ରିୟତା ଲାଭକରିଛି । ନିଜ ସାହିତ୍ୟିକ କୃତିତ୍ୱ ଲାଗି ସେ ମର୍ଯ୍ୟାଦାଜନକ ଶାରଳା ପୁରସ୍କାରରେ ସମ୍ମାନିତ ।



ଟ. 75.00

ISBN 81-237-2965-0

ନ୍ୟାସନାଲ ବୁକ୍ ଟ୍ରଷ୍ଟ ଇଣ୍ଡିଆ